କବିସମ୍ରାଟ୍

# ଉପେନ୍ଦ୍ର ଭଞ୍ଜ




ପ୍ରକାଶକ

ଉତ୍କଳ ବିଶ୍ୱବିଦ୍ୟାଳୟ

ବାଣୀ ବିହାର

Digitized by srujanika@gmail.com

କବିସମ୍ରାଟ୍

# ଉପେନ୍ଦ୍ର ଭଞ୍ଜ

ଅନନ୍ତ ପଦ୍ମନାଭ ପଟ୍ଟନାୟକ




ଦ୍ୱିତୀୟ ସଂସ୍କରଣ

୧୯୭୮

ପ୍ରକାଶକ—ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀ ବିହାର

ମୂଲ୍ୟ-ଦଶଟଙ୍କା ମାତ୍ର

Digitized by srujanika@gmail.com

## ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର

୧୯୫୯ ରୁ ୧୯୭୧ ମଧ୍ୟରେ ପ୍ରକାଶିତ ଓଡ଼ିଆ ପୁସ୍ତକମାନଙ୍କ ମଧ୍ୟରେ "କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ" ଶ୍ରେଷ୍ଠ ବିବେଚିତ ହୋଇ ଲେଖକ ଶ୍ରୀ ଅନନ୍ତପଦ୍ମନାଭ ପଟ୍ଟନାୟକଙ୍କୁ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଉପାୟନ ସ୍ୱରୂପ ପାଞ୍ଚଶତ ମୁଦ୍ରା ପ୍ରଦାନ କରାଗଲା ।

( ସ୍ୱାକ୍ଷର ) ଗୌରୀକୁମାର ବ୍ରହ୍ମା
ସମ୍ପାଦକ
୨୭-୩-୭୫

( ସ୍ୱାକ୍ଷର ) ସନ୍ତୋଷକୁମାର ସାହୁ
( ଉପମନ୍ତ୍ରୀ )
ସଭାପତି ୨୭-୩-୭୫

Digitized by srujanika@gmail.com

## ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର

ଶ୍ରୀଯୁକ୍ତ ଅନନ୍ତପଦ୍ମନାଭ ପଟ୍ଟନାୟକ ମହାଶୟ,

ଆଜୀବନ ସାହିତ୍ୟ ସାଧକରୂପେ ଆପଣ ସୁପରିଚିତ । ପତ୍ରପତ୍ରିକାରେ ପ୍ରବନ୍ଧ ଲେଖିବା ଠାରୁ ଆରମ୍ଭ କରି ତତ୍ତ୍ୱପୂର୍ଣ୍ଣ ସମାଲୋଚନା-ସାହିତ୍ୟ ସୃଷ୍ଟି କରିବା ପର୍ଯ୍ୟନ୍ତ ବିଭିନ୍ନ ସାହିତ୍ୟିକ ବିଭାଗରେ ଆପଣଙ୍କ ଲେଖନୀର ବଳିଷ୍ଠ ସଙ୍କେତ ବିଦ୍ୟମାନ । କବି-ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ସମ୍ବନ୍ଧୀୟ ଆପଣଙ୍କର ଉପାଦେୟ ନିବନ୍ଧ ବହୁ ବର୍ଷର ଚିନ୍ତା ଓ ଚର୍ଚ୍ଚାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ବିଶେଷତଃ, ବହୁ ପ୍ରାଚୀନ ଓଡ଼ିଆ କବିଙ୍କ ସମ୍ପର୍କରେ ଆପଣଙ୍କର ପ୍ରବନ୍ଧାବଳୀ ଓଡ଼ିଆ ସାହିତ୍ୟର ଇତିହାସ ଗଠନ ଦିଗରେ ବିଶେଷ ସହାୟକ ହୋଇଅଛି ।

ତେଣୁ ଆଜି ଏହି ଶୁଭ ଅବସରରେ ଓଡ଼ିଶା ସାହିତ୍ୟ ଏକାଡେମୀ ଆପଣଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରୁଅଛି ।

( ସ୍ୱାକ୍ଷର ) ଗୌରୀକୁମାର ବ୍ରହ୍ମା
ସମ୍ପାଦକ

( ସ୍ୱାକ୍ଷର ) ଶ୍ରୀ ହରେକୃଷ୍ଣ ମହତାବ
ସଭାପତି
୨୭-୮-୬୭

Digitized by srujanika@gmail.com

## କଳିଙ୍ଗ ସଂସ୍କୃତି ପରିଷଦ, ଭୁବନେଶ୍ୱର

ମାନନୀୟ ଶ୍ରୀଯୁକ୍ତ ଅନନ୍ତପଦ୍ମନାଭ ପଟ୍ଟନାୟକ ମହୋଦୟ,

ଭବଦୀୟ ସମସ୍ତ ଜୀବନ ପବିତ୍ର ସାହିତ୍ୟ ସେବା କ୍ଷେତ୍ରରେ ଯାପିତ ହୋଇଅଛି । ଓଡ଼ିଆ ସାହିତ୍ୟରେ ପୁରାଣ ଓ କାବ୍ୟ କବିତାର ଅଭାବ ନାହିଁ । କିନ୍ତୁ ଉତ୍କଳ-ଭାରତୀଙ୍କର ସର୍ବବିଧ ଗୌରବ ବର୍ଦ୍ଧନ କରିବାକୁ ହେଲେ ଯୁଗ ଚିନ୍ତାର ଅନୁରୂପ ବିବିଧ ସାହିତ୍ୟିକ ବିଭାବର ମାନ ଉନ୍ନୟନ କରିବାକୁ ହେବ । ଏହି ଆଦର୍ଶରେ ଉଦବୁଦ୍ଧ ହୋଇ ଆପଣ ଓଡ଼ିଶାର କବିମାନଙ୍କ ସମ୍ପର୍କୀୟ ବହୁ ପ୍ରବନ୍ଧ ଓ ନିବନ୍ଧ ରଚନା କରି ସମୀକ୍ଷାମୂଳକ ଓଡ଼ିଆ ସାହିତ୍ୟର ଦିଗ୍‌ବଳୟ ସମ୍ପ୍ରସାରଣରେ ଚେଷ୍ଟିତ ହୋଇଅଛନ୍ତି । ଘୁମୁସରର ଇତିହାସ ସମ୍ପର୍କୀୟ ନାନା ବିସ୍ମୃତପ୍ରାୟ ତଥ୍ୟ ଆପଣଙ୍କ ବଳିଷ୍ଠ ଲେଖନୀରେ ରୂପାୟିତ ହୋଇ ପାଠକ ମଣ୍ଡଳୀର ଆଗ୍ରହ ବୃଦ୍ଧି କରିଅଛି । ସର୍ବୋପରି କବି-ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଜୀବନ ଚରିତ ପ୍ରକାଶ କରିବାରେ ଏବଂ ତାଙ୍କର ସାହିତ୍ୟିକ ଉତ୍କର୍ଷ ପ୍ରତିଷ୍ଠା କରିବା ଦିଗରେ ଆପଣ ଯେଉଁ କୃତବିଦ୍ୟତା ପ୍ରଦର୍ଶନ କରିଅଛନ୍ତି, ତାହା ପାଠକ ସମାଜରେ ଅଳ୍ପ ଗୌରବର ସହିତ ଗୃହୀତ ହୋଇନାହିଁ । ପବିତ୍ର ଶିକ୍ଷାୟତନରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରତି ଅନୁରାଗପୂର୍ଣ୍ଣ ବାୟୁମଣ୍ଡଳର ସୃଷ୍ଟି ଦିଗରେ ମଧ୍ୟ ଆପଣଙ୍କର ଉଦ୍ୟମ ପ୍ରଶଂସନୀୟ ।

ଆଜି ଏହି ଶୁଭ ଅବସରରେ ଭୁବନେଶ୍ୱରର କଳିଙ୍ଗ ସଂସ୍କୃତି ପରିଷଦ ଆପଣଙ୍କର ସୁଦୀର୍ଘ ସାହିତ୍ୟ ସାଧନାର ଅଭିନନ୍ଦନ ସ୍ୱରୂପ ଏହି ମାନପତ୍ର ପ୍ରଦାନ କରି ନିଜକୁ ଗୌରବାନ୍ୱିତ ମନେ କରୁଅଛି ।

(ସ୍ୱା) ଗୋପେଶ୍ୱର ରାଜଗୁରୁ
ସମ୍ପାଦକ (୯।୫।୭୧)
କଳିଙ୍ଗ ସଂସ୍କୃତି ପରିଷଦ

(ସ୍ୱା) ଅନନ୍ତ ନାରାୟଣ ସିଂହଦେବ
(ପଞ୍ଚାୟତ, କୃଷି ମନ୍ତ୍ରୀ), ସଭାପତି
କଳିଙ୍ଗ ସଂସ୍କୃତି ପରିଷଦ (୯।୫।୭୧)

Digitized by srujanika@gmail.com

# ମୁଖବନ୍ଧ

( ଓଡ଼ିଶାର ବିଖ୍ୟାତ ଦୈନିକ 'ସମାଜ'ରେ ୨୭-୬-୫୯ ରେ "କବିସମ୍ରାଟ ଉପେନ୍ଦ୍ର ଭଞ୍ଜ" ଗ୍ରନ୍ଥ ବିଷୟରେ ପ୍ରକାଶିତ ସମାଲୋଚନା ବର୍ତ୍ତମାନ ସେହି ଗ୍ରନ୍ଥର ଦ୍ୱିତୀୟ ସଂସ୍କରଣରେ ମୁଖବନ୍ଧ ରୂପେ ସନ୍ନିବେଶିତ କରିବା ସମୀଚୀନ ବିବେଚିତ ହୁଏ। )

—ଲେଖକ

ପ୍ରାଚୀନ ଓଡ଼ିଆ ସାହିତ୍ୟ ଏକାନ୍ତଭାବେ ଧର୍ମଘଟିତ ଓ ଦେବ ସଚେତନ। ଦେବତାର ଅନୁଗ୍ରହ—ନିଗ୍ରହ ଲୀଳା ମଧ୍ୟ ଦେଇ ଗଳ୍ପରସ ସୃଷ୍ଟି ଓ ସନାତନ ପୌରାଣିକ ଗାର୍ହସ୍ଥ୍ୟ ଜୀବନର ଆଦର୍ଶ ଜ୍ଞାପନ କରିବା ହିଁ ଏ ସାହିତ୍ୟର ମୂଳଲକ୍ଷ୍ୟ ଥିଲା। କିନ୍ତୁ ଏହି ଗତାନୁଗତିକ ଧର୍ମମୁଖୀ ସାହିତ୍ୟର ଗତିଧାରା ୧୬ଶ ଶତକ ବେଳକୁ ବିବର୍ତ୍ତିତ ହେବାକୁ ଲାଗିଲା। ଏ ଶୁଭମୁହୂର୍ତ୍ତରେ ଦେଖାଦେଲେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ। ଓଡ଼ିଆ କାବ୍ୟ ସାହିତ୍ୟରେ ନୂତନ ଦ୍ୟୋତନା ନୂତନ ଚେତନା ଖେଳାଇ ଦେଇ ଅପୂର୍ବ ବିନ୍ଧାଣୀ ରୂପେ ଏ ସାହିତ୍ୟର ଚରମ ଅଭିବୃଦ୍ଧି ସାଧନ କଲେ। ଓଡ଼ିଆ ସାହିତ୍ୟ ରାଜ୍ୟରେ ସେଥିପାଇଁ ସେ କବିସମ୍ରାଟ ପଦବୀରେ ଭୂଷିତ ହେଲେ। ଦୁଃଖର କଥା ଏ ପର୍ଯ୍ୟନ୍ତ କବିଗୁରୁ ଉପେନ୍ଦ୍ରଙ୍କର ପ୍ରତିଭାର କଳନା କରାଯାଇନାହିଁ ବା ତାଙ୍କ ରଚିତ କାବ୍ୟାବଳୀର ଉପଯୁକ୍ତ ଆଲୋଚନା ସମାଲୋଚନା ହୋଇପାରିନାହିଁ। ତଥାପି ଉପେନ୍ଦ୍ର ସାହିତ୍ୟ ଆଲୋଚନାର ଗତିପଥ ବନ୍ଧୁର ନୁହେ। ଏ ସାହିତ୍ୟ ଆଲୋଚନାର ପ୍ରଥମ ସଙ୍କେତ ହଣ୍ଟରଙ୍କ ଲେଖାରେ ମିଳୁଥିଲେ ହେଁ ଊନବିଂଶ ଶତକର ଶେଷ ଦଶନ୍ଧିରେ ଏହାର ପ୍ରକୃଷ୍ଟ ରୂପ ସୁସ୍ପଷ୍ଟ ହୋଇପାରିଛି। ଲାଲ ରାମନାରାୟଣ ରାୟ, ବିଶ୍ୱନାଥ କର, ମନମୋହନ ଚକ୍ରବର୍ତ୍ତୀ, ବିଜୟଚନ୍ଦ୍ର ମଜୁମଦାର ପ୍ରମୁଖ ସମାଲୋଚକଙ୍କ ଆଲୋଚନା ହିଁ ସ୍ମରଣୀୟ। ଏମାନଙ୍କ ସମୀକ୍ଷାରେ ଦୋଷ ଦୁର୍ବଳତା ଯେ ନାହିଁ ତା କୁହାଯାଉନାହିଁ। କିନ୍ତୁ ଆଲୋଚନା ଇତିହାସ ଅଧ୍ୟୟନ କରି ଏମାନଙ୍କୁ ଭୁଲିହେବ ନାହିଁ। ପୁନଶ୍ଚ ଏହି ଶଂସିତ କାଳର ଆଦ୍ୟଭାଗ (୧୮୯୩—୯୪) ରେ ଉପେନ୍ଦ୍ର ସାହିତ୍ୟ ଆଲୋଚନାରୁ ହିଁ ଇନ୍ଦ୍ରଧନୁ ବିଜୁଳିଗୋଳର ସୃଷ୍ଟି। ତତ୍ପରେ ବିଂଶ ଶତକର ପ୍ରଥମ ପାଦରେ ବିଜୟଚନ୍ଦ୍ର ମଜୁମଦାରଙ୍କ ପରି ଭଞ୍ଜବିଦ୍ୱେଷୀ ସମୀକ୍ଷକଙ୍କଠାରୁ ଉଦାର ମତାବଲମ୍ବୀ ଆର୍ତ୍ତବଲ୍ଲଭ ମହାନ୍ତି ଓ ପଣ୍ଡିତ ନୀଳକଣ୍ଠଙ୍କ ଯାଏ ସମାଲୋଚକଗଣ ଭଞ୍ଜସାହିତ୍ୟକୁ ପ୍ରକୃଷ୍ଟ ଆସନ ଦେବାକୁ ସଚେଷ୍ଟ ହୋଇଅଛନ୍ତି। ଡାକ୍ତର ଆର୍ତ୍ତବଲ୍ଲଭଙ୍କ ସମାଲୋଚନା ମୁଖ୍ୟତଃ ଶାସ୍ତ୍ରୀୟ ଆଲୋଚନାର ଅନ୍ତର୍ଗତ ଅଳଂକାରିକ ରୀତିରେ ନିବଦ୍ଧ। ପଣ୍ଡିତ ନୀଳକଣ୍ଠଙ୍କ ଆଲୋଚନା ମୂଳରେ ଓଡ଼ିଆ ସଂସ୍କୃତିର ପ୍ରାଣଧାରା ଚିହ୍ନିବାର ସଙ୍କେତ ବିଦ୍ୟମାନ। ଧର୍ମ ଓ

Digitized by srujanika@gmail.com

ସାମାଜିକତା ପୃଷ୍ଠଭୂମିରୁ ସେ ଭଞ୍ଜ ସାହିତ୍ୟର ସମାଲୋଚନାରେ ବ୍ରତୀ । ତଥାପି ଏମାନେ ସାରସ୍ୱତ ଦରବାରରେ ଉପେନ୍ଦ୍ର ଭଞ୍ଜଙ୍କ ପ୍ରକୃଷ୍ଟ ପରିଚୟ ଦେବାକୁ ଯାଇ କେତେକ ପ୍ରବନ୍ଧ ଲେଖିଥିଲେହେଁ ସ୍ୱତନ୍ତ୍ର ଗ୍ରନ୍ଥ ରଚନା କରି ନାହାନ୍ତି । ତେବେ କବି ତିଳକ ଭଞ୍ଜଙ୍କର ପ୍ରତିଭା ଚହଲାଇବାରେ ଗଞ୍ଜାମର ଭଞ୍ଜ ସାହିତ୍ୟ ପରିଷଦ ଓ କଟକର କଳିଙ୍ଗ ଭାରତୀ ପରି ସାହିତ୍ୟିକ ସମିତିର ଉଦ୍ୟମ ବାସ୍ତବିକ ପ୍ରଶଂସାର୍ହ । ଭଞ୍ଜପ୍ରଭା ଏ ଦିଗରେ କଳିଙ୍ଗ ଭାରତୀର ଏକ ବିଶିଷ୍ଟ ଦାନ । ସୁଖର ବିଷୟ ଅଧୁନା କେତେକ ଭଞ୍ଜପ୍ରେମୀ ସମାଲୋଚକ କବିସମ୍ରାଟଙ୍କର ଅପୂର୍ବ ପ୍ରତିଭାରେ ବିସ୍ମୟାନ୍ୱିତ ହୋଇ ତାଙ୍କ ସାହିତ୍ୟକୁ ସ୍ୱତନ୍ତ୍ର ଗ୍ରନ୍ଥରେ ସମୀକ୍ଷା କରିବାକୁ ପ୍ରୟାସ କରିଅଛନ୍ତି । ଏ ଦିଗରେ ଶ୍ରୀ ବିଷ୍ଣୁମୋହନ ମହାନ୍ତିଙ୍କ ଉପେନ୍ଦ୍ର ସାହିତ୍ୟ ସମାଲୋଚନା ଓ ଶ୍ରୀ ପଦ୍ମନାଭ ପଟ୍ଟନାୟକଙ୍କ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ବିମର୍ଶ ଓ ସ୍ମରଣୀୟ । ବିଷ୍ଣୁମୋହନଙ୍କ ଗ୍ରନ୍ଥ ଆଲୋଚନାର ସ୍ଥଳ ଏ ନୁହେଁ । ମାତ୍ର ଏତିକି କୁହାଯାଇପାରେ ଯେ ବିଷ୍ଣୁମୋହନଙ୍କ ଆଲୋଚନା ଅପେକ୍ଷା ପଦ୍ମନାଭଙ୍କ ଆଲୋଚନା ଅଧିକ ପାଣ୍ଡିତ୍ୟ ଓ ତାତ୍ତ୍ୱିକତାପୂର୍ଣ୍ଣ । ଶ୍ରୀ ପଟ୍ଟନାୟକଙ୍କ ଆଲୋଚନା ମୁଖ୍ୟତଃ ତିନୋଟି ଭାଗରେ ବିଭକ୍ତ । ୧ମରେ ଜୀବନୀ, ୨ୟରେ ସାହିତ୍ୟ ଓ ତୃତୀୟରେ ପରିଶିଷ୍ଟ ପର୍ଯ୍ୟାୟରେ ଭଞ୍ଜ ରାଜ୍ୟାଦିର ବିସ୍ତୃତି, ରାଜସ୍ୱ, ବାଣିଜ୍ୟ, କାବ୍ୟ ପରିଚୟ, ଶାସ୍ତ୍ରଜ୍ଞାନ, ରସବିଚାର, ବର୍ଣ୍ଣନାପାଟବ, ଦିଗ୍‌ଦର୍ଶନ, ସମାଜଚିତ୍ର, ଶାସନନୀତି, ଭକ୍ତିପ୍ରାଣତା, ରାଜନୀତି, ଅଳଂକାର, ସୃଷ୍ଟି ବୈଚିତ୍ର୍ୟ, ଭଞ୍ଜ ବଂଶାବଳୀ, ଭାରତ୍ୱ, ଭଞ୍ଜ ସାହିତ୍ୟରେ ପ୍ରଭାବ ପ୍ରଭୃତି ବିଭିନ୍ନ ବିଭାବ ଏ ଗ୍ରନ୍ଥରେ ଅନୁଗର୍ଭିତ । ଆହୁରି ମଧ୍ୟ ପ୍ରତ୍ୟେକ ବିଭାଗାଲୋଚନାର ସୌକର୍ଯ୍ୟକଳ୍ପେ କେତେକ ଉପବିଭାଗର ସୃଷ୍ଟିରେ ଆଲୋଚକଙ୍କ ଦୃଷ୍ଟି ନିବଦ୍ଧ ଓ ସେଗୁଡ଼ିକର ଆଲୋଚନାରେ ତାଙ୍କର ଗବେଷଣାତ୍ମକ ମନୋବୃତ୍ତିର ପରିଚୟ ସେ ଦେଇଅଛନ୍ତି । ମାତ୍ର ଲେଖକ ବହୁସ୍ଥଳରେ ଉଦ୍ଧୃତିର ମୋହରେ ଭାସିଯାଇ ନିଜର ବକ୍ତବ୍ୟକୁ ଭୁଲିଯାଇ ଅଛନ୍ତି । ପୁଣି କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ କବିତ୍ୱ ସ୍ଫୁରଣ ମୂଳରେ ଦୈବୀଶକ୍ତିର ଆରୋପ କରିବାକୁ ଲେଖକ ବ୍ୟାକୁଳ ଥିଲାପରି ମନେହୁଏ । କିନ୍ତୁ ଏଠାରେ ସ୍ମରଣୀୟ ଯେ କବିଙ୍କୁ ଦେବତାର କ୍ରୀଡ଼ନକ କଲେ ବା କବିର ସ୍ଫୁର୍ତ୍ତିର ମୂଳୀଭୂତ କାରଣ ଏକମାତ୍ର ଦୈବୀ ପ୍ରେରଣା ବୋଲି ନିର୍ଣ୍ଣୀତ ହେଲେ ଦେବତାର ମହିମା ପ୍ରଖ୍ୟାତ ହୋଇପାରେ ମାତ୍ର ନିରୀହ ସ୍ରଷ୍ଟାର ସୃଷ୍ଟି ଲୋକପ୍ରତି ଅବିଚାର କରାଯାଏ ନିନା ?

ସେ ଯାହାହେଉ ବିଭିନ୍ନ ଭଞ୍ଜକାବ୍ୟରୁ ଉଦାହରଣ ଦେଇ ସମାଲୋଚକ କବି ପ୍ରତିଭାର ପରିଚୟ ଦେବାକୁ ସଚେଷ୍ଟ; ମାତ୍ର ତୁଳନାତ୍ମକ ଅଧ୍ୟୟନ ବା ସୂକ୍ଷ୍ମବିଚାର ଦୃଷ୍ଟି ଦ୍ୱାରା ବିଭିନ୍ନ ସଂସ୍କୃତ କାବ୍ୟ ଓ ପୁରାଣାଦିରୁ ଉପଯୁକ୍ତ ପ୍ରମାଣ ପ୍ରଦାନ ପୂର୍ବକ ଭଞ୍ଜଙ୍କର ମୌଳିକତା ଓ ପାଣ୍ଡିତ୍ୟ ଓ ଶ୍ରେଷ୍ଠତ୍ୱ ପ୍ରଦର୍ଶନରେ ଚେଷ୍ଟିତ ହୋଇଥିଲେ ସୁନ୍ଦର ହୋଇଥାନ୍ତା—ତେଣୁ ଶ୍ରୀ ପଟ୍ଟନାୟକଙ୍କ ଆଲୋଚନା ଗତାନୁଗତିକତାର ପ୍ରଭାବରୁ ମୁକ୍ତ ନୁହେଁ; ତଥାପି ସାମୂହିକ ଦୃଷ୍ଟିରୁ ବିଚାର କଲେ କବିସମ୍ରାଟ ଉପେନ୍ଦ୍ରଭଞ୍ଜ ପୁସ୍ତକଟି ଯେ ଭଞ୍ଜପ୍ରତିଭା ଓ ଭଞ୍ଜକାବ୍ୟର

Digitized by srujanika@gmail.com

ଅଧ୍ୟୟନ ପାଇଁ ଏକ ସାର୍ଥକ ସହାୟକ ଗ୍ରନ୍ଥ ଏଥିରେ ସନ୍ଦେହ ନାହିଁ । ଏଥିପୂର୍ବରୁ ଯେତୋଟି ଭଞ୍ଜକବି ଭଞ୍ଜକାବ୍ୟସମ୍ବନ୍ଧୀୟ ପୁସ୍ତକ ରଚିତ ପ୍ରକାଶିତ ହୋଇଅଛି ତନ୍ମଧ୍ୟରୁ ଏହା ଯେ ସର୍ବୋତ୍କୃଷ୍ଟ ଏହା ନିର୍ବିବାଦରେ କୁହାଯାଇପାରେ । ଆଲୋଚନାଧାରାରେ ଶ୍ରୀଯୁକ୍ତ ପଟ୍ଟନାୟକଙ୍କ ପାଣ୍ଡିତ୍ୟ ଓ ଅଧ୍ୟବସାୟ ବିଳସିତ । ତାଙ୍କ ଦୃଷ୍ଟି ବିଭିନ୍ନ ଦିଗପ୍ରତି ପ୍ରସାରିତ । ବୈଜ୍ଞାନିକ ଦୃଷ୍ଟିକୋଣରୁ ଏବଂ ଆଧୁନିକ ଆଲୋଚନାଧାରାର ଆଦର୍ଶ ଦିଗରୁ ଆଲୋଚନା ହୋଇଥିଲେ ଏହା ଆହୁରି ମନୋଜ୍ଞ ହୋଇପାରିଥା'ନ୍ତା । ତଥାପି ଏ ଗ୍ରନ୍ଥର ଉପଯୋଗିତା ସର୍ବଥା ସ୍ୱୀକାର୍ଯ୍ୟ । ଆଲୋଚକଙ୍କ ଉଦ୍ୟମ ବାସ୍ତବିକ ପ୍ରଶଂସନୀୟ ଓ ସାଫଲ୍ୟମଣ୍ଡିତ ।

•

•

[ ଅଧ୍ୟାପକ କାହ୍ନୁଚରଣ ମିଶ୍ର ]

ସମାଜ—୨୭-୬-୫୯

Digitized by srujanika@gmail.com

# ସୂଚୀପତ୍ର

## କ ବିଭାଗ—ଜୀବନୀ



## ଖ ବିଭାଗ—ସାହିତ୍ୟ



Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com

—o—

Digitized by srujanika@gmail.com

# ଉପେନ୍ଦ୍ର ଭଞ୍ଜ

## ପ୍ରଥମ ପରିଚ୍ଛେଦ

### ବଂଶ ପରିଚୟ

ପୁଣ୍ୟଭୂମି ଓଡ଼ିଶାର ସାହିତ୍ୟ-ଗଗନରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପ୍ରତ୍ୟେକ କାବ୍ୟ ଗୋଟିଏ ଗୋଟିଏ ଉଜ୍ଜ୍ୱଳନକ୍ଷତ୍ର ସ୍ୱରୂପ ଦେଦୀପ୍ୟମାନ । ଉତ୍କଳ ଦେଶବାସୀ କବିଙ୍କ ଜୀବନବୃତ୍ତାନ୍ତ ଅବଗତ ହେବା ସକାଶେ ବ୍ୟାକୁଳ ହେବା ସ୍ୱାଭାବିକ । ଭାରତର ପ୍ରାଚୀନ କବିମାନେ ନିଜର ଜୀବନବୃତ୍ତାନ୍ତ ବର୍ଣ୍ଣନା କରୁ ନ ଥିଲେ । ସଂସ୍କୃତରେ ଅନେକ କବିଙ୍କର ନାମ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇ ନାହିଁ । ଦେଶ, ବଂଶ ପ୍ରଭୃତି ବିଷୟ ଜାଣିବା ସହଜ ନୁହେଁ । ସଂସ୍କୃତର ଶ୍ରେଷ୍ଠ କବି କାଳିଦାସଙ୍କର ନାମ ମାତ୍ର ଲୋକରେ ପରିଚିତ; କିନ୍ତୁ ତାଙ୍କର ବଂଶ, ସ୍ଥାନ ଓ ଦେଶର ନାମ ପ୍ରଭୃତି ତାଙ୍କ ଗ୍ରନ୍ଥରେ କୁତ୍ରାପି ବର୍ଣ୍ଣିତ ହୋଇ ନାହିଁ । ଅତଏବ ଭାରତର ଭିନ୍ନ ଭିନ୍ନ ସ୍ଥାନର ଲୋକେ କାଳିଦାସଙ୍କୁ ନିଜ ନିଜ ଦେଶର ବୋଲି ପ୍ରତିପାଦିତ କରିବାକୁ ପ୍ରୟାସ କରି ଅଛନ୍ତି । ଜର୍ମାନର ବିଖ୍ୟାତ କବି ଗେଟେ, ଶକୁନ୍ତଳା ଅଧ୍ୟୟନରେ ମୁଗ୍ଧ ହୋଇ କାଳିଦାସଙ୍କ ଜୀବନବୃତ୍ତାନ୍ତ ଜାଣିବା ପାଇଁ ବ୍ୟାକୁଳ ଥିଲେ; କିନ୍ତୁ ତାଙ୍କର ମନୋରଥ ପୂର୍ଣ୍ଣ ହୋଇ ପାରିଲା ନାହିଁ । ଭାରତ ଭିନ୍ନ ଅନ୍ୟାନ୍ୟ ଦେଶର ପ୍ରାଚୀନ କବିମାନେ ନିଜର ଜୀବନୀବର୍ଣ୍ଣନାରେ ନୀରବ ରହିଥିବାର ମଧ୍ୟ ଜଣାଯାଏ । ଇଂଲଣ୍ଡରେ ସେକ୍ସପିଅର୍ ଜଗଦ୍ୱିଖ୍ୟାତ କବି ହେଲେ ମଧ୍ୟ, ସେ ନିଜ ବୃତ୍ତାନ୍ତ ନିଜ ଗ୍ରନ୍ଥରେ ପ୍ରକାଶ କରି ନାହାନ୍ତି । ଫଳରେ ତାହାଙ୍କର ଜୀବନୀ ଲେଖକମାନେ କବିଙ୍କ ସ୍ପଷ୍ଟ ପରିଚୟ ପ୍ରକାଶ କରିବାକୁ ଯାଇ ସନ୍ଦେହରେ ଦୋଳାୟିତ ହୋଇ ଅଛନ୍ତି । କିନ୍ତୁ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ନିଜ ଗ୍ରନ୍ଥମାନଙ୍କରେ ନିଜ ବଂଶର ଉଲ୍ଲେଖଯୋଗ୍ୟ ବିବରଣ ଓ ନିଜର ପରିଚୟ ଉଲ୍ଲେଖ କରି ଅଛନ୍ତି । କବି ରସପଞ୍ଚକରେ ନିଜ ବଂଶ ବିଷୟରେ ନିମ୍ନଲିଖିତ ପରିଚୟ ଦେଇ ଅଛନ୍ତି—

"ନକ୍ଷତ୍ରେଶ ବଂଶ ହୋଇ ପ୍ରକାଶ,
କ୍ରମେ ଘୁମୁସରେ ହେଲେ ନରେଶ ।
କୁନ୍ଦେନ୍ଦୁ କୀର୍ତ୍ତିଗଣ ରଣକାନ୍ତ,
ରମେଶ୍ୱର ରଣ ଭଞ୍ଜ ନୃପତି ।

କୃଶାନୁକେତନ ତାଙ୍କ ତନୁଜ,
କୃତରୁ ପ୍ରାପତ ପ୍ରତାପ ଭଞ୍ଜ ।
କନିଷ୍ଠ ସୁତ ତାଙ୍କ ଭୂଭୃତ,
କବି ଗୋପୀନାଥ ନାମ ବିଦିତ ।
କବି ନୃପବର ତାଙ୍କ କୁମର,
କବି ଧନଞ୍ଜୟ ନାମ ତାଙ୍କର ।
କାଶ୍ୟପୀକାନ୍ତ ତାହାଙ୍କ ସୁତ,
ବିକଙ୍କ ନୀଳକଣ୍ଠ ଭଞ୍ଜ ସୁତ ।

Digitized by srujanika@gmail.com

କୂର୍ମର କୋଷ୍ଠ ତାଙ୍କର ଶ୍ରେଷ୍ଠ,
କବିପଣରେ ଅନ୍ୟ ଯଥାବିଷ୍ଟ ।
କାବ୍ୟ ନାଟକ ଅଳଙ୍କାର ଜାତ,
କୋବିଦେ କେବଳ ବୋଲନ୍ତି ଏତ ।
କୋଷାଭିଧାନ ସାକ୍ଷାତ ଜନ,
କବିତ୍ୱ ଛନ୍ଦବନ୍ଧେ କେ ସମାନ ।
କଥିତ କୀର୍ତ୍ତି ଗୀତେ ଏ ମତ,
କାଳିଦାସ ବାଣୀ ପରାୟେ ସ୍ଫୁର୍ତ୍ତି ।
କଳାପିଙ୍ଗଳ ଶାସ୍ତ୍ରେ ଅନର୍ଗଳ,
କେତେ ପ୍ରବନ୍ଧେ ପୂରାଇ ଭୂତଳ ।
କୃତକେ ଯଶ ଲୋକ ପ୍ରକାଶ,
କବି ଗର୍ବପର୍ବତକୁ କୁଳିଶ ।”

—ରସପଞ୍ଚକ ।

ରସପଞ୍ଚକରେ ପ୍ରଦତ୍ତ ବଂଶବୃନ୍ଦ:—

ରଣ ଭଞ୍ଜ
|
ପ୍ରତାପ ଭଞ୍ଜ
|
ଗୋପୀନାଥ ଭଞ୍ଜ
|
(ପ୍ରତାପ) ଧନଞ୍ଜୟ ଭଞ୍ଜ
|
ନୀଳକଣ୍ଠ ଭଞ୍ଜ
|
କବିସମ୍ରାଟ—ଉପେନ୍ଦ୍ର ଭଞ୍ଜ

ଉକ୍ତ ବଂଶବୃକ୍ଷରେ ଉପେନ୍ଦ୍ର ଭଞ୍ଜଙ୍କର ପୂର୍ବବର୍ତ୍ତୀ ପାଞ୍ଚ ଜଣ ପୂର୍ବ ପୁରୁଷଙ୍କର ନାମ ଦିଆଯାଇଅଛି । ପ୍ରାଚୀନ ତାଳପତ୍ର ବଂଶାବଳୀରେ ଭଞ୍ଜବଂଶର ଯେଉଁ ବଂଶବୃକ୍ଷ ବର୍ଣ୍ଣିତ, ସେଥିରେ ଗୋପୀନାଥ ଭଞ୍ଜଙ୍କର ପିତା ଗୋପାଳ ଭଞ୍ଜ ଓ ତାଙ୍କର ପିତା ଗଜେନ୍ଦ୍ର ଭଞ୍ଜ ବୋଲି ଉଲ୍ଲିଖିତ ଅଛି । ପ୍ରତାପ ଭଞ୍ଜ ଓ ରଣ ଭଞ୍ଜଙ୍କର ଉଲ୍ଲେଖ ନାହିଁ । ସଂସ୍କୃତ ତାଳପତ୍ରଲିଖିତ ବଂଶାବଳୀରେ ଗୋପୀନାଥ ଭଞ୍ଜଙ୍କର ପିତା ପ୍ରତାପ ଭଞ୍ଜ ଓ ପ୍ରତାପ ଭଞ୍ଜଙ୍କର ପିତା ଗୋପାଳ ଭଞ୍ଜ ବୋଲି ଦେଖାଯାଏ । କବିଙ୍କ ପ୍ରଦତ୍ତ ବଂଶବୃକ୍ଷ ଓ ସଂସ୍କୃତ ତାଳପତ୍ରଲିଖିତ ବଂଶବୃକ୍ଷ ସମାନ ହେଉଥିବାରୁ କବିଙ୍କ ପୂର୍ବବର୍ତ୍ତୀ ଚତୁର୍ଥ ପୁରୁଷ ପ୍ରତାପ ଭଞ୍ଜ ବୋଲି ଧରାଯାଇ ପାରେ ଏବଂ ଗୋପାଳ ଭଞ୍ଜଙ୍କର ଅପର ନାମ ରଣ ଭଞ୍ଜ ଥିଲା ବୋଲି ଅନୁମାନ କରାଯାଇପାରେ । ତାଳପତ୍ରବଂଶାବଳୀବର୍ଣ୍ଣିତ ବଂଶବୃକ୍ଷ ଓ ସଂସ୍କୃତ ତାଳପତ୍ର ଭଞ୍ଜ ବଂଶାବଳୀ ବର୍ଣ୍ଣିତ ବଂଶବୃକ୍ଷ ଅପେକ୍ଷା କବିଙ୍କ ପ୍ରଦତ୍ତ ବଂଶବୃକ୍ଷ ଅଧିକ ବିଶ୍ୱାସଯୋଗ୍ୟ, ଏଥିରେ ସନ୍ଦେହ ନାହିଁ ।

Digitized by srujanika@gmail.com

ଏଠାରେ ଏତକ ଉଲ୍ଲେଖ କଲେ ଅପ୍ରାସଙ୍ଗିକ ହେବନାହିଁ । ରାଜାମାନଙ୍କର ଶାସନ କାଳ ଓ ପୂର୍ବାପର ଭାବ କ୍ରମରେ ବର୍ଣ୍ଣିତ, କିନ୍ତୁ ସେମାନଙ୍କର ପିତା ପୁତ୍ର ଭାବ ମଧ୍ୟ କ୍ରମରେ ବର୍ଣ୍ଣିତ ବୋଲି କହି ହେବ ନାହିଁ । ସେ କ୍ରମରେ ଦେଖିବାକୁ ଗଲେ ଗୋପାଳ ଭଞ୍ଜଙ୍କ ଉତ୍ତରାଧିକାରୀ ବନମାଳୀ ଭଞ୍ଜ; ତା ପରେ ବନମାଳୀ ଭଞ୍ଜଙ୍କର ଉତ୍ତରାଧିକାରୀଙ୍କର ଉଲ୍ଲେଖ ନାହିଁ । ସମ୍ଭବତଃ ସେ ଅପୁତ୍ରିକ ଥିଲେ ଏବଂ ତାଙ୍କର ଦାୟାଦ ଭାଇ ଗୋପୀନାଥ ଭଞ୍ଜ ରାଜା ହେଲେ । ଏହି ଗୋପୀନାଥ ଭଞ୍ଜ ଗୋପାଳ ଭଞ୍ଜଙ୍କର ଔରସ ପୁତ୍ର ନ ଥିଲେ, ସେ ଥିଲେ ପ୍ରତାପ ଭଞ୍ଜଙ୍କର ପୁତ୍ର ଓ ରଣ ଭଞ୍ଜଙ୍କର ପୌତ୍ର । କବିଙ୍କର ପରବର୍ତ୍ତୀ ବଂଶାବଳୀରେ ରଣ ଭଞ୍ଜଙ୍କର ନାମୋଲ୍ଲେଖ ଅଛି । ସମ୍ଭବତଃ ସେ ନାମ ତାଙ୍କ ପୂର୍ବବର୍ତ୍ତୀ ବଂଶଧରଙ୍କ ନାମାନୁସାରେ ଦିଆଯାଇଥିଲା । ଏପରି ଦେଖିବାକୁ ଗଲେ ଗୋପାଳ ଭଞ୍ଜଙ୍କର ପୁତ୍ର ବନମାଳୀ ଭଞ୍ଜଙ୍କ ପରେ ରଣ ଭଞ୍ଜଙ୍କର ପୌତ୍ର ଓ ପ୍ରତାପ ଭଞ୍ଜଙ୍କର ପୁତ୍ର ଗୋପୀନାଥ ଭଞ୍ଜ ରାଜ୍ୟ ଶାସନ କରିଥିଲେ । ଏହି ରଣ ଭଞ୍ଜ ଓ ପ୍ରତାପ ଭଞ୍ଜ ସମ୍ଭବତଃ ଗୋପାଳ ଭଞ୍ଜଙ୍କର ଦାୟାଦ ଥିଲେ ।*

ଉପେନ୍ଦ୍ର ଭଞ୍ଜଙ୍କ ପରେ ତାଙ୍କର ଦାୟାଦମାନଙ୍କର କୌଣସି ସନ୍ଧାନ ଏପର୍ଯ୍ୟନ୍ତ ମିଳିନାହିଁ । ବର୍ତ୍ତମାନ କୁଳାଡ଼ରେ ଯେଉଁ ଭଞ୍ଜମାନେ ଅଛନ୍ତି, ସେମାନେ ଉପେନ୍ଦ୍ର ଭଞ୍ଜଙ୍କର ପିତାମହ ପ୍ରତାପ ଧନଞ୍ଜୟ ଭଞ୍ଜଙ୍କର ଭାଇ ଗୋବିନ୍ଦ ଭଞ୍ଜଙ୍କର ବଂଶଧର ।

କବି ନିଜ ଗ୍ରନ୍ଥ ଲାବଣ୍ୟବତୀରେ—"ନରେନ୍ଦ୍ର ନୀଳକଣ୍ଠ ଭଞ୍ଜ ।
ତାହାଙ୍କ କୌସ୍ତୁଭ ମୂର୍ତ୍ତି,
ଉପେନ୍ଦ୍ର ଭଞ୍ଜ ନାମ ବହି ।"

ବୋଲି ଉଲ୍ଲେଖ କରି ଅଛନ୍ତି । ତହିଁରୁ ଜଣାଯାଏ, ତାଙ୍କର ଅନ୍ୟ ଭାଇମାନେ ଥିଲେ । ଏପର୍ଯ୍ୟନ୍ତ ସେମାନଙ୍କର କୌଣସି ପରିଚୟ ମିଳିନାହିଁ ।

କବି ନିଜ ପିତାମହ ପ୍ରତାପ ଧନଞ୍ଜୟ ଭଞ୍ଜଙ୍କ ପରିଚୟ ଲାବଣ୍ୟବତୀ, ବୈଦେହୀଶବିଳାସ ଓ ରସପଞ୍ଚକରେ ଦେଇଛନ୍ତି । ସେ "ଲୋକେ ବଖ୍ୟାତ କବି ଗୁଣେ", "ବେଦ ଅର୍ଥ ସେ କବି ଗଣେଶ ବୋଲି" ନିଃସନ୍ଦେହରେ ବୁଝିବାକୁ ହେବ । ରଘୁନାଥବିଳାସ, ତ୍ରିପୁରସୁନ୍ଦରୀ, ମଦନମଞ୍ଜରୀ, ରାମଚରିତ, ଅନଙ୍ଗରେଖା, ଇଚ୍ଛାବତୀ ପ୍ରଭୃତି କାବ୍ୟ ସେ ପ୍ରଣୟନ କରିଥିଲେ । ସେ ଉଚ୍ଚକୋଟୀର କବି ଥିଲେ । ତାଙ୍କର ରଘୁନାଥବିଳାସ, ରାମଚରିତ, ଦୀନକୃଷ୍ଣ ଦାସଙ୍କ 'ରସକଲ୍ଲୋଳ' ସହିତ ମଧ୍ୟ ତୁଳନୀୟ । କେତେକ ଚୌପଦୀ ସେ ଲେଖିଥିବା ଜଣାଯାଏ । ତନ୍ମଧ୍ୟରୁ ଚୌପଦୀ ଭୂଷଣ ପ୍ରଧାନ । ସେ ବାଣୀସେବାରେ ନିଜକୁ ସତତ ନିୟୋଜିତ ରଖିଥିଲେ । ରାଜ୍ୟଶାସନ ପାଇଁ ତାଙ୍କ ସତତ ସମୟ ହେଉ ନ ଥିବାରୁ, ଭାଇ ଗୋବିନ୍ଦ ଭଞ୍ଜଙ୍କୁ ସେ ଆଟରାଜା ସ୍ୱରୂପ ନିଯୁକ୍ତ କରି ରାଜ୍ୟଭାର ଅର୍ପଣ କରିଥିଲେ । ସେ ଚମ୍ପୂ ରୀତିରେ କିଛି ଲେଖିଥିଲେ, ଯଥା :—

ଚଳ ଚଳ ହସି ହସି ଆସୁ ସେ ଥାଉ,
ଚାଲେ କି ତା ନେତ୍ରପଥେ ଦେଖିବି ଆଉ ।
ଚଳ ଯେ ଚୁମ୍ବିଲି ଦନେ ନଯ୍ୟନେ ତୋର,
ଚଗ ମେଲି ଉଡ଼ିଲୁ ସେ ଗଲା ମୋହର । ଇତ୍ୟାଦି ।

---

* ସଂଯୁକ୍ତ ତାଳପତ୍ରଲିଖିତ ବଂଶବୃକ୍ଷ ଓ ପ୍ରାକୃତ ପ୍ରାଚୀନ ତାଳପତ୍ର ବଂଶାବଳୀବର୍ଣ୍ଣିତ ବଂଶବୃକ୍ଷ ପରିଶିଷ୍ଟରେ ଦିଆଯାଇଅଛି ।

Digitized by srujanika@gmail.com

ପ୍ରତାପ ଧନଞ୍ଜୟ ଭଞ୍ଜଙ୍କ ଏକାଧିକ ରାଣୀ ଥିଲେ । ତାଙ୍କର ବରିଷ୍ଠ ରାଣୀଙ୍କ ଗର୍ଭରୁ ବାରଟି ପୁତ୍ର ଜାତ ହୋଇଥିଲେ । ତାଙ୍କର ଦ୍ୱିତୀୟ ପତ୍ନୀ ମଣ୍ଡା ଦେବୀ ନବଦୁର୍ଗ ରାଜାଙ୍କର ଦୁହିତା ଥିଲେ ଏବଂ ତାଙ୍କର ଏକମାତ୍ର ପୁତ୍ର ନୀଳକଣ୍ଠ ଭଞ୍ଜ କବିସମ୍ରାଟ୍ ଉପେନ୍ଦ୍ରଙ୍କ ଜନକ ଥିଲେ । ପୁତ୍ରମାନଙ୍କ ମଧ୍ୟରେ ଗଙ୍ଗାଧର ଭଞ୍ଜ ଜ୍ୟେଷ୍ଠ ଏବଂ କବିଙ୍କ ପିତା ନୀଳକଣ୍ଠ ଭଞ୍ଜ ୪ର୍ଥ ସନ୍ତାନ ଥିଲେ । ଧନଞ୍ଜୟ ଭଞ୍ଜ ଘୁମୁସରରେ ଦୀର୍ଘ ୬୨ ବର୍ଷ ରାଜତ୍ୱ କରିଥିଲେ । ତାଙ୍କ ସମୟରେ ରାଜ୍ୟ ସମୃଦ୍ଧିଶାଳୀ ଥିଲା, ସେନ୍ୟ ବାହିନୀ ଦୃଢ଼ୀଭୂତ ହୋଇଥିଲା । ସେ ବାରୁଦେବୀ ମନ୍ଦିର, ଭଞ୍ଜନଗରର ଛ' ମାଇଲ ଦୂରରେ ଅବସ୍ଥିତ ବରଗାଁ ପଞ୍ଚଶିଳା ମନ୍ଦିର, କେପାଶିଳା ମନ୍ଦିର ନିର୍ମାଣ କରାଇଥିଲେ । ତାଙ୍କ ପ୍ରତିଷ୍ଠିତ ବ୍ରାହ୍ମଣ ଶାସନ-ଗୁଡ଼ିକ ମଧ୍ୟରୁ ପ୍ରତାପ ଧନଞ୍ଜୟପୁର ଶାସନ ଅଦ୍ୟାବଧି ତାଙ୍କର ଅକାତର ଦାନର ମୂକ ସାକ୍ଷୀରୂପେ ବିଦ୍ୟମାନ ।

ପ୍ରତାପ ଧନଞ୍ଜୟ ଭଞ୍ଜଙ୍କର ରାଣୀମାନଙ୍କ ମଧ୍ୟରେ ମଣ୍ଡା ଦେବୀ ପରମା ରୂପବତୀ ଥିବାରୁ ପ୍ରଧାନ ଥିଲେ । ରାଜା ତାଙ୍କର ଇଙ୍ଗିତରେ ପରିଚାଳିତ ହେଉଥିଲେ । ସେହି ସୁବିଧା ନେଇ ମଣ୍ଡା ଦେବୀ ନିଜ ପୁତ୍ର ନୀଳକଣ୍ଠଙ୍କୁ ଉତ୍ତରାଧିକାରୀ ସ୍ୱରୂପ ନିର୍ବାଚନ କରି ଯୁବରାଜ ପଦରେ ସମ୍ମାନିତ କରିବାକୁ ରାଜାଙ୍କୁ ବାରମ୍ବାର ଅନୁରୋଧ କରୁଥିଲେ । ଜ୍ୟେଷ୍ଠପୁତ୍ର ଗଙ୍ଗାଧର ଥାଉ ଥାଉ ସେ କିପରି ରାଣୀଙ୍କ କଥାରେ ସମ୍ମତ ହେବେ, ତାହା ଭାବି ଭାବି ସେ ଅସ୍ଥିର ହୋଇ ପଡୁଥିଲେ । ଦିନେ ସେ ଜଣେ ସୁବିଖ୍ୟାତ ଜ୍ୟୋତିର୍ବିଦଙ୍କୁ ଭାବୀ ଉତ୍ତରାଧିକାରୀ ବିଷୟରେ ଜିଜ୍ଞାସା କଲେ । ସେ କ୍ଷଣେ ଚିନ୍ତାକରି ପରେ କହିଲେ—"ଧନିଆ ପରେ ଘନିଆ ରାଜା ହେବ ।" ଘନ ଭଞ୍ଜ * ତାଙ୍କ ଭ୍ରାତୃଷ୍ପୁତ୍ର, ତେବେ ସେ ରାଜାହେବ କିପରି ? ଦୈବଜ୍ଞଙ୍କ ଭବିଷ୍ୟଦ୍‌ବାଣୀରେ ଆସ୍ଥା ସ୍ଥାପନ ନ କରି, ମଣ୍ଡା ଦେବୀଙ୍କ ଇଚ୍ଛାମତେ ସେ ନୀଳକଣ୍ଠଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରିଥିଲେ ।

କବି ପିତାମହଙ୍କ ପରିଚୟ ପ୍ରଦାନକରି ନିଜ ପିତାଙ୍କ ପରିଚୟ ଦେଇଛନ୍ତି ।

ଲାବଣ୍ୟବତୀରେ—"ତଦନ୍ତ ତାହାଙ୍କ ତନୁଜ,
ନରେଶ ନୀଳକଣ୍ଠ ଭଞ୍ଜ ।"

ବୈଦେହୀଶବିଳାସରେ—"ବନ୍ଦନ ତଦନ୍ତ ତାଙ୍କ ନନ୍ଦନ ପ୍ରମାଣ ଯେ,
ବସୁଧାପତି ସେ ନୀଳକଣ୍ଠ ନାମେ ଖ୍ୟାତ ।"

ନୀଳକଣ୍ଠ ଭଞ୍ଜ ମଧ୍ୟ କବି ଥିଲେ । ସେ କେତେକ କାବ୍ୟ କବିତା ଲେଖିଥିବା ଜଣାଯାଏ । ନମୁନା ସ୍ୱରୂପ ତାଙ୍କ କବିତାର କେତେକାଂଶ ଏଠାରେ ପ୍ରଦତ୍ତ ହେଲା :—

"ପ୍ରାଣବାନ୍ଧବୀ ଦିନେ ପ୍ରାଙ୍ଗଣ ପରେ,
କର ଦେଇଣ ଥିଲା ଥୋରହିସ୍ତରେ ।
ସେ ମୋ ଚମ୍ପକଗୋରୀ,
ଧନ୍ୟ ଧନ୍ୟ ତାହାର ଶୋଭାଗରିମା ।

---

* ପରିଶିଷ୍ଟରେ ବଂଶବୃକ୍ଷ ଦିଆଯାଇଛି ।

Digitized by srujanika@gmail.com

ଜୁଡ଼ାରେ ଥିଲା ତାର କଆପାଖୁଡ଼ା,
ତା ଦେଖି ଅଙ୍ଗେ ହେଲା ଅନଙ୍ଗ ପୀଡ଼ା ।
ଲଲାଟେ ଥିଲା ତାର ସିନ୍ଦୂରବିନ୍ଦୁ,
ତା ଦେଖି ବଢ଼ିଲା ଯେ ଆନନ୍ଦସିନ୍ଧୁ ।
ଗଇରିକର ଚିତା ଅଙ୍ଗେ ଶୋଭିତ,
ତା ଦେଖି ଧଇର୍ଯ୍ୟ ମୋ ହୋଇଲା ହତ ।" ଇତ୍ୟାଦି ।

କବିଙ୍କ ପିତା ନୀଳକଣ୍ଠ ଭଞ୍ଜ ଧନଞ୍ଜୟଙ୍କ ପରେ ଗୁମୁସରର ରାଜା ହୋଇଥିଲେ । ସେ ୧୭୦୧ ଠାରୁ ୧୭୦୩ ଯାଏ, କେବଳ ଦୁଇବର୍ଷମାତ୍ର ରାଜତ୍ୱ କରିଥିଲେ । କବି ନିଜର ପରିଚୟ ବୈଦେହୀଶ-ବିଳାସରେ ନିମ୍ନମତେ କହନ୍ତି—

"ବୀରବର ପଦ ଉପଇନ୍ଦ୍ର ମୋର ନାମ,
ବାରେ ବାରେ ସେବାରେ ମନାଇଁ ସୀତାରାମ ଯେ ।
ରଚନ କବିତ୍ୱମାର୍ଗେ ପ୍ରସରିଲା ବୁଦ୍ଧି,
ବିରଚିଲି ରାମାୟଣ ଏ ମୋ ବଡ଼ ସିଦ୍ଧି ଯେ ।"

ଛ : ୫୨ ବୈ : ବି:

'ରଚନ କବିତ୍ୱମାର୍ଗେ ପ୍ରସରିଲା ବୁଦ୍ଧି' ବୋଲି କବି ନମ୍ରତାର ସହିତ କହନ୍ତି । ସେହି ମର୍ମରେ ପ୍ରତ୍ୟେକ କାବ୍ୟରେ ଦୈବବଳରେ ସେ କେବଳ କବି ହୋଇପାରିଥିବା କଥା ବାରମ୍ବାର ପ୍ରକାଶ କରିଛନ୍ତି ।

———

Digitized by srujanika@gmail.com

# ଜନ୍ମକାଳ

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ କେଉଁ ବର୍ଷ ବା ଦିନ କେଉଁ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ, ସ୍ପଷ୍ଟଭାବରେ ଜଣାଯାଏ ନାହିଁ । ସେ ସ୍ୱରଚିତ ରସଲେଖାରେ ଲେଖି ଅଛନ୍ତି—

"ଦିବ୍ୟସିଂହ ଗଜପତି ଅଙ୍କ ସପତବିଂଶତି
ଶେଷଦିନେ ଶେଷ ଏହୁ ଗୀତ ।"

ଏଥିରୁ ରସଲେଖା ପୁରୀର ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ମହାରାଜ ଦିବ୍ୟସିଂହ ଦେବଙ୍କର ୨୭ ଅଙ୍କରେ ସମାପ୍ତ ହୋଇଥିଲା ବୋଲି ଜଣାଯାଏ । ଉକ୍ତ ଅଙ୍କ ଏକ ତିନୋଟି ଛ (୬) ଓ ଦୁଇଟି ଶୂନ (୦) ବାଦଦେଲେ ୨୧ ବର୍ଷ ସହିତ ସମାନ । ପୁରୀର ଦିବ୍ୟସିଂହ ଦେବ ୧୬୯୩ ଠାରୁ ୧୭୨୧ ସାଲ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତାଙ୍କ ରାଜ୍ୟଶାସନର ୨୭ ଅଙ୍କ ବା ୨୧ ବର୍ଷରେ ଅର୍ଥାତ୍ ୧୭୧୪ ସାଲରେ ରସଲେଖା ସମାପ୍ତ ହୋଇଥିଲା । ରସଲେଖା କବିଙ୍କର ପୌଢ଼ବୟସର ଲେଖା । ସମ୍ଭବତଃ ସେ ପୁରୀରେ ତାଙ୍କର ଶେଷଜୀବନ ଅତିବାହିତ କଲାବେଳେ ତାହା ସମାପ୍ତ କରିଥିଲେ । କୋଟି-ବ୍ରହ୍ମାଣ୍ଡସୁନ୍ଦରୀ ପ୍ରଥମ ଛାନ୍ଦରେ ପୁରୀକ୍ଷେତ୍ରର ବିସ୍ତୃତ ବର୍ଣ୍ଣନା ଦେଖାଯାଏ । ତହିଁରୁ ଅନୁମାନ କରାଯାଉଅଛି, ସେ ରସଲେଖା ସମାପ୍ତି ପରେ କୋଟିବ୍ରହ୍ମାଣ୍ଡସୁନ୍ଦରୀ ରଚନା କରିଥିଲେ । କୋଟିବ୍ରହ୍ମାଣ୍ଡସୁନ୍ଦରୀ କବିଙ୍କର ଅନ୍ତିମ ରଚନା । କବିଙ୍କର ଅନ୍ୟାନ୍ୟ କାବ୍ୟମାନଙ୍କ ମଧ୍ୟରୁ 'କୋଟିବ୍ରହ୍ମାଣ୍ଡସୁନ୍ଦରୀ'ର ଭାଷା ମାର୍ଜିତ, ଭାବ ଗମ୍ଭୀର, ଶବ୍ଦବିନ୍ୟାସ ଅସାଧାରଣ ଓ ରୀତି ମଧ୍ୟ ପ୍ରୌଢ଼ । ତାହା ଅସମ୍ପୂର୍ଣ୍ଣ ଦେଖାଯାଏ । ସମ୍ଭବତଃ କୋଟିବ୍ରହ୍ମାଣ୍ଡସୁନ୍ଦରୀର ସମାପ୍ତି ପୂର୍ବରୁ କବି ଇହଲୀଳା ସମ୍ବରଣ କରିଥିଲେ । କବି ୫୦ ବର୍ଷ ଜୀଇଁଥିଲେ ବୋଲି ଜନପ୍ରବାଦ ରହିଅଛି । ରସଲେଖାର ସମାପ୍ତି ପରେ ଅନ୍ୟକୌଣସି ଗ୍ରନ୍ଥ ଲେଖି କୋଟିବ୍ରହ୍ମାଣ୍ଡସୁନ୍ଦରୀ ଆରମ୍ଭ କରିଥିଲେ କି ସଙ୍ଗେ ସଙ୍ଗେ ଆରମ୍ଭ କରିଥିଲେ, ତାର କୌଣସି ନିଦର୍ଶନ ଏପର୍ଯ୍ୟନ୍ତ ମିଳିନାହିଁ । କବି ମହାରାଜା ଦିବ୍ୟସିଂହଙ୍କଠାରୁ ମଧ୍ୟ ବହୁ ସମ୍ମାନ ପାଇଥିଲେ । ଅତଏବ ସେ ପୁରୀରେ ଅନ୍ତତଃ ୫, ୬ ବର୍ଷ ରହି ସେଠାରେ ନଶ୍ୱର କଳେବର ତ୍ୟାଗ କରିଥିଲେ ବୋଲି ଧରାଯାଇ ପାରେ । ସେପରି ହେଲେ କବି ସମ୍ଭବତଃ ୧୭୨୦ ରେ ୫୦ ବର୍ଷ ବୟସରେ ଇହଲୀଳା ସାଙ୍ଗ କରିଥିଲେ ବୋଲି କୁହାଯାଇପାରେ ।

ଆଉ ଗୋଟିଏ କଥା ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ—

ସେ ଲାବଣ୍ୟବତୀରେ— "ତଦ୍ଗତ ତାହାଙ୍କ ତନୁଜ,
ନରେଶ ନୀଳକଣ୍ଠ ଭଞ୍ଜ ।
ତାହାଙ୍କ ଜ୍ୟେଷ୍ଠସୁତ ମୁହିଁ,
ଉପେନ୍ଦ୍ର ଭଞ୍ଜ ନାମ ବହି ।"

ଲେଖିଛନ୍ତି ଓ ବୈଦେହୀଶବିଳାସରେ—

"ବସୁଧାପତି ସେ ନୀଳକଣ୍ଠ ନାମେ ଖ୍ୟାତ
ବିଧାନରେ ମୁହିଁ ତାହାଙ୍କର ଜ୍ୟେଷ୍ଠସୁତ ଯେ ।"

ଲେଖି ଅଛନ୍ତି । ସେ ସମସ୍ତରେ ସେ ନିଜ ପିତାଙ୍କୁ 'ନରେଶ ନୀଳକଣ୍ଠ ଭଞ୍ଜ' ବୋଲି ଲାବଣ୍ୟବତୀରେ, 'ବସୁଧାପତି ସେ ନୀଳକଣ୍ଠ' ବୋଲି ବୈଦେହୀଶବିଳାସରେ ନିର୍ଦ୍ଦେଶ କରି ଅଛନ୍ତି । ତହିଁରୁ ଜଣାଯାଏ,

Digitized by srujanika@gmail.com

ତାଙ୍କର ପିତା ରାଜା ଥିଲା ସମୟରେ ସେ ଲାବଣ୍ୟବତୀ ଓ ବୈଦେହୀଶବିଳାସ ଲେଖିଥିଲେ । ଇତିହାସରୁ ଜଣାଯାଏ, ନୀଳକଣ୍ଠ ଭଞ୍ଜ ୧୭୦ ରୁ ୧୭୦୩ ପର୍ଯ୍ୟନ୍ତ ରାଜ୍ୟ ଶାସନ କରିଥିଲେ । କାବ୍ୟମାନଙ୍କର ଶୈଳୀ ଓ ରଚନା ରୀତିର ପର୍ଯ୍ୟାଲୋଚନା କଲେ ଜଣାଯାଏ—ଲାବଣ୍ୟବତୀ ଓ ବୈଦେହୀଶବିଳାସ କବିଙ୍କର ମଧ୍ୟବୟସର ଲେଖା । ଆଉରି ଗୋଟାଏ ପ୍ରବାଦ ଅଛି—କବିଙ୍କର ପିତାମହ ଧନଞ୍ଜୟ ଭଞ୍ଜ ନିଜ ପ୍ରଣୀତ 'ରଘୁନାଥବିଳାସ' କବିଙ୍କୁ ଉପହାର ଦେଇଥିଲେ ଏବଂ ସେ ବିଷୟରେ ତାଙ୍କର ମତାମତ ପୁଚ୍ଛିଥିଲେ । କବି 'ରଘୁନାଥବିଳାସ'କୁ ଉଚ୍ଚ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ତହିଁରେ ପ୍ରୌଢ଼ ଅଳଙ୍କାର ସମାବେଶ ନାହିଁ ବୋଲି ଆକ୍ଷେପ କରିଥିଲେ । ପିତାମହ ନାତିଙ୍କର ବୁଦ୍ଧିର ପ୍ରଖରତା ଦେଖି ତାହା ଅପେକ୍ଷା ଉତ୍କୃଷ୍ଟତର କାବ୍ୟ ପ୍ରଣୟନ କରି ଦେଖାଇବାକୁ ପ୍ରୋତ୍ସାହିତ କରିଥିଲେ । କବି ତାଙ୍କର ପ୍ରୋତ୍ସାହରେ ଯଥା ସମୟରେ 'ବୈଦେହୀଶବିଳାସ' ରଚନା କରି ପିତାମହଙ୍କୁ ଅର୍ପଣ କରି ତାଙ୍କର ଉଚ୍ଚପ୍ରଶଂସା ଓ ଶୁଭାଶୀର୍ବାଦ ଲାଭ କରିଥିଲେ । ସେତେବେଳକୁ କାବ୍ୟ ରଚନା ପୂର୍ଣ୍ଣ ହୋଇ ନ ଥିଲା । ପିତାମହଙ୍କ ମତାମତ ଉପଦେଶ ଅନୁସାରେ କାବ୍ୟରେ ଆବଶ୍ୟକୀୟ ପରିବର୍ତ୍ତନ କରି ଲେଖାପୂର୍ଣ୍ଣ କରିବା ଥିଲା କବିଙ୍କ ଆକାଂକ୍ଷା । ଯଥା ସମୟରେ ତାହା ହେଲା । ଏହି ପ୍ରବାଦକୁ ଅସ୍ୱୀକାର କରିବାର କୌଣସି କାରଣ ନାହିଁ । କବି ନିଜେ ପିତାମହଙ୍କୁ ଲାବଣ୍ୟବତୀରେ—

"ରାଜା ଧନଞ୍ଜୟ,
ସମସ୍ତ ଗୁଣର ନିଳୟ ।
ଗୁମୁସର ଅଧିପ ସଣେ,
ଲୋକେ ବିଖ୍ୟାତ କବିଗୁଣେ ।"

ବୈଦେହୀଶବିଳାସରେ—"ବରହି ବଂଶେ ଉଦ୍ଭବ ନୃପ ଧନଞ୍ଜୟ,
ବିଶିଷ୍ଟେ ଗୁମୁସର ଅଧିପ ଗୁଣାଳୟ ଯେ ।
ବେଦ ଅର୍ଥେ ସେ କବି ଗଣେଶ ବୋଲି ଜାଣ ।"

ରସପଞ୍ଚକରେ—"କବି ନୃପବର ତାଙ୍କ କୁମର,
କହି ଧନଞ୍ଜୟ ନାମ ତାଙ୍କର ।"

ଇତ୍ୟାଦି ପ୍ରକାଶକରି କବି ଓ ପଣ୍ଡିତ ରୂପେ ପ୍ରଶଂସା କରିଅଛନ୍ତି । ବୈଦେହୀଶବିଳାସ, ଲାବଣ୍ୟବତୀ ଓ କୋଟିବ୍ରହ୍ମାଣ୍ଡସୁନ୍ଦରୀର ତୁଳନା କଲେ ବୈଦେହୀଶବିଳାସ ଓ ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀର ପୂର୍ବବର୍ତ୍ତୀ[1] ରଚନା ବୋଲି ସାଧାରଣ ପାଠକ ଉପଲବ୍ଧି କରିବ । ପ୍ରତାପ ଧନଞ୍ଜୟ ଭଞ୍ଜ ୧୭୦୧ ପର୍ଯ୍ୟନ୍ତ ଜୀବିତ ଥିଲେ । କବି ୧୭୦୧ର ବହୁତ ପୂର୍ବରୁ ବୈଦେହୀଶବିଳାସ ପରି ମହାକାବ୍ୟର ରଚନା ଆରମ୍ଭ କରିଥିଲେ । ସେ ଯଦି ୧୬୯୮ ବା ତା ପୂର୍ବରୁ ବୈଦେହୀଶବିଳାସର ଅଧିକାଂଶ ରଚନା କରିଥିଲେ ଏବଂ ତାହା କବିଙ୍କର ୨୮ ବର୍ଷ ବୟସର ଲେଖା ବୋଲି ଧରାଯାଏ, ତେବେ କବି ସମ୍ଭବତଃ ୧୬୭୦ କି ତା'ର ପାଖାପାଖି ସାଲରେ ଜନ୍ମଗ୍ରହଣ କରିଥିଲେ ଏବଂ ୧୭୨୦ ସାଲ ତା'ର ପାଖାପାଖି ସାଲରେ ଇହଲୀଳା ସାଙ୍ଗ କରିଥିଲେ ବୋଲି ସ୍ଥୂଳତଃ କୁହାଯାଇ ପାରେ ।

ସ୍ୱର୍ଗତଃ କାଶୀଚରଣ ରଥ ଦିବ୍ୟସିଂହ ଦେବଙ୍କର '୭ ଅଙ୍କରୁ ୨୭ ବର୍ଷ ଧରି 'ରସଲେଖା' ୧୭୨୧ ସାଲର ଲେଖା ଓ କବି ୧୭୦୩ ବେଳକୁ ଖୁବ୍ ଅଳ୍ପବୟସ୍କ ଥିଲେ ଏବଂ ସମ୍ଭବତଃ ସେ ୧୬୮୫

Digitized by srujanika@gmail.com

ସାଲରେ ଜନ୍ମଗ୍ରହଣ କରିଥିଲେ ବୋଲି ଯାହା ଲେଖି ଅଛନ୍ତି, ତାହା କେବଳ ସମ୍ଭାବନାପ୍ରସୂତ ଓ ଅମୂଳକ ।

. . .

କବିବର ଉପେନ୍ଦ୍ର ଭଞ୍ଜ କେଉଁ ଦିନ ଜନ୍ମଗ୍ରହଣ କରିଥିଲେ, ତାହାର କୌଣସି ପ୍ରମାଣ ଏ ପର୍ଯ୍ୟନ୍ତ ମିଳି ନାହିଁ । କବି ଶ୍ରୀପଞ୍ଚମୀର ବିଶେଷ ବର୍ଣ୍ଣନା କାବ୍ୟମାନଙ୍କରେ ଦେଇଅଛନ୍ତି । ସେଦିନ ସେ ଜନ୍ମଗ୍ରହଣ କରିଥିଲେ ବୋଲି କୁହାଯାଇ ପାରେ । ଭଞ୍ଜନଗରର ଭଞ୍ଜଜୟନ୍ତୀ ମଧ୍ୟ ଶ୍ରୀପଞ୍ଚମୀ ଦିନ ଅନୁଷ୍ଠିତ ହୋଇ ଆସୁଅଛି । କବିଙ୍କ ଜନ୍ମସ୍ଥାନ କୁଳାଡ଼ଗଡ଼ରେ ଭଞ୍ଜଜୟନ୍ତୀ ଶ୍ରୀପଞ୍ଚମୀ ଦିନ ପାଳନ କରାଯାଏ ।

Digitized by srujanika@gmail.com

## ଜନ୍ମସ୍ଥାନ

ନବବର ଉପେନ୍ଦ୍ର ଭଞ୍ଜ କେଉଁ ସ୍ଥାନରେ ଜନ୍ମ ଗ୍ରହଣ କରିଥିଲେ ତାର କୌଣସି ନିର୍ଦ୍ଦିଷ୍ଟ ପ୍ରମାଣ ନାହିଁ । ସେ ଥିଲେ ପ୍ରତାପ ଧନଞ୍ଜୟ ଭଞ୍ଜଙ୍କର ସହଧର୍ମିଣୀ ମଣ୍ଡା ଦେବୀଙ୍କର ଗର୍ଭଜାତ ପୁତ୍ର, ନୀଳକଣ୍ଠ ଭଞ୍ଜଙ୍କର ପୁତ୍ର । ମଣ୍ଡା ଦେବୀ ନିଜର ବିଳାସପୂର୍ଣ୍ଣ ଓ ଅପୂର୍ବ ସୌନ୍ଦର୍ଯ୍ୟରେ ପ୍ରତାପ ଧନଞ୍ଜୟ ଭଞ୍ଜଙ୍କର ପ୍ରାଣାଧିକା ପ୍ରିୟତମା ହୋଇପାରିଥିଲେ । ଗୁଣଜ୍ଞ କବି ସୁଶାସକ ପ୍ରତାପ ଧନଞ୍ଜୟ ଭଞ୍ଜ ମଣ୍ଡା ଦେବୀଙ୍କର ଇଙ୍ଗିତରେ ପରିଚାଳିତ ହେଉଥିଲେ । * ତାଙ୍କରି ପ୍ରରୋଚନାରେ ସେ ନୀଳକଣ୍ଠଙ୍କ ଅପେକ୍ଷା ବୟୋଜ୍ୟେଷ୍ଠ ଜଗନ୍ନାଥଙ୍କୁ ଜଗନ୍ନାଥପ୍ରସାଦ ମୁଠାରେ ଏବଂ ହରିଶରଣ ଭଞ୍ଜଙ୍କୁ ଭୁଗୁଡ଼ାମୁଠାରେ ଶାସକ ରୂପେ ନିଯୁକ୍ତ କରିଥିଲେ । ସେ ନିଜ ପୁତ୍ରକୁ ରାଜା କରିବା ଉଦ୍ଦେଶ୍ୟରେ ଗଙ୍ଗାଧର ଭଞ୍ଜଙ୍କୁ ଏକମାତ୍ର ଅନ୍ତରାୟ ମନେ କରୁଥିଲେ ମଧ୍ୟ ତାଙ୍କର ନିରୀହତା ଦେଖି ଖାତିର କରୁ ନ ଥିଲେ । ତାଙ୍କର ପୁତ୍ର ନୀଳକଣ୍ଠ ଭଞ୍ଜ ଓ ପୌତ୍ର ଉପେନ୍ଦ୍ର ଭଞ୍ଜଙ୍କ ପ୍ରତି ଅସାଧାରଣ ସ୍ନେହ ଥିଲା । ଭଞ୍ଜବଂଶର ୨୨ଶ ରାଜା ପ୍ରତାପ ଭଞ୍ଜ ୧୧୯୦ ସାଲରେ କୁଳ ନାମକ ଏକ କନ୍ଧ ଅଧିପତିକୁ ଜୟକରି ତାର ସ୍ମୃତି ରକ୍ଷାର୍ଥ ଉଦ୍ଦେଶ୍ୟରେ କୁଳାଡ଼ (କୁଳଗଡ଼) ନାମ ଦେଇ ଏକ ଅପୂର୍ବ ଦୁର୍ଗ ନିର୍ମାଣ କରାଇ ଥିଲେ । ପ୍ରତାପ ଧନଞ୍ଜୟ ଭଞ୍ଜ ବିପୁଳ ଅର୍ଥ ବ୍ୟୟକରି ଏହି ଦୁର୍ଗର ସଂସ୍କାର କରିଥିଲେ । ଐତିହାସିକଙ୍କ ମତରେ ଏହି ଦୁର୍ଗର ସଂସ୍କାରରେ ୭୦ ହଜାର ମୁଦ୍ରା ବ୍ୟୟିତ ହୋଇଥିଲା । ସେହି ଦୁର୍ଗରେ ପ୍ରତାପ ଧନଞ୍ଜୟ ଭଞ୍ଜ ଜୀବନର ବହୁତ ସମୟ ଅତିବାହିତ କରିଥିଲେ । ରାଜାଙ୍କ ପ୍ରିୟ ରାଣୀ ମଣ୍ଡା ଦେବୀ ନିଜର ଏକମାତ୍ର ପୁତ୍ର ନୀଳକଣ୍ଠ ସହିତ ସେହି ଦୁର୍ଗରେ ଅବସ୍ଥାନ କରିଥିବା ସ୍ୱାଭାବିକ । ସୁତରାଂ ଉପେନ୍ଦ୍ର ଭଞ୍ଜଙ୍କର ଜନ୍ମ ଏହି କୁଳାଡ଼ ଗଡ଼ରେ ହେବା ସମ୍ଭବପର ।

ସାମରିକ କର୍ମଚାରୀ ରସଲ୍ କହନ୍ତି—†'ସାମରିକ ଦୃଷ୍ଟିରୁ କୁଳାଡ଼ଗଡ଼, ଦୁର୍ଗାପ୍ରସାଦ ଓ ଅନ୍ଧାରଗଡ଼ (ଗୁମୁସରର ଅଠରଗଡ଼ ମଧ୍ୟରେ) ପ୍ରଧାନ ବିବେଚିତ ହୁଏ । ମହାନଦୀ (ବଡ଼ନଦୀ) ର ଦକ୍ଷିଣ ପାର୍ଶ୍ୱରେ କୁଳାଡ଼ଗଡ଼ ଅବସ୍ଥିତ । ତାହା ଗୋଟିଏ ସୁବିସ୍ତୀର୍ଣ୍ଣ ସୁରକ୍ଷିତ ନଗର । ତାହାର ପଶ୍ଚିମ ପାର୍ଶ୍ୱରେ ତୁଙ୍ଗ ପର୍ବତଶ୍ରେଣୀ, ଚକ୍ରାକାର ରାଜପଥ, ଉଭୟ ପାର୍ଶ୍ୱର ନିଘଞ୍ଚ ବଂଶବନ, ଗଡ଼କୁ ବାହ୍ୟ ଆକ୍ରମଣରୁ

---

* ଐତିହ୍ୟ ପରିଚ୍ଛେଦରେ ଭଞ୍ଜବଂଶର ଆବଶ୍ୟକୀୟ ବୃତ୍ତାନ୍ତ ଦ୍ରଷ୍ଟବ୍ୟ ।

†"The places of most note in a Military point of view are, Kalladah, Durgaprasad, and Wandara Godo. Kulladah is an extensive fortified town situated on the right bank of the Mahanady (ବଡ଼ନଦୀ) and immediately under high hills which form a barrier to the westward. The winding direction of the road,



Digitized by srujanika@gmail.com

ରକ୍ଷାକରିବା ପାଇଁ ସୁବିଧା ହୁଏ । ନଗରର ଊର୍ଦ୍ଧ୍ୱ ଅଂଶରେ ରାଜାଙ୍କ ଗଡ଼ ବିଦ୍ୟମାନ । ଗଡ଼ର ଚତୁଃପାର୍ଶ୍ୱରେ ବହୁ ସୁଡ଼ଙ୍ଗବିଶିଷ୍ଟ ମୃତ୍ତିକାର ଅଟ୍ଟାଳିକା ଶ୍ରେଣୀ ଶ୍ରେଣୀବଦ୍ଧ ହୋଇ ରହି ଗଡ଼କୁ ରକ୍ଷାକରିବା ସଙ୍ଗେ ସଙ୍ଗେ ରାଜଦାଣ୍ଡ ଓ ରାଜପଥର ଅପୂର୍ବ ଶ୍ରୀ ସମ୍ପାଦନ କରେ । ଗଡ଼ ଚତୁର୍ଦ୍ଦିଗରେ ଗଭୀର ଗଡ଼ଖାଇ, ଗଡ଼ଖାଇର ଉଭୟ ପାର୍ଶ୍ୱରେ ଘଞ୍ଚ ବଂଶବଣ ଘେରମାନ ରହିଥିବାରୁ ଗଡ଼ ଅନବରତ ସୁରକ୍ଷିତ ଥାଏ ।

ଏହି ବିଖ୍ୟାତ କୁଳଡ଼ ରାଜପ୍ରାସାଦ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କୁ ନିଜ ଉତ୍ସଙ୍ଗରେ ଦୀର୍ଘଦିନ ଧାରଣ କରି, କବିଙ୍କ ଜନ୍ମ, ଶିକ୍ଷା, ସାଧନା, ବିବାଦ ପ୍ରଭୃତି ଅସଂଖ୍ୟ ଘଟଣାର କେନ୍ଦ୍ର ହୋଇ ଇତିହାସ ପ୍ରସିଦ୍ଧ ହୋଇଥିଲା ବୋଲି ଲୋକମୁଖରେ ଘନ ଘନ ଶୁଣାଯାଇଥାଏ । କୁଳଡ଼ଗଡ଼ ଏକ ଅଭେଦ୍ୟ ଦୁର୍ଗ ଥିଲା । ୧୮୩୫ ସାଲରେ ଧନଲୋଲୁପୀ ଇଂରେଜ ବାହିନୀର ଭୀଷଣ ଆକ୍ରମଣ ଓ ତୋପର ଆଘାତରେ ତାହା ଧ୍ୱସ୍ତ ହୋଇଅଛି । ବର୍ତ୍ତମାନ କୁଳଡ଼ଗଡ଼ର ଭଗ୍ନାବଶେଷ, ବାଗ୍‌ଦେବୀ (ବ୍ୟାଘ୍ରଦେବୀ) ମନ୍ଦିର ଓ ଲୁପ୍ତପ୍ରାୟ ପରିଖା ଦେଖାଯାଏ । କେତେ ଉତ୍‌ଥାନପତନର ମଧ୍ୟଦେଇ କୁଳଡ଼ନଗର ବଞ୍ଚି ରହିଛି ଓ ଭକ୍ତିପୀଠ ଦର୍ଶନାକାଂକ୍ଷୀ ଦର୍ଶକବୃନ୍ଦଙ୍କୁ ବାଗ୍‌ଦେବୀଙ୍କ ନୈବେଦ୍ୟ ଧୂପଗନ୍ଧରେ, ନାରାୟଣ ମହାପ୍ରଭୁଙ୍କ ରାଜଭୋଗ ସାମଗ୍ରୀ—ମେଦା, ସରପୁଳିରେ ଏବଂ ଜଗନ୍ନାଥ ମହାପ୍ରଭୁଙ୍କ ରଜା ଖେଚଡ଼ିରେ ସକାର କଣ୍ଟା, ପୁଣ୍ୟଭକ୍ତିପୀଠର କ୍ଷୀଣ ସଙ୍କେତ ନିର୍ଦ୍ଦେଶ ପ୍ରଦାନ କରୁଅଛି ।

---

and the dense bamboo jungle on either side offer many strong defensible positions. The Raja's house is situated above the town, and is protected by mud towers with parapet and loopholes which command them in streets and other approaches and by a deep ditch, the bands of which are covered with a thick hedge of bamboos."

—*Russell.*

Digitized by srujanika@gmail.com

୪

## ତାରକମନ୍ତ୍ର

ଖ୍ରୀଷ୍ଟାବ୍ଦ ୧୬୮୫—୧୭୦୩ ଯାଏ କବି ଉପେନ୍ଦ୍ର ଭଞ୍ଜ କୁଳାଡ଼ଗଡ଼ରେ ରହୁଥିବା ଘଟଣାବଳୀରୁ ସ୍ପଷ୍ଟହୁଏ । ପିତା ନୀଳକଣ୍ଠ ଭଞ୍ଜ କେବଳ ଦୁଇବର୍ଷ ରାଜତ୍ୱ କରି ୧୭୦୩ ଖ୍ରୀଷ୍ଟାବ୍ଦରେ ବିତାଡ଼ିତ ହେଲେ । ସେ ପର୍ଯ୍ୟନ୍ତ ସେ କୁଳାଡ଼ଗଡ଼ ବ୍ୟତୀତ ଅନ୍ୟସ୍ଥାନରେ ରହୁଥିଲେ ପରି ଜଣାଯାଏ ନାହିଁ । ସେଠାରେ ସେ ଶିକ୍ଷା; ତାରକମନ୍ତ୍ରସାଧନା, କେତେକ ଗ୍ରନ୍ଥ ପ୍ରଣୟନ କରିଥିବା ଜଣାଯାଏ । କବିଙ୍କ ତାରକମନ୍ତ୍ର ସାଧନା-ସମସ୍ୟା ଆଲୋଚନା ବର୍ତ୍ତମାନର ଉଦ୍ଦେଶ୍ୟ । କବି ତାରକମନ୍ତ୍ର ପ୍ରସଙ୍ଗ ନିଜର ବିଭିନ୍ନ ଗ୍ରନ୍ଥରେ ବାରମ୍ବାର ଉତ୍ଥାପନ କରିଛନ୍ତି, ଯଥା—

“ତାରକମନ୍ତ୍ର ପରସାଦେ, ମୋହର କବିପଣ ଉଦେ ।” ଲା: ବ: ୧୬—୪୨ ।

“ବଳାଇ ଚନ୍ଦ୍ର ଅନବରତ ସଙ୍ଗେ ଗ୍ରହଣ ତାରକମନ୍ତ୍ର…।” ୧ ଛା, ବୈ: ବ: ।

“ତାରକମନ୍ତ୍ର ନାମ ଯାହାର ପ୍ରାଣ ସେହି ଉପେନ୍ଦ୍ର ଭଞ୍ଜର ।” …ଛା: ଭୂ ।

“ଯେଉଁ ତାରକ ପ୍ରବର୍ତ୍ତିକ ଜଗତେ ତାରକ ସ୍ୱଭାବେ ସେ ସ୍ଥିତ ।
ମହାପୁରୁଷରୁଁ ସେ କାଶୀଶ୍ୱରଙ୍କୁ ବନ୍ଦନା କରିବା ଉଚିତ ।
ହୋଇଲି କବି ଉପେନ୍ଦ୍ର ଭଞ୍ଜର ।” କୋ: ବ୍ର: ସୁ: ।

“ବୃଷଭାସନେ ବୃଷ ଭାଷଣେ ଅଗୋଚର । ବିଶ୍ୱେ ତାର ଯେଉଁ ନାମ ତାରକମନ୍ତ୍ରର ଯେ,”
ଛା୨, ପ ୧୦, ବୈ: ବ: ।

କବିଙ୍କ ତାରକମନ୍ତ୍ର ସାଧନା ସମ୍ବନ୍ଧରେ ଏକାଧିକ କିମ୍ବଦନ୍ତୀ ଅଛି ।

୧ମ କିମ୍ବଦନ୍ତୀ—

ବାଲ୍ୟାବସ୍ଥାରେ ସେ ଥରେ ରଘୁନାଥ ନାମକ ଜଣେ ବୈଷ୍ଣବଙ୍କୁ ଦେଖିଲେ । ଅନେକ ସମୟରେ ରାଜଦ୍ୱାରକୁ ଯାଚିଞ୍ଚା ଉଦ୍ଦେଶ୍ୟରେ ଅନେକ ସନ୍ନ୍ୟାସୀ ଆସନ୍ତି । ତାହାଙ୍କୁ ମଧ୍ୟ ସେହିପରି ଜଣେ ଯାଚକ ସନ୍ନ୍ୟାସୀ ବୋଲି ଭାବି, ବାଳକ ଉପେନ୍ଦ୍ର ସେହି ଆଡ଼କୁ ତେତେ ଦୃଷ୍ଟି ଦେଲେ ନାହିଁ । କିନ୍ତୁ ସନ୍ନ୍ୟାସୀ ଅବସର ବେଳେ ଉପେନ୍ଦ୍ରଙ୍କୁ ତାରକମନ୍ତ୍ରର ମହନୀୟତାର ଇଙ୍ଗିତ ଦେଲେ । ସେହି ମୁହୂର୍ତ୍ତରୁ ମନ୍ତ୍ରସାଧନା ପାଇଁ ତାଙ୍କ ହୃଦୟରେ ପ୍ରବଳ ବ୍ୟାକୁଳତା ଜାଗରୁକ ହେଲା । କୁଳାଡ଼ ନିକଟବର୍ତ୍ତୀ ଅନୁଚ୍ଚଗିରି-ପ୍ରାଚୀର ପରିବେଷ୍ଟିତ ଗୋଟିଏ ବିବିକ୍ତ ସ୍ଥଳୀ ମଧ୍ୟରେ ବନ୍ଧୁଦନ ଯୋଗାସନରତ ରହି ସେ ମନ୍ତ୍ରସିଦ୍ଧ କରିଥିବାର ପ୍ରବାଦ ରହିଅଛି । ଉକ୍ତ ସ୍ଥାନକୁ ‘ବାଘଦାଲ’ ବା ‘ଡାମଣଖୋଲ’ କୁହାଯାଏ । ମାଇଲବ୍ୟାପୀ ଅନୁଚ୍ଚ ଟିମିର ଚନ୍ଦ୍ରାକାରରେ ଘେରମାଣ ରହିଥିବା ବର୍ତ୍ତମାନ ସୁଦ୍ଧା ଦେଖାଯାଏ । ମଧ୍ୟଭାଗଟି ସୁନ୍ଦର ପ୍ରଶସ୍ତ ସମତଳ ଭୂମି, ସେଥି ମଧ୍ୟରେ କେତୋଟି ଗୁମ୍ଫା ଅଛି । ସ୍ଥାନଟି ଅତ୍ୟନ୍ତ ରମଣୀୟ ହେଲେ ମଧ୍ୟ କଣ୍ଟକଗୁଳ୍ମ ଓ ବନ୍ୟତରୁରାଜିରେ ନିବିଡ଼ ଭାବରେ ଆଚ୍ଛନ୍ନ ହୋଇ ରହିଥିବାରୁ, ହିଂସ୍ରଜନ୍ତୁ ଭୟରେ କେହି ସେଠାରେ ପଦକ୍ଷେପ କରିବାକୁ ଅଦ୍ୟାବଧି ସାହସ କରନ୍ତି ନାହିଁ ।

Digitized by srujanika@gmail.com

୨ୟ କିମ୍ବଦନ୍ତୀ—

ଭଞ୍ଜ ରାଜାଙ୍କ ପ୍ରଧାନ ଗୁପ୍ତଗଡ଼ ମଧ୍ୟରୁ ଅନ୍ଧାରଗଡ଼ ଅନ୍ୟତମ । ସେହି ସ୍ଥାନରେ ଉପେନ୍ଦ୍ର ଭଞ୍ଜ ଅନେକ ସମୟରେ ବାସ କରୁଥିଲେ ବୋଲି ଜନଶ୍ରୁତି ରହିଅଛି । ତାରକମନ୍ତ୍ର ସାଧନ ପାଇଁ ସେ ସେଠାକୁ ଯା'ନ୍ତି ବୋଲି ଶୁଣାଯାଉଥିଲେ ମଧ୍ୟ, ସେଥିପାଇଁ ସେ ସେଠାରେ ରହୁଥିଲେ, କି ଅବା କବିତା ଲେଖିବା ପାଇଁ ବେଳେ ବେଳେ ସେ ସେଠାକୁ ଯାଉଥିଲେ, ତାହା ଠିକ କରି କହି ହେବନାହିଁ । ଇଂରେଜ ରିପୋର୍ଟରୁ ଜଣାଯାଏ—*ଦୁର୍ଗାପ୍ରସାଦର ଉର୍ଦ୍ଧ୍ୱଦେଶ ପାହାଡ଼ ଉପତ୍ୟକାରେ ଗୋଟିଏ ଅପ୍ରଶସ୍ତ ବନ୍ଧୁର ଢର୍ଫିକ୍ ପଥ ଅନ୍ଧାରଗଡ଼କୁ ମାର୍ଗ ନିର୍ଦ୍ଦେଶ କରେ । ତାର ଅନ୍ୟ ନାମ 'ଅନ୍ଧାରକୋଟ' ଅନ୍ଧାରଖୋଲ ମଧ୍ୟ କୁହାଯାଏ । 'କୋଟ'—କୁଟଶବ୍ଦର ଅର୍ଥ—ଗଡ଼; ଖୋଲ—ଓଡ଼ିଆ ଶବ୍ଦ, ସାଧୁ ଭାଷାରେ ଗିରିଗହ୍ୱର କୁହାଯାଏ । ନିବିଡ଼ ଅରଣ୍ୟାନୀସମାଚ୍ଛନ୍ନ ସମୁଚ୍ଚ ଶିଖରୀର-ସ୍ୱାଭାବିକ ଏବଂ ଉନ୍ନତ ବକ୍ଷସ୍ଥଳରେ ଅନ୍ଧାରଗଡ଼ ଅବସ୍ଥିତ । ତାହା ଦୀର୍ଘ ଗୃହ ପାଞ୍ଚ ଶ୍ରେଣୀ ଗୃହ ବିଶିଷ୍ଟ ଏବଂ ଶକ୍ତ ଉଚ୍ଚ, ବହଳ ବାଂଶ ଗୁମ୍ଫ ଦ୍ୱାରା ପରିବେଷ୍ଟିତ ଏହି ରମଣୀୟ ନିର୍ଜନ ସ୍ଥାନଟି କବି, ଯୋଗୀ ତଥା ତାରକମନ୍ତ୍ରସାଧକ ପକ୍ଷରେ ପ୍ରଶସ୍ତ ।

୩ୟ କିମ୍ବଦନ୍ତୀ—

ନୟାଗଡ଼ ଶ୍ରୀ ରଘୁନାଥ ପ୍ରଭୁଙ୍କ କୃପାରେ ଉପେନ୍ଦ୍ର ଭଞ୍ଜ ତାରକ ମନ୍ତ୍ର ସିଦ୍ଧ କରିଥିବା କାହା କାହାର ମତ । ସାଧନାରେ ସିଦ୍ଧି ଲାଭ କରି ପ୍ରସନ୍ନ ମନରେ ଅଶ୍ୱାରୋହଣପୂର୍ବକ ନୟାଗଡ଼ରୁ ପ୍ରତ୍ୟାବୃତ୍ତ ହେଉଥିବା ବେଳେ ମାର୍ଗ ମଧ୍ୟରେ ଗୋଟାଏ ଅଲୌକିକ ଦୃଶ୍ୟ ତାଙ୍କର ଦୃଷ୍ଟିପଥାରୂଢ଼ ହେଲା । ଗୋଟାଏ ସ୍ତ୍ରୀର ଶବ ଉପରେ ବସି ଜନୈକ ସାଧକ କୌଣସି ମନ୍ତ୍ର ଉଚ୍ଚାରଣ କରୁଥିବା ବେଳେ, ଗୋଟାଏ ଭୈରବୀ ମୂର୍ତ୍ତି ତର୍ଜ୍ଜନ କରି ତାକୁ ପଚାରିଲେ—"କିରେ କ'ଣ ଚାହୁଁ ? ସେ ଉକ୍ତ ଭୟଙ୍କର ଦୃଶ୍ୟ ଦେଖି ମୂର୍ଚ୍ଛିତ ହେଲା । ଠିକ୍ ସେହି ସମୟରେ, ଭାଗ୍ୟବଶତଃ ଉପେନ୍ଦ୍ର ସେଠାରେ ପହଞ୍ଚିଥିଲେ । ସେ ତତ୍‌କ୍ଷଣାତ୍ ଅଶ୍ୱପୃଷ୍ଠରୁ ଅବତରଣ କରି ନିର୍ଭୀକ ଭାବରେ ଭୈରବୀ ମୂର୍ତ୍ତିର ସମ୍ମୁଖୀନ ହୋଇ ଯୋଡ଼ ହସ୍ତରେ କହିଲେ—"ମା ଭାରତୀ ! ମୋର ଦୁର୍ଲ୍ଲଭ କବିତାର ସ୍ଫୁରଣ ହେଉ ।" "ତଥାସ୍ତୁ" କହି ଦେବୀ ଭଗବତୀ ଅନ୍ତର୍ହିତ ହେଲେ । ଉପେନ୍ଦ୍ର ଦେଖିଲେ—ସେଠାରେ ଆଉ କେହି ନାହିଁ । ସାଧକ ନାହିଁ, ସମସ୍ତ ଅଳୀକ, ସ୍ୱପ୍ନ !

କୁଲଡ଼ ଗଡ଼ର ଏକ ମାଇଲ ଦୂରରେ ଅବସ୍ଥିତ ତାମଣଖୋଲର ପ୍ରାକୃତିକ ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ଥିବା ହେତୁ, ତାରକମନ୍ତ୍ର ସାଧନ ପାଇଁ ତାହା ଉପଯୁକ୍ତ ବିବେଚିତ ହୁଏ । ସେଥିପ୍ରତି ବାଳକ ଉପେନ୍ଦ୍ର ଆକୃଷ୍ଟ ହୋଇଥିବେ ବୋଲି ପ୍ରଥମ କାରଣ ସ୍ୱରୂପ ଗ୍ରହଣ କରାଯାଇପାରେ । ୨ୟ ଦାକ୍ଷିଣାତ୍ୟ

---

*"Beyond the village Doorgaprasad is a very narrow path which winds along the side of a hill till it reaches Wandara Goddo, otherwise called 'Wandara Kotah' and 'Wandara Kolls'. Kota is the Teloogoo name for fort and kolla, the Woodiah word for cavern. This place, the name of which implies the "dark fort" is situated on a natural mound in the midst of steep and thickly wooded mountains and contains four or five long ranges of houses surrounded by a high fence of strong double bamboo matting"—*Madras Records*.

Digitized by srujanika@gmail.com

ତାମିଲ ଖ୍ୟାତ ଶ୍ରୀ ବୈଷ୍ଣବମାନେ ବୈଷ୍ଣବ ଧର୍ମ ପ୍ରସାର ପାଇଁ ସେତେବେଳେ ଉଦ୍ୟମ କରୁଥିଲେ । ୧୭୫୪ ଖ୍ରୀଷ୍ଟାବ୍ଦରେ କୃଷ୍ଣ ଭଞ୍ଜ ବୈଷ୍ଣବମତ ଗ୍ରହଣ କରିଥିବା ଜଣାଯାଏ । ଗୁମୁସର ଅଧିବାସୀଙ୍କ ମଧ୍ୟରୁ ଅଧିକାଂଶ ସେତେବେଳେ ବୈଷ୍ଣବମତ ଗ୍ରହଣ କରିଥିବା ଜଣାଶୁଣା କଥା । କୃଷ୍ଣ ଭଞ୍ଜଙ୍କ ପ୍ରଧାନ କୀର୍ତ୍ତି କୁଲାଡ଼ଗଡ଼ର ନାରାୟଣ ଦେବାଳୟ ଅଦ୍ୟାବଧି ତାହାର ସାକ୍ଷ୍ୟ ଦିଏ । ଏହିପରି ବାତାବରଣ ସୃଷ୍ଟି ହୋଇଥିବା ବେଳେ ବାଳକ ଉପେନ୍ଦ୍ର ତାରକମନ୍ତ୍ର ସାଧନ ପାଇଁ ଯୋଗୀକନବାଞ୍ଛିତ ନିକଟବର୍ତ୍ତୀ 'ଛାମଣଖୋଲ' ନିର୍ବାଚନ କରିଥିବା ସମ୍ଭବ ।

ପିତାମହ ପ୍ରତାପ ଧନଞ୍ଜୟ ଉପେନ୍ଦ୍ରଙ୍କୁ ଦିନେ ସ୍ୱପ୍ରଣୀତ 'ରଘୁନାଥ ବିଳାସ' ଦର୍ଶାଇ ମତାମତ ପ୍ରକାଶ କରିବାକୁ କହିଲେ । ଉପେନ୍ଦ୍ର ତାହା ଗୌରବର କାର୍ଯ୍ୟ ମନେକରି ଗ୍ରନ୍ଥ ଖଣ୍ଡିକ ଆମୂଳାନ୍ତ ଅଧ୍ୟୟନ କରି ପିତାମହଙ୍କୁ ବିନୟପୂର୍ବକ କହିଲେ—"ମହିମା ! ଗୁରୁଙ୍କ ପ୍ରଣୀତ 'ରଘୁନାଥ ବିଳାସ' ଖଣ୍ଡିଏ ଦୁର୍ଲଭ ଗ୍ରନ୍ଥ; କିନ୍ତୁ ସେଥିରେ ଆଶାନୁରୂପ ଅଳଙ୍କାରର ବିକାଶ ହୋଇ ପାରି ନାହିଁ ।" ଧନଞ୍ଜୟ ସ୍ମିତହାସ ପ୍ରକାଶ କରି କହିଲେ—"ବାବୁ ! ତୁ ଏହା ଅପେକ୍ଷା ଅଧିକ ଅଳଙ୍କାର ମାଧୁର୍ଯ୍ୟବିଶିଷ୍ଟ ଖଣ୍ଡିଏ କାବ୍ୟ ଲେଖି ପାରିବୁ ?" "ମହିମାଙ୍କ ଆଶୀର୍ବାଦରେ ମୁଁ କରି ପାରିବି" କହି ଉପେନ୍ଦ୍ର ପିତାମହଙ୍କ ଆଶୀର୍ବାଦ ପାଇ ଉତ୍ଫୁଲ୍ଲ ହୃଦୟରେ ଫେରିଲେ ।

କଥିତ ଅଛି, ଏକ ବର୍ଷ ମଧ୍ୟରେ ଅକ୍ଳାନ୍ତ ପରିଶ୍ରମ ଫଳରେ ଉପେନ୍ଦ୍ର ଭଞ୍ଜ ଯେଉଁ ମହାକାବ୍ୟ ପ୍ରଣୟନ କଲେ, ତାହା ହେଉଛି—'ବୈଦେହୀଶବିଳାସ' । ଧନଞ୍ଜୟଙ୍କ କରକମଳରେ ସେ ସେହି ଖଣ୍ଡିକ ଯଥା ସମୟରେ ଅର୍ପଣ କଲେ । ପିତାମହ ତାହା ଦେଖି, ପଢ଼ି ପ୍ରୀତ ହୋଇ ପୌତ୍ର ଉପେନ୍ଦ୍ରଙ୍କୁ ହାର୍ଦ୍ଦିକ ଆଶୀର୍ବାଦ ଦେଇ ଥିଲେ ।

ତାରକମନ୍ତ୍ର ପ୍ରସାଦରେ ବିରାଟ କାବ୍ୟ—'ବୈଦେହୀଶବିଳାସ'ର ରଚନା ଅଳ୍ପ ସମୟରେ ସମ୍ପନ୍ନ ହୋଇପାରିଥିବା ବିଶ୍ୱାସ କବିଙ୍କର ଥିଲା । ତାହା ତାଙ୍କ ସାହିତ୍ୟରୁ ପ୍ରତିପାଦିତ ହୁଏ ।

———

Digitized by srujanika@gmail.com

# ଶିକ୍ଷା

ଉପେନ୍ଦ୍ର ଭଞ୍ଜ ପ୍ରଥମତଃ ଜିତେନ୍ଦ୍ରିୟ, ଦ୍ୱିତୀୟତଃ ବହୁଶାସ୍ତ୍ରଦର୍ଶୀ ଥିବା କଥା ତାହାଙ୍କ ଗ୍ରନ୍ଥରୁ ସ୍ପଷ୍ଟ ବିଦିତ । ଜିତେନ୍ଦ୍ରିୟ ନ ହେଲେ ତାରକମନ୍ତ୍ର ସାଧନାରେ ସିଦ୍ଧିଲାଭ ହୁଏ ନାହିଁ । ପୁରାଣ ଯୁଗରେ ମହାଦେବ, ହନୁମାନ ତାରକମନ୍ତ୍ର ସିଦ୍ଧ କରିଥିଲେ । ଆଧୁନିକ ଯୁଗରେ ତୁଳସୀଦାସ, କୃପାସିନ୍ଧୁ (ବଳରାମ ଦାସ) ଓ ଉପେନ୍ଦ୍ର ତାହା ସିଦ୍ଧ କରିଅଛନ୍ତି । ଶେଷୋକ୍ତ ଓଡ଼ିଶାର ଦୁଇଜଣ କୃତୀ ସନ୍ତାନ ତାରକମନ୍ତ୍ର ସାଧନାରେ କୃତିତ୍ୱର ସହିତ ସିଦ୍ଧିଲାଭ କରିଥିବା ଓଡ଼ିଶା ପକ୍ଷରେ ଅସାଧାରଣ ଗୌରବର ବିଷୟ । "ତାରକମନ୍ତ୍ର ପରସାଦେ, ମୋହର କବିପଣ ଉଦେ ।" ବୋଲି କବି କହିଥିଲେ ମଧ୍ୟ, ଅଧ୍ୟୟନ ଦିଗରେ ଐକାନ୍ତିକ ଉଦ୍ୟମ, ଅକ୍ଲାନ୍ତ ପରିଶ୍ରମ ଓ ଅସାଧାରଣ ସାଧନା ନ ଥାଇ ସେ ସ୍ୱୀୟ କାବ୍ୟକବିତାରେ ସଂସ୍କୃତସାହିତ୍ୟ, ବ୍ୟାକରଣ, ଅଳଙ୍କାର ଶାସ୍ତ୍ର, କାମ ଶାସ୍ତ୍ର, ଜ୍ୟୋତିଷ, ବିଜ୍ଞାନ, ଦର୍ଶନ, ଶିଳ୍ପ, ଭୂଗୋଳ, ଇତିହାସ ପ୍ରଭୃତି ଅସଂଖ୍ୟ ଶାସ୍ତ୍ରର ଜ୍ୱଳନ୍ତ ପ୍ରମାଣ ରଖିପାରି ନ ଥାନ୍ତେ । ପ୍ରତିଭାଶାଳୀ ବ୍ୟକ୍ତିବୃନ୍ଦଙ୍କ ବାଲ୍ୟତ ବୟସରୁ ସାଧାରଣତଃ ପ୍ରତିଭାର ଉନ୍ମେଷ ହୋଇଥାଏ । ବାବା ଭାରତୀ ବାରବର୍ଷ ବୟସରେ ବିଖ୍ୟାତ ଇଂରେଜ ଦୈନିକପତ୍ର ସମ୍ପାଦନ କରୁଥିଲେ, ବିବେକାନନ୍ଦ ଅଳ୍ପ ସମୟ ମଧ୍ୟରେ ବହୁ ଶାସ୍ତ୍ରତଥ୍ୟ ଆୟତ୍ତ କରିଥିଲେ, ରାମାନୁଜ ଆଠବର୍ଷ ବୟସରେ ଶିଷ୍ୟଭାବରେ ଅଧ୍ୟୟନ କରୁ କରୁ ଭାରତବିଖ୍ୟାତ ପଣ୍ଡିତ ସ୍ୱୀୟ ଗୁରୁଙ୍କ ଯାଦବ ପ୍ରକାଶଙ୍କ ମତ ଖଣ୍ଡନ କରୁଥିଲେ, ଶଙ୍କରାଚାର୍ଯ୍ୟ ସ୍ୱଳ୍ପ ବୟସରେ ସ୍ୱୀୟ ଅସାଧାରଣ ପାଣ୍ଡିତ୍ୟ ପ୍ରଭାବରେ ଭାରତର ବିଭିନ୍ନ ମତବାଦ ଖଣ୍ଡନ କରି ଅଦ୍ୱୈତବାଦ ପ୍ରତିଷ୍ଠିତ କରିଥିଲେ । ଠିକ୍ ସେହିପରି ପ୍ରତିଭାଶାଳୀ ଉପେନ୍ଦ୍ର ବହୁବିଧ ଶାସ୍ତ୍ରଜ୍ଞାନ ବାଲ୍ୟତ ବୟସରୁ ଅର୍ଜ୍ଜନ କରିଥିଲେ । * କବିତା-ସାମ୍ରାଜ୍ୟରେ ପାରଦର୍ଶିତାଲାଭ ପାଇଁ ପ୍ରଧାନତଃ ଲୋଡ଼ା ନାନାବିଧ ଶାସ୍ତ୍ରଜ୍ଞାନ, ଅଳଙ୍କାର ଶାସ୍ତ୍ରଦର୍ଶିତା ଏବଂ ଅସାଧାରଣପାଣ୍ଡିତ୍ୟ । ତାହା ତାଙ୍କର ଥିଲା । ଏ ସକଳ ଦିଗରେ ପ୍ରବୀଣତା ଲାଭ କରିସାରି ଦୁର୍ଲ୍ଲଭ କବିତାର ସ୍ଫୁରଣ ପାଇଁ ସେ 'ତାରକମନ୍ତ୍ର'ର ଆଶ୍ରୟ ନେଇଥିଲେ । ଆତ୍ମସଂଯମ, ଚରିତ୍ରନିଷ୍ଠା ଯୋଗୁଁ ସେ ସେଥିରେ ସିଦ୍ଧିଲାଭ କରିଥିଲେ ।

କବିଙ୍କ ପିତାମହୀ ମଣ୍ଡା ଦେଈ ରାଜାଙ୍କ ଯେତେବେଳେ ପ୍ରିୟରାଣୀ ଥିଲେ, ତାହାଙ୍କ ସନ୍ତାନସନ୍ତତିଙ୍କ ସୁଖ, ସୁବିଧା, ସୁଶିକ୍ଷା ପ୍ରତି ରାଜା ପ୍ରତାପ ଧନଞ୍ଜୟଙ୍କ ସୁଦୃଷ୍ଟି ପଡ଼ିଥିବା ସମ୍ଭବପର । ସେ ସ୍ୱୟଂ ସୁଶିକ୍ଷିତ ଓ ସାହିତ୍ୟିକ; ଭଞ୍ଜରାଜକୁଳରେ ଭଞ୍ଜ ରାଜଧାନୀ ବହୁ ପଣ୍ଡିତବର୍ଗଙ୍କ ସମାଗମର ସ୍ଥାନ ଥିଲା । ସେହିହେତୁ ବିଭିନ୍ନ ଶାସ୍ତ୍ରଦର୍ଶିବୃନ୍ଦ କବି ଉପେନ୍ଦ୍ରଙ୍କୁ ଶିକ୍ଷା ଦେଉଥିଲେ ବୋଲି ଯାହା କଥିତ ଅଛି, ତାହା ଅମୂଳକ ଅନୁମିତ ହୁଏ ନାହିଁ । କବିଙ୍କ ବହୁଶାସ୍ତ୍ରଦର୍ଶିତା ବିଷୟରେ 'ଶାସ୍ତ୍ରଜ୍ଞାନ' ଓ 'ପ୍ରଭାବ' ପରିଚ୍ଛେଦରେ ଏବଂ ପ୍ରସଙ୍ଗାନୁକ୍ରମେ ସ୍ଥାନେ ସ୍ଥାନେ ଆଲୋଚନା କରାଯାଇଥିବାରୁ ତାହା ବର୍ତ୍ତମାନ ଉଲ୍ଲେଖ କରିବା ନିଷ୍ପ୍ରୟୋଜନ ।

---

* "ଶକ୍ତିର୍ନିପୁଣତା ଲୋକ କାବ୍ୟ ଶାସ୍ତ୍ରାଦ୍ୟବେକ୍ଷଣାତ୍
କାବ୍ୟଜ୍ଞ ଶିକ୍ଷାୟାଽଭ୍ୟାସ ଇତିହେତୁ ସ୍ତଦୁଦ୍ଭବେ ।" କା: ପ୍ର: ।

Digitized by srujanika@gmail.com

ଭଞ୍ଜସାହିତ୍ୟ ବ୍ୟବସାୟାତ୍ମକ ଓ ଅର୍ଥକରୀ ସାହିତ୍ୟ ନ ଥିଲା । କଳା ଓ ଉନ୍ନତ ସାହିତ୍ୟର ବିକାଶ ଥିଲା ତାର ଲକ୍ଷ୍ୟ । ନିଜର ଦୁର୍ଲ୍ଲଭ ଭାବବିକାଶରେ ସେ ଯେଉଁ ଶବ୍ଦଯୋଜନା ଓ ବହୁବିଧ ଅଳଙ୍କାର ପ୍ରୟୋଗବିଧି ଅବଲମ୍ବନ କରିଛନ୍ତି, ତାହା ଯୁଗ ଯୁଗ ପାଇଁ ଚମତ୍କାରପ୍ରଦ ହୋଇ ରହିଛି । କବିଙ୍କ ବହୁଅର୍ଥବୋଧକ କାବ୍ୟାଂଶଗୁଡ଼ିକ ପଣ୍ଡିତ, କୃଷକ, ନର୍ତ୍ତକୀ, ନର୍ତ୍ତକ, ଗାୟକ, ଭିକ୍ଷୁକ, ସାହିତ୍ୟିକ ପ୍ରଭୃତିଙ୍କ ପ୍ରିୟସାମଗ୍ରୀ ହୋଇ ରହିଅଛି । ବୈ: ବି: ୧୮ ଛାନ୍ଦ, [୨ ଅର୍ଥ] ସୁ: ପ: ପ. ୨୭ ଛା: ୪ [୩ ଅର୍ଥ] ଲ: ବ: ଛା: ୧ [୩ ଅର୍ଥ] ସୁ: ପ: ଛା: ୫, ପ: ୬୦ [୧ ଅର୍ଥ] କୋ: କୃ: ସୁ: ଛା ୨୫ [୩ ଅର୍ଥ] ୩ ବୃତ୍ତରେ ରଚନା କରାଯାଇଛି । ଏତାଦୃଶ ଅସଂଖ୍ୟ ଦୃଷ୍ଟାନ୍ତରୁ କେତୋଟିର ସୂଚନା ଏଠାରେ ଦିଆଗଲା । ଅନ୍ୟ ପରିଚ୍ଛେଦରେ ଯଥାଯଥ ଆଲୋଚନା କରାଯାଇଛି । ଏତଦ୍‌ବ୍ୟତୀତ କବିଙ୍କ ବ୍ୟବହୃତ ଅସଂଖ୍ୟ ବିଭିନ୍ନ ଅଳଙ୍କାର ମଧ୍ୟରୁ ଉତ୍ପ୍ରେକ୍ଷା, ବ୍ୟାଘାତ, ସିଂହାବଲୋକନ, ମଣ୍ଡୂକପ୍ଲୁତ, ଲୋମବିଲୋମ, ସଭଙ୍ଗ, ଅଭଙ୍ଗ, ଭଙ୍ଗାଭଙ୍ଗ, ଚ୍ୟୁତାକ୍ଷର, ଦତ୍ତାକ୍ଷର, ଚ୍ୟୁତଦତ୍ତାକ୍ଷର, ଏକାକ୍ଷର, ଦ୍ୱ୍ୟକ୍ଷର, ଅନ୍ତର୍ଲିପି ପ୍ରଭୃତି ଅନନ୍ୟସାଧାରଣ ବିବେଚିତ ହୁଏ । ଯୁଗପ୍ରବର୍ତ୍ତକ କବିସମ୍ରାଟ୍ ଭାବରେ ସେ ଏହିପରି ନାନା କାରଣରୁ ଚିରଦିନ ପାଇଁ ପୂଜ୍ୟ । ମୁଦ୍ରାଯନ୍ତ୍ର ସାହାଯ୍ୟରେ ଦିନେ ଗ୍ରନ୍ଥଗୁଡ଼ିକ ପ୍ରକାଶିତ ଓ ପ୍ରଚାରିତ ହେବ, ଅର୍ଥାଗମର ପଥ ସୁଗମ ହେବ—ଏହି ଲାଳସାରେ ସେ ସାହିତ୍ୟସେବାରେ ନିଜକୁ ନିୟୋଜିତ କରି ନ ଥିଲେ । ତାଙ୍କର ଶିକ୍ଷାନୀତି ଓ ସାହିତ୍ୟ ସେବା ନୀତି ଉନ୍ନତ ଓ ମହତ୍ ଥିଲା । ପ୍ରାଚୀନ କବି, ପଣ୍ଡିତ, ଦାର୍ଶନିକ, ଗାଣିତିକ, ଜ୍ୟୋତିର୍ବେଦବିଦ୍, ଆୟୁର୍ବେଦବିଦ୍, ବୈଜ୍ଞାନିକବୃନ୍ଦ ଷଷ୍ଠ ଶତାବ୍ଦୀଠାରୁ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଅର୍ଥ ଉପାର୍ଜନ ପ୍ରତି ଦୃଷ୍ଟି ନ ରଖି ମାନବସମାଜର କଲ୍ୟାଣ କାମନାରେ ଦୁର୍ଲ୍ଲଭ ଗ୍ରନ୍ଥମାନ ରଚନା କରି ଯାଇଛନ୍ତି । ଭାସ୍କରାଚାର୍ଯ୍ୟ, କଣାଦ, ଅତ୍ରି, ସୁଶ୍ରୁତ, ଶାରଙ୍ଗଧର, ଚରକ, ସାରଳା ଦାସ, ଜଗନ୍ନାଥ ଦାସ, ବଳରାମ, ଅଚ୍ୟୁତାନନ୍ଦ, ଦୀନକୃଷ୍ଣ ପ୍ରଭୃତି ଯେଉଁପରି ମହତ୍ ଲକ୍ଷ୍ୟ ସମ୍ମୁଖରେ ରଖି କବି, ତ୍ୟାଗୀ, ଐତିହାସିକ, ବୈଜ୍ଞାନିକ, ଦାର୍ଶନିକ ପ୍ରଭୃତି ଭାବରେ ସମାଜସେବା କରି ଯାଇଛନ୍ତି, ଉପେନ୍ଦ୍ର ସେହିପରି ବିଶିଷ୍ଟ କବିଭାବରେ ସମାଜସେବା କରିଛନ୍ତି ମାତ୍ର । ସେମାନଙ୍କ ଅନୁସୃତ ଶିକ୍ଷାନୀତି ତଦନୁରୂପ ଥିବାରୁ ତାହା ସମ୍ଭବପର ହୋଇ ପାରିଥିଲା ।

ବିଶିଷ୍ଟ ଶିକ୍ଷାବିତ୍‌ମାନେ ଶିକ୍ଷାନୀତି ବିଷୟରେ ବିଭିନ୍ନ ମତ ବ୍ୟକ୍ତ କରନ୍ତି । ମନୁଷ୍ୟ ବହୁ ବିଭିନ୍ନ ଶକ୍ତି ଓ ପ୍ରବୃତ୍ତିର ସମଷ୍ଟି । ଯେଉଁ ଶିକ୍ଷାନୀତି ଦ୍ୱାରା ପ୍ରବୃତ୍ତିସମୂହ ମାର୍ଜିତ, ଗଠିତ ଓ ବର୍ଦ୍ଧିତ ହୁଏ, ତାହା ଉତ୍କୃଷ୍ଟ ଶିକ୍ଷାନୀତିରେ ଗଣ୍ୟ ବୋଲି 'ପୋପ' କହନ୍ତି । ଯେ କୌଣସି ପରିସ୍ଥିତିରେ ଓ କ୍ଷେତ୍ରରେ ଦକ୍ଷତାର ସହିତ କାର୍ଯ୍ୟ କରିବାକୁ ଯେଉଁ ଶିକ୍ଷା ଶିକ୍ଷାର୍ଥୀକୁ ବଳ ଦିଏ, ସେହି ଶିକ୍ଷା ଶିକ୍ଷାପଦବାଚ୍ୟ ବୋଲି 'ମିଲଟନ୍' ମତ ପ୍ରକାଶ କରନ୍ତି । ଗାନ୍ଧିଜୀଙ୍କ ମତ—ଦେଶପ୍ରେମ ଓ ସେବାମନୋବୃତ୍ତି ପାଇଁ ଯେଉଁ ଶିକ୍ଷା ପ୍ରେରଣା ଦିଏ, ତାହାହିଁ ଶିକ୍ଷା । ଉପେନ୍ଦ୍ର ଏତାଦୃଶ ଉଚ୍ଚ ଶିକ୍ଷାନୀତି ପରିଦର୍ଶାରେ ଅନୁସରଣ କରିଥିବାରୁ, ତାହାଙ୍କ ଯାବତ୍ ଜୀବନର ପରିଶ୍ରମଜନିତ ଦୁର୍ଲ୍ଲଭ କାବ୍ୟ କବିତା ସମାଜହିତକର ହେବା ସଙ୍ଗେ ସଙ୍ଗେ ଓଡ଼ିଆ ଭାଷାର ବୈଶିଷ୍ଟ୍ୟ ପ୍ରଚାର କରି ଆସୁଛି ।* ବଣିକ ଓ ରାଜନୀତିଜ୍ଞମାନଙ୍କ ଦ୍ୱାରା ଜାତି ଗଠିତ ହୁଏ ନାହିଁ, ହୁଏ କଳାବିଦ୍ ଓ କବିଙ୍କ ଦ୍ୱାରା ।

---

*"Nations are made by artists and by poets, not by traders and politicians (D. N. Kumarswami)."

Digitized by srujanika@gmail.com

## ଦାମ୍ପତ୍ୟ-ଜୀବନ

ଦାମ୍ପତ୍ୟ-ଜୀବନରୁ ବିଶ୍ୱପ୍ରେମ ଅଙ୍କୁରିତ ହୋଇ ବିକଶିତ ହୁଏ । ସମାଜ-ପ୍ରେମ, ସ୍ୱଦେଶପ୍ରେମ, ସାହିତ୍ୟପ୍ରେମ, ଜୀବ ଓ ଜଡ଼ଜଗତ ପ୍ରତି ପ୍ରେମ, ଏପରି କି, ସାର୍ବଜନୀନ ପ୍ରେମ ସେଥିରୁ ଉଦ୍ଭୂତ ହୋଇ ମାନବିକତାର ବିକାଶସାଧନ କରିବା ସଙ୍ଗେ ସଙ୍ଗେ ତାହା ଶାନ୍ତି ଓ ମୁକ୍ତିର ପଥ ପରିଷ୍କାର କରେ । ସମ୍ଭବତଃ ଏହି କାରଣରୁ ପିତା ମାତା ପୁତ୍ରପୌତ୍ରାଦିଙ୍କ ବିବାହବିଧାନ ଯଥାସମୟରେ ସମ୍ପନ୍ନ କରିବା ପାଇଁ ଆନ୍ତରିକ ଉଦ୍ୟମ କରନ୍ତି । ପ୍ରଧାନତଃ ପ୍ରାଚ୍ୟ ଭୂଖଣ୍ଡରେ ତାହା ଚିରାଚରିତ ପ୍ରଥାସ୍ୱରୂପ ଆଜି ପର୍ଯ୍ୟନ୍ତ ରହିଛି । ଯୁବକ ଉପେନ୍ଦ୍ରଙ୍କ ରାଜସିଂହାସନ ପ୍ରତି ଯେପରି ଦୃଷ୍ଟି ନ ଥିଲା, ଗୃହାଶ୍ରମ ପ୍ରତି ସେପରି ଚିନ୍ତା ନ ଥିଲା । ଉପେନ୍ଦ୍ରଙ୍କ ଉପଯୁକ୍ତ ବୟସ ହେବା ପର୍ଯ୍ୟନ୍ତ ତାଙ୍କ ପିତାମହ ଧନଞ୍ଜୟ ଭଞ୍ଜ ଜୀବିତ ଥିଲେ, ଯୁବରାଜ ଭାବରେ ପିତା ନୀଳକଣ୍ଠ ଥିଲେ, କ୍ଷମତାସମ୍ପନ୍ନ ପିତାମହୀ ମଣ୍ଡା ଦେବୀ ତାଙ୍କୁ ସ୍ନେହ ଚକ୍ଷୁରେ ଦେଖୁଥିଲେ । ରାଜଗାଦିର ସେ ଯେତେବେଳେ ଯୋଗ୍ୟ ଦାୟାଦ ଥିଲେ, ସେତେବେଳେ ପ୍ରତିବେଶୀ ରାଜନ୍ୟବର୍ଗ ପ୍ରତିଭାସମ୍ପନ୍ନ କବି ଉପେନ୍ଦ୍ରଙ୍କୁ କନ୍ୟା ସମ୍ପ୍ରଦାନ କରିବାକୁ ବିଶେଷ ଉତ୍କଣ୍ଠିତ ହୋଇଥିଲେ । ପିତା, ପିତାମହ ଓ ପିତାମହୀଙ୍କ ଯଥାଯୋଗ୍ୟ ସମ୍ଭାର ଓ ଆୟୋଜନକ୍ରମେ ସେ ଯଥାସମୟରେ ବାଣପୁରର ତଦାନୀନ୍ତନ ରାଜା ଅଚ୍ୟୁତ ହରିଚନ୍ଦନ ରାୟଙ୍କ ଜ୍ୟେଷ୍ଠା କନ୍ୟାଙ୍କ ପାଣିଗ୍ରହଣ କରିଥିଲେ । ସେ ଅତ୍ୟନ୍ତ ବିଦୁଷୀ, ବିଶେଷତଃ କାବ୍ୟରସବିନୋଦିନୀ ଥିବା ହେତୁ କବିଙ୍କ ବିଶାଳ ସାହିତ୍ୟ କର୍ମକ୍ଷେତ୍ରର ପରିସର ଅଭିବୃଦ୍ଧିରେ ସେ ସାମୟିକ ସାହାଯ୍ୟ ଦେଇ ପାରୁଥିଲେ । ତଦ୍ଦ୍ୱାରା କବି ଏତେ ଦୂର ଯାଏ ମାନସିକ ଶାନ୍ତି ଉପଲବ୍ଧି କରୁଥିଲେ ଯେ, କୌଣସି କୌଣସି କାବ୍ୟରେ ତାହା ଅଲକ୍ଷିତ ଭାବରେ ପ୍ରକାଶ ପାଇଥିବା ଅନୁମିତ ହୁଏ । "ଏ ପରମ ପଣ୍ଡିତା ମନକୁ ନାନାର୍ଥ ଆସୁଛି ।" ଛା. ୧୦, ପ. ୧୬, କୋ: ବ୍ର: ସୁ: । କବିଙ୍କ ଗାର୍ହସ୍ଥ୍ୟଜୀବନ ଅତ୍ୟନ୍ତ ମଧୁମୟ ହୋଇ ଉଠିଥିଲା । ଦେବୀ ବୀଣାପାଣିଙ୍କ ଅର୍ଚ୍ଚନାରେ ପ୍ରସନ୍ନ ମନରେ ଜାଳାଉପାତ କରୁ କରୁ ସେ ବେଳେ ବେଳେ ଗାଇ ଉଠନ୍ତି—

"ସୁଖୀ ହୋଇଥିବେ ନୃପ ଉପଜୀବୀ ନୋହି ।
ବିଦ୍ୟାଥିବ ଦିବ୍ୟସ୍ତ୍ରୀ ମିଳିଥିବ ତହିଁ ଯେ ।" ଲା: ବ: ଛା: ୨୮ ।

କବି ବେଳେ ବେଳେ କାର୍ଯ୍ୟସୂତ୍ରରେ ବାଣପୁର ଯାଇ କିଛି କିଛି ସମୟ ସେଠାରେ ଅବସ୍ଥାନ କରୁଥିବା ଜଣାଯାଏ । ଦୀର୍ଘଦିନ ପ୍ରବାସ ଗୃହସ୍ଥ ପକ୍ଷରେ ସ୍ପୃହଣୀୟ ନୁହେଁ ବୋଲି କବିଙ୍କ ମତ । ତାହା ସେ ବିଭିନ୍ନ କାବ୍ୟ କବିତାରେ ପ୍ରକାଶ କରିଛନ୍ତି—

"ଏ କାଳେ ପ୍ରବାସେ ଯେ ରହିଲା ସେହି ଗଲା ଭାସି ।"
ଛା ୧, ଦଶପୋଇ ।

"ପରବାସ ନ କରିବ କେବେ ।" ଲା: ବ: ।

କବି ଆଦର୍ଶ ଗୃହସ୍ଥ ଥିଲେ । ସେ ଅବୈଧ ତଥା ପରକୀୟା ପ୍ରୀତିକୁ ଘୃଣାଚକ୍ଷୁରେ ଦେଖୁଥିଲେ । ସେ କହନ୍ତି—

"ପରଦ୍ରବ୍ୟ ପର ସ୍ତ୍ରୀ ହରଣକୁ । ଲେଖୁଁ ଶୁଭ କରି ତହୁଁ ମରଣକୁ ।" ଲା: ବ: ।

Digitized by srujanika@gmail.com

ରସପଞ୍ଚକରେ ବେଶ୍ୟା ପ୍ରସଙ୍ଗରେ ସେ କହନ୍ତି—

"ସୁପ୍ରୀତିସ୍ଥାନା ଧନ ଅଧୀନା, ସେଥିରୁ କି କାର୍ଯ୍ୟ ବିଗ୍ରହ କନା ।" ଇତ୍ୟାଦି ।

ସେହିପରି ବେଶ୍ୟା ପ୍ରସଙ୍ଗରେ ବୈଦେହୀଶବିଳାସରେ ସେ କହନ୍ତି—

"ବ୍ୟବହାର କଲେ କର୍ଣ୍ଣେ ତାହାଙ୍କ (କରତା ପ୍ରକୃତ ଦ୍ୱାଦଶବେଶ୍ୟାଙ୍କ) ସଙ୍ଗରେ ।
ବାବୁ ହେବୁ ଅଗ୍ନି ପ୍ରୀତି ପତଙ୍ଗ ପ୍ରକାରେ ଯେ ।" ଛ: ୪; ବୈ: ବି: ।

("Married life is either most happy or most miserable") ଗାର୍ହସ୍ଥ୍ୟଜୀବନରେ ସ୍ୱର୍ଗୀୟ ସୁଖର ସମ୍ଭାବନା ଅଛି, ଦୁଃଖର ମଧ୍ୟ ଆଶଙ୍କା ଅଛି । କବିଙ୍କ ଗାର୍ହସ୍ଥ୍ୟଜୀବନ ନିରବଚ୍ଛିନ୍ନ ଶାନ୍ତି ସନ୍ତୋଷରେ କଟିନି ନାହିଁ । ଗୁଣବତୀ ସହଧର୍ମିଣୀଙ୍କ ସହସା ଅକାଳବିୟୋଗ ଘଟିଲା ("Sweetest songs are those that tell of saddest thoughts") ଦୁଃଖ ସମୟରେ ଉଚ୍ଚାଙ୍ଗ କବିତାର ସ୍ଫୁରଣ ହୁଏ । 'ପ୍ରେମସୁଧାନିଧି' ଓ 'ରସିକହାରାବଳୀ' ତାହାଙ୍କ ପତ୍ନୀବିରହବିଧୁର ଅବସ୍ଥାରେ ଲିଖିତ ବୋଲି କଥିତ ଅଛି । କବି ସେଥିକି ଲକ୍ଷ୍ୟ କରି ସମ୍ଭବତଃ କହନ୍ତି—

"ମୋର ତୋ ବାହାରେ ନାହିଁ ଆନ ଗତି, ଭଜନ କରଇ ତୋର ନାମ ଦିବା ରାତି ।
କୁମୁଦ ଚନ୍ଦ୍ର ପୀରତି ତୋର ମୋର ଥିଲା, ଏ ପଗୁଣ ନ ଯାଇଣ କପାଇଁ ରହିଲା ।" ପ୍ରେ: ସୁ: ।

କବିଙ୍କ ଦାମ୍ପତ୍ୟଜୀବନର କିବିଡ଼ ରସାନୁଭୂତି କେବଳ ପ୍ରେମସୁଧାନିଧି ଓ ରସିକହାରାବଳୀରୁ ଯେ ପ୍ରକାଶ ପାଉଛି, ତାହା ନୁହେଁ; ଅନ୍ୟାନ୍ୟ ଗ୍ରନ୍ଥରେ ପ୍ରିୟାବିରହଜନିତ ଆନ୍ତରିକ ବେଦନା ଅନୁଭୂତିପ୍ରଚୁର ହୃଦୟରୁ ବେଳେ ବେଳେ ପ୍ରକାଶ ପାଉଥିବା ଅନୁମିତ ହୁଏ ।

"କି ହେବ ଇନ୍ଦ୍ର ହୋଇଲେ ସବି ସମ୍ପଦେ ସେ,
ସ୍ତ୍ରୀବିରହିନ ଠାରୁ ପାପୀ ନାହିଁ ମହୀଦେଶେ ଯେ ।" ଲା: ବି: ।

କବିଙ୍କ ସ୍ତ୍ରୀଙ୍କର ଅକାଳ ବିୟୋଗ ସମ୍ପର୍କରେ ଗୋଟିଏ କିମ୍ବଦନ୍ତୀ ଅଛି । ଉପେନ୍ଦ୍ର କୁଲାଡ଼ଗଡ଼ରେ ସାଧାରଣତଃ ବାସ କରୁଥିଲେ ମଧ୍ୟ ବେଳେ ବେଳେ ସେ ପୂର୍ବୋକ୍ତ 'ଅନ୍ଧାରଗଡ଼'କୁ ବିଜେ କରୁଥିଲେ । କଳଙ୍ଗା ପାଦଦେଶରେ ଶୋଭିତ 'ଅନ୍ଧାରକୋଟ' ପ୍ରକୃତିଦେବୀଙ୍କ ଲୀଳାସ୍ଥଳୀ ଥିଲା । ଏକ ଦିଗରେ ଶ୍ୟାମାୟମାନ ଅନନ୍ତ କାନନଶ୍ରେଣୀ, ଅନ୍ୟ ଦିଗରେ ବିଭିନ୍ନ ବିହଙ୍ଗମକୁଳର ମଧୁରକୂଜିତ-ସଙ୍ଗୀତ-ସୁଧାସ୍ୟନ୍ଦୀ ନିର୍ଝରିଣୀଝଙ୍କାର ସହିତ ମିଶି କବିପ୍ରାଣକୁ ଅହରହ ସ୍ୱାଗତ କରିବା ସ୍ୱାଭାବିକ । ଭାବପ୍ରବଣତାକୁ ପ୍ରଶ୍ରୟ ଦେବା ଉଦ୍ଦେଶ୍ୟରେ ବୋଧହୁଏ, ସେ ଥରେ ଥରେ ସେଠାକୁ ଯାଇ ଦିନେ ଦିନେ ରହି ଯାଉଥିଲେ । ଦିନେ ପୁଣି ସେ ନିର୍ଦ୍ଦିଷ୍ଟ ସମୟରେ ଫେରିବା ପାଇଁ କହି ଆଉ ଫେରିଲେ ନାହିଁ । ଆଳସ୍ୟର କାରଣ ଜାଣିବାପାଇଁ ଯଥାସମୟରେ ଲୋକ ପ୍ରେରଣ କରାଗଲା । ଅନ୍ଧାରଗଡ଼ ପ୍ରଥମ ଦ୍ୱାର ସମୀପରେ ସେ ଦେଖିଲା —ହିଂସ୍ରଜନ୍ତୁ ଆକ୍ରମଣରେ ନିହତ କୌଣସି ମନୁଷ୍ୟଶରୀରର କେତେକାଂଶ ଏବଂ ସେ ସ୍ଥାନଟି ରକ୍ତାକ୍ତ । ସେ ଭୀତତ୍ରସ୍ତ ହୋଇ ଫେରି ସେହି କଥା ରାଜାଙ୍କ ସମ୍ମୁଖରେ ଜଣାଇଲା । କବିଙ୍କ ସ୍ତ୍ରୀ ତାହା ଶୁଣି ସମ୍ଭାଳି ପାରିଲେ ନାହିଁ । ଶୁଣୁଁ ଶୁଣୁଁ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ।



Digitized by srujanika@gmail.com

୭

# ପିତାଙ୍କ ରାଜତ୍ୱ ଓ ରାଜ୍ୟଚ୍ୟୁତି

ଧନଞ୍ଜୟଙ୍କ ଏକାଧିକ ପୁତ୍ରଙ୍କ ମଧ୍ୟରେ ଗଙ୍ଗାଧର ଜ୍ୟେଷ୍ଠ, ନୀଳକଣ୍ଠ ଚତୁର୍ଥ ପୁତ୍ର ଥିଲେ । ଜ୍ୟେଷ୍ଠପୁତ୍ର ଗଙ୍ଗାଧର ଥାଉଁ ଥାଉଁ ରାଜାଙ୍କ ପ୍ରିୟରାଣୀ ମଣ୍ଡା ଦେବୀଙ୍କର ପ୍ରେରଣାରେ, ରାଜାଙ୍କ ଜୀବଦ୍ଦଶାରେ ପୁତ୍ର ନୀଳକଣ୍ଠଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରାଗଲା । ନୀଳକଣ୍ଠଙ୍କର ରାଜା ହେବାର ମାର୍ଗ ସେହି ହେତୁ ସୁଗମ ହେଲା ।

ଧନଞ୍ଜୟଙ୍କ ପରେ ନୀଳକଣ୍ଠ ଭଞ୍ଜ ରାଜଗାଦି ପାଇଲେ; କିନ୍ତୁ ସୁଖ ଶାନ୍ତି ବୋଲି କଥା ସୁଦ୍ଧା ଆଉ ରହିଲା ନାହିଁ । ଅନବରତ ବୈମାତ୍ରିକ ଭାଇମାନଙ୍କଦ୍ୱାରା ନାନା ଉପଦ୍ରବ ସଙ୍ଘଟିତ ହେଉଥାଏ । ତେଣେ ଉପେନ୍ଦ୍ର ବୟଃପ୍ରାପ୍ତ, ବିଜ୍ଞ, ରାଜନୀତିଜ୍ଞ ହେଲେ ମଧ୍ୟ ବାଣୀସେବା ସମ୍ମୁଖରେ ପାର୍ଥିବ ସମ୍ପଦ, ବିଭବ, ରାଜଐଶ୍ୱର୍ଯ୍ୟକୁ ଅଳୀକ ବୋଲି ମନେ କରୁଥିଲେ । ଏଣୁ ସେ ସକାଶେ ପିତା ନୀଳକଣ୍ଠ ଉପେନ୍ଦ୍ରଙ୍କଠାରୁ ରାଜନୈତିକ ଦୁଃସ୍ଥିତି ସମୟରେ କୌଣସି ପ୍ରକାର ସାହାଯ୍ୟ, ସହାନୁଭୂତି ପାଇ ପାରିଲେ ନାହିଁ । ଗୋବିନ୍ଦ ଭଞ୍ଜଙ୍କ ପୁତ୍ର ଘନ ଭଞ୍ଜ ଉପେନ୍ଦ୍ରଙ୍କ ସମସାମୟିକ ଥିଲେ । ସେ ମଧ୍ୟ ଉଚ୍ଚ ସ୍ତରର କବି । ତାଙ୍କ ପ୍ରଣୀତ 'ତ୍ରୈଲୋକ୍ୟମୋହିନୀ', 'ରସନିଧି' ଉତ୍କଳ ସାହିତ୍ୟ ଭଣ୍ଡାରର ଗୋଟିଏ ଗୋଟିଏ ଉଜ୍ଜ୍ୱଳ ରତ୍ନ । ତ୍ରୈଲୋକ୍ୟମୋହିନୀ ୭୫ ବିଭିନ୍ନ ଛାନ୍ଦରେ ରଚିତ । ସେ କବିତା-ନିକୁଞ୍ଜ ମଧ୍ୟରେ ବିହାରପ୍ରୟାସୀ ଥିଲେ ମଧ୍ୟ ସିଂହାସନ ପ୍ରତି ତାଙ୍କର ଲୋଲୁପ ଦୃଷ୍ଟି ବରାବର ଥିଲା । ସେ ନୀଳକଣ୍ଠଙ୍କୁ ନାନା ଅଶାନ୍ତିସଙ୍କୁଳ ଦେଖି ଚତୁର୍ଦ୍ଦିଗରେ ବିଦ୍ରୋହ ବହ୍ନି ପ୍ରଜ୍ୱଳିତ କରାଇଲେ । ସେ ଅକ୍ଳାନ୍ତ ପରିଶ୍ରମ କରି ଗଙ୍ଗାଧରଙ୍କ ପୌତ୍ର ଓ ଶତ୍ରୁଞ୍ଜୟଙ୍କ ପୁତ୍ର ରଣ ଭଞ୍ଜଙ୍କୁ ନୀଳକଣ୍ଠଙ୍କ ପ୍ରତିପକ୍ଷ ରୂପରେ ସିଂହାସନର ଶ୍ରେଷ୍ଠ ଦାୟାଦ ରୂପରେ ନାମମାତ୍ର ସ୍ଥାପିତ କରିଥିଲେ । ଏପରି ଦୁର୍ଦ୍ଦଶାଗ୍ରସ୍ତ ହୋଇ ନୀଳକଣ୍ଠ ସିଂହାସନକୁ ଅଧିକ ସମୟ ରକ୍ଷା କରିବା ନିରାପଦ ବୋଲି ମନେ କଲେ ନାହିଁ । ସପରିବାର ସେ ନବଦୁର୍ଗାଭିମୁଖେ ପଳାୟନ କଲେ । ତତ୍କାଳୀନ ପ୍ରଧାନ ରାଜଧାନୀ ସମୀପବର୍ତ୍ତୀ 'ମାଳସାହି'ରେ ସେ ଅବସ୍ଥାନ କରିଥିଲେ ବୋଲି କଥିତ ଅଛି । ପିତାଙ୍କର ରାଜ୍ୟଭ୍ରଂଶକୁ ଲକ୍ଷ୍ୟ କରି ଉପେନ୍ଦ୍ର କହିଛନ୍ତି—

"ରାଜାଙ୍କୁ ହେବାର ରାଜ୍ୟଭ୍ରଷ୍ଟ, ଯୁବାକୁ ହେବାର ପତ୍ନୀକଷ୍ଟ,
ବୋଲେ ଉପେନ୍ଦ୍ର ଭଞ୍ଜ ବୀରବର ଏଥୁଁ ବଳି ନାହିଁ ଆନ କଷ୍ଟ ।" ର: ହା: ।

ରଣ ଭଞ୍ଜ କିଛିଦିନ ସକାଶେ ଗୁମୁସର ସିଂହାସନ ଆରୋହଣ କରିଥିଲେ । ପରେ ପରେ ସେ ଘନ ଭଞ୍ଜଙ୍କ ଦ୍ୱାରା ବିତାଡ଼ିତ ଓ ନିହତ ହୋଇଥିବାର ଜଣାଯାଏ । ରାଜ୍ୟ ଏପରି ଭାବରେ ନିଷ୍କଣ୍ଟକ ହେବା ପରେ ଘନ ଭଞ୍ଜ ରାଜ୍ୟସିଂହାସନ ଆରୋହଣ କରି ଦୀର୍ଘ ୪୭ ବର୍ଷ ରାଜତ୍ୱ କରିଥିଲେ । ରାଜତ୍ୱ ସମୟରେ ସେ ଉପେନ୍ଦ୍ର ଭଞ୍ଜଙ୍କ ପ୍ରତି ସହାନୁଭୂତିବ୍ୟଞ୍ଜକ ବ୍ୟବହାର କରିଥିଲେ ବୋଲି କିମ୍ବଦନ୍ତୀ ଅଛି ।

ଉପେନ୍ଦ୍ର ଭଞ୍ଜ ପିତାଙ୍କ ସହିତ ରାଜ୍ୟତ୍ୟାଗ କରିବା ସମୟରେ ତାଙ୍କ ରଚିତ ଅସଂଖ୍ୟ ଗ୍ରନ୍ଥରୁ ସେ ଏକତୃତୀୟାଂଶ ପ୍ରଣୟନ କରି ସାରିଥିବାର ଅନୁମିତ ହୁଏ । ରାଜସିଂହାସନ ପ୍ରତି ତାଙ୍କର ଲାଳସା ନ ଥିବାରୁ, ପିତାଙ୍କ ସଙ୍କଟାପନ୍ନ ପରିସ୍ଥିତିରେ ସେ ପିତାଙ୍କ ସିଂହାସନ ନିରାପଦ ଏବଂ ଦୃଢ଼ୀଭୂତ କରିବା ପାଇଁ ପିତାଙ୍କ ସହ ସହଯୋଗ କରି ନ ଥିବାରୁ ଉପେନ୍ଦ୍ରଙ୍କ ଉପରେ ଦୂରଦର୍ଶୀ ଘନ ଭଞ୍ଜଙ୍କ କୁଟିଳ କଟାକ୍ଷପାତର କୌଣସି କାରଣ ନ ଥିଲା । ଅନେକ ସମୟରେ ସେ ନୟାଗଡ଼ରୁ ଗୁମୁସରକୁ ଆସୁଥିଲେ, ଦୀର୍ଘ ସମୟ ଅବସ୍ଥାନ କରୁଥିଲେ, ଅବସ୍ଥାନ ସମୟରେ ଘନ ଭଞ୍ଜଙ୍କ ସହିତ ସାହିତ୍ୟିକ ଆଲୋଚନା କରୁଥିଲେ ଏବଂ ନିଜ ଗ୍ରନ୍ଥର ରଚନାପରିପାଟୀ ପାଇଁ ପ୍ରଶଂସିତ ହେଉଥିଲେ ।

Digitized by srujanika@gmail.com

ତରୁଣ ଅବସ୍ଥାରେ କାହାର କାହାର ଅନୁରୋଧରେ ଉପେନ୍ଦ୍ର ଭଞ୍ଜ ବେଳେ ବେଳେ 'ପଶାଖେଳ', 'ନାଚ', 'ଯାଗାଗ୍ନି' ପ୍ରଭୃତି ଗ୍ରୋଟ ଗ୍ରୋଟ ବିଷୟ ଉପଲକ୍ଷେ କେତୋଟି ଖଣ୍ଡକବିତା ମଧ୍ୟ ଲେଖିଛନ୍ତି । ଉପେନ୍ଦ୍ର ଭଞ୍ଜ ନାମରେ ଭଣିତ ଥିବା ଏପରି କବିତା ଅଦ୍ୟାପି ଲୋକମୁହଁରୁ ଶୁଣାଯାଏ । ଉକ୍ତ ଖଣ୍ଡକବିତାର କେତେକାଂଶ—

ପଶା ଉପଲକ୍ଷେ :—

"ତିନ ଯତନ୍ଙ୍କର ବସ୍ଥାଲିଣ ଲୋଚନ ଧବଳ ଶରୀର ତାଙ୍କର,
ସତ୍ତ୍ୱ, ରଜ, ତମ—ଏ ତିନ ପ୍ରକାରେ ଉତ୍ତମ ଲୋକଙ୍କ ବେଖର ।
ଚାରି ଗଡ଼ଦ୍ୱାରେ ଚାରି ମହାରଥୀ ଜଗିଣ ଅଛନ୍ତି ବସି,
ଷୋଳ ସେନାପତି ଛସ୍ଥାନବେ କନ୍ଦ ବୁଲୁଛନ୍ତି ଅହର୍ନିଶି ।
ମାର ମାର ଧ୍ୱନି ଶବଦ ଶୁଭଇ ଡାକ ପଡ଼େ ନିରନ୍ତର,
ସେ ପୁଣି ଜୀଅନ୍ତି, ସେ ପୁଣି ମରଇ ସେ ପୁଣି ପଶଇ ଘର ।

× × × ×

............ବୋଲେ ଉପଇନ୍ଦ୍ର ଭଞ୍ଜ ବୀରବର,
କେଉଁ ବର୍ଣ୍ଣନାକୁ କରୁଛୁ କହ ବିଚାରି ସତ୍ୱର ।"

ଯାଗ ଉପଲକ୍ଷେ :—

"ମିତ ମିତଣି ଗୋ ଯାହା ମୁଁ ଦେଖିଲି ଆଜ,
କହିବା ଲୋକର ମନକୁ ନ ଆସେ ଶୁଣିବା ଲୋକକୁ ଲାଜ ।
ପୁରୁଷର ଇନ୍ଦ୍ର ଠୁଳ ନାହିଁ ପୁଣି, ନାରୀ ନୁହେ ସେ ପଦ୍ମିନୀ,
ଅତି ହରଷରେ ରତି କରୁଛନ୍ତି ନୁହେ ଦିବସ ରଜନୀ ।" ଇତ୍ୟାଦି ।

× × × ×

ଏହି କବିତା ଅପୂର୍ଣ୍ଣ ଥିବାରୁ କେଉଁ ବିଷୟ ଉପଲକ୍ଷେ ସେ ଲେଖିଛନ୍ତି, ଧରାଯାଏ ନାହିଁ । ନୟାଗଡ଼ର ଚିଦାନନ୍ଦ ରାଜା ଥିଲେ ଉପେନ୍ଦ୍ରଙ୍କ ମାତାମହ । ସେ ନାତି ଉପେନ୍ଦ୍ରଙ୍କୁ କୌତୁକରେ ପଚାରିଲେ—"ଦାସ ପାଠ ତୁମକୁ ଜଣା ?" ସେ ସଙ୍ଗେ ସଙ୍ଗେ ଅଜାଙ୍କୁ ନିମ୍ନମତେ ଉତ୍ତର ଦେଇଥିଲେ—

"ଗ୍ରାମ୍ୟ ବୋଲିବାର ଦାସ ପାଠ ରହିଲା
ଶିବଙ୍କ ରମଣୀଠାରେ,
ବିଚାରି ବିଚାରି ପଚାରି ପଚାରି
ବୁଝିବେ ବାରବର୍ଷରେ ।"

ଏତଦ୍‌ବ୍ୟତୀତ କବିଙ୍କ ଚିତ୍ରମାଳିକା ନାମରେ ଖଣ୍ଡିଏ ତାଳପତ୍ର ଗ୍ରନ୍ଥ ଅଛି । ବୁଗୁଡ଼ା ନିକଟବର୍ତ୍ତୀ ଏକ ଗାଁର ସାମନ୍ତଙ୍କ ଘରେ ତାହା ଅତ୍ୟନ୍ତ ଜୀର୍ଣ୍ଣ ଅବସ୍ଥାରେ ପଡ଼ିରହିଛି । ନିକଟ ଭବିଷ୍ୟତରେ ତାହା ପ୍ରକାଶ ପାଇବ ।



Digitized by srujanika@gmail.com

## କାବ୍ୟରୁ କବିଙ୍କ ପରିଚୟ

କବିଗୁରୁ ଉପେନ୍ଦ୍ର ଭଞ୍ଜ ବୈଦେହୀଶ ବିଳାସ, ଲାବଣ୍ୟବତୀ ଓ ରସପଞ୍ଚକରେ ନିଜ ପାଞ୍ଚ ପୁରୁଷର ସାଧାରଣ ପରିଚୟ ଦେବା ସଙ୍ଗେ ସଙ୍ଗେ ନିଜର ପରିଚୟ ଯାହା ଲିପିବଦ୍ଧ କରିଛନ୍ତି, ତାହା ଉଲ୍ଲେଖ କରି ଯାଇଛି । ସେ କାବ୍ୟରେ ଧର୍ମ, ଅର୍ଥ, କାମ, ମୋକ୍ଷ ଚତୁର୍ବର୍ଗ ଫଳପ୍ରାପ୍ତି ପାଇଁ ଉପାଦାନ ରଖି, ନିଜର ପ୍ରତ୍ୟୁତ୍ପନ୍ନମତି ପ୍ରତିଭା ଓ ବହୁଶାସ୍ତ୍ରଦର୍ଶିତାର ପରିଚୟ ନାୟକନାୟିକା ଚରିତ୍ରରେ, ଷଡ଼ଋତୁ, ନଦୀ, ପର୍ବତ, ସମୁଦ୍ର, ସରୋବର, ସଙ୍ଗ୍ରାମ, ମୃଗୟା, ବନଉପବନ, ନଗରନଗରୀ ପ୍ରଭୃତି ବର୍ଣ୍ଣନାରେ ଯେପରି ଜୀବନ୍ତ ଭାବରେ ଲିପିବଦ୍ଧ କରିଅଛନ୍ତି, ତାହା ପରବର୍ତ୍ତୀ ପରିଚ୍ଛେଦମାନଙ୍କରୁ ଧରାଯିବ । ଏତଦ୍‌ବ୍ୟତୀତ ନିମ୍ନୋକ୍ତ କେତେକ ପ୍ରସଙ୍ଗ ମାତ୍ର ବର୍ତ୍ତମାନ ଆଲୋଚନା କରିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

କବିଙ୍କ ସମୟରେ ପାରିପାର୍ଶ୍ୱିକ ପରିସ୍ଥିତି—

ଉପେନ୍ଦ୍ର ଭଞ୍ଜଙ୍କ ସମୟରେ ଆଓରଙ୍ଗଜେବ (୧୬୫୮—୧୭୦୭) ଭାରତର ଚକ୍ରବର୍ତ୍ତୀ ଥିଲେ, ମୁର୍ଶିଦ କୁଲିଖାଁ ବଙ୍ଗ, ବିହାର ଓ ଓଡ଼ିଶାର ସୁବାଦାର ଥିଲେ, ସୁଜାଉଦ୍ଦିନ ଓଡ଼ିଶାର ନବାବ ଥିଲେ, ଦିବ୍ୟସିଂହ ଗଜପତି ସେତେବେଳେ ଖୋରଧାର ରାଜା ଥିଲେ । ଶତ ଅତ୍ୟାଚାର ମାଧ୍ୟମରେ ଆଓରଙ୍ଗଜେବଙ୍କର ଶାସନ ଚାଲିଥିଲା । ୧୭୦୭ ରେ ଆଓରଙ୍ଗଜେବଙ୍କ ମୃତ୍ୟୁ ଘଟିଲା । ମୋଗଲ ରାଜଶକ୍ତି ହୀନବଳ ହୋଇ ପଡ଼ିବାରୁ ପ୍ରାଦେଶିକ ରାଜାମାନେ ସ୍ୱାଧୀନ ହେବା ପାଇଁ ଉଦ୍ୟମ କଲେ । ଦେଶରେ ଘୋର ଅଶାନ୍ତି ଦେଖାଗଲା । ଓଡ଼ିଶା ସେଥିରୁ ମୁକ୍ତ ନ ଥିଲା । ସୁଜାଉଦ୍ଦିନ ସୁଶାସକ ଥିବାରୁ ଓଡ଼ିଆ—ବାହିନୀ ଓ ଉତ୍କଳବାସୀ ଶାସକ ପ୍ରତି କୃତଜ୍ଞ ଥିଲେ । ସେ ସେହି କାରଣରୁ ଓଡ଼ିଆ ସୈନିକମାନଙ୍କ ସାହାଯ୍ୟରେ ବହୁ ସଂଗ୍ରାମରେ ଜୟଲାଭ କରୁଥିଲେ । ଆଓରଙ୍ଗଜେବଙ୍କର ଅତ୍ୟାଚାର, ପରବର୍ତ୍ତୀ ମୋଗଲ ଶାସକମାନଙ୍କ ଦୁର୍ବଳତା, ଆଫଗାନ୍‌ମାନଙ୍କ ମାରହାଣ ଘନ ଘନ ଆକ୍ରମଣ ଓ ଓଡ଼ିଆ ବାହିନୀର ବୀରତ୍ୱ କବିଙ୍କୁ ଅବିଦିତ ନ ଥିଲା । ସେ ସ୍ୱକାବ୍ୟରେ ତାହା ବାଦ୍ ଦେଇ ନାହାନ୍ତି । ବିଶ୍ୱାନନ୍ଦଙ୍କ ବଦରିକା ଯାତ୍ରାପଥରେ ରାକ୍ଷସ ସହିତ ସଂଗ୍ରାମ, ଚନ୍ଦ୍ରଭାନୁଙ୍କ ଦସ୍ୟୁଙ୍କ ଦମନ ପ୍ରଭୃତି ଚରିତ୍ରରେ ତାହା ଅନୁଭବ କରି ହୁଏ । ଓଡ଼ିଆ ସୈନିକମାନେ ସେତେବେଳେ ଯେଉଁ ଅସ୍ତ୍ରଶସ୍ତ୍ର ବ୍ୟବହାର କରୁଥିଲେ, ତାର ସୂଚନା, ନାମ କବି କାବ୍ୟରେ ସ୍ଥାନେ ସ୍ଥାନେ ଦେଇଛନ୍ତି ।—"ମର୍କଟ ନଳରୁ ବାହାରେ ଯାଉଛି କି ଅତି ଜ୍ୱଳିତ ଗୁଳି ଯେ," ଚର୍ମ ଆଢ଼ୁଣୀ ଖଡ୍ଗ ଚର୍ମବାର; ଉନାତରବାରି ବୃନ୍ଦ ଯମଦର', 'ଶୃଙ୍ଗ କମାଣ' ତୀର ଗୃତକ ପନ୍ତି, ମାନଦଣ୍ଡସାୟକ ଉଦ୍ଭମ ପନ୍ତି, "ତୁରଙ୍ଗମକୁ ଧୂଆଁଇ ହାଣିଲେ ସୁରଙ୍ଗତର ହୋଇ ତରବାରି ।" ଇତ୍ୟାଦି ।

ଓଡ଼ିଆ ଚତୁରଙ୍ଗ ବାହାରିବା ଦୃଶ୍ୟ—

"ଗର୍ବକରି ଊର୍ଦ୍ଧ୍ୱେ ବାନା ଉଡ଼ାଇ,
ଏମନ୍ତେ ଚତୁରଙ୍ଗ ଚଳିଯାଇ ।" ଲା: ବ: ।

Digitized by srujanika@gmail.com

## ପ୍ରଧାନ ପଣ୍ୟଜିନିଷ—

ଉପେନ୍ଦ୍ରଙ୍କ ସମୟରେ ଇଂରେଜମାନେ ଶାସକମାନଙ୍କ ଅନୁମତିରେ ହରିହରପୁର, ହିଜଳି, ପିପିଲି, ପୁରୀ ଓ ବାଲେଶ୍ୱରରେ ବାଣିଜ୍ୟ କୋଠିମାନ ସ୍ଥାପନ କରିଥିଲେ । ପାଶ୍ଚାତ୍ୟ ଜଳଦସ୍ୟୁ ଓ ଆଫଗାନମାନଙ୍କ ଉତ୍ପୀଡ଼ନରେ ସେମାନଙ୍କୁ ବହୁକ୍ଷତି ଓ କ୍ଳେଶ ସହ୍ୟକରିବାକୁ ପଡ଼ିବାରୁ, ଅନ୍ୟାନ୍ୟ ସ୍ଥାନର ବାଣିଜ୍ୟକୋଠି ବନ୍ଦକରି ବାଲେଶ୍ୱରକୁ ସେମାନେ ଦୃଢ଼ ଓ ନିରାପଦ ଅବସ୍ଥାରେ ରଖିଥିଲେ । ଓଡ଼ିଶାର ସେତେବେଳେ ପ୍ରଧାନ ପଣ୍ୟଜିନିଷ ଥିଲା—ଝୀନବସନ, ପାଟ, ଟସର ଶଂଖ ଓ ହାତୀଦାନ୍ତ କାମ । ଏହି ବ୍ୟବସାୟରେ ବହୁତ ଲାଭ ହେଉଥିବାରୁ ଇଂରେଜ ଓ ପର୍ତ୍ତୁଗିଜ ବଣିକମାନଙ୍କ ପଥ ଅନୁସରଣକରି ଫରାସି, ଡଚ, ଡିନାମାର ପ୍ରଭୃତି ୟୁରୋପୀୟ ବଣିକମାନେ ଓଡ଼ିଶାରେ ବିଶେଷତଃ ବାଲେଶ୍ୱରରେ ବାଣିଜ୍ୟ କୋଠିମାନ ସ୍ଥାପନ କରିଥିଲେ । ଓଡ଼ିଶାରେ ଝୀନବସନ ସର୍ବତ୍ର ଆଦୃତ ହେଉଥିଲା, କମ ଦାମରେ ବିକି ହେଉଥିଲା । ଗୋଟିଏ ଶାଢ଼ୀ ଗୋଟିଏ ଗେଣ୍ଡା ବା ଗୋଟିଏ ବଂଶନଳୀରେ ରଖିହୁଏ । ଶିଳ୍ପକଳାକେନ୍ଦ୍ର ଓଡ଼ିଶାର ଝୀନଶାଢ଼ୀ ପ୍ରସଙ୍ଗରେ କବି କହନ୍ତି—

"ବାହାର କଲେ ନୀଳ ଝୀନ ଶାଢ଼ୀ,
ସିନ୍ଦୁରି ଧଡ଼ୀ ଫୁଲଲିଙ୍ଗ ପଡ଼ି ।
ରଖିଲେ ରହିବ ମୁଠାଭିତରେ,
ସତେ ରଖିଥିଲେ ବଂଶନଳୀରେ ସେ,
ଉଝିଲେ କୁଝିଲେ ସଖୀ ଯେ,
ବାଲାବଳ ଆଖି କାଛୁ ପିନ୍ଧାଇଲେ
ଉପମାଏ ରୁଣ୍ଡ ଦେଖି ଯେ ।" ଲା: ବ: ।

## ଗଜଦନ୍ତ କାମ ବିଷୟରେ—

" ଫେଇ ସୁଗନ୍ଧ ଧୂମେ ଧୂପ ଦେଇ,
ଗଜଦନ୍ତ-କଙ୍କଣକା ଚଳାଇ ।" ଇତ୍ୟାଦି । କୋ: ବ୍ର: ସୁ: ।

## ସମୁଦ୍ର ବାଣିଜ୍ୟ—

ଓଡ଼ିଆ ବଣିକମାନେ ସମୁଦ୍ର ପାର ହୋଇ ଦୂରଦେଶ ସହିତ ବାଣିଜ୍ୟ ଚଳାଉଥିଲେ । ଓଡ଼ିଶାର ପ୍ରଧାନ ବନ୍ଦର ଥିଲା—ବାଲେଶ୍ୱର, ହିଜଳି, ପିପିଲି, କନକା, ଧାମରା, ହରିଶପୁର, ଜମ୍ବୁ, ପୁରୀ ଓ ଚିଲିକା । ଏହି ବନ୍ଦରମାନଙ୍କରେ ବିଶେଷତଃ ବାଲେଶ୍ୱର ବନ୍ଦରରେ ଜାହାଜ ଠିଆ ହୋଇଥିଲା । ସଭ୍ୟତା, ସଂସ୍କୃତିର ମାନଦଣ୍ଡ ହେଉଛି ବାଣିଜ୍ୟ, ପ୍ରଧାନତଃ ସମୁଦ୍ର ବାଣିଜ୍ୟ । କବିକାବ୍ୟରେ ତାହା ବାଦ ଦେଇନାହାନ୍ତି, ସ୍ଥାନେ ସ୍ଥାନେ ସେ କହନ୍ତି—

"ବହିତ୍ର ଲଗିଲା ଯାଇ ସିଂହଳଦ୍ୱୀପରେ ।" ଇତ୍ୟାଦି ।

ଅନ୍ୟତ୍ର କହନ୍ତି— "ମୁଁ ବହିତ୍ର ବଣିକ କରିଛି ଉପାସ୍ୟ ବଳରେ ।" ଇତ୍ୟାଦି ।

ଲା: ବ: ।

Digitized by srujanika@gmail.com

ସତ୍ୟସ୍ୱଭାବର ପ୍ରଭାବମ୍ମ—ମନୁଷ୍ୟର ଗୁଣ ଦୋଷ ଆଗ୍ରର ବ୍ୟବହାରରୁ ଧରାଯାଏ, ଲୋକ ମୁହଁରୁ ଶୁଣାଯାଏ, ତାହା ଜଗତରେ ସ୍ୱତଃ ପ୍ରତିଫଳିତ ହୋଇପଡ଼େ। ଶ୍ରୋତାଙ୍କ ମନରେ ଦୃଢ଼ବିଶ୍ୱାସ ପାଇଁ ବୋଇଥିଲେ ସ୍ପଷ୍ଟରେ "ବୋଇଲା ଆତ୍ମ ପୁରେ ଏତେ କଥା। ଯେଉଁ ପ୍ରଥମ ପଦରେ ନାହିଁ ମିଥ୍ୟା।" ମିଥ୍ୟା ଛାଡ଼ିବା ବ୍ୟକ୍ତି ମନ୍ଦକାର୍ଯ୍ୟ କରେ ନାହିଁ, ପାପତାପରୁ ମୁକ୍ତ ହୁଏ। ତାହା ସାଧନାସାପେକ୍ଷ। ସତ୍ୟ ଆଦର୍ଶ ସମ୍ମୁଖରେ ଥିଲେ ତାହା ସହଜସାଧ୍ୟ ହୁଏ। କବିଙ୍କ ହୃଦୟର ଉକ୍ତ ପ୍ରଭାବମ୍ମ ଜଗତରେ ଦୃଢ଼ଭାବରେ ପ୍ରତିଫଳିତ ହେବାପରେ ଦୃଷ୍ଟିଗୋଚର ହେଉଛି—

"ପରଦ୍ରବ୍ୟ ପରସ୍ତ୍ରୀ ଅପହରଣକୁ,
ଲେଖି ଶୁଭକର ତହୁଁ ମରଣକୁ।"

ଶେଷରେ ସେ କେତେକ ଜ୍ଞାତବ୍ୟ ବିଷୟ ଜ୍ଞାପନ କଲେ—

"ନାହିଁ ଖଳ ଦୁର୍ଜନ ନିର୍ଧନ ଜନ,
ଶୁଣିଲାର ପ୍ରସଙ୍ଗ ନ କହୁଁ ପୁନ।"

ସେହିପରି କୋଟିବ୍ରହ୍ମାଣ୍ଡସୁନ୍ଦରୀରେ ଅତିଥିସତ୍କାର, ଯଜ୍ଞ, ନାମସ୍ମରଣ, ତୀର୍ଥପୀଠ ପର୍ଯ୍ୟଟନ, ପୌରୁଷ-ଅର୍ଜନ, ତ୍ରିତାପନାଶନ, ଓ ମୂଳତଃ ତ୍ରିବର୍ଗ ଫଳ ସମ୍ପାଦନ ଉଦ୍ଦେଶ୍ୟରେ ନିମ୍ନୋକ୍ତ ପଂକ୍ତିରେ କବି କହନ୍ତି—

| | | |
|---|---|---|
| " ଭୂଦେବମାନେ ଯଜ୍ଞ କରିବାରେ | । ବହୁତ ସୁବର୍ଣ୍ଣ ଗଣି ଦେବାରେ | ॥ |
| ଘନମଧୂପରି ସଦା ଆକାଶ | । ଅତିଥିପୂଜନେ ଧର୍ମ ପ୍ରକାଶ | ॥ |
| ଯାଚକ କାମନା ସମ୍ପୂର୍ଣ୍ଣ କରି | । ବଇରିବୃନ୍ଦର ଅର୍ଥକୁ ଜୁରି | ॥ |
| ଉଦିତ ତିନବର୍ଗ ଆତ୍ମ ପୁରେ | । ସମର୍ଥ ତିନତାପ ନାଶିବାରେ | ॥ |
| ରାମ ନାମକୁ ଜପ କରୁଥାଇ | । ମୋକ୍ଷରେ ଆଉ ସେ ସଂଶୟ ନାହିଁ | ॥ |
| ସାକ୍ଷାତେ କରନ୍ତାଇ ଦରଶନ | । ଯିବା ଛଳାରେ ବଦରିକାବନ | ॥ |
| ପୁରେ ଆସିଥାନ୍ତି ସେହି ନଗରେ | । ଭେଟ ହୋଇବା ତାହାଙ୍କ ସଙ୍ଗରେ | ॥ |
| ପଥେ ଅନେକ ଥିଲେ କେହି କେହି | । ମହିମା ଆରମ୍ଭ କରିବ ତହିଁ" | ॥ |

ମାନବଜାତିର ପୂର୍ଣ୍ଣ ବିକାଶ ପାଇଁ ନିଷ୍ଠାର ସହିତ ଯାହା କରିବା କର୍ତ୍ତବ୍ୟ, କବି ସେ ସମସ୍ତର ଇଙ୍ଗିତ ସେଥିରେ ସଂକ୍ଷେପରେ ସନ୍ନିବେଶିତ କରିଛନ୍ତି। କବିଙ୍କ ପ୍ରତ୍ୟେକ କାବ୍ୟ ଏତାଦୃଶ ସାରଗର୍ଭକ ଆଦର୍ଶ ଚୟନରେ ପୂର୍ଣ୍ଣ। ଉପଦେଶାମୃତ ପରିଚ୍ଛେଦରେ ତହିଁର କେତେକାଂଶ ଦ୍ରଷ୍ଟବ୍ୟ। ତାହା କବିଙ୍କ ସତ୍ୟସ୍ୱଭାବ ଓ ବିଶାଳ ହୃଦୟବତ୍ତାର ପରିଚୟ ଦିଏ।

## ପ୍ରାକୃତିକ ଉପାଦାନ—

କବିଙ୍କ ଜନ୍ମସ୍ଥାନ ଗୁମୁସର ପ୍ରାକୃତିକ ଦୃଶ୍ୟାବଳୀରେ ପୂର୍ଣ୍ଣ। ବାଗ୍‌ଦେବୀ ପାହାଡ଼ର ପାଦଦେଶରେ କବିଙ୍କ ଆବାସଭବନ ଥିଲା। ତାହା କଳାଧାର, କୁଆଁରଣୁଣୀ, ବୁଢ଼ୀଖୋଲ, କଳିଙ୍ଗା ପ୍ରଭୃତି ପର୍ବତ ପାହାଡ଼ ଦ୍ୱାରା ପରିବେଷ୍ଟିତ ଥିଲା। ସମୀପବର୍ତ୍ତୀ ପଶୁପକ୍ଷୀସେବିତ, ଫୁଲଫଳଭୂଷିତ ଓ ଝରଣା ଝଙ୍କାରିତ କାନନଶ୍ରେଣୀ କବିଙ୍କୁ କାବ୍ୟସାମ୍ରାଜ୍ୟର ସମ୍ରାଟ ଆସନ ପାଇଁ ସ୍ୱାଗତ କରୁଥିଲା।

Digitized by srujanika@gmail.com

ଭାରତର ନଦନଦୀ' ବନ ପର୍ବତ, ସମୁଦ୍ର, ହ୍ରଦ, ସରୋବର, ପ୍ରଦେଶ, ମନୁଷ୍ୟ, ପଶୁପକ୍ଷୀର ଅସଂଖ୍ୟ ଚିତ୍ର ସଙ୍ଗେ ଉତ୍କଳର ବିଭିନ୍ନ ଦୃଶ୍ୟାବଳୀ କାବ୍ୟରେ ଦୃଷ୍ଟ ହୋଇଥିଲେ ମଧ୍ୟ, ବାସସ୍ଥାନର ନବଜନସୁଲଭ ପ୍ରାକୃତିକ ଦୃଶ୍ୟାବଳୀ କବିଙ୍କୁ ଅନ୍ତରଙ୍ଗ ପ୍ରଭାବିତ କରୁଥିଲା । ପ୍ରତିଭା, ପାଣ୍ଡିତ୍ୟ, ପ୍ରତ୍ୟୁତ୍ପନ୍ନମତିତା ସଙ୍ଗେ ପାରିପାର୍ଶ୍ୱିକ ପ୍ରାକୃତିକ ପ୍ରେରଣା କବିଙ୍କ କାବ୍ୟରେ ଅଙ୍ଗାଙ୍ଗୀ ଭାବରେ ଯେ କେ ସ୍ଥାଶୀଳ ତାହା ନିମ୍ନଲିଖିତ ଚିତ୍ରରୁ ବୁଝାଯିବ—

"ବୋଧେ ଶୃଙ୍ଖଳାରେ ରଘୁନାଥ ସୀତା ମତ,
ବିଚିତ୍ର ଚିତ୍ରକୂଟ ଯେ ଲୁଟନ୍ତେ ବ୍ରତତୀ ଯେ ।
ବ୍ରତତୀତତି ଜୟନ୍ତୀ ଅତିଭା ବାସନ୍ତୀ,
ବାସନ୍ତୀ ସତିରେ ଫୁଲ୍ଲ ଫୁଲରେ ପ୍ରବର୍ତ୍ତି ଯେ ।
ବର୍ତ୍ତିକତିକ ଆଳି ଅଳି ଯେ ବିହ୍ୱରେତ,
ବିହ୍ୱେତ ମାନ ମାନ ଶୁକ ଶୁକବନ୍ତ ଯେ ।
ବିତର ତରଳନେତ୍ର ମେଘସୁବାସିନୀ,
ବାସିନୀ ସୁଜାତି ନାରୀ ସ୍ୱଭାବଭାବିନୀ ଯେ ।
ବିନସ୍ତ ସ୍ୱତ ଶୋଭିତ ଖ୍ୟାତ ବୈଭ୍ରାଜ,
ବୈଭ୍ରାଜ ସୁରସା ରସା କରକ ର ଖଜ ଯେ ।
ବୋଧନ୍ତ ରାମ ସିଂହାବଲୋକନେ ଅବଲା,
ବଳାକାପନ୍ତ କଣ୍ଠ ଧ୍ରୁବକୁ ଧବଳା ଯେ ।
ବଳାଇ ମାନସମାନଅନା ପ୍ରାଣବନ୍ଧୁ,
ବନ୍ଧୁକ ରଞ୍ଜନ ଅତି ରଙ୍ଗନର ବନ୍ଧୁ ଯେ ।
ବନ୍ଧୁରପଅଟି ହେଳ ହେଳ ପଦ ବଳା,
ବାଲାଧୂନ ପ୍ରାପ୍ତେ ଝଙ୍କି ଶବଦପ୍ରବଳା ଯେ ।
ବଳାପନ୍ତ ଫଳବତୀ ପ୍ରଫୁଲ୍ଲ ସେବତୀ,
ବତସଲକ୍ଷଣା ଦେଖି ବହ୍ନିରେ ପାର୍ବତୀ ଯେ ।
ବତୀର୍ଣ୍ଣ ଅପୂର୍ବ ହୋଇ କେତେ ନାଗବଲ୍ଲୀ,
ବଲ୍ଲିକା ତଳେ ଶୟନ ଭ୍ରମରାଆବଳୀ ଯେ ।
ବଳିବ ଚଇତ ରଥୁଁ ଏମନ୍ତ ଭାବନା,
ବନାଳୀ ପ୍ରଭୁ କରିଣ କର ସମ୍ଭାବନା ଯେ ।" ଇତ୍ୟାଦି ।

ଏଥିରେ ବ୍ୟବହୃତ ବିଭିନ୍ନ ବୃକ୍ଷ, ପକ୍ଷୀ, ଫୁଲ, ଫଳ ଗୁମୁସର ଅରଣ୍ୟରେ ଅପର୍ଯ୍ୟାପ୍ତ । "ବୃଷାଳ ସାଳ" ପାଇଁ ଗୁମୁସର ଅରଣ୍ୟାନୀ ପ୍ରସିଦ୍ଧ । ସୁତରାଂ କବିଙ୍କ କାବ୍ୟର ଅଧିକାଂଶ ପ୍ରାକୃତିକ ଉପାଦାନ ପାରିପାର୍ଶ୍ୱିକ ପ୍ରାକୃତିକ ଦୃଶ୍ୟାବଳୀରୁ ଗୃହୀତ ।

---

ବ୍ରତତୀତତି—ଲତାସମୂହ, ଲୁଟନ—ଗେଣ୍ଡମଲ୍ଲିକା, ବାସନ୍ତୀ—ମାଧବୀଲତା, ବର୍ତ୍ତିକ—ବର୍ଣ୍ଣିଚଢ଼େଇ ତିତ—ବାଘୁଆଚଢ଼େଇ, କରକ—ଡାଳିମ୍ବ, ବାରଣବୃଷା—କଦଳୀ ଗଛ, ବୃଷାଳ ସାଳ—ବଡ଼ ସାଳଗଛ, ବଳାକାପନ୍ତ—ବକପକ୍ଷୀସମୂହ, ବଳାପନ୍ତ—ବାଡ଼ି ଅଇଁଳା, ନାଗବଲ୍ଲୀ—ପାନଲତା, କୁବେରରଥ—କୁବେରଙ୍କ ଉଦ୍ୟାନ ।

Digitized by srujanika@gmail.com

ପ୍ରକୃତିବର୍ଣ୍ଣନରେ କବି ସିଦ୍ଧହସ୍ତ । ପ୍ରତ୍ୟେକ କାବ୍ୟରେ ପ୍ରାକୃତିକ ଆଲେଖ୍ୟ ଅଳ୍ପ ବହୁତ ଅଛି । କବିଙ୍କ ସାମର୍ଥ୍ୟ ଏ ଦିଗରେ ଅତୁଳନୀୟ ବୋଧହୁଏ ବୈଦେହୀଶବିଳାସରେ । ତାହା ପ୍ରଣିଧାନର ବିଷୟ ।

## ଅଳ୍ପ ସମୟରେ ବହୁ ଗ୍ରନ୍ଥ ପ୍ରଣୟନ—

ଜୀବଦଶାରେ କବି ଦୁଇଟି ପ୍ରସିଦ୍ଧ ସାଧନାରେ ଆଶାତୀତ ସିଦ୍ଧିଲାଭ କରିଥିଲେ । ୧ମ ହେଉଛି— ବହୁ ଶାସ୍ତ୍ରରେ ପୂର୍ଣ୍ଣ ପାଣ୍ଡିତ୍ୟଲାଭ, ୨ୟ ହେଉଛି—ଅସଂଖ୍ୟ କାବ୍ୟ ପ୍ରଣୟନ । କବିଙ୍କ ଅଗାଧ ପାଣ୍ଡିତ୍ୟ ହେଉଛି ଅଲୌକିକ କବିତାଉତ୍ସର ମୂଳଦୁଆ । ତାଙ୍କ ରଚନାର ପ୍ରାୟ ପ୍ରତ୍ୟେକ ପଂକ୍ତି ଉପମାଉପମେୟ-ବିଶିଷ୍ଟ ଅପୂର୍ବ ଶବ୍ଦ ଯୋଜନା, ବିଭିନ୍ନ ଅଳଙ୍କାର ଓ ବନ୍ଧର ପ୍ରୟୋଗକୌଶଳ, ବହୁ ଅର୍ଥବୋଧକ ରଚନାଚାତୁରୀ, ଭାବବ୍ୟଞ୍ଜକ ପ୍ରାକୃତିକ ବର୍ଣ୍ଣନାବୈଚିତ୍ର୍ୟ ପାଠକ ହୃଦୟରେ ଯୁଗପତ୍ ଆନନ୍ଦ ବିସ୍ମୟ ଆନୟନ କରେ । କବି କେବଳ ପଚିଶ ବର୍ଷ ମାତ୍ର ଜୀବିତ ଥିବାରୁ, ସ୍ୱଳ୍ପକାଳ ମଧ୍ୟରେ ଏତାଦୃଶ ବହୁ ଗ୍ରନ୍ଥ ପ୍ରଣୟନ ଅନାୟାସରେ ସମାହିତ ହୋଇଥିବା ଅନୁମିତ ହୁଏ ।

ଗ୍ରନ୍ଥମୁଦ୍ରଣ ଓ ବ୍ୟାପକ ପ୍ରଚାରର ସୁବିଧା ନ ଥିଲେ ଲେଖକମାନେ ହତାଶ ହୁଅନ୍ତି । ତଦ୍ରୂପ ମନୋଭାବ କବିଙ୍କ ସାହିତ୍ୟିକ ସାଧନାରେ ବାଧା ଦେଇ ନ ଥିଲା । କବିଙ୍କ ସମୟରେ କାଗଜର ପ୍ରଚଳନ ଥିବା "ଆଣି କାଗଜକୁ ନବଢାଳୀ" "କାଗଜ ମଞ୍ଜି ଷ୍ଟାରସ ସହିତ" ପ୍ରଭୃତିରୁ ଜଣାଯାଉଥିଲେ ମଧ୍ୟ କବି ତାଳପତ୍ରରେ ଲେଖିଥିଲେ । ରଚନାରେ କୌଣସି ପରିବର୍ତ୍ତନ ଓ ସଂଶୋଧନ ଆବଶ୍ୟକ ହେଲେ କାଗଜରେ ଯେପରି ସହଜରେ କରି ହେବ, ତାଳପତ୍ରରେ ସେହିପରି କରି ହେବ ନାହିଁ । କବି ଅଳ୍ପ ସମୟରେ ଅସଂଖ୍ୟ ଗ୍ରନ୍ଥ ତାଳପତ୍ରରେ ଲେଖିଥିବାରୁ ତାଙ୍କ ପକ୍ଷରେ କାବ୍ୟ ଓ କବିତା ରଚନା ସହଜସାଧ୍ୟ ଥିବା ଅନୁମିତ ହୁଏ ।

କବି 'ଅଷ୍ଟାବଧାନୀ' ସାଧକ ଥିବା ଶୁଣାଯାଏ । "ଭବ ବିରଞ୍ଚିପୂଜିତ ହେ ଭବ-ବିରଞ୍ଚି", "କବି ଉପେନ୍ଦ୍ର ତବ କୃପାରେ ହୋଇଛି, ଏତେ ମନୋରଥ ସାର୍ଥେ କି ସଂଶୟ ଅଛି", କହିବା କବିଙ୍କଠାରେ 'ଅଷ୍ଟାବଧାନୀ' ସାଧନାରେ ଯଶସ୍ୱିତା ଅତି ସାଧାରଣ କଥା ।

## ବିଭିନ୍ନ ଧର୍ମବାଦ ପ୍ରତି ସମ୍ମାନ ଓ ଜଗନ୍ନାଥ ରହସ୍ୟ:—

ଉପେନ୍ଦ୍ର ଭଞ୍ଜ "ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠନାଥ ସାକ୍ଷାତ" କହନ୍ତି । ସେ ଏହି ମର୍ମରେ ପ୍ରତ୍ୟେକ ଗ୍ରନ୍ଥର ପ୍ରତ୍ୟେକ ଛାନ୍ଦ ଭଣିତରେ କହିଛନ୍ତି, ଯଥା—

"କହେ ଉପେନ୍ଦ୍ର ଭଞ୍ଜ ଶ୍ରୀରାମ ସୁମରି, ବୈକୁଣ୍ଠ ଲଭିବ ଭବସିନ୍ଧୁ ତରି ।" କୋ: ବ୍ର: ପୁ: ।

"ଦାଶରଥିର ଦାସରଥୀର ଭକ୍ତ ଉପେନ୍ଦ୍ର ଧ୍ୟାୟେ ।"
"ରଘୁପତି ଶ୍ରୀପଦ୍ମର, ଭାବେ ଉପେନ୍ଦ୍ର ଭଞ୍ଜ ବୀରବର ।" ଲା: ବ: ।

ଯଥାର୍ଥରେ ସେ ରାମଭକ୍ତ ବା ପରମ ବୈଷ୍ଣବ ହେଲେ ମଧ୍ୟ ସେ ସକଳ ଧର୍ମ ସମ୍ପ୍ରଦାୟକୁ ସମ୍ମାନ କରୁଥିଲେ । ପୁଣ୍ୟଭୂମି ଉତ୍କଳ ବୈଦିକ, ଜୈନ, ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ ପ୍ରଭୃତି ସମନ୍ୱିତ କ୍ଷେତ୍ର । ଏ ସମସ୍ତ ବିଭିନ୍ନ ମତବାଦ ଭାରତରୁ ଉତ୍କଳ କ୍ଷେତ୍ରରେ ଦେଖା ଦେଇ ଭାରତରେ କେତେକ ଲୁପ୍ତ ହୋଇଥିଲେ ମଧ୍ୟ କୌଣସି ମତବାଦ ଏକାବେଳକେ ଓଡ଼ିଶାରୁ ଲୁପ୍ତ

Digitized by srujanika@gmail.com

ହୋଇନାହିଁ । ଓଡ଼ିଶାର ବିଭିନ୍ନ ରାଜା ଭିନ୍ନ ଭିନ୍ନ ମତବାଦର ପରିପୋଷକ ଥିଲେ ମଧ୍ୟ କେହି କୌଣସି ମତବାଦକୁ ଘୃଣା ଚକ୍ଷୁରେ ଦେଖି ନାହାନ୍ତି । ତାହା ଓଡ଼ିଶା ପକ୍ଷରେ ଗୌରବର କଥା । ଓଡ଼ିଶାର ଏହି ମହତ ଆଧ୍ୟାତ୍ମିକ ପରମ୍ପରା ଉପେନ୍ଦ୍ର ଭଞ୍ଜ କାବ୍ୟରେ ରକ୍ଷା କରି ବିଭିନ୍ନ ଧର୍ମ ସମ୍ପ୍ରଦାୟ ପ୍ରତି ସମ୍ମାନ ପ୍ରଦର୍ଶନ କରିଛନ୍ତି । ବିଶେଷତଃ କବିଙ୍କ ଜଗନ୍ନାଥପ୍ରଶସ୍ତି ପ୍ରଣିଧାନର ବିଷୟ । ସେ ସେଥିରେ ବହୁ ଗୂଢ଼ତତ୍ତ୍ୱ ପ୍ରକାଶ କରି ଗଭୀର ଅଭିଜ୍ଞତାର ପରିଚୟ ଦେଇ ଅଛନ୍ତି । ଉପେନ୍ଦ୍ର ଭଞ୍ଜ ପୁରୀ ଆଗମନ ବେଳେ ଗୁମୁସର ମଠରେ ଅବସ୍ଥାନ କରୁଥିଲେ ଏବଂ ପ୍ରସିଦ୍ଧ ପଣ୍ଡିତ ବିଶ୍ୱନାଥ ମହାପାତ୍ରଙ୍କ ସହିତ ଶାସ୍ତ୍ରାଳାପରେ ଓ ଜଗନ୍ନାଥତତ୍ତ୍ୱ ଆଲୋଚନାରେ ବହୁ ସମୟ ଅତିବାହିତ କରୁଥିଲେ । ଶ୍ରବଣ ଓ ଅଧ୍ୟୟନରୁ ସଂଗୃହୀତ ତତ୍ତ୍ୱଜ୍ଞାନ ନାନା ନୂତନ ତତ୍ତ୍ୱ କବିଙ୍କ ବିଭିନ୍ନ କାବ୍ୟ ଓ ଚଉତିଶାରେ ଆତ୍ମପ୍ରକାଶ କରିଛି । କୋଟିବ୍ରହ୍ମାଣ୍ଡସୁନ୍ଦରୀ ୧ମ ଛାନ୍ଦର ଜଗନ୍ନାଥ ବର୍ଣ୍ଣନା ଅତ୍ୟନ୍ତ ତଥ୍ୟପୂର୍ଣ୍ଣ; ତାହା ଅନ୍ୟତ୍ର ଦିଆଯାଇଛି । ଏତଦ୍‌ବ୍ୟତୀତ ନୀଳାଦ୍ରୀଶ ଚଉତିଶା ଓ ପୁରୁଷୋତ୍ତମ ମାହାତ୍ମ୍ୟରେ ସେ ଜଗନ୍ନାଥତତ୍ତ୍ୱର ବ୍ୟାପକ ଆଲୋଚନା କରିଅଛନ୍ତି । ପୁରୁଷୋତ୍ତମ ମାହାତ୍ମ୍ୟରେ ସେ ଜଗନ୍ନାଥଙ୍କ ପୌରାଣିକ ବୃତ୍ତାନ୍ତ ସହିତ ଉତ୍କଳର ମୂର୍ତ୍ତିତତ୍ତ୍ୱ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଜଗନ୍ନାଥଙ୍କୁ 'ପୂର୍ଣ୍ଣବ୍ରହ୍ମ'ବୋଲି କହନ୍ତି । ନୀଳାଦ୍ରୀଶ ଚଉତିଶାରେ କେତେକ ସମସ୍ୟାର ସମାଧାନ କରାଯାଇଛି । ଜଗନ୍ନାଥଙ୍କ ଚତୁର୍ଦ୍ଧାମୂର୍ତ୍ତିରହସ୍ୟ ପ୍ରସଙ୍ଗରେ ସ୍କନ୍ଦପୁରାଣ ଅନୁସାରେ ଶ୍ରୀକୃଷ୍ଣଙ୍କ ରାଧାପ୍ରେମ ରହସ୍ୟ ରୁକ୍ମିଣୀ, ସତ୍ୟଭାମା ପ୍ରଭୃତିଙ୍କ ବୋଧଗମ୍ୟ ହେଲା ନାହିଁ । ସଂଶୟ-ମୋଚନାର୍ଥେ ସେମାନେ ତାହା ରୋହିଣୀଙ୍କୁ ଜିଜ୍ଞାସା କଲେ । ଉକ୍ତ ଗୋପନରହସ୍ୟ ପ୍ରକଟନ ବେଳେ ଶ୍ରୀକୃଷ୍ଣ ଓ ବଳରାମ କାଳେ ପହଞ୍ଚିଗଲେ ଅବସ୍ଥା ମାତ୍ରବିଗର୍ହିତ ହେବ, ସେହି ଆଶଙ୍କାଥିବାରୁ ଦ୍ୱାରଦେଶରେ ସୁଭଦ୍ରାଙ୍କୁ 'ଦ୍ୱାସ୍ଥ' ରୂପେ ନିଯୁକ୍ତ କରାଗଲା । ତ୍ରିକାଳଦର୍ଶୀଙ୍କୁ କୌଣସି କଥା ଅଗୋଚର ହୋଇ ନ ପାରେ । ଅପ୍ରକଟ ରହସ୍ୟ ଅନ୍ତଃପୁରରେ ଅତ୍ୟନ୍ତ ଗୋପନରେ ପ୍ରକାଶ ପାଉଥିବା ବେଳେ ସେମାନେ ଦ୍ୱାରଦେଶରେ ସହସା ପହଞ୍ଚି ଗୋପନୀୟ ରହସ୍ୟ ଶ୍ରବଣ କଲେ । ତଦ୍ଦ୍ୱାରା ସେମାନଙ୍କ ଶରୀର ଚତୁର୍ଦ୍ଧା ମୂର୍ତ୍ତିରେ ପରିଣତ ହେଲା । ନାରଦଙ୍କ ଆଜ୍ଞାରେ ତାହା ନୀଳାଚଳରେ ସ୍ଥାପନ କରାଗଲା । କବିଗୁରୁ ଉପେନ୍ଦ୍ର ଭଞ୍ଜ ନୀଳାଦ୍ରୀଶ ଚଉତିଶାରେ—ତାର ସୂଚନା ମାତ୍ର ଦେଇଛନ୍ତି—

"ଘଟଣ ଦେଖିବାରେ ଘନ ଘୋଟିଛି ବାରେ
ଘେନିଛ ପ୍ରଭୁ ଗୂଢ଼ତନୁ,
ଘଟସୂକ୍ତ ଭିଆଣି ଘରକୋଣେ ରୋହିଣୀ
ଘୋଟିବା ରାଧାତତ୍ତ୍ୱ ଦନୁଁ ହେ ନୀଳାଦ୍ରୀଶ ।

ଘରେ ସେ ଅପ୍ରକଟ ଛଟ
ଘଢ଼ିଏ ନ ସହିଲ ହଟ
ଘଉଡ଼ାଇ ହଳୀଙ୍କୁ ଘେନିଣ ଭଗିନୀଙ୍କୁ
ଘେନାଇ ଘେନିଲ ଏ ଘଟ । ହେ ନୀଳାଦ୍ରୀଶ ।"

ବ୍ରହ୍ମପୁରାଣ ଅନୁସାରେ ଜଗନ୍ନାଥଙ୍କ ପ୍ରଣବରୂପ ପ୍ରସଙ୍ଗରେ କବି ନୀଳାଦ୍ରୀଶ ଚଉତିଶାରେ କହନ୍ତି—

"ଛଟକରେ ଅକ୍ଷର ଛଳରେ ଆଦସ୍ୱର
ଫଣୀ ଶୁକଳ ହେଲେ ବର୍ଣ୍ଣ,

Digitized by srujanika@gmail.com

ଛଟକାରୀ ସେ ମାୟା ଉକାରେ ବଦ୍ଧ କାୟା
ବହନ୍ତ ବର୍ଣ୍ଣ ସେ ଅରୁଣ । ହେ ନୀଳାଦ୍ରୀଶ ।

ଛନ୍ଦ୍ରମେ ବନ୍ଧିଅଛ ରୂପ
ମକାର ମୀନର ସ୍ୱରୂପ
ଛନ୍ଦେ ପ୍ରଣବସାର ନିଗମର ବେଭାର
ଛଳେ ବନ୍ଧିଲ ଗୋପ୍ୟରୂପ । ହେ ନୀଳାଦ୍ରୀଶ ।"

କୋଟିବ୍ରହ୍ମାଣ୍ଡସୁନ୍ଦରୀରେ ଏହି ମତବାଦର ସୂଚନା କବି ନିମ୍ନମତେ ଦେଇ ଅଛନ୍ତି—

"ଭକ୍ତିଦେବୀ ଗୁପ୍ତ ହୋଇଅଛୁ ଯୁକ୍ତାକ୍ଷରେ
ବୈଷ୍ଣବ ବିହୀନେ କେବା ଜାଣିବ ସଂସାରେ ହେ ।"

## ଅନ୍ତିମ ବାଣୀ—

ଅନ୍ତିମ ଅବସ୍ଥାରେ ସାଧାରଣତଃ ମହାପୁରୁଷମାନେ ପରମେଶ୍ୱରଙ୍କଠାରେ ଆତ୍ମସମର୍ପଣ କରି ସମୟୋଚିତ ବାଣୀ ଶୁଣାନ୍ତି । କବି ଗୋପାଳକୃଷ୍ଣ କହିଥିଲେ—"ଜୀବ ଯିବାକୁ ହୋଇଲା ସଜ, ମନ ରାଧାଗୋବିନ୍ଦ ଭଜ ।" କବିସମ୍ରାଟ ଉପେନ୍ଦ୍ର ତଦ୍ରୂପ ନୀଳାଦ୍ରୀଶ ଚଉତିଶାରେ ପରମେଶ୍ୱରଙ୍କଠାରେ ଆତ୍ମସମର୍ପଣ କରି ଅନ୍ତିମ ବାଣୀ ଶୁଣାଇଛନ୍ତି । ସେଥିରେ ସେ ନୀଳାଦ୍ରୀଶଙ୍କ ଚରଣତଳେ 'କ୍ଷିତିଖ୍ୟାତି'କୁ ସମର୍ପଣ କରି ବିନୀତଭାବରେ ସକଳ ଅପରାଧ କ୍ଷମା କରିବାକୁ ପ୍ରାର୍ଥନା କରନ୍ତି—

"କ୍ଷମାନିଧିଙ୍କୁ ବାରେ କ୍ଷମ ମୁଁ ଦର୍ଶନରେ
କ୍ଷିତିଖ୍ୟାତିକୁ ସମର୍ପିଲି,
କ୍ଷମ ମୋ ଅପରାଧ କ୍ଷମ ମୋ ଜୀବ ରାଧ
କ୍ଷାତ ଚରଣ ତଳେ ଦେଲି । ହେ ନୀଳାଦ୍ରୀଶ ।

କ୍ଷୟ ତ ହେଲାଣି ଏ ପିଣ୍ଡ
କ୍ଷାଳ ଏ ଜନ୍ମାନ୍ତର ଦଣ୍ଡ
ଖ୍ୟାତି ଏ ଉପେନ୍ଦ୍ରର ଭଞ୍ଜକୁଳ ବେଭାର
ଚରଣ ତଳେ ହେଉ ରୁଣ୍ଡ । ହେ ନୀଳାଦ୍ରୀଶ ।"

କବିଙ୍କ ଶେଷ କାବ୍ୟ—'କୋଟିବ୍ରହ୍ମାଣ୍ଡସୁନ୍ଦରୀ' ଶେଷ ଜଣାଣ—'ନୀଳାଦ୍ରୀଶ ଚଉତିଶା' ବୋଲି ଗ୍ରହଣ କରାଯାଇପାରେ ।



Digitized by srujanika@gmail.com

# ସମାଲୋଚନା

**ଅନୁକୂଳ ଆଲୋଚନା:—**

ନିରପେକ୍ଷ ସମାଲୋଚନା ଯେ କୌଣସି ଦେଶ, ଅନୁଷ୍ଠାନ ଓ ବ୍ୟକ୍ତିବିଶେଷଙ୍କ ପକ୍ଷରେ କଲ୍ୟାଣକର । ଗୁରୁତ୍ୱଶୂନ୍ୟ ବିଷୟ ଅଜ୍ଞ ବ୍ୟକ୍ତିଙ୍କ ସମାଲୋଚ୍ୟ ସାମଗ୍ରୀ ହୋଇପାରେ ନାହିଁ । ଭଞ୍ଜ-ସାହିତ୍ୟର ଗୁରୁତ୍ୱ ଏତେ ବେଶି ଯେ, ନିଖିଳ ଓଡ଼ିଶାର ପ୍ରାୟତଃ ପ୍ରତ୍ୟେକ ଲବ୍ଧପ୍ରତିଷ୍ଠ କବି, ଲେଖକ, ସାହିତ୍ୟିକ ଭଞ୍ଜସାହିତ୍ୟ ସମାଲୋଚନାରେ ପ୍ରାୟ ଦୀର୍ଘ ୧୦ ବର୍ଷ ଯାଏ, ୧୮୯୦—୧୯୦୦ ପର୍ଯ୍ୟନ୍ତ ଯୋଗଦେଇ ଭଞ୍ଜସାହିତ୍ୟ ସମ୍ପଦକୁ ଅମୂଲ୍ୟ ଓ ଅମର କରିଛନ୍ତି । ସେହି ଦିନଠାରୁ ଓଡ଼ିଶାରେ 'ସମାଲୋଚନା'ର ଶୁଭପାତ ହୋଇଅଛି । ଖ୍ରୀ: ୧୮୭୦—୭୫ ଯାଏ ବଙ୍ଗଳାରେ ଇଂରେଜ ଓ ସଂସ୍କୃତ-ସାହିତ୍ୟ ନେଇ ଯେପରି ତୀବ୍ରସମାଲୋଚନା-ବାତ୍ୟା ପ୍ରବାହିତ ହୋଇଥିଲା, ※ ଭଞ୍ଜସାହିତ୍ୟ-ସମାଲୋଚନା-ତୋଫାନ ଠିକ୍ ସେହିପରି ଖ୍ରୀ: ୧୮୯୦ରେ ଓଡ଼ିଶାରେ ଦେଖାଦେଇ, ଓଡ଼ିଶାବାସୀଙ୍କ ସମ୍ମୁଖରେ ଗୋଟାଏ ନୂତନ ସମାଲୋଚନା ପଥ ଉନ୍ମୁକ୍ତ କରିଥିଲା । ଓଡ଼ିଶାର ତଦାନୀନ୍ତନ ବିଶିଷ୍ଟ ମୁଖପତ୍ର 'ଉତ୍କଳଦୀପିକା'ରେ ଭଞ୍ଜସାହିତ୍ୟ ସମାଲୋଚନାର ଅପ୍ରମାରମ୍ଭ ହେଲା । ଉତ୍କଳଦୀପିକା କିନ୍ତୁ ବହୁ ସମୟ ନିଜର ସଙ୍କୀର୍ଣ୍ଣ କୋଡ଼ରେ ବହୁ ବିଶିଷ୍ଟ ସମାଲୋଚକଙ୍କ ସ୍ତୂପୀକୃତ ସମାଲୋଚନାକୁ ସ୍ଥାନ ଦେଇପାରିଲା ନାହିଁ । ସଙ୍ଗେ ସଙ୍ଗେ ଓଡ଼ିଶାର ନିର୍ମଳ-ନୀଳ-ସାହିତ୍ୟ-ଗଗନରେ 'ଇନ୍ଦ୍ରଧନୁ' 'ବିଜୁଳି' ନାମରେ ଦୁଇଟି ସାପ୍ତାହିକ-ସମ୍ବାଦ-ପତ୍ରିକା ଦେଖାଦେଲେ । 'ଇନ୍ଦ୍ରଧନୁ', କଟକରେ 'ବିଜୁଳି' ବାମଣ୍ଡାରେ ପ୍ରକାଶ ପାଉଥିଲେ ମଧ୍ୟ, ଓଡ଼ିଶାର ପ୍ରାୟ ପ୍ରତ୍ୟେକ ସାହିତ୍ୟଭକ୍ତଙ୍କ ତାହା ଥିଲା ସାହିତ୍ୟ ନୀଳାଚଳ-ପୀଠ; କିଏ ପାଠକ, କିଏ ବା ସମାଲୋଚକ ଭାବରେ ସେଥିରେ ଯୋଗଦେଇ ପତ୍ରିକା ଦୁଇଖଣ୍ଡିକୁ ଦିନାକେତେ ଜୀବିତ କରିବା ସଙ୍ଗେ ସଙ୍ଗେ ଭଞ୍ଜସାହିତ୍ୟର ଚିରଦିନ ପାଇଁ ଶ୍ରୀ ସମ୍ପାଦନ କରିଥିଲେ । ଉତ୍କଳର (Wordsworth) ପଲ୍ଲୀକବି ୬ ନନ୍ଦକିଶୋର ବଳ, ୬ ଫକୀରମୋହନ ସେନାପତି, ୬ଶ୍ୟାମସୁନ୍ଦର ରାଜଗୁରୁ, ଉତ୍କଳମଣି ୬ଗୋପବନ୍ଧୁ, ଭଞ୍ଜସାହିତ୍ୟର ବହୁମୁଖୀ ବୈଶିଷ୍ଟ୍ୟ ବିଶ୍ଳେଷଣ କରି ସେତେବେଳେ ଅମରଲେଖନୀ ଚାଳନା କରିଥିଲେ । ଯେଉଁ ସାହିତ୍ୟ—ଶିକ୍ଷିତ, ଅଶିକ୍ଷିତ, ଯୁବକ, ଯୁବତୀ, ନର୍ତ୍ତକ, ନର୍ତ୍ତକୀ, ଭିକ୍ଷୁକ, ଶ୍ରମିକ, ପ୍ରେମିକ-ଦ୍ୱାରା ଆଦୃତ, ବ୍ୟବହୃତ, ପଠିତ ଓ ପ୍ରଗୃହୀତ ହୁଏ, ତାହା ଉଚ୍ଚକୋଟୀର ସାହିତ୍ୟ ବୋଲି ବିବେଚିତ ହୁଏ । ଜଗତରେ ହୋମର, ସେକ୍ସପିଅର, କାଳିଦାସ ପ୍ରଭୃତିଙ୍କ ଲେଖା ଶତ ଶତ ବର୍ଷ ଧରି ଆଦୃତ ହୋଇଆସିଛି; 'ପୋପ' ( often quoted ) ଲୋକପ୍ରିୟ କବି ରୂପେ ଗଣ୍ୟ; ଗ୍ରୀସ୍‌ରେ 'ହୋମର' ଙ୍କ ଲେଖା ସମସ୍ତଙ୍କ ପ୍ରାୟ ମୁଖସ୍ଥ; ଜଗନ୍ନାଥ ଦାସ, ଉପେନ୍ଦ୍ର, କବିସୂର୍ଯ୍ୟ, ଗୋପାଳକୃଷ୍ଣଙ୍କର ଲେଖା ସେହି-ପରି ଓଡ଼ିଶାରେ ସମସ୍ତଙ୍କର ମୁଖସ୍ଥ, ପଠିତ ଓ ଆଦୃତ ହୋଇଆସୁଛି । ୬ଗୋପବନ୍ଧୁ ସେହିହେତୁ ଭଞ୍ଜ-ସାହିତ୍ୟକୁ ଉଚ୍ଚସ୍ତରର ସାହିତ୍ୟ ସ୍ୱରୂପ ହୃଦୟ-ମନ୍ଦିରରେ ସ୍ଥାନଦେଇ, ସେତେବେଳେ ଯୁକ୍ତିଯୁକ୍ତ ଭାବରେ ସମାଲୋଚନା କରିଥିଲେ ଏବଂ ଉପେନ୍ଦ୍ରଭଞ୍ଜଙ୍କ ଉପଲକ୍ଷେ ଲେଖିଥିଲେ:—

---

※ ପି. ସି. ମଜୁମଦାରଙ୍କ ଇଂରେଜ ଗ୍ରନ୍ଥ—'କେଶବଚନ୍ଦ୍ର ସେନ' ରେ ଦ୍ରଷ୍ଟବ୍ୟ ।

Digitized by srujanika@gmail.com

"ଗାଏ ତବ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା,
ବନେ ଗାଏ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ।"

ସେତେବେଳେ ବାଲେଶ୍ୱରରୁ ପ୍ରକାଶିତ 'ନବସମ୍ବାଦ'ରେ କବିବର ରାଧାନାଥ ରାୟ ଲେଖିଥିଲେ "ମୁଁ ସ୍ୱୟଂ ମଧ୍ୟ ଭଞ୍ଜକବିଙ୍କର ଜନୈକ ଭକ୍ତ ।" ସେହି ସମୟରେ ବଶିଷ୍ଟ ସାହିତ୍ୟିକମାନେ 'ଉତ୍କଳସଭା'ରେ ଧାରାବାହିକରୂପେ କୋଟିବ୍ରହ୍ମାଣ୍ଡସୁନ୍ଦରୀ, ଲାବଣ୍ୟବତୀ ପ୍ରଭୃତି କାବ୍ୟର ଚର୍ଚ୍ଚା କରୁଥାନ୍ତି । ତଦୁପଲକ୍ଷେ ଜନୈକ ଭଞ୍ଜଭକ୍ତ ଲେଖିଥିଲେ—

"ଉତ୍କଳ ସଭାରେ ଯାଇଁ କୋଇଲୁ ପ୍ରବେଶ,
ସଭା ଦରଶନେ ଲଭି ଆନନ୍ଦ ବିଶେଷ ।
ଲାବଣ୍ୟବତୀର ଅର୍ଥ ହେବାର ଶୁଣିଲୁ,
କବିତାରତୁରୀ ଦେଖି ବିମୋହିତ ହେଲୁ ।
ଧନ୍ୟ ସେ ଉପେନ୍ଦ୍ର ଭଞ୍ଜ କବିଚୂଡ଼ାମଣି,
କବିତାରେ ଖଞ୍ଜି ଛନ୍ତି ଚନ୍ଦ୍ର ସୂର୍ଯ୍ୟ ଅଣି ।" 'ଉତ୍କଳ ମଧୁପ'

'ଇନ୍ଦ୍ରଧନୁ' ଓ 'ବିଜୁଳି'ରେ ଉପେନ୍ଦ୍ର ଭଞ୍ଜ ଏବଂ ରାଧାନାଥ ରାୟଙ୍କ ତୁଳନାକରି ସମାଲୋଚକ-ମାନେ ଅନୁକୂଳ ଓ ପ୍ରତିକୂଳ ମତ ଅତ୍ୟନ୍ତ ଅବାଞ୍ଛନୀୟଭାବରେ ପ୍ରକାଶ କରୁଥିଲେ । ସେଥିରେ ମର୍ମନ୍ତୁଦ ବେଦନା ଅନୁଭବ କରି ରାଧାନାଥ ରାୟ ଲେଖିଥିଲେ:—

"କାହିଁ ସେହି କାହିଁ ମୁହିଁ ଅକିଞ୍ଚନ,
ଦେଖୁଥିଲି ସିନା ଜାଗ୍ରତ ସ୍ୱପନ ।"

ଶବ୍ଦଯୋଜନା, ବିବିଧ ଅଳଙ୍କାର ପ୍ରୟୋଗ ବିଧିରେ ମୁଗ୍ଧ ହୋଇ ସେ ଏମନ୍ତ କହିଛନ୍ତି ।

## ପ୍ରତିକୂଳ ସମାଲୋଚନା

ତଥାପି କେତେକ ସମାଲୋଚକ ପ୍ରତିକୂଳ ମତ ପ୍ରକାଶ କରିଥାନ୍ତି । ସେମାନଙ୍କ ମତରେ ଭଞ୍ଜ-ସାହିତ୍ୟ ଆଦିରସାତ୍ମକ, ସ୍ଥାନେ ସ୍ଥାନେ ତାହା ସୀମାତୀତ ହୋଇ ଅଶ୍ଳୀଳ ହୋଇପଡ଼ିଛି । ଦ୍ୱିତୀୟ, ତାହା କ୍ଳିଷ୍ଟତାଦୋଷଦୁଷ୍ଟ ହୋଇଥିବାରୁ ସର୍ବସାଧାରଣଙ୍କ ବୋଧଗମ୍ୟ ହୁଏ ନାହିଁ । ଏହାର ଯଥାଯଥ ଉତ୍ତର ବିଭିନ୍ନ ପ୍ରସଙ୍ଗାନୁକ୍ରମେ ଦିଆଯାଇଛି । ଭଞ୍ଜ-ସାହିତ୍ୟ ପ୍ରତି ନିର୍ଦ୍ଦୟ ପ୍ରତିକୂଳ ମତବ୍ୟକ୍ତ କରିବା ବିଶିଷ୍ଟ-ସମାଲୋଚକମାନଙ୍କ ମଧ୍ୟରେ ବିଜୟଚନ୍ଦ୍ର ମଜୁମଦାର ଏବଂ ମନମୋହନ ଚକ୍ରବର୍ତ୍ତୀ ପ୍ରଧାନ । * ।

---

*"All that Upendra Bhanj has composed in the name of the sentiment is ugly and nauseating." (B. C. Mazumdar)

"Plato is neven sullen; Demosthenes never comes unseasonably Dante never stays too long". (Macaulay)

Digitized by srujanika@gmail.com

ଭାବାବେଶର ବଶବର୍ତ୍ତୀ ହୋଇ ଉପେନ୍ଦ୍ର ଭଞ୍ଜ ଯାହା ରଚନା କରିଛନ୍ତି, ସେ ସମସ୍ତ ବିଭତ୍ସ ଓ ଘୃଣ୍ୟ ।' ଏହା ମଜୁମଦାରଙ୍କ ବିଶ୍ଳେଷଣର ମତ । ଏହିଭଳି ନର୍ଦ୍ଦୁସ୍ ମତ ପ୍ରତି ଦୂରଦର୍ଶୀ ଉପେନ୍ଦ୍ରଙ୍କ ବହୁତ 'ବାଣବଚନ' ତାଙ୍କର ଗ୍ରନ୍ଥରେ ଦେଖାଯାଏ । ସେଥିରୁ କେତୋଟି ଯଥାସ୍ଥାନରେ ଉଲ୍ଲେଖ କରାଯିବ । ଜଗତର ବିଖ୍ୟାତ କବିମାନଙ୍କ ବିଷୟରେ ନାନା ମୁନିଙ୍କ ନାନା ଅନୁକୂଳ ଏବଂ ପ୍ରତିକୂଳ ମତ ପ୍ରକାଶ ପାଇଥାଏ । ଅଧ୍ୟାପକ 'ଗିଲବାର୍ଟ ମୁରେ' ( Gilbart Murrey ) କହନ୍ତି —

"ବେରନାର୍ଡସାଙ୍କ ଲେଖା ଦାର୍ଶନିକତତ୍ତ୍ୱସମ୍ବଳିତ ଥିବା ହେତୁ, ଏକାବେଳକେ ଦୁର୍ବୋଧ ଓ ନୀରସ ହୋଇ ପଡ଼ିଛି । ତାଙ୍କର ଗ୍ରନ୍ଥଗୁଡ଼ିକ ଅନ୍ୟ ନାମରେ ପ୍ରକାଶ ପାଇଲେ, କେହି କାହାକୁ ମଧ୍ୟ ପଚାରିବେ ନାହିଁ ।" ଏହିପରି ନର୍ଦ୍ଦୁସ୍ ମତ କେତେଜଣ ପୋଷଣ କରୁଥିଲେ ମଧ୍ୟ, ବେରନାର୍ଡସାଙ୍କ ଗ୍ରନ୍ଥ ଜଗଦ୍‌ବାସୀଙ୍କ ଦୃଷ୍ଟିରେ ଉପାଦେୟ, ହେୟ ନୁହେଁ । ସେ ସୁପ୍ରସିଦ୍ଧ କବି ରୂପେ ଗଣ୍ୟ ହେବାରୁ, ପୃଥିବୀବିଖ୍ୟାତ 'ନୋବେଲ ପୁରସ୍କାର' ତାଙ୍କୁ ଦିଆଯାଇଥିଲା । ମେକାଲେ କହନ୍ତି—

ପ୍ଲେଟୋଙ୍କ ଲେଖାରେ କରୁଣ ରସ ନାହିଁ, ଡେମାସ ଥନେସ୍‌ଙ୍କ ବିଶୃଙ୍ଖଳା ନ ଥାଏ, ଦାଣ୍ଟେଙ୍କ ଲେଖା ବିରକ୍ତିବ୍ୟଞ୍ଜକ ନୁହେଁ ।

କିନ୍ତୁ ଉଇଲଫ୍ରେଡ଼ ଉଟେନ କହନ୍ତି—* 'ତାହା ମେକାଲେଙ୍କ ବ୍ୟକ୍ତିଗତ ମତ, ଆମ୍ଭେ ସମସ୍ତେ ସେଥିରେ ଏକମତ ହୋଇ ପାରିବୁ ନାହିଁ । ଅନେକଙ୍କ ଦୃଷ୍ଟିରେ ଡେମାସ୍ ଥନେସ୍ ଅଯଥା ଅନର୍ଗଳ ଏବଂ ଦାଣ୍ଟେଙ୍କ ଲେଖା ଘଟନାବହୁଳ ବିବେଚ୍ୟ ହୋଇପାରେ ।' ଠିକ୍ ସେହିପରି ଭଞ୍ଜ ସାହିତ୍ୟ ପ୍ରତି ନାନା ମୁନି ନାନା ମତପୋଷଣ କରି ପାରନ୍ତି । ତାହା ଜଗତର ସ୍ୱାଭାବିକ ରୀତି ।

କେହି କେହି କହନ୍ତି ଉପେନ୍ଦ୍ର ଭଞ୍ଜ ଅହଂକାରୀ, ତାହା ସିଦ୍ଧ କରିବା ପାଇଁ ସେମାନେ ନିମ୍ନଲିଖିତ ପଦ୍ୟାଂଶର ପ୍ରଶ୍ରୟ ନେଇଥାନ୍ତି—

"କହେ ଉପେନ୍ଦ୍ର ଭଞ୍ଜ ବୀରବର ଟେକି ବେନି ବାହାକୁ, କବି ପଣେ ରବି ତଳେ ନ ଗଣେ ମୁଁ କାହାକୁ ।" "ଏକା ଜୟଦେବଙ୍କୁ ମୁଁ କରେ ନମସ୍କାର, ଅନ୍ୟ କବିମାନେ ମୋ ବାମ ପୟର ।" "କହେ ଉପେନ୍ଦ୍ର ଭଞ୍ଜ ବୀରବର ଏ ରସରୁ ରସ ନାହିଁ । ପଣ୍ଡିତ ହୋଇଲେ ଛମାସ ବରଷେ ମୂର୍ଖ ତା ବୁଝିବ କାହିଁ ।" ଏ ସମସ୍ତ ବାକ୍ୟାବଳୀ ଉପେନ୍ଦ୍ର ଭଞ୍ଜଙ୍କ କୌଣସି ପ୍ରକାଶିତ ଗ୍ରନ୍ଥରେ ନାହିଁ । ତାହା ଉପେନ୍ଦ୍ର ଭଞ୍ଜଙ୍କ ନାମରେ କେବଳ ଆରୋପ କରାଯାଇଛି ବୋଲି ଅନେକେ ବିଶ୍ୱାସ କରନ୍ତି । ଏହିପରି ପ୍ରତିକୂଳ ଈର୍ଷ୍ୟାମୂଳକ ସମାଲୋଚନାକୁ ଲକ୍ଷ୍ୟକରି ବିଶ୍ୱବିଖ୍ୟାତ କବି କହନ୍ତି—"Fear no more the frown O' the great, Thou art past the tyrants stroke;"

—Shakespeare.

---

* "But though this reveals some of his own tastes, it is by no means true for all of us. For many Demosthenes may come much out of season, and Dante stay, considerably too long."

(Wilfred Whitten.)

Digitized by srujanika@gmail.com

ବଙ୍କପ୍ରୁ —

କବି ସ୍ୱ ଗ୍ରନ୍ଥାଦିର ସରସତା ସମ୍ବନ୍ଧରେ ନିମ୍ନମତେ ଲେଖିଅଛନ୍ତି:—
"ରସିକେ ରସିକର ଏଥି ପଦକଙ୍କର ସୁଧାଶୀକର ପାନତୋଷେ:—"

କୋ: ବ୍ର: ସୁ: ।

"ସିଦ୍ଧି କରି ଯେ କାବ୍ୟ ଅର୍ଥ ସେ ଯୋଡ଼ି,
ଅଚ୍ଛଦ୍ରସାସେ ଆଦ୍ୟରସରେ ଜଡ଼ି ସେ ।
କହେ ଉପେନ୍ଦ୍ର ବର୍ଣ୍ଣିଭଙ୍ଗୀରୁ ବାରି,
ଗ୍ରନ୍ଥ ଗଙ୍ଗାଯମୁନା ସଙ୍ଗମ ପରି ସେ ।" ଗ୍ର, ୧୦, କୋ: ବ୍ର: ସୁ: ।

"କହେ ଉପେନ୍ଦ୍ର ଭଞ୍ଜ କବି ବୀରବର ପଦର ଯେ ମାଧୁର୍ଯ୍ୟ ଏ ଗ୍ରନ୍ଥେ । ଧ୍ୱନିକାକୁ ଉକ୍ତି ରୂପକ । ଶ୍ଳେଷ, ଲୁପ୍ତବର୍ଣ୍ଣ, ଚ୍ୟୁତଦତ୍ତାକ୍ଷର, ଅନ୍ତର୍ଲାପିକା ଆଦିତର୍କ ।" ଗ୍ର, ୨୩, କୋ: ବ୍ର: ସୁ: ।

"ବୈଦେହୀଶବିଳାସ ଏ ଗୀତ ମନୋରମ । ବାନ ଗ୍ରନ୍ଥେ ଶେଷ ଆଦ୍ୟ ବକାରେ ନିୟମ ଯେ ।"
ବୈ: ବି:-

କଳଙ୍କବିହୀନ ମୋ ଗୀତ । ଖଳ-ରାହୁରେ ଅଦୂଷିତ ।
ବଚନ ସୁଧାକର ଏହି । ସୁମନାବୃନ୍ଦ ସୁଖଦାୟୀ ।
ନାରିକେଳ ଯେ ରସପୁର । ଭକ୍ଷି ନ ପାରଇ ବାନର ।
ତାର କି ସ୍ୱାଦୁ ନାଶ ହୋଇ । ପ୍ରସଙ୍ଗୁ ଗଲି ମଧ୍ୟ କହି ।" ପ. ୪୩—୪୪,

ଗ୍ର, ୧୭, ଲ: ବ: ।

"ଏ ଗୀତ ଅକଳଙ୍କ ଚନ୍ଦ୍ରମା ସମାନ ।" ପ୍ରେ: ସୁ: ଗ୍ର. ୧୭ ।

"ଯେ କବି ଅର୍ଥୀ ପଣ୍ଡିତ ସୁହୃଦ । ରସିକ ଯେହି ଦେଖିବ ଏ ଗ୍ରନ୍ଥ । ବ୍ୟଙ୍ଗ୍ୟ ଅଳଙ୍କାର । ମଣ୍ଡନବିଧି ନିର୍ଦ୍ଦୋଷ ବିସ୍ତର ।" ଗ୍ର, ୧୧, କୋ: ବ୍ର: ସୁ: ।

"ରୂପକାଦି ଶ୍ଳେଷଧରି ହୋଇବ ମାଧୁରୀ ଶୁଣି ବଶ ହେବେ ସୁରସିକ ।" ପ. ୨୮. ର: ପ: ।

## ସମାଲୋଚକଙ୍କ ପ୍ରତି ସମାଲୋଚନା—

ପ୍ରତ୍ୟେକ ଯୁଗରେ ଦଳେ ଦଳେ ନିନ୍ଦୁକ ନିନ୍ଦୁକ ଦେଖାଯିବା ସ୍ୱାଭାବିକ । ଏହି କଥା କବି ନିଜର ଦୂରଦର୍ଶିତା ପ୍ରଭାବରେ ସ୍ପଷ୍ଟ ହୃଦୟଙ୍ଗମ କରି, ତାଙ୍କର ପ୍ରାୟଶଃ ପ୍ରତ୍ୟେକ ଗ୍ରନ୍ଥରେ ସେମାନଙ୍କୁ ଲକ୍ଷ୍ୟ କରି କହି ଅଛନ୍ତି । ସେଥିରୁ କିଛି ଏଠାରେ ଉଦ୍ଧୃତ ହେଲା:—

"ବଙ୍କ ସୁଜନରଞ୍ଜନ ପଦମାନ ମାନସେ କରିବ ବିଗ୍ରହ,
ଅଳ୍ପ ବ୍ୟୁତ୍ପତ୍ତି ଉତ୍ପତ୍ତି କରିପନ୍ତି ବାନର ମୁଷ୍ଟି ପରକାର ।
ଗୁଢ଼ନ୍ତି ନାହିଁ ଆମ୍ଭେ ବଡ଼ - ଏ ଗର୍ବ ।
ଏ ଗୀତ ସବିତା ପଦ ପ୍ରଭାବରେ ତାମସ ତମସ ନାଶିବ ।" ଗ୍ର, ୨୮, କୋ: ବ୍ର: ସୁ:-

"ସୁମନକୁ ଭୂକ ଯେ କୀଟ ବୃଷ । ସକାଶେ ନୋହୁ ଏ ପୁସ୍ତକ ନାଶ । ସୁ: ପ: ।

Digitized by srujanika@gmail.com

"ଷୋଳ ଛନ୍ଦ, ଷୋଳ କଳା ସଦାପୂର୍ଣ୍ଣ ଚନ୍ଦ୍ର ।
ଅଙ୍କଗ୍ରନ୍ଥ ଦୂଷଣକୁ ଅବକାଶ ନାହିଁ ।
ପ୍ରତିଦଶେ ପ୍ରତିଦଶ ଚନ୍ଦ୍ର ପ୍ରକାଶିବ ୟ
ରସିକ ହୃଦୟରତ୍ନାକର ଉଲ୍ଲାସିବ ।
ପଣ୍ଡିତ କୁମୁଦମୁଦ ବର୍ଦ୍ଧନ କରିବ ।
ଖଳକୁଳ ଅନ୍ଧକାର ବେଗେ ବିଦାରିବ ।"
"ଗ୍ର, '୬, ପ୍ରେ: ସୁ: ।

"ମୂକର ଶ୍ରୁତିକନ୍ଦରକୁ ହୋଇବ ସମସ୍ତ ପ୍ରକାର ମନ୍ଦ ଏ
କବି ପଣ୍ଡିତ । ହୃଦସ୍ଥ ମଣ୍ଡିତ ହୋଇବ ।
ଖଣ୍ଡିତ କରିବ ସର୍ବ ଖଳ ଗର୍ବ
ବହୁତ କାଳଯାଏ ଥିବ ।" ର: ହା: ।

"କଷ୍ଟକୁ ଜାଣିବେ ସୁକବି ଯେଉଁମାନେ ପ୍ରାଚୀନ ।
ନ ଥାଉ ଭ୍ରମରେ ଯେ ଖଳ ସେହିପରି ପଙ୍କ୍ତିନ ।
କଳା ନ ଥିବ ଅଭିଧାନମାନ ଶବ୍ଦମାନଙ୍କ ।
କଥା ପ୍ରସଙ୍ଗ ବୋଲାଇବ କଥା କହି ସେ ଲୋକ ।" କ: କ: ।

"ବୈହାସିକ ହେବେ ନ ବୁଝିଲ ଜନେ ତହିଁକି କେଉଁ ବିଗ୍ରହ ହେ ବିବୁଧେ ।"
କୋ: ବ୍ର: ସୁ: ।

"କେତେ କଷ୍ଟେ ହୁଏ ଗୀତ ନାହିଁ ଏ ବିଗ୍ରହ ।
କରନ୍ତି ନାହିଁ ସେ ଭଲ କଥାରେ ଆଦର ।
କେବଳ ଦୋଷରେ ନିରନ୍ତର ତତପର ।
କି ତପ କରି ସେ କରି ହୋଇଥାନ୍ତି ନର ।" । ଗ୍ର: ଭୂ: ।

"ନାନା ଅଭିଧାନ ବିଧାନ ପରି । ନାଟକ କାବ୍ୟ ଅଙ୍ଗେ ମାଧୁରୀ ।
ଦୃଷ୍ଟି ସୃଷ୍ଟିରେ ହୋଇଛୁ ବିଚକ୍ଷ । ରସିକ ଚିତ୍ତ ମୋହନ ମନ୍ତ୍ର ।
ଖଳ-ଗର୍ବ-ତୃଣ-ଦାବ-ଦହନ । ପଥିକ-ମୂର୍ଖ-ଅଗମ୍ୟ ବନ ।
ଧନୀ ବଣିକ ପସରା ସମାନ । ବିବିଧ ରସଦ୍ରବ୍ୟରେ ପୂର୍ଣ୍ଣ ।"
ପ, ୫୩-୫୭, ଗ୍ର, ୪୮, ଲା: ବ: ।

"ସାରମେୟ ପ୍ରାଏ ହୋଇ ହେ ନୃଶଂସ ବ୍ରାତ ।
ସ୍ୱନ ବ୍ୟର୍ଥେ ନ କରିବ ନ ବୁଝି ଏ ଗୀତ ।
ସ୍ୱଭାବେ କୁଟିଳ ତୁମ୍ଭେ ତାହା ପୁଚ୍ଛ ପରି ।
ଯିଏ ଲେଖିଲା ଶିଶୁକ କାବ୍ୟ ଅର୍ଥ କରି ।
ସାନ୍ତ୍ୱନା ନୋହିବ କିଛି ତୁମ୍ଭ କହିବାର ।
ଶୁଣିଲା ବେଳରେ ବାଚଂଯମଭୂଧର ।" ଗ୍ର, ୨୩, ସୁ: ପ: ।

Digitized by srujanika@gmail.com

କବି ଏହିପରି ସମାଲୋଚନା କରି ବେଳ ଥାଉ ଥାଉ ସତର୍କ ଥିଲେ ମଧ୍ୟ, ତାଙ୍କର କାବ୍ୟ କବିତା ଏକାବେଳକେ ନିର୍ଦ୍ଦୋଷ ବୋଲି କେହି କହିପାରିବେ ନାହିଁ ।

ମହାକବି 'ପୋପ୍' କହନ୍ତି—* ମନୁଷ୍ୟ ଗୁଣଦୋଷବିଶିଷ୍ଟ;' ପରିମାଣ ବେଶି, କମ ହୋଇପାରେ, କିନ୍ତୁ କେହି ଦୋଷ ବିବର୍ଜିତ ହୋଇପାରିବେ ନାହିଁ ।' ଯେ କୌଣସି ଦୁର୍ଲ୍ଲଭ ଗ୍ରନ୍ଥ ହେଉ ମଧ୍ୟ, ତାହା ଯେତେବେଳେ ମନୁଷ୍ୟ ମସ୍ତିଷ୍କ ପ୍ରସୂତ ତାହା ତେବେ ଏକାବେଳକେ ନିର୍ଦ୍ଦୋଷ କୁହାଯିବ କିପରି ? ଗୋଲଡ଼ସ୍ମିଥ ବିଷୟରେ ଡାକ୍ତର ଜନ୍‌ସନ୍ କହିଥିଲେ—† "ସେ ଜଣେ ଉଚ୍ଚକୋଟୀର ଲୋକ, ତାଙ୍କ ଦୁର୍ବଳତା ବିସ୍ମୃତିର ବିଷୟ ନୁହେ । ଯେ କୌଣସି ଗ୍ରନ୍ଥ; କବି, ଯୋଗୀ ବା ମହାପୁରୁଷଙ୍କ ଜୀବନ ବୃତ୍ତାନ୍ତର ସମାଲୋଚନା—ସୌଧ ସତ୍ୟତା ଓ ନିରପେକ୍ଷତା ଭିତ୍ତି ଉପରେ ପ୍ରତିଷ୍ଠିତ ହେବା ବାଞ୍ଛନୀୟ । ବିଖ୍ୟାତ ପାଶ୍ଚାତ୍ୟ ଲେଖକ ଜନ୍‌ସେନ୍‌ଙ୍କ ତୁଲ୍ୟ ଉଦାରଭାବ ପୋଷଣ କରିବା ଅନେକ ସମୟରେ ଦେଶ ପକ୍ଷରେ କଲ୍ୟାଣକର ହେଲେ ମଧ୍ୟ, ତାହା କେହି କାହାକୁ କହି ପାରିବେ ନାହିଁ । ସମାଲୋଚକମାନଙ୍କ ଅନୁକୂଳ ଏବଂ ପ୍ରତିକୂଳ ସମାଲୋଚନା ସତ୍ତ୍ୱେ ଉପେନ୍ଦ୍ର ଭଞ୍ଜଙ୍କ ସମ୍ବନ୍ଧରେ ପରିଶେଷରେ ସକଳ ଶ୍ରେଣୀର ବିଶିଷ୍ଟବ୍ୟକ୍ତିଙ୍କ ନିର୍ଦ୍ୱନ୍ଦ୍ୱ ମତ ଏହି ଯେ—ସେ ଯଥାର୍ଥରେ 'କବିସମ୍ରାଟ' ।



---

* "Virtues and vicious every man must be, Few in the extreme, but all in the degree"— ( Pope )

† "Let not his frailties be remembered, he was a very great man."

Digitized by srujanika@gmail.com

# ଯେତେ ସେ 'କବିସମ୍ରାଟ୍'

କବିଙ୍କ ନିର୍ଦ୍ଦୟ ସମାଲୋଚକ ବାବୁ ବିଜୟଚନ୍ଦ୍ର ମଜୁମଦାର ଯେତେ ଯେତେ ତିକ୍ତକଥା ସମସ୍ତ—ସ୍ରୋତରେ ଝାସି ଝାସିଥିଲେ ମଧ୍ୟ ପରିଶେଷରେ ସେ ଉପେନ୍ଦ୍ରଙ୍କ ଅସୀମ କବିତା-ପ୍ରତିଭା ଓ ଧୀଶକ୍ତିକୁ ନତମସ୍ତକରେ ମାନି କହନ୍ତି—* "ସେ ସମସ୍ତଙ୍କ ସମ୍ମାନର ପାତ୍ର ତାଙ୍କର ନାମ ବାଜିକରର କାର୍ଯ୍ୟକରେ।" ମନମୋହନ ଚକ୍ରବର୍ତ୍ତୀ ଉପେନ୍ଦ୍ରଙ୍କ ସମ୍ବନ୍ଧରେ କହନ୍ତି—† "ଅଦ୍ଭୁତ ଶବ୍ଦବିନ୍ୟାସ ଓ ବିବିଧ ଅଳଙ୍କାର ପ୍ରୟୋଗରେ କବି ଅଦ୍ୱିତୀୟ।" ଅଭିମନ୍ୟୁ ସାମନ୍ତସିଂହାରଙ୍କ କବିପ୍ରତିଭା ପ୍ରତି ମଜୁମଦାରଙ୍କ ଅଟଳ ଆସ୍ଥା ଥିଲେ ମଧ୍ୟ, ସ୍ୱୟଂ ଅଭିମନ୍ୟୁ କହନ୍ତି—"ଉପେନ୍ଦ୍ର ପଦ ଅଭିମନ୍ୟୁ ମନୁ, ପାସୋରି ନ ହିବ ଦିନୁ ଦିନୁ।" ଭଞ୍ଜ-ସାହିତ୍ୟ-ସମାଲୋଚନା ରଙ୍ଗମଞ୍ଚରେ ରାଧାନାଥଙ୍କ ଆଦର୍ଶ କବିସ୍ୱରୂପ ଘନ ଘନ ଠିଆ କରାଯାଉଥିଲେ ମଧ୍ୟ, ସ୍ୱୟଂ ସ୍ୱନାମଧନ୍ୟ ରାଧାନାଥ ଉପେନ୍ଦ୍ରଙ୍କ ଉଦ୍ଦେଶ୍ୟରେ କହନ୍ତି—"କାହିଁ ସେହି କାହିଁ ମୁହିଁ ଅକିଞ୍ଚନ, ଦେଖୁଥିଲି ଯିନା ଜାଗ୍ରତ ସ୍ୱପନ।" "ଭାଗ୍ୟବାନ ବେନି ବାଣୀଙ୍କ କୁମର, କବି ବଳଦେବ ଭଞ୍ଜ ବୀରବର।" ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଉପେନ୍ଦ୍ର ଭଞ୍ଜଙ୍କ ଉପଲକ୍ଷେ କହନ୍ତି—"ଧନ୍ୟ ରସିକ କବି ! ଏପରି ପାଣ୍ଡିତ୍ୟମୟୀ, ଚାତୁର୍ଯ୍ୟମୟୀ ଓ ରସମୟୀ ରଚନା ସାହିତ୍ୟ-ରାଜ୍ୟରେ ଏକାନ୍ତ ବିରଳ କହିଲେ ସତ୍ୟର ଅପଲାପ ହେବ ନାହିଁ।"

କଳିଙ୍ଗଭାରତୀ ପ୍ରବର୍ତ୍ତକ ଶ୍ରୀ ବିଷ୍ଣୁଚରଣ ପଟ୍ଟନାୟକ କହନ୍ତି—"କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ ଓ କୋଟିବ୍ରହ୍ମାଣ୍ଡସୁନ୍ଦରୀ ଶକୁନ୍ତଳାଠାରୁ କୌଣସି ଅଂଶରେ ନ୍ୟୂନ ନ ହୋଇ ମଧ୍ୟ ଆଜି ବିଶ୍ୱଦରବାରରେ ଅଜ୍ଞାତ। ଉପେନ୍ଦ୍ରଭାରତୀ କୌଣସି ଆନ୍ତର୍ଜାତିକ ଭାଷାର ବାହନ ଆରୋହଣ କଲାମାତ୍ରେ ସମଗ୍ର ବିଶ୍ୱର ଉଚ୍ଛ୍ୱସିତ ପ୍ରଶଂସା ଯେ ତାଙ୍କ ପାଦତଳରେ ଲୋଟିବ, ଏଥିରେ ମୋର ତିଳାର୍ଦ୍ଧମାତ୍ର ସନ୍ଦେହ ନାହିଁ।"

ଶ୍ରୀ ପ୍ରାଣନାଥ ମହାନ୍ତି—"ଉପେନ୍ଦ୍ର ଭଞ୍ଜ ଓଡ଼ିଆ-ସାହିତ୍ୟ ଗନ୍ତାଘରରେ ଯେଉଁ ଅସରନ୍ତି ରତ୍ନାଳଙ୍କାରମାନ ସଞ୍ଚୟ କରି ସାହିତ୍ୟର ସମୃଦ୍ଧି ସାଧନ କରି ଯାଇଛନ୍ତି ତାହା ତାଙ୍କୁ ଯୁଗେ ଯୁଗେ ଉତ୍କଳ-ସାହିତ୍ୟ କ୍ଷେତ୍ରରେ କବିସମ୍ରାଟ ବୋଲି ପରିଚୟ କରାଉଥିବ।"

ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ କହନ୍ତି—"କବିସମ୍ରାଟଙ୍କର ଓଡ଼ିଆ-ସାହିତ୍ୟକୁ ଦାନ ଯେପରି ଅତୁଳନୀୟ ବିଶ୍ୱ-ସାହିତ୍ୟକୁ ଦାନ ସେହିପରି ତୁଳନୀୟ।"

ଅଧ୍ୟାପକ ଶ୍ରୀ ଜୟକୃଷ୍ଣ ମିଶ୍ର କହନ୍ତି—"ଯୁଗସାହିତ୍ୟର ବିଶେଷତ୍ୱ ପ୍ରକଟନ କରି ଯୁଗାବଧି ଉତ୍କଳସାହିତ୍ୟର ବଳିଷ୍ଠ, ରସାଳ, ଚିତ୍ତବୃତ୍ତିବିଦ୍ରାବକ ସାମଗ୍ରୀଗୁଡ଼ିକ ପରିବେଷଣ କରି ଯୁଗଯୁଗାବଧି ଉପେନ୍ଦ୍ର ଦେଦୀପ୍ୟମାନ ଓ ଅବିନଶ୍ୱର।"

ଐତିହାସିକ କୃପାସିନ୍ଧୁ ମିଶ୍ର କହନ୍ତି—"ଉପେନ୍ଦ୍ର ଭଞ୍ଜ ଓଡ଼ିଆସାହିତ୍ୟର ପ୍ରାଣଦାତା।"

---

* "Commands a great admiration; his is a name to conjure with."

† "On the whole the best writer of Rhetorical excellence."

Digitized by srujanika@gmail.com

ଉପେନ୍ଦ୍ର ଭଞ୍ଜ ଉପଲକ୍ଷେ କବିବର ରାଧାନାଥଙ୍କ ଉକ୍ତି —

"ଜାତୀୟଜୀବନରେ ସାହିତ୍ୟର ମୂଲ୍ୟ କେତେ ଉଚ୍ଚ, ତାହା ଆପଣମାନେ ସୁବିଦିତ ଅଛନ୍ତି । କଳ୍ପନାରେ ଭାରତରୁ ମହାଭାରତକୁ ବାହାର କରି ଦିଅନ୍ତୁ । ଭାରତ କେମନ୍ତ ବିକଳାଙ୍ଗ ହୋଇଯିବ ! ଉପେନ୍ଦ୍ର ଭଞ୍ଜ ଆମ୍ଭମାନଙ୍କ ଭଳି ଜଣେ ସାମାନ୍ୟ ମନୁଷ୍ୟ ଥିଲେ; ମାତ୍ର କଳ୍ପନାରେ ଉତ୍କଳରୁ ତାହାଙ୍କୁ ବାହାର କରି ଦିଅନ୍ତୁ । ଉତ୍କଳ କେମନ୍ତ ବିକଳାଙ୍ଗ ହୋଇଯିବ !!"

ପାଖ ପ୍ରାୟ ୩୦୦ ବର୍ଷ ଚାଲିଗଲାଣି; କବି କିନ୍ତୁ ସରସ ମନୋହାରିଣୀ କବିତା ଯୋଗୁଁ ଅମର ହୋଇଛନ୍ତି । କବିଙ୍କର କେତେକ ଗ୍ରନ୍ଥ ପ୍ରକାଶିତ ହୋଇ ଏକାଧିକ ସଂସ୍କରଣ ଦେଇ ଚାଲିଛି, କେତେକ ଅତୀତର ଅନନ୍ତଗର୍ଭରେ ପଡ଼ି ଯାଇଥିବାରୁ ବିଶିଷ୍ଟ ଅନୁସନ୍ଧିତ୍ସୁବର୍ଗ ସେଗୁଡ଼ିକର ସନ୍ଧାନରେ ବ୍ୟାପୃତ । କବିଙ୍କ ସ୍ମୃତିରକ୍ଷା ପାଇଁ ନାନା ସାହିତ୍ୟିକ ଅନୁଷ୍ଠାନ ନିଖିଳ ଓଡ଼ିଶାର ବିଭିନ୍ନ କେନ୍ଦ୍ରରେ ପ୍ରତିଷ୍ଠିତ ହେଲାଣି । ଏ ସମସ୍ତ ଦେଶ ପକ୍ଷରେ ଶୁଭସଙ୍କେତ ।



Digitized by srujanika@gmail.com

ସାହିତ୍ୟ ବିଭାଗ

## କାବ୍ୟ ପରିଚୟ

ଉପେନ୍ଦ୍ର ଭଞ୍ଜ ସ୍ୱଳ୍ପ ସମୟ ମଧ୍ୟରେ ଅସଂଖ୍ୟ କାବ୍ୟ କବିତା ଲେଖିଥିଲେ ।

"କଲି ମୁଁ ଅନେକ ପ୍ରକାଶ ଗୀତେ—

ଅଶେଷ ଚଉତିଶା ଚଉପଦୀ । ତାହା କେତେ ଯେ କହିବି ସମ୍ବାଦ ॥
ଗାହା ଦୋହା ଷୋଡ଼ଶେନ୍ଦୁ ଛ ପୋଇ । ଇତ୍ୟାଦି କବିତା ଗଣନା ନାହିଁ ॥
ରସକୃଷ୍ଣ ବିଷୟ ଯେତେ ଗ୍ରନ୍ଥ । ଚଉପଦୀ ତହୁଁ କହୁ ଲେଖେଁ ଏଥ ॥
ସୁବର୍ଣ୍ଣ ଗ୍ରନ୍ଥ କଳ୍ପନା ମାଧୁରୀ । ଶିଶୁ ଚିତ୍ରଲେଖା ହେମମଞ୍ଜରୀ ॥
ରସଲେଖା କାମକଳା ରଚିତ । ମନୋରମା ପ୍ରେମଲତା ସୁଗୀତ ॥
ଭାବବତୀ ମୁକ୍ତାବତୀ ପ୍ରମାଣ । ବ୍ରଜକଲ୍ଲୋଳ ଯେ ଗ୍ରନ୍ଥଭୂଷଣ ॥
ଷଡ଼ଋତୁ କଳାକଉତୁକର । କନ୍ଦର୍ପ ସାଦ୍ୟ ସୁଭଦ୍ରା ସାର ॥
ବୈଦେହୀଶ ବିଳାସ ଶ୍ରେଷ୍ଠ କାବ୍ୟ । ପ୍ରସିଦ୍ଧ ଅବନା ଦ୍ୱାଦଶ ଗ୍ରନ୍ଥ ॥
ରାମଲୀଳାମୃତ ଶେଷ ଚରିତ । ପ୍ରେମସୁଧାନିଧି ସମକେ ସ୍ଥିତ ॥
ରସିକହାରାବଳୀ ନାମେ ଗୀତ । କୁଞ୍ଜବିହାରାଦି ଶ୍ୟାମଚରିତ ॥
ଅଳଂକାର ଶାସ୍ତ୍ର ରସପଞ୍ଚକ । ଲାବଣ୍ୟବତୀ ରସିକତୋଷକ ॥
ପୁରୁଷୋତ୍ତମମାହାତ୍ମ୍ୟ ରଚନ । ନାନା କୋଷ ଶବ୍ଦେ ଗୀତାଭିଧାନ ॥
ଗ୍ରନ୍ଥ କୋଟି ତାର ଚନ୍ଦ୍ରମା ସର । ଯା ନାମ କୋଟିବ୍ରହ୍ମାଣ୍ଡସୁନ୍ଦରୀ ॥
ତ୍ରୈଲୋକ୍ୟମୋହିନୀ ଆଦି ଯେ ଗୀତ । ନିର୍ମିତ ଗ୍ରନ୍ଥ ପୋଥି ସାଙ୍ଗସାତ ॥"

ଚି: କା: ବନ୍ଧୋଦୟ ।

କବି ନିଜ ଗ୍ରନ୍ଥର ଉପରୋକ୍ତ ମତେ ପରିଚୟ ଦେଇଥିଲେ ମଧ୍ୟ, କବିଙ୍କ ସମୁଦାୟ ଗ୍ରନ୍ଥର ସଂଖ୍ୟା ୭୩ ଖଣ୍ଡ ବୋଲି ଅପର ପୃଷ୍ଠାରେ ଦିଆଯିବା ବିବରଣୀରୁ ଜଣାଯାଏ ।

ପ୍ରକାଶିତ ବହି ସଂଖ୍ୟା କେବଳ ୨୦ ଖଣ୍ଡ ଯଥା:—ଲାବଣ୍ୟବତୀ, ବୈଦେହୀଶବିଳାସ, କୋଟି-ବ୍ରହ୍ମାଣ୍ଡସୁନ୍ଦରୀ, ପ୍ରେମସୁଧାନିଧି, ରସିକହାରାବଳୀ, ରସଲେଖା, ରସପଞ୍ଚକ, ରାମଲୀଳାମୃତ, ଗ୍ରନ୍ଥଭୂଷଣ, ଚୌପଦୀଚନ୍ଦ୍ର, ଚୌପଦୀଭୂଷଣ, ଚିତ୍ରକାବ୍ୟବନ୍ଧୋଦୟ, କଳାକଉତୁକ, ସୁଭଦ୍ରାପରିଣୟ, ସୁବର୍ଣ୍ଣରେଖା, ଅବନାରସତରଙ୍ଗ, ବଜାରବୋଲି, ଯମକରାଜଚଉତିଶା, ଗୀତାଭିଧାନ, ଦଶପୋଇ ।

ଅପ୍ରକାଶିତ ବହି:—ତ୍ରୈଲୋକ୍ୟମୋହିନୀ, ହାସ୍ୟାର୍ଣ୍ଣବ, କଟପାସ୍ୟା, ମୁକ୍ତାବତୀ, ବ୍ରଜଲୀଳା, ଚନ୍ଦ୍ରକଳା, ସଙ୍ଗୀତକୌମୁଦୀ, ଶୋଭାବତୀ, କଳାବତୀ, ରସମଞ୍ଜରୀ, ବାରମାସୀ, ଇଚ୍ଛାବତୀ, ଦୁର୍ଗାସ୍ତୁତି, ନିଳାଦ୍ରୀଶ ଚଉତିଶା, ଶ୍ରୀକୃଷ୍ଣବିହାର, ଲତା, ଗଜନିସ୍ତାରଣ, କାମକଳା, କୁଞ୍ଜବିହାର, ଗରୁଡ଼ଗୀତ, କଳାକଣ୍ଠକ, ହେମମଞ୍ଜରୀ, ଚିତ୍ରରେଖା, ପ୍ରେମଲତା, ମନୋରମା, ଷଡ଼ଋତୁ, ରାହାସଲୀଳା, ପୁରୁଷୋତ୍ତମ-ମାହାତ୍ମ୍ୟ, ଶଶିରେଖା, ଭାବବତୀ, ଚନ୍ଦ୍ରରେଖା, ଛାନ୍ଦରାସ, ପଞ୍ଚସାୟକ, ଛ ପୋଇ, ନଅ ପୋଇ,

Digitized by srujanika@gmail.com

ବାର ପୋଇ, ବଚନ ତରଙ୍ଗିଣୀ, କଳ୍ପତକଲ୍ପରେଖା ଇତ୍ୟାଦି । ଯାଗାନ୍ନି, ପଣାନାଶ ବିଷୟରେ ଉପେନ୍ଦ୍ର ଭଞ୍ଜଙ୍କ କେତେକ ଖଣ୍ଡକବିତା ଆମ୍ଭମାନଙ୍କ ହସ୍ତଗତ ହୋଇଛି । ଅପ୍ରକାଶିତ ୨୨ ଖଣ୍ଡ ବହିର ସାମାନ୍ୟ ପରିଚୟ ନିମ୍ନରେ ପ୍ରଦତ୍ତ ହେଲା ।

ଶୋଭାବତୀ, ଇଚ୍ଛାବତୀ, ମୁକ୍ତାବତୀ, କଳାବତୀ, ଭବବତୀ ଏହି ପଞ୍ଚଖଣ୍ଡ ବହିର ସ୍ୱନାମଧନ୍ୟା ରାଜକନ୍ୟାଙ୍କର ଲୀଳାବର୍ଣ୍ଣନା କରାଯାଇଛି । ଭାବବତୀ, ଚନ୍ଦ୍ରକଳା, ହେମମଞ୍ଜରୀ, କାମକଳା, ମନୋରମା, ପ୍ରେମଲତା, ଶଶିରେଖା, ତ୍ରୈଲୋକ୍ୟମୋହିନୀ କ୍ଷୁଦ୍ରକାବ୍ୟରେ ଗଣ୍ୟ । ବ୍ରଜଲୀଳା ( କୁଞ୍ଜବିହାର ) ରାସଲୀଳା—ଏଗୁଡ଼ିକ ଶ୍ରୀକୃଷ୍ଣବିଷୟକ ପଦ୍ୟାବଳୀ । 'ଷଡ଼ରିତୁ'— କାଳିଦାସଙ୍କ ଋତୁସଂହାର ଅବଲମ୍ବନରେ ଲିଖିତ ହୋଇଛି । ଗାହା ( ଦୋହା— ମିତବ୍ୟଞ୍ଜକ କାହାଣୀରେ ଯାଏ; ରସମଞ୍ଜରୀ ଛନ୍ଦ ନିୟମାବଳୀବିଷୟକ ପଦ୍ୟ ଗ୍ରନ୍ଥ । ସଙ୍ଗୀତକୌମୁଦୀ ପୁରୁଷୋତ୍ତମମାହାତ୍ମ୍ୟ —ନାମରୁ ବିଷୟ ସ୍ପଷ୍ଟ ସୂଚିତ ହୁଏ ।

ବିଭିନ୍ନଙ୍କ ତାଲିକା:—

ଉପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥ ତାଲିକା ବିଷୟରେ ବିଭିନ୍ନ ଐତିହାସିକ, ସାହିତ୍ୟିକ ଏବଂ ଲେଖକମାନେ ଭିନ୍ନ ଭିନ୍ନ ମତ ପ୍ରକାଶ କରନ୍ତି । ଖ୍ରୀ: ୧୮୪୨ ରେ ଷ୍ଟର୍ଲିଙ୍ଗଙ୍କ 'ଓଡ଼ିଶା' ପ୍ରକାଶ ପାଇଥିଲେ ମଧ୍ୟ, ସେ ସେଥିରେ ଭଞ୍ଜଙ୍କ କୌଣସି ଗ୍ରନ୍ଥର ନାମ ଉଲ୍ଲେଖ କରି ନାହାନ୍ତି । ସେ କହନ୍ତି—

" I know of no original composition deserving any notice in the language of Orissa, excepting the Epic Poem called the Kanchi Kaviri Pothi."

'କାଞ୍ଚିକାବେରୀ' ପୋଥିର ନାମ କେବଳ ସେଥିରେ ଦେଖିବାକୁ ମିଳେ ।

ଭଞ୍ଜଙ୍କ ତିନଖଣ୍ଡ ଗ୍ରନ୍ଥ—ବୈଦେହୀଶବିଳାସ, ରସମଞ୍ଜରୀ, ରସପଞ୍ଚକର ନାମ ଉଲ୍ଲେଖ କରି ଥିଲେ । ଅନ୍ୟାନ୍ୟ ଗ୍ରନ୍ଥ କଥା ସେ ଶୁଣିପାରି ନ ଥିଲେ । ଖ୍ରୀ: ୧୮୭୨ ରେ ହଣ୍ଟର ସାହେବ ଭଞ୍ଜଙ୍କ ୫୩ ଖଣ୍ଡ ବହିର ନାମ ପ୍ରକାଶ କରି ପାରିଛନ୍ତି । ବସନ୍ତୀଶ—ନାମରେ ଖଣ୍ଡେ ବହି ତହିଁର ଅନ୍ତର୍ଗତ । ଏ ବହି ଖଣ୍ଡିକ ଆଜି ପର୍ଯ୍ୟନ୍ତ କେହି ପାଇ ନାହିଁ । ପରବର୍ତ୍ତୀ ଲେଖକମାନେ ତାଲିକାଭୁକ୍ତ କରି ନାହାନ୍ତି । ଖ୍ରୀ: ୧୯୦୪ ରେ ଶ୍ରୀ ମଧୁସୂଦନ ଦାଶ— "ଓଡ଼ିଆ ଭାଷା ଓ ପ୍ରାଚୀନ ଓଡ଼ିଆସାହିତ୍ୟ"ରେ ଭଞ୍ଜଙ୍କ ଗ୍ରନ୍ଥ-ଗୁଡ଼ିକର ନାମ ଦେଇଛନ୍ତି । ସେଥିରେ ସେ ହଣ୍ଟର ସାହେବଙ୍କ ତାଲିକା ଅବିକଳ ଗ୍ରହଣ କରିଛନ୍ତି । ଖ୍ରୀ: ୧୯୧୪ ରେ ଶ୍ରୀ ତାରିଣୀଚରଣ ରଥ ଉତ୍କଳସାହିତ୍ୟର ଇତିହାସରେ ପ୍ରକାଶିତ ଓ ଅପ୍ରକାଶିତ ୪୨ ଖଣ୍ଡ ବହିର ନାମ ଉଲ୍ଲେଖ କରିଛନ୍ତି । ହଣ୍ଟର ଦେଇଥିବା ବସନ୍ତୀଶ ନାମ ସେଥିରେ ନାହିଁ । ଖ୍ରୀ: ୧୯୨୯ ରେ ପ୍ରକାଶିତ "ପ୍ରାଚୀନଉତ୍କଳ"ରେ ଶ୍ରୀ ଜଗବନ୍ଧୁ ସିଂହ ୮୫ ଖଣ୍ଡ ବହିର କେବଳ ନାମ ଦେଇଛନ୍ତି । ସେଥିରେ 'ହାସ୍ୟାର୍ଣ୍ଣବ' ଓ 'କଟପାସ୍ୟା'—ଦୁଇଟି ନୂତନ ରଚନାର ନାମ ଉଲ୍ଲେଖ କରିଛନ୍ତି । ଖ୍ରୀ: ୧୯୩୦ ରେ ଶ୍ରୀ ବିଜୟଚନ୍ଦ୍ର ମଜୁମଦାର * ଭଞ୍ଜଙ୍କ ୪୨ଟି ଗ୍ରନ୍ଥର ନାମ ଦେଇଛନ୍ତି । ତାହା ହଣ୍ଟରଙ୍କ ତାଲିକା ତୁଲ୍ୟ ଜଣାଯାଏ ।

ଖ୍ରୀ: ୧୯୨୮ରେ ପ୍ରକାଶିତ 'ଓଡ଼ିଆ ସାହିତ୍ୟ ଇତିହାସ'ରେ ଶ୍ରୀ ବିନାୟକ ମିଶ୍ର ଭଞ୍ଜଙ୍କ ଗ୍ରନ୍ଥ ତାଲିକାରେ ୪୮ଟି ନାମ ରଖିଛନ୍ତି । ଖ୍ରୀ: ୧୯୪୮ରେ ସ୍ୱପ୍ରଣୀତ ଓଡ଼ିଶା ଇତିହାସରେ ଶ୍ରୀ ହରେକୃଷ୍ଣ

* Selections from Oriya Literature—Vol. I

Digitized by srujanika@gmail.com

ମହତାବ, ବିନାୟକ ମିଶ୍ରଙ୍କ ତାଲିକା ଗ୍ରହଣ କରିବା ସଙ୍ଗେ ସଙ୍ଗେ ଭଞ୍ଜନଗର ଭଞ୍ଜ-ସାହିତ୍ୟ-ପରିଷଦର ତାଲିକା ଗ୍ରହଣ କରି ଗ୍ରନ୍ଥ ସଂଖ୍ୟା ୬୮ କରିଛନ୍ତି, ୬୮+ଅନୁଲିଖିତ ୫ ମିଶିଲେ ୧୯୫୨ ସାଲର ଭଞ୍ଜଙ୍କ ଗ୍ରନ୍ଥ ସଂଖ୍ୟା କେବଳ ଶୁଣିବାକୁ ହୁଏ ୭୩ ।

ପାଞ୍ଚଭାଗ—

ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀକୁ ନିମ୍ନୋକ୍ତ ପାଞ୍ଚ ଭାଗରେ ବିଭକ୍ତ କରାଯାଇ ପାରେ:—

(୧) ଗୀତିକା—ଛପୋଇ, ଗାହା, ଦୋହା, ନୀଳାଦ୍ରୀଶ ଚଉତିଶା, ଚଉପଦୀଭୂଷଣ, ଚଉପଦୀଚନ୍ଦ୍ର, ସଙ୍ଗୀତ ।

(୨) ପୌରାଣିକ କାବ୍ୟ—ସୁଭଦ୍ରାପରିଣୟ, ଅବନାରସତରଙ୍ଗ, ବ୍ରଜଲୀଳା, ରାମଲୀଳାମୃତ, କୁଞ୍ଜବିହାର, ରାସଲୀଳା, କଳାକଉତୁକ, ବୈଦେହୀଶବିଳାସ ।

(୩) କାଳ୍ପନିକ କାବ୍ୟ—ହେମମଞ୍ଜରୀ, ଚିତ୍ରଲେଖା, ଲାବଣ୍ୟବତୀ, ରସଲେଖା, ସୁବର୍ଣ୍ଣରେଖା, କାମକଳା, ମନୋରମା, ପ୍ରେମଲତା, ଭାବବତୀ, ମୁକ୍ତାବତୀ, ପ୍ରେମସୁଧାନିଧି, ରସିକହାରାବଳୀ, କୋଟି-ବ୍ରହ୍ମାଣ୍ଡସୁନ୍ଦରୀ, ତ୍ରୈଲୋକ୍ୟମୋହିନୀ, ଚନ୍ଦ୍ରକଳା, ଚନ୍ଦ୍ରରେଖା, ଇଚ୍ଛାବତୀ, କଳାବତୀ, ଶଶିରେଖା, ଶୋଭାବତୀ, ରସମଞ୍ଜରୀ ।

(୪) ଆଲଙ୍କାରିକ କାବ୍ୟ—ଛାନ୍ଦଭୂଷଣ, ଚିତ୍ରକାବ୍ୟବନ୍ଧୋଦୟ, ରସପଞ୍ଚକ ।

(୫) ବିବିଧ ରଚନା—ଷଡ଼ଋତୁ, ଗୀତାଭିଧାନ, ପୁରୁଷୋତ୍ତମ ମାହାତ୍ମ୍ୟ ।

କବିଙ୍କ କାଳ୍ପନିକ କାବ୍ୟର ସଂଖ୍ୟା ଅଧିକ ଥିବା ଉପରୋକ୍ତ ବିଭାଗରୁ ଜଣାଯାଏ । ଧନଞ୍ଜୟ, ଦୀନକୃଷ୍ଣ, ଶିବନନ୍ଦ, ବୃନ୍ଦାବତୀ ଦାସୀ ପ୍ରଭୃତି ପୂର୍ବବର୍ତ୍ତୀ କବିମାନଙ୍କଦ୍ୱାରା ବିଭିନ୍ନ ଶ୍ରେଣୀର ରଚନା ଭିନ୍ନ ଭିନ୍ନ ବୃତ୍ତ, ଶୈଳୀ, ଅକ୍ଷର ସଂଯମ ଓ ଅଳଙ୍କାର ସମ୍ଭାର ସହିତ ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ପ୍ରବର୍ତ୍ତିତ ହୋଇଥିଲେ ମଧ୍ୟ, ଅଷ୍ଟାଦଶ ଶତାବ୍ଦୀରେ ତାହା ଉପେନ୍ଦ୍ର ଭଞ୍ଜଙ୍କ ଲେଖନୀରେ ପୂର୍ଣ୍ଣରୂପେ ବିକାଶ ଲାଭ କରିଛି । କବିଙ୍କ ସରସ ଓ ଶ୍ରେଷ୍ଠକାବ୍ୟ ବୈଦେହୀଶବିଳାସ, ଲାବଣ୍ୟବତୀ ଓ କୋଟିବ୍ରହ୍ମାଣ୍ଡ-ସୁନ୍ଦରୀରେ କବିପ୍ରତିଭାର ଅଦ୍ୱିତୀୟ ବୈଶିଷ୍ଟ୍ୟ ପ୍ରତିପାଦିତ ହୋଇଅଛି । ସେହି ଶ୍ରେଷ୍ଠ ତିନି କାବ୍ୟର ବିଷୟବସ୍ତୁ ନିମ୍ନରେ ପ୍ରଦତ୍ତ ହେଲା—

ବିଷୟ ବସ୍ତୁ:—ବୈଦେହୀଶବିଳାସରେ, ଶ୍ରୀରାମଚନ୍ଦ୍ରଙ୍କ ଜନ୍ମଠାରୁ ରାଜ୍ୟାଭିଷେକ ପର୍ଯ୍ୟନ୍ତ ରାମାୟଣର ଚିତ୍ତାକର୍ଷକ ପ୍ରସଙ୍ଗଗୁଡ଼ିକ ଚିତ୍ରଣ କରାଯାଇଛି । ଅନ୍ୟାନ୍ୟ ପ୍ରସଙ୍ଗ—ବାଲ୍ମୀକି ଆଶ୍ରମରେ ଜାନକୀଙ୍କ ଠାରୁ ଲବ କୁଶ ଜନ୍ମ, ବୈଦେହୀଙ୍କ ପାତାଳଗମନ, ରାମଚନ୍ଦ୍ରଙ୍କ ବୈକୁଣ୍ଠଗମନ ଇତ୍ୟାଦି "ବିଭଙ୍ଗ ରସ ବୋଲି ଣ ନ ବର୍ଣ୍ଣିଲି" କହି କବି ଉପସଂହାର କରିଛନ୍ତି ।

## କୋଟିବ୍ରହ୍ମାଣ୍ଡସୁନ୍ଦରୀ—

ଚମ୍ପାନଗରୀ ରାଜାଙ୍କ ନାମ ବିଶ୍ୱାନନ୍ଦ, ପାଟରାଣୀ ଥିଲେ—ବିଚିତ୍ରକଳା । ସେମାନଙ୍କର କୌଣସି ପାର୍ଥିବସମ୍ପଦର ଅଭାବ ନ ଥିଲା; ମାତ୍ର "ରାଜା ରାଣୀଙ୍କ ନନ୍ଦନୀ ପ୍ରାପତ ଇଚ୍ଛାକୁ ଏକା ନ ପୁରଇ ଚିତ୍ତ ।" ଅତଏବ ବୁଦ୍ଧିସାଗରଙ୍କ ପ୍ରସ୍ତାବକ୍ରମେ ମୋକ୍ଷପ୍ରାପ୍ତି ଉଦ୍ଦେଶ୍ୟରେ ବିଶ୍ୱାନନ୍ଦ ସଦଳବଳରେ ବଦରିକାଶ୍ରମକୁ ଗମନ କଲେ । ମାର୍ଗ ମଧ୍ୟରେ ଗଙ୍ଗାରେ ସ୍ନାନ ବେଳେ ବ୍ରହ୍ମାଙ୍କ ବାହନ ହଂସକୁ ରାକ୍ଷସ ମୁହଁରୁ ରକ୍ଷା

Digitized by srujanika@gmail.com

କରିବା ସୁବିଧା ରାଜାଙ୍କୁ ଘଟିଲା । କୃତଜ୍ଞତାର ନିଦର୍ଶନ ସ୍ୱରୂପ ହଂସ ରାଜାଙ୍କୁ ବ୍ରହ୍ମାଙ୍କ ସମୀପକୁ ନେଇ ତାଙ୍କର ବିଷୟ ଜଣାଇଲେ । ବ୍ରହ୍ମା ରାଜାଙ୍କ ହୃଦଗତ କଥା ବୁଝି ପାରି, ଦିବ୍ୟକନ୍ୟା ରତ୍ନମର୍ଦ୍ଦାଙ୍କୁ ଅର୍ପଣ-ପୂର୍ବକ ରାଜାଙ୍କ ମନକାମନା ପୂର୍ଣ୍ଣ କଲେ । କେଦାରେଶ୍ୱରଙ୍କ ନିକଟବର୍ତ୍ତୀ ସ୍ୱର୍ଣ୍ଣ ସରୋବର ତୀରସ୍ଥ ଚନ୍ଦନ-ବନରେ "ଏ କନ୍ୟାକୁ ନେଇ ବିହର, କହିଗଲେ ପଦ୍ମଯୋନି ।"

ରତ୍ନମର୍ଦ୍ଦା କନ୍ୟାଟିଏ ଜନ୍ମହେବା ପର୍ଯ୍ୟନ୍ତ ରାଜାଙ୍କ ନିକଟରେ ଥିଲେ, ତାପରେ ଅଦୃଶ୍ୟ ହେଲେ । କନ୍ୟା ସହିତ ରାଜା ଗୃହକୁ ଦଳବଳ ସହିତ ପ୍ରତ୍ୟାବୃତ୍ତ ହେଲେ । ସେହି କନ୍ୟାଟିର ଅନୁପମ ରୂପ ଅନୁରୂପ ନାମ ରଖାଗଲା—

"କୋଟିବ୍ରହ୍ମାଣ୍ଡସୁନ୍ଦରୀ"—ପୁଷ୍ପପୁର ରାଜା ଦୀପ୍ତିସାଗରଙ୍କ ଯୋଗ୍ୟପୁତ୍ର ପୁଷ୍ପକେତୁ କୋଟିବ୍ରହ୍ମାଣ୍ଡ-ସୁନ୍ଦରୀଙ୍କ ପାଣିଗ୍ରହଣ କଲେ । ଏହି କାବ୍ୟର ନାୟକ ନାୟିକା ଯଥାକ୍ରମେ, ପୁଷ୍ପକେତୁ ଓ କୋଟି-ବ୍ରହ୍ମାଣ୍ଡସୁନ୍ଦରୀ ।

**ଲାବଣ୍ୟବତୀ** :—"ଦିନେ କଇଳାସେ ବସି ଏକାନ୍ତେ ଗଉରୀ ପଶାରଙ୍ଗେ ରସିବାକୁ ସ୍ୱସଙ୍ଗେ", ଗୋଟିଏ ଦିବ୍ୟ କନ୍ୟା ମନରୁ ଜାତ କଲେ । ପାର୍ବତୀଙ୍କ ବାଞ୍ଛାରୁ ଜାତ ହେବାରୁ କନ୍ୟାର ନାମ ରହିଲା ବାଞ୍ଛାବତୀ । ରୂପ ଗୁଣରେ କନ୍ୟାରତ୍ନଟି ହେଲା ଅଦ୍ୱିତୀୟା । ସେହି ଲୋଭନୀୟା କନ୍ୟା ପ୍ରତି ହରଙ୍କ ଦୃଷ୍ଟି ପଡ଼ିଲେ ପାର୍ବତୀଙ୍କ ସର୍ବନାଶ ହେବ, ଏହି ଆଶଙ୍କାରେ ସେ କନ୍ୟାଟିକୁ ଗଣଦେବୀଦ୍ୱାରା ଗହନଅରଣ୍ୟ ମଧ୍ୟସ୍ଥ ନବନିର୍ମିତ ଏକ ରତ୍ନପୁରରେ ସ୍ଥାପନ କଲେ । ଏହି ଜନ୍ମରେ ପୁରୁଷ ଅଙ୍ଗ ସ୍ପର୍ଶରେ କନ୍ୟାର ମୃତ୍ୟୁ ହେବ, ଅନ୍ୟଜନ୍ମରେ ବାଞ୍ଛିତ ପୁରୁଷ ସହ ସଙ୍ଗମ ହେବ—ଏହି ନିର୍ଦ୍ଦେଶ ପାର୍ବତୀଙ୍କର ଥିଲା । ଦିନେ ପ୍ରଭାକର ନାମରେ ଏକ କ୍ଷତ୍ରିୟକୁମାର, ଯାହାର କି ତପ "ଅକଥନୀୟ ଦିବ୍ୟ ନାରୀ ଶ୍ରେକେ" ସେହି ଗହନବିପିନ ମଧ୍ୟସ୍ଥ ରତ୍ନମୟପୁର ପ୍ରାଙ୍ଗଣରେ ବାଞ୍ଛାବତୀଙ୍କ ଅପୂର୍ବ ଦର୍ଶନ ଲାଭକଲେ । ସହସା "ସେ ପ୍ରେମମଞ୍ଜରୀ ଶୋଭାପଞ୍ଜରୀ ହୋଇଲା, ପୁଂସନେତ୍ର ଖଞ୍ଜରୀଟ ତହିଁରେ ରହିଲା ।" "ଏ କାଳରେ ପୁଂସଠାରେ ବାମାଦୃଷ୍ଟି ପାତ । ଜନ୍ମଅନ୍ଧ ନୟନକୁ ଲଭିଲେ ଯେମନ୍ତ ସେ ।" କିନ୍ତୁ ପ୍ରଭାକର ବାଞ୍ଛାବତୀର ଅଙ୍ଗ ସ୍ପର୍ଶ କରିବା ସଙ୍ଗେ ସଙ୍ଗେ ବାଞ୍ଛାବତୀର "ଜୀବହୀନ ହୋଇଣ ରହିଲା କଳେବର ।" "ଏହି ସମୟରେ ଶୁଭିଲା ଅଶରୀରୀ ବାଣୀ, ଗଙ୍ଗା ସାଗର ସଙ୍ଗମେ ଝାସ ପୁଂସମଣି । ଏ ବାଳୀକି ଲଭିବୁ ନୃପସୁତ ହୋଇ, ଅନଳେ ନ ଦହି ସେହିଠାରେ ଯାଅ ଥୋଇ ।" ସେହିପରି ହେଲା । ପ୍ରଭାକର କର୍ଣ୍ଣାଟେଶ୍ୱର ଶଶିଶେଖରଙ୍କ ପୁତ୍ର ରୂପେ ଜନ୍ମଗ୍ରହଣ କଲେ, ନାମ ରଖାଗଲା—ଚନ୍ଦ୍ରଭାନୁ । ବାଞ୍ଛାବତୀ ସିଂହଳ ରାଜା ଓ ରାଣୀ—ରତ୍ନେଶ୍ୱର ଓ ବିଦ୍ୟୁଲ୍ଲତାଙ୍କ କନ୍ୟାରୂପେ ଜନ୍ମପରିଗ୍ରହ କଲେ । ରାଣୀ ବିଦ୍ୟୁଲ୍ଲତା ଦୁହିତା ନ ଥିବାରୁ ଚୈତ୍ରବ୍ରତ କରି ଗିରିଜାଙ୍କୁ ତୁଷ୍ଟ କଲେ । ବାଞ୍ଛିତ ଫଳ ପ୍ରଦାନ ଅଭିପ୍ରାୟରେ ସ୍ୱୟଂ ଅମ୍ବିକା ଅଗମ୍ୟ ଗିରିଗହ୍ୱରରେ ଥିବା ବାଞ୍ଛାବତୀର ମୃତପିଣ୍ଡକୁ ଜୀବନ୍ୟାସ କଲେ । ଅମ୍ବିକାଙ୍କ ଆଜ୍ଞାରେ ତାହା ରସାଳ ଫଳ ହେଲା । ଭକ୍ଷଣ ପାଇଁ ସେ ତାହା ବିଦ୍ୟୁଲ୍ଲତାଙ୍କୁ ଦେଲେ । ଭକ୍ଷଣ ମାତ୍ରେ ଗର୍ଭୋଦୟ ହେଲା । ଯଥାସମୟରେ ଯେଉଁ ଝିଅ ଜନ୍ମ ହେଲା, ତାର ନା ହେଲା—ଲାବଣ୍ୟବତୀ । କାବ୍ୟର ନାୟକ ଚନ୍ଦ୍ରଭାନୁ ଓ ନାୟିକା ଲାବଣ୍ୟବତୀ, ଉଭୟଙ୍କର ପରିଶେଷରେ ମିଳନ ହେଲା । ମିଳନ ପରେ ବିଚ୍ଛେଦର ସୂତ୍ରପାତ । "ଦୁଷ୍ଟ ପୁଲୋମ କାଳକେୟଗଣ' ମେଳହୋଇ ସେ ସସପ୍ତକ ସଙ୍ଗ" ଋଷିମାନଙ୍କ ଯାଗ ନାଶ କରୁଥିଲେ । ସେମାନଙ୍କୁ ଦମନ କରିବାକୁ କେବଳ ଚନ୍ଦ୍ରଭାନୁ ଯୋଗ୍ୟ—ଏହି କଥା ମହର୍ଷିମାନେ ଧ୍ୟାନ ବଳରେ ବୁଝି ପାରି ନିଶ୍ୱାପିକା ଚଣ୍ଡୀଙ୍କୁ "ପେଷିଲେ ଚନ୍ଦ୍ରଭାନୁ ହରିବାକୁ", ତାହା ହେଲା । ସେ ଶତ୍ରୁ-ମାନଙ୍କୁ ଦମନ କରି ଶାନ୍ତି ସ୍ଥାପନ କଲେ; ବିଜୟମଣ୍ଡିତ ହୋଇ ପ୍ରତ୍ୟାବୃତ୍ତ ହେଲେ; ରାଜସିଂହାସନ ଅଧିରୋହଣ କରି ଆଦର୍ଶ ଶାସକର ପରିଚୟ ଦେଲେ । ନାୟକନାୟିକା ଶାନ୍ତି ସନ୍ତୋଷରେ କାଳଯାପନ କଲେ ।

Digitized by srujanika@gmail.com

ଏହି କାବ୍ୟମାନଙ୍କରେ ବାଲ୍ୟଜୀବନ, ଯୌବନ, ପ୍ରେମପତ୍ର ଆଦାନପ୍ରଦାନ ଶୁକ, ସନ୍ନ୍ୟାସୀ, ସନ୍ନ୍ୟାସିନୀ, ମାଳିନୀ ପ୍ରଭୃତି ଦୂତଦୂତୀର ସମସ୍ୟୋଚିତ ବ୍ୟବହାର କୁହୁକ ମନ୍ତ୍ରବଳରେ ବା ଦୈବଯୋଗ ଦ୍ୱାରା ସ୍ୱପ୍ନରେ ଦର୍ଶନ, ମିଳନ, ନଗରନଗରୀ ନଦୀପର୍ବତ, ଷଡ଼ଋତୁ, ମୃଗୟା ବର୍ଣ୍ଣନା; ସହଚର ସହଚରୀଙ୍କ ହାର୍ଦ୍ଦିକ ସହାନୁଭୂତି, ବିଶୁଦ୍ଧ ବନ୍ଧୁଭାବ ଇତ୍ୟାଦିର ଚିତ୍ରଣ ଯେଉଁପରି ଶିକ୍ଷାପ୍ରଦ ସେହିପରି ହୃଦୟସ୍ପର୍ଶୀ । ପ୍ରତ୍ୟେକ କାବ୍ୟ କବିତାରେ କବି ସ୍ୱକୀୟା ବ୍ୟତୀତ ପରକୀୟା ପ୍ରୀତିକୁ ସ୍ଥାନ ଦେଇ ନାହାନ୍ତି ।

## ଅନ୍ୟ କାବ୍ୟ:—

ପ୍ରେମସୁଧାନିଧିର ବିଷୟ—କୁଶଳ ଦେଶର ରାଜା ଜାତଦେବଙ୍କ କୁମର ପୁରନ୍ଦର ଏଥିରେ ଦୁଷ୍ମନ୍ତ ନାୟକ । ନାୟିକା—ପ୍ରେମସୁଧାନିଧି, କେରଳ ରାଜ୍ୟର ରାଜା ଜଗଜ୍ଜିତଙ୍କର ପୁତ୍ରୀ । ବାଳିକା ଅବସ୍ଥାରେ ପ୍ରେମସୁଧାନିଧି ପୁରନ୍ଦରକୁ ବିବାହ କଲେ । "ଅଦୃଷ୍ଟ ଅଦୃଷ୍ଟରଜାକୁ ବିବାହ । ହେଲେହେଁ ଉତ୍ସବ ଆମ୍ଭର ନ କହି ।" କେତେ ଦିନ ଅନ୍ତେ ପୁନର୍ବିବାହ ହେଲା, ବନ୍ଦାପନା ବିଧାନ, ମଧୁଶଯ୍ୟା ଭୁଞ୍ଜିଲା । "କାରଣ ବଶେ ବିଦେଶ କରିବାକୁ ଆଜ୍ଞା ଦେଲେ ନରେଶ୍ୱର ।"

**ରାମଲୀଳାମୃତ**—ରାମଚନ୍ଦ୍ର, ଲକ୍ଷ୍ମଣଙ୍କ ବିଶ୍ୱାମିତ୍ର ସହିତ ଗମନ, ଶିବଧନୁ ଭଙ୍ଗ, ବିବାହ, ପର୍ଶୁରାମ ଭେଟ ଓ ଅଯୋଧ୍ୟା ଆଗମନ ପର୍ଯ୍ୟନ୍ତ ସଂକ୍ଷିପ୍ତ ବୃତ୍ତାନ୍ତ ଏଥିରେ ଦିଆଯାଇଛି ।

**ସୁବର୍ଣ୍ଣରେଖା**—କୋଶଳ ନୃପତି କୁମାର ଏଥିର ନାୟକ । ନାୟିକା— "ଅଛି, ନୃପେ କୁଳେ ସତ; ମନ୍ତ୍ରୀ କୁମାରୀ ଯେ ।"

ତାର ନାମ ସୁବର୍ଣ୍ଣରେଖା । ନାୟକ ନାୟିକାଙ୍କ ଗାନ୍ଧର୍ବମତେ ବିବାହବିଧାନ ବଢ଼ିଲା । 'ଛାତବାଣୀ' ମତେ କେତେ ମାସ ପରେ "କୁମର କଲା ପ୍ରବାସ ।" ପରେ ମିଳନ ।

## ଅବନାରସତରଙ୍ଗ—

ସୀତା ଓ ରାମ ଉଭୟଙ୍କର "ରସବର୍ଦ୍ଧନ" "ମନ ତତ୍ପର" ହେବାରୁ ଅବନା ରସତରଙ୍ଗ ରଚନା କରାଗଲା । ସୂର୍ପଣଖାର ନାସା କର୍ଣ୍ଣ ଛେଦନଠାରୁ ରାମଚନ୍ଦ୍ରଙ୍କ ଅଭିଷେକ ପର୍ଯ୍ୟନ୍ତ ସଂକ୍ଷିପ୍ତ ରାମାୟଣ ବୃତ୍ତାନ୍ତ, ଷଡ଼ଋତୁ, ବନ ପ୍ରଭୃତି ବର୍ଣ୍ଣନା ସହିତ ଏଥିରେ ସନ୍ନିବେଶିତ ଅଛି ।

କାବ୍ୟଗୁଡ଼ିକର ବିଷୟବସ୍ତୁ ସମାଲୋଚନା କରି ମନମୋହନ ଚକ୍ରବର୍ତ୍ତୀ କହନ୍ତି-- * ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟଗୁଡ଼ିକର ବିଷୟବସ୍ତୁ ପ୍ରାୟଶଃ ଏକାରକମ ଥିବା ହେତୁ, ତାହା ନିମ୍ନମତେ ବ୍ୟକ୍ତ କରାଯାଇପାରେ:—

---

* "The romantic stories of Bhanja are practically so uniform that it may be generalised by the following sketch. The story opens with the description of a beauteous girl attending on Parvati or Radha (Lakshmi)in Heaven. Some Prince occasionally a Rishi falls in love with her who returns his love. For this Parvati or Radha curses her to take birth as woman; but on her entreaty changes the curse of human life with the lover as her husband. The girl is born as a princess and the lover as a prince. The childhood and the youth is then described. One hears the other and falls in love. This gradually leads to marriage."

Digitized by srujanika@gmail.com

ଅମରଧାମରେ ପାବର୍ତ୍ତୀ ବା ରାଧା (ଲକ୍ଷ୍ମୀ) ଙ୍କୁ ସେବା କରୁଥିବା ଅବସ୍ଥାରେ କୌଣସି ପରମା ରୂପବତୀ ବାଳିକାର ବର୍ଣ୍ଣନାରେ କାବ୍ୟ ଆରମ୍ଭ ହୁଏ । କୌଣସି ରାଜପୁତ୍ର ବା ରାଜର୍ଷିଙ୍କ ସହିତ ସେ ପ୍ରେମାସକ୍ତ ହେଲେ ପାର୍ବତୀ ବା ଲକ୍ଷ୍ମୀଙ୍କ ଶାପରେ ସେ ମର୍ତ୍ତ୍ୟଧାମରେ ଅବତୀର୍ଣ୍ଣ ହୁଏ । ସାନୁନୟ ପ୍ରାର୍ଥନାରେ ପ୍ରେମିକପ୍ରେମିକା ରାଜପୁତ୍ର ଓ ରାଜକନ୍ୟା ରୂପେ ଜନ୍ମଗ୍ରହଣ କରନ୍ତି । ବାଲ୍ୟାବସ୍ଥା ଓ ଯୌବନାବସ୍ଥା ଯଥାସମୟରେ ବର୍ଣ୍ଣନାର ବିଷୟବସ୍ତୁ ହୁଏ । ଜଣେ ଅନ୍ୟର ରୂପ ଦେଖି, ଗୁଣ ଶୁଣି, ପ୍ରେମାସକ୍ତ ହୁଏ, ପରେ କ୍ରମେ କ୍ରମେ ପାଣିଗ୍ରହଣ ବିଧାନ କରେ ।

ଚକ୍ରବର୍ତ୍ତୀଙ୍କ ଉପରୋକ୍ତ ମତ ସମୀଚୀନ ମନେ ହୁଏ ନାହିଁ । ଉକ୍ତ ବିଷୟବସ୍ତୁ ଲକ୍ଷଣ୍ୟବତୀ କାବ୍ୟ ପ୍ରତି କେବଳ ପ୍ରଯୁଜ୍ୟ, ଅନ୍ୟାନ୍ୟ କାବ୍ୟ ପ୍ରତି ନୁହେଁ । ତାହା ହୁଏ ପ୍ରଥମ ପ୍ରଧାନ କଥା । ୨ୟ—ଯେ କୌଣସି କାବ୍ୟର ସଂକ୍ଷିପ୍ତବୃତ୍ତାନ୍ତରୁ ଲେଖକ ଓ ଲେଖାର ସାମର୍ଥ୍ୟ ଓ ମାଧୁର୍ଯ୍ୟ ଧରି ହୁଏ ନାହିଁ । କାଳିଦାସ, ସେକ୍ସପିଅର, ଦାନ୍ତେ ପ୍ରଭୃତି ବିଶ୍ୱବିଖ୍ୟାତ କବିଙ୍କ କାବ୍ୟ, ନାଟକର ମର୍ମ ମଧ୍ୟ ଏପରି ନଗ୍ନ ଭାବରେ ୨।୪ ପଦରେ କୁହାଯାଇ ପାରିବ, କିନ୍ତୁ ସେଥିରେ ସନ୍ନିବେଶିତ ମାଧୁର୍ଯ୍ୟ, ମୌଳିକତା ଓ ମହନୀୟତା ଉପଲବ୍ଧି କରି ହେବ ନାହିଁ ।

କାବ୍ୟ କବିତାର ରୂପ:—ଉପେନ୍ଦ୍ର ଭଞ୍ଜଙ୍କ ସମସ୍ତ ଗ୍ରନ୍ଥ ପଦ୍ୟରେ ଲେଖାଯାଇଅଛି । ଛନ୍ଦୋବଦ୍ଧ ପଦାବଳୀକୁ ପଦ୍ୟ କୁହାଯାଏ । ଜନ୍‌ସନଙ୍କ ମତରେ କବିତା ହେଉଛି—ଛନ୍ଦୋବଦ୍ଧବିଶିଷ୍ଟ ରଚନା । କନ୍‌ଷ୍ଟ ଆର୍ଣ୍ଣଲିଡ଼୍‌ଙ୍କ ମତରେ, 'ନୈସର୍ଗିକ ପ୍ରେରଣା, ମୂର୍ଚ୍ଛନାସମ୍ଭୂତ ଭାବ ଭାଷାର ନାମ କବିତା ।' କାହା କାହା ମତରେ (Poetry is music first, meaning afterwards.) 'କବିତା ପ୍ରଥମେ ସଙ୍ଗୀତମୟ ହେବା ଆବଶ୍ୟକ, ପରେ ଅର୍ଥ' । ପୋପଙ୍କ ମତରେ * 'ସୌନ୍ଦର୍ଯ୍ୟର ସମସ୍ତ ଉପାଦାନର ଛନ୍ଦୋବର୍ତ୍ତନ ଭିତରେ ଏକତ୍ରୀକରଣହିଁ କବିତା ।' କାହା କାହା ମତରେ—ତାହା ମନୁଷ୍ୟ ସମାଜର ସମାଲୋଚନା (A criticism of life) ମେକାଲେ କହନ୍ତି †—ଚିତ୍ରକର ବିବିଧ ରଙ୍ଗ ରଞ୍ଜିତ କରି ଯେଉଁପରି ଚିତ୍ର ସମ୍ମୁଖରେ ଅଙ୍କନ କରି ରଖେ, ସେହିପରି ଶବ୍ଦ ସଂଯୋଗରେ ଏପରି ଆଲେଖ୍ୟ କଳ୍ପିବାକୁ କବି ଶିଖିବ ଯେ ତାହା ଯେପରି କଳ୍ପନା ରାଜ୍ୟର ଗୋଟିଏ ଅଦ୍ଭୁତପୂର୍ବ ଆଲେଖ୍ୟରୂପେ ଗଣ୍ୟ-ହେବ । ଏ ସମସ୍ତ ଲକ୍ଷଣ ଭଞ୍ଜସାହିତ୍ୟରେ ପୂର୍ଣ୍ଣ ପରିଦୃଷ୍ଟ ହୁଏ । ଶବ୍ଦ ଯୋଜନା ଓ ଅଳଙ୍କାରପ୍ରୟୋଗରେ ଉପେନ୍ଦ୍ର ଭଞ୍ଜ ଅନନ୍ୟସାଧାରଣ ବିବେଚିତ ହେଉଥିଲେ ମଧ୍ୟ ତାହାଙ୍କର କବିତା କେତେକ ସମାଲୋଚକ-ମାନଙ୍କ ରୁଚିର ଅନୁକୂଳ ହୋଇ ପାରିନାହିଁ । ସେମାନେ ପାଶ୍ଚାତ୍ୟ କବିଙ୍କ ଲିଖନ ରୀତିରେ ପ୍ରଭାବିତ ହୋଇ ହତାଶ ହୁଅନ୍ତି । ସେହିହେତୁ କାବ୍ୟ କବିତା ତଥା ଶବ୍ଦ ଯୋଜନା ଓ ଅଳଙ୍କାର ପ୍ରୟୋଗ ସମ୍ପର୍କରେ କେତେକଣ ସ୍ୱନାମଧନ୍ୟ ପାଶ୍ଚାତ୍ୟ କବିଙ୍କ ଉକ୍ତି ଉଦ୍ଧୃତ ହେଲା ।

ବିଶ୍ୱନାଥ କହନ୍ତି—

"ବାକ୍ୟଂ ରସାତ୍ମକଂ କାବ୍ୟମ୍" "ସ୍ୱାଚ୍ଛ୍ୟଂ
ପ୍ରତିଭାଭ୍ୟାସୋ ଭକ୍ତିର୍ବିଦ୍ୱତ୍ କଥା ବହୁଶ୍ରୁତତା,
ସ୍ମୃତି ଦାର୍ଢ୍ୟ ମନିର୍ବେଦଶ୍ଚ ମାତରୋଽଷ୍ଟୌ । କବିତ୍ୱସ୍ୟ"

---

*"The 'Rhythmic creation of beauty"—*Pope*

† "We mean the art of employing words in such a manner as to produce an illusion on the imagination, the art of doing by means of words. What the painter does by means of colour"—*Mecaulay.*

Digitized by srujanika@gmail.com

ମହାକାବ୍ୟ :—ପ୍ରତିପାଦ୍ୟ ବିଷୟର ଏକତ୍ୱ (ଅର୍ଥାତ୍ ବର୍ଣ୍ଣିତ ଘଟଣାଗୁଡ଼ିକ ଅନ୍ୟୋନ୍ୟାଶ୍ରିତ ହୋଇ ଏକ ଉଦ୍ଦେଶ୍ୟସାଧନ କରିବା), ମହତ୍ତ୍ୱ (ସାମାନ୍ୟ ବା କ୍ଷୁଦ୍ର ନ ହୋଇ ଲୋକ ପ୍ରସିଦ୍ଧ ହେବା); ଉପାଦେୟତ୍ୱ କିମ୍ବା ବୈଚିତ୍ର୍ୟମୟୀ ମନୋହାରିତା (ଅଦ୍ଭୁତ ବର୍ଣ୍ଣନାକୌଶଳ) ମହାକାବ୍ୟର ପ୍ରଧାନ ଅଙ୍ଗ ବୋଲି ଗ୍ରୀସ୍ ଦାର୍ଶନିକ ଆରିଷ୍ଟଟଲ୍ ନିରୂପଣ କରିଅଛନ୍ତି । ଆଚାର୍ଯ୍ୟ ଦଣ୍ଡୀଙ୍କ ମତରେ—ମହାକାବ୍ୟ ପ୍ରାରମ୍ଭରେ (୧) ବିଘ୍ନାପହରଣ ନିମିତ୍ତ ପ୍ରଭୁଙ୍କ ପ୍ରତି ନମସ୍କ୍ରିୟା* ଓ ବସ୍ତୁ ନିର୍ଦ୍ଦେଶ (୨) ବିଭିନ୍ନ ବୃତ୍ତ (୩) ଅନ୍ୟୂନ ତ୍ରିଂଶସର୍ଗସମ୍ବଳିତ ହେବା ବିଧେୟ । ଏ ସମସ୍ତ ମହାକାବ୍ୟ ଲକ୍ଷଣ ବୈଦେହୀଶବିଳାସ, ଲାବଣ୍ୟବତୀ ଓ କୋଟିବ୍ରହ୍ମାଣ୍ଡସୁନ୍ଦରୀରେ ପୂର୍ଣ୍ଣଭାବେ ଦେଖାଯାଏ । କାବ୍ୟର ପ୍ରାରମ୍ଭରେ ମଙ୍ଗଳାଚରଣ ରହିଛି । ବିଷ୍ଣୁ, ସୂର୍ଯ୍ୟ, ରାମଚନ୍ଦ୍ର, ଜଗନ୍ନାଥ ପ୍ରଭୃତି ମଧ୍ୟରୁ ଯେ କୌଣସି ଦେବତାଙ୍କର ସ୍ତବ ପ୍ରଦତ୍ତ ହୋଇଅଛି । କାବ୍ୟର ନାୟକ ପ୍ରାୟ ଧୀରୋଦାତ୍ତ । ପ୍ରତ୍ୟେକ କାବ୍ୟରେ ବନ, ଉପବନ, ସରୋବର, ନଦୀ, ପର୍ବତ, ନଗର, ନଗରୀ, ଷଡ଼ଋତୁ, ପ୍ରଦୋଷ, ପ୍ରଭାତ, ବିବାହ, ବିରହ, ଯୁଦ୍ଧଯାତ୍ରା, ମୃଗୟା, ସାମାଜିକ ରୀତି ପ୍ରଭୃତି ଚିତ୍ତାକର୍ଷକ ରୀତିରେ ଦିଆଯାଇଛି । ସୁନ୍ଦର ବୃତ୍ତମାନଙ୍କର ଚମତ୍କାର ବିନ୍ୟାସ, ବିବିଧ ଅଳଙ୍କାରର ଉପଯୁକ୍ତ ପ୍ରୟୋଗ ହେତୁ କବିଙ୍କ ବୈଦେହୀଶବିଳାସ, ଲାବଣ୍ୟବତୀ ଓ କୋଟିବ୍ରହ୍ମାଣ୍ଡ-ସୁନ୍ଦରୀରେ ମହାକାବ୍ୟର ଲକ୍ଷଣମାନ ପୂର୍ଣ୍ଣରୂପେ ପରିଦୃଷ୍ଟ ହୁଏ ।

ମହାକବି :—ଶବ୍ଦ, ଅର୍ଥ, ଉକ୍ତି, ଅଳଙ୍କାର ପ୍ରଭୃତି ଦଶବିଧ ମାର୍ଗରେ ଯେଉଁ କବି ନିପୁଣ, ସେହି ମହାକବି ଆସନର ଯୋଗ୍ୟ ବୋଲି ରାଜଶେଖରଙ୍କ ମତ । ଉକ୍ତ ଦଶବିଧ ମାର୍ଗରେ ଉପେନ୍ଦ୍ର ଭଞ୍ଜ ନିଜର ପ୍ରତିଭା ପ୍ରତିପାଦିତ କରି ଅଛନ୍ତି ।



* ଏହି ରୀତି ପାଶ୍ଚାତ୍ୟ କବିମାନେ ମଧ୍ୟ ଅନୁସରଣ କରନ୍ତି; Sing Heavenly Muse, etc. Milton.



Digitized by srujanika@gmail.com

## ପ୍ରଭାବ

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ପ୍ରସିଦ୍ଧ ପ୍ରାଚୀନ ସଂସ୍କୃତଜ୍ଞ କବିମାନଙ୍କ ଗ୍ରନ୍ଥ ଅନୁଶୀଳନ କରି, ସେଥିରେ ବ୍ୟବହୃତ ଅଳଙ୍କାର ଯୋଜନା, ଗୁଣ, ବୃତ୍ତି, ରସ, ରୀତି, ବର୍ଣ୍ଣନାବୈଚିତ୍ର୍ୟ, ଅସରନ୍ତି ଶବ୍ଦସମ୍ଭାର ପ୍ରଭୃତି ପୂର୍ଣ୍ଣରୂପେ ଆୟତ୍ତ କରିଥିଲେ । ସଂସ୍କୃତସାହିତ୍ୟରେ କବିଙ୍କର ଯେ ଗାଢ଼ ପାଣ୍ଡିତ୍ୟ ଥିଲା, ତାହା ତାଙ୍କର ଗ୍ରନ୍ଥରୁହିଁ ସ୍ପଷ୍ଟ । ସେଥିରେ ସନ୍ନିବିଷ୍ଟ ରୀତି, ବୃତ୍ତି ଅଳଙ୍କାର ପ୍ରୟୋଗର ମନୋହାରିତା ଇତ୍ୟାଦି ଓଡ଼ିଆ ସାହିତ୍ୟରେ କୃତିତ୍ୱର ସହିତ ପ୍ରୟୋଗ କରି ସଂସ୍କୃତଜ୍ଞ ପଣ୍ଡିତ ଓ କବିମାନଙ୍କରେ ପ୍ରାକୃତ ପ୍ରତି ଥିବା ଅନାଦର ଦୂର କରିବାକୁ ସେ ଉଦ୍ୟମ କରିଥିଲେ । ସେଥିରେ ସେ ଆଶାତୀତ ଯଶସ୍ୱୀ ହୋଇପାରିଛନ୍ତି, କହିବା ବାହୁଲ୍ୟ । ସେ ଜ୍ଞାତ ଓ ଅଜ୍ଞାତସାରରେ ପ୍ରସିଦ୍ଧ ପ୍ରାଚୀନ କାବ୍ୟସ୍ରଷ୍ଟାଙ୍କ ଦ୍ୱାରା କପରି ପ୍ରଭାବିତ, ତାହା ସମାଲୋଚକମାନେ ମୁହୁର୍ମୁହୁ ଆଲୋଚନା କରି ଆସୁଛନ୍ତି—

**ପ୍ରାକୃତ କାବ୍ୟ** – ଶତାବ୍ଦ ୧୪—୧୭ ଭିତରେ ଓଡ଼ିଶାରେ ଅସଂଖ୍ୟ ଦୁର୍ଲ୍ଲଭ କାବ୍ୟ ପ୍ରଣୀତ ଓ ପ୍ରଚାରିତ ହୋଇଥିଲା । ତନ୍ମଧ୍ୟରୁ ଅର୍ଜ୍ଜୁନ ଦାସଙ୍କ ରାମବିଭା, ନରସିଂହଙ୍କ ପଦ୍ମମେଳା, ଶିଶୁଶଙ୍କରଙ୍କ ଉଷାଭିଳାଷ, ଚକ୍ରପାଣିଙ୍କ କୃଷ୍ଣବିଳାସ, ଦେବଦୁର୍ଲ୍ଲଭଙ୍କ ରହସ୍ୟମଞ୍ଜରୀ, କାର୍ତ୍ତିକଙ୍କ ରୁକ୍ମଣୀବିଭା, ବିଷ୍ଣୁଦାସଙ୍କ ପ୍ରେମଲୋଚନା, ରଘୁନାଥ ହରିଚନ୍ଦନଙ୍କ ଲୀଳାବତୀ, ଧନଞ୍ଜୟ ଭଞ୍ଜଙ୍କ ରଘୁନାଥବିଳାସ, ରତ୍ନମଞ୍ଜରୀ, ଦୀନକୃଷ୍ଣଙ୍କ ଜଗମୋହନ ଛାନ୍ଦ, ରସକଲ୍ଲୋଳ, ଲୋକନାଥ ବିଦ୍ୟାଧରଙ୍କ ଚନ୍ଦ୍ରକଳା, ରସକଳା, ସର୍ବାଙ୍ଗ ସୁନ୍ଦରୀ, ପଦ୍ମାବତୀ ପରିଣୟ ଉଲ୍ଲେଖଯୋଗ୍ୟ । ଏ ସମସ୍ତ କାବ୍ୟର ପ୍ରଭାବ ଭଞ୍ଜଙ୍କର କାବ୍ୟମାନଙ୍କରେ ପରିଦୃଷ୍ଟ ହୁଏ । * (୧) "ଲାବଣ୍ୟବତୀର ଶୋଭା ବର୍ଣ୍ଣନା, ଉପବନ, ବିହାର ଓ ସରସୀକ୍ରୀଡ଼ାର ବର୍ଣ୍ଣନା ସହିତ ରତ୍ନମଞ୍ଜରୀର ସ୍ନାନ, ସରସୀର ବର୍ଣ୍ଣନାରେ ବିଶେଷ ସାମ୍ୟ ଅଛି । (୨) ଯୋଗିନୀ ଦ୍ୱାରା ଚନ୍ଦ୍ରଭାନୁ ଓ ଲାବଣ୍ୟବତୀର ମିଳନ ଓ ଚନ୍ଦ୍ରଭାନୁର ତିରୋଧାନ ପରେ ଲାବଣ୍ୟବତୀର ହୃଦୟବିଦାରକ ଖେଦ ଶିଶୁଶଙ୍କରଙ୍କ ଉଷାଭିଳାଷରେ ଉଷାର ଖେଦ ଅନୁରୂପ । (୩) ବୈଦେହୀଶ-ବିଳାସର କଥାବସ୍ତୁ ଉପେନ୍ଦ୍ର ଭଞ୍ଜ ଦାଣ୍ଡି (ଜଗମୋହନ) ରାମାୟଣରୁ ଗ୍ରହଣ କରିଅଛନ୍ତି । ଲାବଣ୍ୟବତୀର ୧୫ଶ ଛାନ୍ଦରେ ଐନ୍ଦ୍ରଜାଲିକ ଦ୍ୱାରା ଯେ ରାମଚରିତ ବର୍ଣ୍ଣିତ ତାହା ଜଗମୋହନ ରାମାୟଣର ଅନୁରୂପ । (୪) ଲୀଳାବତୀର ଜଗନ୍ନାଥ ସ୍ତୁତିର ପ୍ରଭାବ ଉପେନ୍ଦ୍ର ଭଞ୍ଜଙ୍କ କୋଟିବ୍ରହ୍ମାଣ୍ଡସୁନ୍ଦରୀ, ସୁଭଦ୍ରାପରିଣୟ, ରସିକହାରାବଳୀରେ ଦ୍ରଷ୍ଟବ୍ୟ । ଲୀଳାବତୀ କାବ୍ୟର ନାୟକ ଚନ୍ଦ୍ରପୀଡ଼ା— ଚନ୍ଦ୍ରପୀଡ଼ା ପିତାଙ୍କ ନାମ ଚନ୍ଦ୍ରଭାନୁ, ଲାବଣ୍ୟବତୀର ନାୟକର ନାମ ଚନ୍ଦ୍ରଭାନୁ—ବାଣଭଟ୍ଟଙ୍କର କାଦମ୍ବରୀ କାବ୍ୟର ପ୍ରଭାବ ଲୀଳାବତୀ ଓ ଲାବଣ୍ୟବତୀରେ ପରିଦୃଷ୍ଟ ହୁଏ ।"

**ପୂର୍ବ ବଂଶଧରଙ୍କ ପ୍ରଭାବ**—କବିଙ୍କ ବଂଶରେ ଏକାଧିକ କବି ଥିଲେ । ଗୁମୁସର ରାଜ୍ୟର ପ୍ରାଚୀନ ରାଜା ବଳଭଦ୍ର ଭଞ୍ଜ (ଖ୍ରୀ: ୦୨୭—୧୦୫୭) 'ଭାବବତୀ' ନାମରେ ଖଣ୍ଡିଏ କାବ୍ୟ ଲେଖିଥିଲେ । ତାଙ୍କୁ ପ୍ରଥମ କାବ୍ୟଲେଖକ ସ୍ୱରୂପ ଗ୍ରହଣ କରାଯାଏ । ଭଞ୍ଜବଂଶର ଅନ୍ୟାନ୍ୟ ଉଲ୍ଲେଖ-ଯୋଗ୍ୟ କବି ହୁଅନ୍ତି—ତ୍ରିବିକ୍ରମ ଭଞ୍ଜ, ଦେଓ ଭଞ୍ଜ, ରଘୁନାଥ ଭଞ୍ଜ, ପଦ୍ମନାଭ ଭଞ୍ଜ, ଶଙ୍କର ଭଞ୍ଜ,

* ଲା: ବ: ମୁଖବନ୍ଧରେ ଦ୍ରଷ୍ଟବ୍ୟ ।

Digitized by srujanika@gmail.com

ପ୍ରତାପ ଧନଞ୍ଜୟ ଭଞ୍ଜ, ଘନ ଭଞ୍ଜ, ଯୁଗ ଭଞ୍ଜ ଓ ଗୋବିନ୍ଦ ଭଞ୍ଜ । ଏମାନଙ୍କ କାବ୍ୟରୁ ଅଧିକାଂଶ ଅପ୍ରକାଶିତ ରହିଥିଲେ ମଧ୍ୟ, ଧନଞ୍ଜୟଙ୍କ ରଘୁନାଥବିଳାସ, ମଦନମଞ୍ଜରୀ, ରତ୍ନମଞ୍ଜରୀ ଇତ୍ୟାଦିର ପ୍ରଭାବରେ ତ୍ରିବିକ୍ରମ ଭଞ୍ଜଙ୍କ (ଖ୍ରୀ: ୧୬୪୮-୬୮) 'କନକଲତା' ବଳଭଦ୍ରଙ୍କ ଭାବବତୀ ପ୍ରଭାବରେ ଉପେନ୍ଦ୍ରଙ୍କ ଗ୍ରନ୍ଥାଦି ପ୍ରଭାବିତ ହେବା ଅନୁମିତ ହୁଏ ।

**ଭଞ୍ଜସାହିତ୍ୟର ପ୍ରଭାବ:**—ଓଡ଼ିଆ ବୈଷ୍ଣବ କବିମାନଙ୍କ ମଧ୍ୟରୁ ଅଧିକାଂଶ ଭଞ୍ଜୀୟ-ସାହିତ୍ୟରେ ପ୍ରଭାବିତ ଥିଲେ । ସେମାନଙ୍କ ମଧ୍ୟରୁ ସଦାନନ୍ଦ, ଅଭିମନ୍ୟୁ, କବିସୂର୍ଯ୍ୟ, ଯଦୁମଣି, ପଦ୍ମନାଭ ଦେବ, ଭୂପତି ଭଞ୍ଜ, ଭକ୍ତଚରଣ, ବଳଭଦ୍ର ଭ୍ରମରବର, ବ୍ରଜନାଥ ବଡ଼ଜେନା ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଅଭିମନ୍ୟୁ ସାମନ୍ତସିଂହାରଙ୍କ ପ୍ରତ୍ୟେକ ଗ୍ରନ୍ଥ, ପ୍ରଧାନତଃ ସୁଲକ୍ଷଣା, ରସବତୀ, ପ୍ରେମକଳା ଭଞ୍ଜୀୟ ଛାଞ୍ଚରେ ଲିଖିତ ।*

ବିଦଗ୍ଧଚିନ୍ତାମଣିରେ ଭଞ୍ଜୀୟପ୍ରଭାବ ଅନୁଭୂତ ହୁଏ । ଯଥା:—

"ରସାତଳ ସ୍ୱର୍ଗ ମର୍ତ୍ତ୍ୟରେ ନାହିଁଟି ପ୍ରୀତି ସମାନ ପଦାର୍ଥ,
ରବି ପଦ୍ମ ପ୍ରେମେ ଉଦେହେଲେ ଉତ୍ତମ ବଚନ ନୁହଇଟି ବ୍ୟର୍ଥ ।" ( ର: ପ. )

"କହେ ସଖି ଶୁଣ କିଶୋରୀମଣି ବିଧିରଚନା କି ପ୍ରୀତିରତି ପୁଣି,
ଅବ୍ୟୟ ଅକ୍ଷୟ ନିତ୍ୟ ପଦାର୍ଥ । କେ ଜାଣିବ ପ୍ରୀତି ଶବଦ ଅର୍ଥ,
ଅଜିତ ଇନ୍ଦ୍ରିୟ, କଲେ କରନ୍ତି ପୀରତି ଆଶ୍ରୟ ।

× × × ×

ଲକ୍ଷ ଘୋଡ଼ା ନବନୀତ ସୁଆର ପ୍ରଚଣ୍ଡାନଳେ ପଥ ଚାଳିବାର,
ତହିଁକି କଣ ରହିବ ଶରୀର ତହୁଁ ଅଧିକ ପ୍ରୀତି ପାଳିବାର
କହୁଛି ଏତିକି, ଦୂରୁ କୁହାର ପୀରତି ସାଧକ ।" (ବି: ଚି:)

ଅଭିମନ୍ୟୁ ଭଞ୍ଜୀୟ କବିତା ମାଧୁର୍ଯ୍ୟରେ ଏତେଦୂରଯାଏ ମୁଗ୍ଧ ହୋଇଥିଲେ ଯେ ସେ ନିଜେ କହନ୍ତି—"ଉପେନ୍ଦ୍ର ପଦ ଅଭିମନ୍ୟୁ ମନୁ, ପାସୋରି ନ ଯିବ ଦିନୁ ଦିନୁ ।" କବିସୂର୍ଯ୍ୟଙ୍କ କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ଭଞ୍ଜଙ୍କ ଚୌପଦୀଭୂଷଣ ଗ୍ରନ୍ଥରେ ଲିଖିତ ।

ଆଧୁନିକ ସାହିତ୍ୟ-ସାମ୍ରାଜ୍ୟର ଯୁଗପ୍ରବର୍ତ୍ତକ ରାଧାନାଥ ରାୟଙ୍କ ଉଷା, ନନ୍ଦିକେଶରୀ, ପାର୍ବତୀ, ଯଯାତି, ମହାଯାତ୍ରା ପ୍ରଭୃତିରେ ପାଠକେ ଭଞ୍ଜୀୟ ପ୍ରଭାବ ଅନୁଭବ କରନ୍ତି, ଯଥା:—

---

*... ...... Of the early poetical works of the author—Sulakhana, Rasabati, Premakala, are love stories composed in immitation of Upendra Bhanja's romances" (*Mazumdar*).

Digitized by srujanika@gmail.com

ଉ—୧ "ଚୈତ୍ର ଚତୁର୍ଥୀ ଗୃହିଁଲା ଜଣିନାଶେ ପାଶେ ନାହିଁ ଦବୀ ତରୁଣ ......"
ଛା: ୧୨, ଲ: ବ: ।

"ବାଣସୁତା ସ୍ୱପ୍ନ ଫୁସ ସଙ୍ଗେ ମାତ୍ର ନାନାରଙ୍ଗେ ପ୍ରେମୋଲ୍ଲାସେ,
ଚୈତ୍ର ଚତୁର୍ଥୀ ସେ ଫୁସରତନକୁ ଅଣାଇଲା ନିଜ ପାଶେ ।" (ଯଯାତି) ସ: ସ୍ୱ ।

ଉ—୨ "ଫଲ୍‌ଗୁ ସଙ୍ଗତ ବଚନ, ବଦାଣଲେ ତାରଂ ଗାନ ।
ମନ୍ତ୍ର ସହ ସ୍ୱଚ୍ଛଜଳ, ଜାତ ତଲ୍ଲାଳ ଯେ ।" (କୋ: ବ୍ର: ସୁ:) ।

"ଗୟାକ୍ଷେତ୍ରେ ପ୍ରତିଷ୍ଠିତ ଗୟାସୁର ଶିରେ,
ଯହିଁ ବହେ ଅନ୍ତଃସଲିଳା ତଟିନୀ,
ଫଲ୍‌ଗୁନଦୀ.. ......... ........ ..." (ମହାଯାତ୍ରା) ସ: ସ୍ୱ ।

ଉ—୩ "ବାତେ ବାଣଦମେଲ ହେଲା ପ୍ରାୟ ରୁକ୍ଷ ରାକ୍ଷସଙ୍କ ଦ୍ୱନ୍ଦ୍ୱ
ବରଷେକେ ତହିଁ ଉପଳ, କେ କରେ ଆୟୁଧେ କୁଳିଶ ଭେଦ;
ସେ ବେଳ, ବଜ୍ରଶବ୍ଦ ତହିଁ ଘୋର ଧ୍ୱନି
ବରିହରୁ ଜଳଧାର ଦାନ ।" ଛା: ୪୪, ୨୧ ବୈ: ବ: ।

"ପ୍ରଳୟ ଜୀମୂତ ଯେହ୍ନେ ପୂର୍ଣ୍ଣଇରମ୍ମଦେ
ପ୍ରଭଞ୍ଜନ ପୃଷ୍ଠେ ନଭେ ବେଗେ ଉଡ଼ି ଆସି
ବେଳ ଅନ୍ତୁ ବେଳ ଘାଟେ ପଡ଼ନ୍ତ ବେଳଏ ।" (ମହାଯାତ୍ରା) ସ: ସ୍ୱ:

ଉ—୪ "ବସିଲେ ତରଣୀ ଅଙ୍କେ ଗ୍ରହ୍ମାପର ହୋଇ ।
ବରଜବା ପୁଷ୍କର ଗମନେ ସେ ଯୋଗାଇ ଯେ ।
ବଖ୍ୟାତ ଉଡୁପ ନାମ ଯୁକ୍ତ ତରଳରେ,
ବ୍ୟଗ୍ରବନ୍ତ ଗତ କରେ ଜଣି ଦବଯରେ ଯେ ।
ଘାଟ ରଜ୍ଜୁମୀନ କୂର୍ମ ଝିଙ୍କାଜନ ଯୋଖେ,
ବେଳ ରୋଧେ (ତୀରରେ) ମୃଗମୃଗୀ ନରନାରୀ ଦେଖେ ଯେ ।"
ପ: ୭୩, ଛା୪, ବୈ: ବ: ।

"ରଙ୍ଗେ ଆଲୋଡ଼ଣ ବଳାଙ୍ଗୀ-ତରଙ୍ଗ କ୍ଷେପଣୀ ଚଳେ,
ବେଳ ତୀରେ ଶ୍ୟାମ ପାଦପ ବଲ୍ଲରୀ ଧାଏଁ ଚଞ୍ଚଳେ । ଇତ୍ୟାଦ । (କୃଷ୍ଣା) ସ: ସ୍ୱ ।

ଉ—୫ "ଯେଉଁଜଣ ତର୍ଜ୍ଜିଲା ବଧୂ ସହଚରୀ ପଣ ପଣବାରୀ ପ୍ରବେଶ ।

× × × ×

ଫଗୁମୁଣା ଖୋସି ହସିବାର ଗୃହେ ସଖୀଏ ସାଜିଲେ ତୂରନ୍ତ । ଛା୫, ଲ: ବ: ।

"ଜଳୀ ନଳୀ-କୋଷ-ମୁଠୋଷ୍ଟୁ ଟ କରି ପଲ୍ଲବ-କର ପ୍ରସାରିଲେ
ମକରନ୍ଦ ଗନ୍ଧ-ପିଚକା ପରାଗ ଫଗୁ ଅଙ୍ଗେ ଖେଳିଲେ ।" ଛା୨, କୋ: ବ୍ର: ସୁ: ।

Digitized by srujanika@gmail.com

"ଏହାପରେ ପୁଣି ଦୋଳଚତ୍ୱର ଲାଗିଛୁ ଆଜ ଗହଳ,
ଫଗୁ ବର୍ଣ୍ଣୋଦକେ ସର୍ବାଙ୍ଗ ରଞ୍ଜିତ ବିହରନ୍ତି ଯୁବାଦଳ ।

× × × ×

ନବତରୁଣୀଙ୍କ ଅମଳ କପୋଳ ଅରୁଣ ଗୁଲାବ ପାରେ । ଇତ୍ୟାଦି ।
(ପାର୍ବଣୀ) ରା: ରାୟ ।

ରାଧାନାଥ ରାୟ ଅଭିମନ୍ୟୁଙ୍କ ତୁଲ୍ୟ ଭଞ୍ଜୀୟ କବିତାମାଧୁର୍ଯ୍ୟରେ ମୁଗ୍ଧ ଏବଂ ପ୍ରଭାବିତ ହୋଇ କହନ୍ତି—"ନାହିଁ ସେହି କାହିଁ ମୁହିଁ ଅକିଞ୍ଚନ ।" ସେ ଉପେନ୍ଦ୍ର ଭଞ୍ଜଙ୍କୁ ଉଚ୍ଚ ସ୍ତରର କବି ସ୍ୱରୂପ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ସୋତ୍ସାହ ପତ୍ର ନମ୍ରତା ପ୍ରକାଶ କରିଅଛନ୍ତି । ମାନବିକତାର ବିକାଶ ଘଟିଥିବା ହୃଦୟରୁ ସାଧାରଣତଃ ଏହିପରି ପଦେ ଅଧେ ପ୍ରକାଶ ପାଇଥାଏ । ଯେ କୌଣସି କବି ଉଚ୍ଚ କୋଟୀର କବି ହୋଇଥିଲେ ମଧ୍ୟ, ସମସାମୟିକ ବା ପ୍ରାଚୀନ ବିଖ୍ୟାତ କବିଙ୍କ କବିତାରେ ପ୍ରଭାବିତ ହୋଇ ପାରନ୍ତି । ଯେଉଁ ଗ୍ରନ୍ଥଗୁଡ଼ିକ ଲୋକରେ ପଠିତ, ଆଦୃତ, ସେହି ଗ୍ରନ୍ଥଗୁଡ଼ିକରେ ଥିବା ଦୁର୍ଲ୍ଲଭ ଭାବ, ସଙ୍ଗୀତ, ଆଦର୍ଶ ଆଦିରେ ପାଠକ ମୁଗ୍ଧ ଓ ପ୍ରଭାବିତ ହେବା ସ୍ୱାଭାବିକ । ତଦ୍ୱାରା କାହାର ଲେଖାରେ ବା ଆତ୍ମସମ୍ମାନରେ ହାନି ଘଟେ ନାହିଁ ।

'ଉଷା'ର ବିଷୟବସ୍ତୁ 'ଲାବଣ୍ୟବତୀ'ର ବିଷୟବସ୍ତୁ ତୁଲ୍ୟ ଅନୁମିତ ହୁଏ । ରାଧାନାଥ ରାୟ ଭଞ୍ଜଙ୍କ ଶବ୍ଦଯୋଜନା, ବିଷୟବସ୍ତୁ, ଅଲଙ୍କାର ପ୍ରୟୋଗରେ ମୁଗ୍ଧ ହୋଇ ତାଙ୍କୁ ଗୁରୁତୁଲ୍ୟ ଜ୍ଞାନ କରୁଥିଲେ । ଖ୍ରୀ: ୧୮୯୩ରୁ ଇନ୍ଦ୍ରଧନୁ, ବିଜୁଳିରେ ଦେଖା ଦେଇଥିବା ବୈତଣ୍ଡିକମାନଙ୍କୁ ସୁଶିକ୍ଷା ଦେବା ଉଦ୍ଦେଶ୍ୟରେ ବାଲେଶ୍ୱରରୁ ପ୍ରକାଶିତ "ନବସମ୍ବାଦ"ରେ ସେ ପ୍ରଚାର କରିଥିଲେ—"ସେ ସ୍ୱୟଂ ମଧ୍ୟ ଭଞ୍ଜ କବିଙ୍କର ଜଣେକ ଭକ୍ତ ।" ରାଧାନାଥ ରାୟଙ୍କ ଭଞ୍ଜଙ୍କର ପ୍ରତି କିପରି ଅସାଧାରଣ ସମ୍ମାନ ଓ ଦୃଢ଼ଭକ୍ତି ଥିଲା ତାହା ନିମ୍ନଲିଖିତ ବଙ୍ଗଳା କବିତାରେ ସ୍ପଷ୍ଟ ହୁଏ:—

"ନୀଳକଣ୍ଠାତ୍ମଜ ନମସ୍ୟ ଶସ୍ତ୍ରଧର,
କି ଦେଶ ବଲେରଶୂଲ୍ ସେନାନୀ ହଇୟେ ।
ବହୁ କଷ୍ଟ ସହ୍ୟ କରି ରଣ ଘୋରତର,
ପାଇଲ ଅକ୍ଷୟ ଯଶଃ ତାରକେ ବଧିୟେ ।
ହେ ନୀଳକଣ୍ଠନନ୍ଦନ ନୃପକୁଳ ଧନ !
ତୁମି ଓ ତେମତି ଶୂର ! ସୁକବିମଣ୍ଡଳେ,
ହୟେ ଅଗ୍ରଗଣ୍ୟ କବି ନିଜ ବାହୁ ବଲେ ।
ନାଶିଲ ଉତ୍କଲ ନିନ୍ଦା ଉତ୍କଲଭୂଷଣ ।
ଧନ୍ୟ ରାଜକବି ତୁମି ! ଜନମ ସୁକ୍ଷଣେ,
ଗହନଲ ଏ ପ୍ରଦେଶେ ହେ କବୀନ୍ଦ୍ର ମଣି !
ସୁଯଶସ୍ୱୀ ସୁସମୟେ ସରସ ଲେଖନୀ,
ଧରିଲ ଉପେନ୍ଦ୍ର ! ମରି ଯେ ଗୃହଭୂଷଣେ ।
ସାଜାୟେଛ ବୈଦେହୀଶେ ହେ କବିରତନ,
ତୋମା ବିନା ସାଧ୍ୟ କାର ସାଜାୟ ଏମନ ।" ରା: ରାୟ

Digitized by srujanika@gmail.com

**ଐତିହାସିକମାନେ ପ୍ରଭାବିତ:**—ଓଡ଼ିଶା, ଶିଳ୍ପ ନୈପୁଣ୍ୟରେ ଜଗତକୁ ଯେପରି ମୁଗ୍ଧୀଭୂତ କରିଛି, ସାହିତ୍ୟରେ ମଧ୍ୟ ତଦ୍ରୂପ । ଭଞ୍ଜସାହିତ୍ୟ ଓ ଭଞ୍ଜକାବ୍ୟ ପ୍ରଭାବିତ ସାହିତ୍ୟ ଝଙ୍କାରରେ ଓଡ଼ିଶାର ବନପର୍ବତ, ପଲ୍ଲୀପାଟଣା ଝଙ୍କାରିତ ହୋଇ ଯେତେବେଳେ ତାହା ଓଡ଼ିଶାର ସୀମା ଅତିକ୍ରମ କଲା, ଘଟନାପୂର୍ଣ୍ଣ ଓଡ଼ିଶାର ତଥ୍ୟସଂଗ୍ରହ କରି ଇତିହାସ ଲେଖିବା ଭାବ ଐତିହାସିକମାନଙ୍କ ହୃଦୟରେ ସଞ୍ଚାରିତ ହେଲା । ପରେ ପରେ ହଣ୍ଟର ସାହେବ କହନ୍ତି— "Upendra Bhanja, a Raja of Ghumsur, and the most eminent of all Oriya poets, lived 300 years ago". (Hunter's Orissa VII P. 209) ଘୁମୁସରର ଜଣେ ରାଜା ( ରାଜା ନୁହନ୍ତି, ରାଜବଂଶଜ) ପୁଣି ଓଡ଼ିଆ କବିକୁଳସମ୍ରାଟ—ଉପେନ୍ଦ୍ର ଭଞ୍ଜ ତିନି ଶତ ବର୍ଷ ପୂର୍ବେ ଜୀବିତ ଥିଲେ ।

(Biswanatho Das, kavi, alias Purusotham Biswanatho Khuntiya lived 300 years ago, a writer of great calebrity, and author of the Bichitra Ramayana). (Hunter's History of Orissa, P. 201 )

ବିଚିତ୍ର ରାମାୟଣ କବି ବିଶ୍ୱନାଥ ତିନି ଶତ ବର୍ଷ ପୂର୍ବେ ଜୀବିତ ଥିଲେ ବୋଲି ପୁଣି ହଣ୍ଟର କହନ୍ତି । ୰ ମୃତ୍ୟୁଞ୍ଜୟ ରଥ କହନ୍ତି—"ବିଚିତ୍ର ରାମାୟଣ ଲୋକରେ ଯେତେ ସୁପରିଚିତ ହେଉ, ତାହାକୁ ପାଠକଲେ କେତେକ ସ୍ଥଳରୁ ଜଣାଯାଏ, ଏହା ଭଞ୍ଜ କବିଙ୍କ ପ୍ରସିଦ୍ଧ କାବ୍ୟ 'ବୈଦେହୀଶବିଳାସ' ପରେ ରଚିତ । ବୈଦେହୀଶବିଳାସ, ଉଚ୍ଚ ଶ୍ରେଣୀର ମହାକାବ୍ୟ ଏବଂ ସାଧାରଣ ଦୁର୍ବୋଧ୍ୟ ଥିବାରୁ କବି ବିଶ୍ୱନାଥ ସାଧାରଣବୋଧ୍ୟ ସରଳ ଭାଷାରେ ବିବିଧ ଛାନ୍ଦ ବୃତ୍ତରେ ବିଚିତ୍ର ଏହି ରାମାୟଣକୁ ରଚନା କରିଥିଲେ ।"

ବିମ୍ସ୍ ଭଞ୍ଜସାହିତ୍ୟରେ ପ୍ରଭାବିତ ହୋଇ ଉପେନ୍ଦ୍ର ଭଞ୍ଜଙ୍କ ଜନ୍ମସ୍ଥାନ ପ୍ରକୃତିର ଲୀଳାସ୍ଥଳୀ ବିଶାଳ ଗୁମୁସର ସମ୍ବନ୍ଧରେ ପଦେ ଯଥାର୍ଥ କଥା କହିବା ସମୀଚୀନ ମନେକରି କହନ୍ତି—("Gumsoor... even to the present day, is celebrated as the home of purest from of the language.") ଆଜିଦିନ ସୁଦ୍ଧା ଗୁମୁସର ବିଶୁଦ୍ଧ ଭାଷାରେ ପବିତ୍ରପୀଠ ସ୍ୱରୂପ ପ୍ରସିଦ୍ଧ ।



Digitized by srujanika@gmail.com

# ଆଦିମ ଅଧିବାସୀଙ୍କ ପ୍ରଭାବ

ଘୁମୁସରର ଅଧିବାସୀଙ୍କ ପ୍ରଧାନତଃ ଆଦିମ ଅଧିବାସୀଙ୍କ ରୀତି ନୀତି, ଆଚାର ବ୍ୟବହାର, ଶିକାର ରାଜଭକ୍ତି, ତନ୍ତ୍ର ମନ୍ତ୍ର, ଚେରମୂଳ ଔଷଧ, ଦେବୀପୂଜା, ମେରିଆବଳି ଇତ୍ୟାଦି ପ୍ରସଙ୍ଗ ୧୦ ଓ ୧୩ ପରିଚ୍ଛେଦମାନଙ୍କରେ ବର୍ଣ୍ଣନା କରାଯାଇଛି । ଉକ୍ତ ସମସ୍ତ ସମାଚାର କବି ସ୍ୱଚକ୍ଷୁରେ ଦେଖିଥିବାରୁ, ତାହାର ପ୍ରଭାବ କବିଙ୍କ ଗ୍ରନ୍ଥାଦିରେ ସ୍ଥାନେ ସ୍ଥାନେ ଦେଖାଯିବା ସ୍ୱାଭାବିକ । କେତେକ ସ୍ଥଳରୁ କେତୋଟି ଦୃଷ୍ଟାନ୍ତ ମାତ୍ର ଏଥିରେ ଲିପିବଦ୍ଧ ହେଲା :—

"ଶବରପନ୍ତି କି ଭୟଙ୍କର ଯଥା ପରେତଗଣ୍ଠି କଙ୍କର ଭୂଷା ବଦ୍ଧ ଗୁଞ୍ଜଞ୍ଜରର ମଧ୍ୟରେ ମଣ୍ଡି ଯେ, ମନ୍ତ୍ରର ପଢ଼ି ଧୂଳି ଉଡ଼ାଇ ଗଲେ ଯେ ପଶୁପକ୍ଷୀ ଗୋଡ଼ାଇ ଧମକ ରୂପେ କାଣ୍ଡ ବଢ଼ାଇ ଠାଣି ଗୃହସ୍ଥ ଯେ । ବ୍ୟାଧେ ବନ୍ଧନ ନଳ ଜାଲ ଟାଣିକି ଯେ, ନଳଆଳରେ ଯେଉଁ ଅଠାକାଠିକି ଯେ ।" ଲା:ବ: ଛାଂ: ୨୪ ।

"ବଳିପଦ୍ମ ପକ୍ୱଣ ପ୍ରାପ୍ତକ କଲି ଯେ । ବାଜୁ ଝମକ ତାଙ୍କୁ ଚମକ ଦେଲି ଯେ । ବସିଲେ ଲୁଚି ଯେ ମଦ ଭର ନାଗେଶ୍ୱରର ଗୋପ୍ୟ ସ୍ଥାନର ମଣି ଦନ୍ତୁଡ଼ି ଦେଖାଇବାର ସମ୍ମତ ହେଲି ଯେ ।"

ଛାଂ ୯, ବୈ: ବି: ।

"କେରଳିଙ୍କବେ କେରଳ ମାୟା ହୋଇବ"...ଛାଂ: ୮, ଲା: ବ: ।

"ବ୍ୟାଜ ଏ ଶବର ପ୍ରାୟେ କୁଠାରେ ତ ବନ୍ଧ । ବୃତ୍ତି କରିଛ ସମଧ ବନ୍ଧଗଣ୍ଠି କି କନ୍ଧ ହେ ।"

ଛାଂ: ୧୬, ବୈ: ବି: ।

"ହଠାତ ମନ୍ତ୍ରଧୂଳିକି ପକାଇ ଯେ ଯୁବା, ଚାଉ ଧରି ପଣନ୍ତରେ ବାନ୍ଧିନେଲି କବା ଯେ ।"

ଲା: ବ: ।

"ଉତ୍ତାନ-ହସ୍ତେ କେରଳି କି ରଚେ"......ଛାଂ ୨, କୋ: ବ୍ର: ସୁ: ।

"ଶ୍ରୀମହାପ୍ରସାଦ-ଗନ୍ଧ ପଦ ଘଣ୍ଟାଘୋଷ, ଭକ୍ଷଣେ ଶ୍ରବଣେ ଯେ ଜଳବିନ୍ଦୁ ବିଷ ନାଶ ହେ ।"

ଛାଂ ୧, କୋ: ବ୍ର: ସୁ: ।

"ଭ୍ରମ ହେବାରୁ ତାହାର ଆହାର ଏ ବ୍ୟବହାର ନ କରନ୍ତି ମୋପରକି ବ୍ୟାଧି ପ୍ରଚାର । ଜାଙ୍ଗଲ କେ ଦେଇ କପର୍ଦ୍ଦି, କୋଳିବ ବ୍ରୂଲ ଆଣନ୍ତି ଆନ ସମ୍ବାଦ ।" ର: ହା: ।

"ତନ୍ତ୍ର ବଧ ବଶୀକରଣ ବୋଲନ୍ତି ସଂସାର । କି ମନ୍ତ୍ର କି ମଣି କେଉଁ ଔଷଧି ସାର । ପଚାରନ୍ତି କେ ଉପାୟୀ । ଯେଉଁଥାନ୍ତି ତାହା ଚତୁରଙ୍କ ବେଳ ପାଇ..." କୋ: ବ୍ର: ସୁ: ।

"ଖଡ଼ଗ ସାଧନେ ଦୃଢ଼ ଭୂମି କର କେ କାହାକୁ ପୀଡ଼ା କରିବ, ଏବେ ଜାଣିମା ବଳିଷ୍ଠେ ପଡ଼ିବ କି ଦଶା ।" ଛାଂ ୪, ପ୍ରେ: ସୁ: ।

Digitized by srujanika@gmail.com

"ଚତୁର ଚତୁର୍କ ତର୍କ ଶ୍ରବଣେ କ ହେବ । କାମ-ପ୍ରେତ-ହନ୍ତା ମନ୍ତ୍ର ଲେଖି କେବା ଦେବ ଯେ ।" ଗ୍ରୁ୧୫, କୋ: ବ୍ର: ସୁ: ।

"ବ୍ୟାଘବର ଶବର ମାରନ୍ତ ଗ୍ରୁଳ ଯୋଗେ ଯେ ।" ଗ୍ରୁ୪୮, ବୈ: ବ: ।

"ସର୍ପତୁଣ୍ଡି କ ବଜାଇ ଡାକ ଖେଳାଇ ସର୍ପ ମନ୍ତ୍ରକୁ ଡାକ ମର୍କଟ ନାଟ ନାହିଁ କୁତୁକ କରାଉଛନ୍ତ ଯେ ।" ଗ୍ରୁ୨, ସୁ: ପ: ।

"ସେ ବଶେ ଘାଣ ହେଉଛୁ ପଦ ନ ମାନଇ ।" ଗ୍ରୁ୨୨, କୋ: ବ୍ର: ସୁ: ।
ବରଦ୍ଧତ ସର୍ପ ପଣ, ଦ୍ରୁମ୍ଭ ରସ ଗନ୍ଧ ପ୍ରାୟେ ଏଥୁଁ ପାରେ ତାଣ ।" ଗ୍ରୁ୧୪, ପ୍ରେ: ସୁ: ।

"ଶବର ପଣ୍ଡୁକୁଟୀରେ ଥିଲେ ମୁନ୍ନନାଗ, ବଜାଇ ସମ୍ପୁକ୍ତ ନାଗେଶ୍ୱର ବାଦ୍ୟ ବେଗ ଯେ । ବଭେଦତ କୃତ ଚଲ ରସଗୀତ ଗାଇ । ବଧୂଚୂର୍ଣ୍ଣ ମନ୍ତ୍ରଧୂଳ ପକାଇ ପକାଇ ଯେ ।" ଗ୍ରୁ୪, ବୈ: ବ: ।

"ଶ୍ରୀନଗରେଶ୍ୱର ନଗରେ ନଗରେ ଶବରଗଡକ ରଚ ଯେ ।" ଗ୍ରୁ୩୧, କୋ: ବ୍ର: ସୁ: ।
"ଶବର ଶବସ୍ତ୍ରୀମାନେ ଯେ ବଲସନ୍ତ ଯାନ୍ତୁରେ..." ଗ୍ରୁ୫, ସୁ: ପ: ।
"ନବଚଣ୍ଡୀ ଅର୍ଚ୍ଚନ ଆରମ୍ଭରେ । ପଶୁ ଭାବନା କରିଛୁ ଆମ୍ଭରେ ।" କୋ: ବ୍ର: ସୁ: ।

"ବଢ଼ାଇଲ ବେଗେ ଚଣ୍ଡୀ ପର୍ବ କ୍ଷୀଣ ପଶୁ ଖଣ୍ଡି ରକ୍ତ ପାନ ପାନଦ୍ଭୋଳେ ଓଷ୍ଠ ରଞ୍ଜନ ।"
ଗ୍ରୁ୫୦, ବୈ: ବ: ।

"ବପ୍ରେ ଇନ୍ଧନ ଦେବୀମନ୍ତ୍ରେ ପୂଜଲେ ସେ ଯଥା ନ କହେ କଥା । ବରଦ ହୋଇଲ ପ୍ରାପ୍ତ ସ୍ୱପନରେ କୀ ନ ଟେକିଲ ମଥା ।" ଗ୍ରୁ୧୭, ବୈ: ବ: ।

"ବଷବୈଦ୍ୟ ପଦ ନ ମାନିଲ ପ୍ରାପ୍ତ"...ଗ୍ରୁ୧୭, ବୈ: ବ: ।
"ବାଡାସ୍ତୁ ଛାଲ ଘଣ୍ଟୀରେ ବଣ ପରକାର ଯେ ।" ଗ୍ରୁ୭, ବୈ: ବ: ।
"ଇଷ୍ଟଦେବୀଙ୍କି ଉଭକରାଇଲେ । ବବୁଧ ଶାପୁଁ ବଚ୍ଛେଦ ଜାଣିଲେ ।" ଲ: ବ: ।

"ବଡ଼ ସୁକୃତୀ ଶବରୀ । ବୁଲଣ ଦବା ଶବରୀ । ଭ୍ରଷ୍ଟେ ରମାଳ ଆସ୍ୱାଦୁଁ ବାଛଇ ସ୍ୱାଦୁ ଯେ ।"
ଗ୍ର୍ୟୁ୧୦୮, ବୈ: ବ: ।

—:o:—

Digitized by srujanika@gmail.com

## ଶବ୍ଦପାଣ୍ଡିତ୍ୟ ଓ ଅଳଙ୍କାର

ଉପେନ୍ଦ୍ର ଭଞ୍ଜ ପ୍ରସିଦ୍ଧ ସଂସ୍କୃତ କବିଙ୍କ ଆଦର୍ଶ ଅନୁସରଣ କରି ସେମାନଙ୍କ ବ୍ୟବହୃତ ବିଭିନ୍ନ ଅଳଙ୍କାର ଓଡ଼ିଆ ସାହିତ୍ୟରେ କୃତିତ୍ୱର ସହିତ ବ୍ୟବହାର କରି ଅଛନ୍ତି । ଯାହା ସେଥିରେ ନାହିଁ ପୁଣି ଯାହା ପୃଥିବୀର ଯେ କୌଣସି ସାହିତ୍ୟରେ ଦୁର୍ଲ୍ଲଭ, ସଂଖ୍ୟାତୀତ ତଦ୍ରୂପ ସାହିତ୍ୟିକ ସମ୍ବିଧାନ ସେ ସ୍ୱୀୟ ବିଶାଳ-କାବ୍ୟ-କଳେବର ଗର୍ଭରେ ନିବିଷ୍ଟ କରି ବିଚକ୍ଷଣ ପାଠକମାନଙ୍କ ଚିତ୍ତ ଆକର୍ଷଣ କରି ଯାଇଅଛନ୍ତି । ଭଞ୍ଜ-ସାହିତ୍ୟ-ସମୁଦ୍ର ଗର୍ଭରୁ ସମସ୍ତ ଚମତ୍କାରିତା-ରତ୍ନ ଆହରଣ ସମ୍ଭବପର ନୁହେଁ; ନମୁନା ସ୍ୱରୂପ ଅସଂଖ୍ୟରୁ କିଛି ନିମ୍ନରେ ପ୍ରଦତ୍ତ ହେଲା ।

ବହୁ ଅର୍ଥ—

ବନ୍ଦଇ ଦୀନବାନ୍ଧବ ହରି ଯେ ତମ ଚକ୍ର ଖଣ୍ଡନକାରୀ
ସଦା କମଳାନନ୍ଦ ବର୍ଦ୍ଧନ ସ୍ୱଭାବେ ଇନ ଯେ,
ବିଭୁ ଅନନ୍ତ ଅଙ୍କବିହାରୀ କର ପ୍ରତାପ ଯାର ସଞ୍ଚରି
ନିଶାଚରଙ୍କ ଉଲ୍ଲାସ ହରି ପୂଜେ ସୁମନ ଯେ ।
ବିନତେୟ ଯାହା ଅଗ୍ରତେ ସ୍ଥିତ ଯେ,
ବଇକୁଣ୍ଠ-ପକ୍ଷକ-ଲୋକ ତୋଷିତ ଯେ ।
ବିକାଶ ଅଖଣ୍ଡିତ ମଣ୍ଡଳେ ସିଂହଭାବରେ କ୍ରୀଡ଼ିତ କାଳେ,
ଭବେ ତରଣି ହୋଇ ମଞ୍ଜୁଳେ ଗିରି ଉଦିତ ଯେ ।

ବୈ: ବି: ( ୨ ଅର୍ଥ )।

ଏଥିରେ କବି ବିଷ୍ଣୁ ଓ ସୂର୍ଯ୍ୟଙ୍କର ବନ୍ଦନା କରିଅଛନ୍ତି । ବିଷ୍ଣୁଙ୍କ ପକ୍ଷରେ ଏକ ଅର୍ଥ ହୁଏ, ସୂର୍ଯ୍ୟଙ୍କ ପକ୍ଷରେ ଅନ୍ୟ ଏକ ଅର୍ଥ ହୁଏ । ବିଷ୍ଣୁଙ୍କ ପକ୍ଷରେ—"ଯେ ଅଜ୍ଞାନରାଶି ନାଶ କରନ୍ତି, ସର୍ବଦା ଲକ୍ଷ୍ମୀଙ୍କର ଆନନ୍ଦ ବର୍ଦ୍ଧନ କରନ୍ତି, ପ୍ରକୃତରେ ଜଗତରେ ସ୍ୱାମୀ, ଶେଷଦେବଙ୍କର ଅଙ୍କରେ ଶୟନ କରନ୍ତି, ଯାହାଙ୍କର ସର୍ବତୋବ୍ୟାପ୍ତ ବାହୁବଳ ରାକ୍ଷସଙ୍କର ଗର୍ବ ଖର୍ବ କରୁଅଛି, ଗରୁଡ଼ ଯାହାଙ୍କ ଆଗରେ ବିଦ୍ୟମାନ, ଦେବତାମାନେ ଯାହାଙ୍କୁ ସେବା କରନ୍ତି, ଯେ ବୈକୁଣ୍ଠବାସୀ ଓ ଭକ୍ତମାନଙ୍କର ଆନନ୍ଦଦାୟୀ, ସଚରାଚର ବ୍ରହ୍ମାଣ୍ଡରେ ବ୍ୟାପି ରହିଛନ୍ତି, ଏକ ସମୟରେ ନୃସିଂହରୂପ ଧାରଣ କରିଥିଲେ, ସଂସାରସାଗରର ନୌକାସ୍ୱରୂପ, ନୀଳାଚଳରେ ଜଗନ୍ନାଥରୂପେ ବିଦ୍ୟମାନ. ସେହି ଦୀନବାନ୍ଧବ ହରିଙ୍କୁ ମୁଁ ନମସ୍କାର କରୁଅଛି ।"

ସୂର୍ଯ୍ୟଙ୍କ ପକ୍ଷରେ—"ଯେ ଅନ୍ଧକାର ନାଶ କରନ୍ତି, ପଦ୍ମର ଆନନ୍ଦ ବର୍ଦ୍ଧନ କରନ୍ତି, ଇନ ବୋଲି ଯାହାଙ୍କର ନାମ, ଅନନ୍ତ ଆକାଶରେ ଯେ ବିହାର କରନ୍ତି, ଯାହାଙ୍କର କିରଣ ସର୍ବଦା ସଞ୍ଚରି କରି ଚୋରକମାନଙ୍କର ଆନନ୍ଦ ଦୂର କରେ, ପଣ୍ଡିତମାନେ ଯାହାଙ୍କୁ ପୂଜା କରନ୍ତି, ଅରୁଣ ଯାହାଙ୍କ ଆଗରେ ସାରଥିରୂପେ ବିଦ୍ୟମାନ, ଇନ୍ଦ୍ର ଯାହାଙ୍କର ସହାୟ, ଯେ ଲୋକ ପୂଜ୍ୟ, ଗୋଲାକାରରେ ପ୍ରକାଶିତ ହୁଅନ୍ତି, ସମୟରେ ସିଂହ ରାଶିରେ ଅବସ୍ଥାନ କରନ୍ତି, 'ତରଣି' ବୋଲି ଯାହାଙ୍କର ନାମ ଯେ ଉଦୟାଚଳରେ ମନୋହରଭାବେ ଉଦିତ ହୁଅନ୍ତି, ସେହି ଦିବସବନ୍ଧୁ ସୂର୍ଯ୍ୟଙ୍କୁ ମୁଁ ନମସ୍କାର କରୁଅଛି ।"

Digitized by srujanika@gmail.com

୨ୟ —"ଜୟ ଜୟ ଜୟ ରାମ ଜନକ ସୁଖଦ......" ଇତ୍ୟାଦି । (ରାମ, ପରଶୁରାମ, ବଳରାମଙ୍କ ଉଦ୍ଦେଶ୍ୟରେ, (୩ ଅର୍ଥ) ଛା୧, ଲା: ବ: । ଅର୍ଥ ଅନ୍ୟତ୍ର ଦିଆଯାଇଛି )।

୩ୟ ଦୃଷ୍ଟାନ୍ତ—"ସପ୍ତବିଂଶ ପଦେ ଛାନ୍ଦ ଶେଷକଲା ଉପେନ୍ଦ୍ର ଭଞ୍ଜ ଭୂପତି । ସୁତେଜେ ଜ୍ଞାନିତ ରାମ, ରାମ, ରାମ ଅନନ୍ତଭୂଷଣ ସତ୍ତ୍ୱକାନ୍ତି ।"

ପ ୨୭, ଛା ୮, ସୁ: ପ: । (୬ ଅର୍ଥ )।

୪ର୍ଥ—"ସରଳହୃଦୟ ମୁଖ କେଶ ଅଧରକୁ...... ।" ପ୩୦, ଛା ୧୩, ସୁ: ପ: (୬ ଅର୍ଥ)।

୫ମ—"ଆସାର ସଘନ କାଳ ହୋଇ ଉଦୟ ।
ଅସିତ ପରବଳକୁ ଦରଶମୟ ।" ଛା୨୫, କୋ: କୁ: ସୁ: ( ୩ ଅର୍ଥ )।

ଏହିପରି ପଞ୍ଚବିଂଶ ଛାନ୍ଦ ତୁଲ୍ୟ ଲେଖା ପୃଥିବୀ ସାହିତ୍ୟରେ ବିରଳ । ପ୍ରଥମ ରାଗିଣୀ ହେବ ବଙ୍ଗାଳଦେଶାକ୍ଷ, ବର୍ଷାଋତୁକୁ ବୁଝାଇବ । ପ୍ରତ୍ୟେକ ପାଦରୁ ୧ମ ଓ ୨ୟ ଅକ୍ଷର କାଟି ଗାନ କଲେ ରାଗ ଯଥାକ୍ରମେ କାଫି, କାମୋଦୀ, ମାଳବଶ୍ରୀ ହେବ । ଶୀତ ଓ ଗ୍ରୀଷ୍ମ ଋତୁକୁ ବୁଝାଇବ । ଛାନ୍ଦଟି ୩୦ ପଦ୍ୟ ବିଶିଷ୍ଟ; ପ୍ରତ୍ୟେକ ପଦ୍ୟରେ ଏହି ଚମତ୍କାରିତା ଅକ୍ଷୁର୍ଣ୍ଣ ଅଛି ।

ଅର୍ଥ:—(୧) ଆସାର (ଧାରାବୃଷ୍ଟି), ଦ୍ୱାରା ସଘନ (ନିବିଡ଼) କାଳ (ବର୍ଷାସମୟ) ଉଦୟ ହୋଇ ଅସିତ (କୃଷ୍ଣବର୍ଣ୍ଣ) ପ୍ରବଳ ହେବାରୁ ଦରଶମୟ (ଦର୍ଶ = ଅମାବାସ୍ୟା ପରି ଅନ୍ଧକାରମୟ) ହେଲା ।

(୨) ସାରସଘନ ( ରସଘ୍ନ = ପଦ୍ମନାଶକ ) ଉଦୟ ହୋଇ ଶୀତ ପ୍ରବଳ ହେଲା । ( ଦର = ଶଙ୍ଖ ) କାକରପଙ୍କ୍ତି ଶଙ୍ଖ ପ୍ରାୟ ହେଲା ।

(୩) ରସଘ୍ନ = ଜଳନାଶକ
ତପର = ଗ୍ରୀଷ୍ମର ବଳରୁ ଦର (ଭୟ)ର ସମୟ ହେଲା ।

୬ଷ୍ଠ ଦୃଷ୍ଟାନ୍ତ— "ସୁବଳ, ଶଇଳ, ସ୍ୱର୍ଗ ଅରଣ୍ୟ ପର୍ଯ୍ୟନ୍ତେ ।
ସେ ରାମ ହର ବିଳାସେ ଅତି ଶୋଭା ପାଏ ଯେ ।"
ସୁ: ପ: । ( ୪ ଅର୍ଥ )

୭ମ— "ସୁରମ ପୁଷ୍କରେ ସକଳ ଲୋକ ଆନନ୍ଦ କର ।
ସେ ବିଷ୍ଣୁ ଚରଣେ ଶରଣ ଉପେନ୍ଦ୍ର ଭଞ୍ଜର ।
ସିନ୍ଧୁ ଭଇରବ ଗଣେଶ ଗଙ୍ଗା ବରୁଣ ଚନ୍ଦ୍ର ।
ସନତକୁମାର ପୃଥ୍ୱୀ ଘେନ ନବଅର୍ଥ ଏ ପଦ ।"
ଛା୫, ପ ୬୦, ସୁ: ପ: ( ୯ ଅର୍ଥ )।

କବିଙ୍କ ଅଧିକାଂଶ ଗ୍ରନ୍ଥରେ ଏକାଧିକ ଅର୍ଥବୋଧକ ପଦ, ଛାନ୍ଦ ଦେଖାଯାଏ ।

ଚମତ୍କାର ଶବ୍ଦଯୋଜନା:—

Digitized by srujanika@gmail.com

"ଭେଟେ କବି ଗୀତ କଲେ ଯେବ୍‌ଧରେ
ପ୍ରାନ୍ତଯମକ, ଶୃଙ୍ଖଳା, ଗୋ ମୂତ୍ରରେ ।"
"ଦ ର ଚ ସ୍ତୁ ହ ର ଧୀ ର ପ ଣ୍ଡି ସା ର ।
ସା ର ସା ସ୍ତ କ ର କ ର ଏ ସ ଂ ସା ର ।୮।
ସା ର ସା ର କ ଚ ଗ ଢ ଦେ କୁ ମା ର ।
ମା ର ପ ର ସ ଜ ଅ ଢ ସୁ କୁ ମା ର ।"।୯। ଗୁ ୭, ଲ: ବ: ।

ଏହା ବନ୍ଦୀର ଚନ୍ଦ୍ରଭାନୁ ପ୍ରତି ପ୍ରଶସ୍ତି ଗୀତ । ଏହି ୮, ୯ ପଦରେ ପ୍ରାନ୍ତ ଯମକ, ଶୃଙ୍ଖଳା ଓ ଗୋମୂତ୍ରଛନ୍ଦ ରଖାଯାଇଛି । ୧ମ ଧାଡ଼ିର ପ୍ରଥମ ଅକ୍ଷର ସହିତ ୨ୟ ର ୨ୟ ଅକ୍ଷର; ୧ମର ୩ୟ ବର୍ଣ୍ଣ ସହିତ ୨ୟର ୪ର୍ଥ; ସେହିପରି ୨ୟର ୧ମ ବର୍ଣ୍ଣ ସହିତ ୧ମର ୨ୟ ଅକ୍ଷର ମିଳାଇ ପଢ଼ିଲେ ଗୋମୂତ୍ର-ଛନ୍ଦ ହେବ ।

୧ମ ଧାଡ଼ିର ଅର୍ଥ—ଭକ୍ତ ସମୂହଙ୍କୁ ତୁମ୍ଭେ ହରଣ କର ସାର । ତୁମ୍ଭେ ପଣ୍ଡିତ ।
୨ୟର ଅର୍ଥ—ଏ ସଂସାରରେ ତୁମ୍ଭେ ସାର ଅଟ । ତୁମ୍ଭେ ସାତ୍ତ୍ୱିକହସ୍ତ ଅଟ ।
୩ୟର ଅର୍ଥ—ତୁମ୍ଭେ ହଂସର ଗତିକୁ ଜିଣିଛ । ତୁମ୍ଭେ ଅତ୍ୟନ୍ତ ସୁନ୍ଦର ଅଟ ।
୪ର୍ଥର ଅର୍ଥ—ତୁମ୍ଭେ କନ୍ଦର୍ପ ଅପେକ୍ଷା ଅଧିକ ସୁନ୍ଦର ।

ଅନ୍ୟ ଦୃଷ୍ଟାନ୍ତ—"ହେମ-ସାରଙ୍ଗର ଲୀଳା ଅଷ୍ଟାକ୍ଷର ଗୃଢ଼ଭାବରେ ସୁରଞ୍ଜନ ହେ ।"
ହେଲ, ମଲ୍ଲୀ, ସାର, ରଙ୍ଗ—ନିମ୍ନ ପାଦରେ ଅର୍ଥ କରାଯାଇଛି ।
"ଆଦ୍ୟ ପ୍ରାନ୍ତ ତେଜ ନୃପଜ ମୁଖକୁ ଶୁଣି ମନ୍ତ୍ରିକ ଉଚ୍ଚାରେ ଯେ ।
ଦ୍ୱିତୀୟ ସପ୍ତମ ଉଦୟ ହୃଦୟ ତୁରଙ୍ଗ କର୍ମ ପ୍ରକୃତ ଯେ ।
ଉନ ଛ । କ୍ଷତ୍ରିୟେ ହେବା ବଳୃତ ଯେ ।
କୁମାର ପଦରୁ ଜାଣି ମଧ୍ୟ ପଦ ତୁରଙ୍ଗ ତହିଁ ଆଚରେ ଯେ ।"
ପ ୭, ଗୁ ୩୧, ଲୋ: ବୃ: ସୁ: ।

ଅର୍ଥ— "ହେମ-ସାରଙ୍ଗର ଲୀଳା—ଅଠ ଅକ୍ଷରରୁ ଆଦ୍ୟ ପ୍ରାନ୍ତ ଅକ୍ଷର ଦ୍ୱୟ (ହେଲ) ଗ୍ରହ । ଏହା ଶୁଣି ମୃଗର ମନରେ ଦ୍ୱିତୀୟ ସପ୍ତମ (ମଲ୍ଲୀ) ଉଦୟ ହେବାକୁ କର୍ମ କରାଇଲା । ରାଜକୁମାର କ୍ଷତ୍ରିୟମାନଙ୍କ ମଧ୍ୟରେ ଉନ ଛ (ସାର-ଶ୍ରେଷ୍ଠ) ହେବାକୁ ବାଗୁର ଘୋଡ଼ା ଚଳିବାରୁ ସେ ଘୋଡ଼ା କୁମାରର ପାଦଘାତରୁ ଜାଣି ମଧ୍ୟପଦ (ରଙ୍ଗ = ନୃପଟ) କୁ ଆଚରିଲେ ।',

ବ, ସ, ଲ ଯୁଗରେ 'ବୈଦେହୀଶବିଳାସ', 'ସୁଭଦ୍ରାପରିଣୟ', ଆଦ୍ୟ ପ୍ରାନ୍ତ 'କ' ରେ କଳା କଉତୁକ ଓ କେବଳ ଅବନା ଶବ୍ଦାବଳୀରେ 'ଅବନା ରସତରଙ୍ଗ' ଲେଖା ଯାଇଥିବା ଅଦ୍ଭୁତ କୃତିତ୍ୱର କଥା । ବୈଦେହୀଶବିଳାସ ଊନବିଂଶ ଗ୍ରନ୍ଥ ପଞ୍ଚମ ବର୍ଣ୍ଣ କ୍ରମରେ ବିରଚିତ । ଏଥିରେ ମାଳଯମକ, ଶୃଙ୍ଖଳା, ସିଂହାବଲୋକନ, ବ୍ୟାପ୍ତଗତ, ମହାଯମକ, ଗୋମୂତ୍ର ଛନ୍ଦ, ଅନ୍ତର୍ଲିପି, ବହିର୍ଲିପି, ମଧ୍ୟଯମକ, ବିଲୋମ ଅନୁଲୋମ, ମେଷଯୁଦ୍ଧ, ବକ୍ରୋକ୍ତି, ଆଦ୍ୟଯମକ, ପ୍ରାନ୍ତଯମକ, ଚିତ୍ରକର୍ଷକ ରୀତିରେ ଜାତ ଚରଣ କରି ଅଛନ୍ତି । ପୋ ( Poe )ଙ୍କ ଅନୁସାରେ'Therhythmic creation of beauty' ଭାଷାମାଧୁର୍ଯ୍ୟର ସ୍ପଷ୍ଟ ନମୁନା ଏଠାରେ ମିଳେ । ମେକାଲେଙ୍କ ଅନୁସାରେ 'The art of employing words etc.'

Digitized by srujanika@gmail.com

ସାହିତ୍ୟିକ ପଣ୍ଡିତପାଣ୍ଡି ଏହି ଗ୍ରନ୍ଥରେ ଚରମସୀମା ସ୍ପର୍ଶ କରିଛନ୍ତି । ବିଭିନ୍ନ ଅଳଙ୍କାର ପ୍ରୟୋଗ ପୂର୍ବରୁ ପାଠକମାନଙ୍କ ସହଜବୋଧ ପାଇଁ, କବି ତାହାର ସ୍ଥାନେ ସ୍ଥାନେ ସୂଚନାଦେଇ ଧନ୍ୟବାଦାର୍ହ ହୋଇଛନ୍ତି । "ଭୁବନରେ କବି ସୁଧାଂଶୁ ଏ ହେବନି ନାମଯୁକ୍ତ ନାମ ସୁମଣି । କହେ ଉପେନ୍ଦ୍ର ଭଞ୍ଜ କବି ଗୀରବର ପଦର ଯେ ମାଧୁରୀ । ଏ ଗ୍ରନ୍ଥେ । ଧ୍ୱନି କାକୁ ଛନ୍ଦ ରୂପକ । ଶ୍ଳେଷ, ଲୁପ୍ତବର୍ଣ୍ଣଚ୍ୟୁତ ଦତ୍ତାକ୍ଷର, ଅଲିଙ୍ଗିପିକା ଆଦି ତର୍କ ।" ଗ୍ର ୧୭, ନୋ: ବ୍ର: ସୁ: ।

ବିଭିନ୍ନ ଅଳଙ୍କାର :--

'ପ୍ରେମସୁଧାନିଧି' ରେ ଷୋଳକଳା ବିଶିଷ୍ଟ ଷୋଳଟି ଗ୍ରନ୍ଥ ଦିଆଯାଇଛି । କବି ପାଠକ ପାଠିକାଙ୍କ ସୁବିଧାପାଇଁ କହିଛନ୍ତି : –

"ପ୍ରଥମେ ଆଦ୍ୟ ଯମକ ଯେଣ ଶୁଦ୍ଧ ଚନ୍ଦ୍ରେ ।
ଦ୍ୱିତୀୟ ଅବନୀ, ମଧ୍ୟଯମକ ତୃତୀୟ
ଛେକାନୁପ୍ରାସ ରେ ପୁଣି ଅତି ରମଣୀୟ ।
ଚତୁର୍ଥେ ଅଦ୍ଭୁତ ବିରୋଧାଭାଷ ପଞ୍ଚମେ
ଷଷ୍ଠେ ରୂପକବୃତ୍ତିଅନୁପ୍ରାସ ସପ୍ତମେ ।
ଅଷ୍ଟମରେ ମନୋରମ ସିଂହାବଲୋକନ
ନବମେ ପ୍ରାନ୍ତଯମକ ମାନସରଞ୍ଜନ ।
ଦଶମେ ତ୍ରିଭଙ୍ଗୀ (ତ୍ରିବୃତ୍ତିଯମକ) ଏକାଦଶରେ ତୁଚର
ଆଦ୍ୟପ୍ରାନ୍ତଯମକ ଚିତ୍ତକୁ ବଶକର ।
ଦ୍ୱାଦଶେ ଆଶ୍ରୟ ଯୋଡ଼ାଯମକ ତ୍ରୟୋଦଶେ
ଚତୁର୍ଦ୍ଦଶେ ଦୃଷ୍ଟାନ୍ତର ଅତ୍ୟନ୍ତ ସରସେ ।
ଅନୁଲୋମ ପ୍ରତିଲୋମ ପଞ୍ଚଦଶେ ଯେନ
ଷୋଡ଼ଶ ଗ୍ରନ୍ଥେ ଅଛି ଏତେକ ବିଧାନ ।
ପୁନରୁକ୍ତବଦାଭାସ ଜନ ମନୋହର
ଦତ୍ତାକ୍ଷର ଚ୍ୟୁତାକ୍ଷର ଦତ୍ତଚ୍ୟୁତାକ୍ଷର
ଏକାକ୍ଷର ସଓଷ୍ଠକ ନିରୋଷ୍ଠକ ଯେଣ
ମହାଯମକ, ସର୍ବଯମକ ଏହୁ ବେନି ।
ଯମକ ପ୍ରଧାନ କରି ଯେଣୁ କଲି ଗୀତ
ଶ୍ଳେଷଗ୍ରନ୍ଥ ନ ବିରଚି କଲି ସମାପତ ।"

କବିଙ୍କ 'ରସପଞ୍ଚକ', 'ଯମକରାଜ', 'ଛାନ୍ଦକାବ୍ୟବନ୍ଧୋଦୟ' ବିବିଧ ବିଚିତ୍ର ଅଳଙ୍କାରରେ ପରିପୂର୍ଣ୍ଣ । କବି କହନ୍ତି—"ଅଳଙ୍କାରଗାଢ ରସପଞ୍ଚକ" "ପ୍ରେମସୁଧାନିଧି ଯମକେ ଖଚିତ"; ଛାନ୍ଦକାବ୍ୟବନ୍ଧୋଦୟରେ ଅନେକ ପ୍ରକାର ବନ୍ଧ ଦିଆଯାଇଛି; ସେ ସମ୍ପର୍କରେ ସେ କହନ୍ତି—"ଏକେକେ ମୋହି ପାରନ୍ତି ମନକୁ ।" ସତର୍କ କରି ପାଠକ ପାଠିକାଙ୍କୁ କବି କହନ୍ତି—"ଶିକ୍ଷା ଥିଲେ ଜନ ଦେଖ ଏ ପୋଥି । ହେବ ନୋହିଲେ ସିନା ଏଥି ମତି ।"

Digitized by srujanika@gmail.com

"ଅମ୍ବୁଜ ଚକ୍ରବନ୍ଧ ବଜ୍ରବନ୍ଧ । ଜମ୍ବୁ ଶମ୍ଭୁ ଗଦା ଶୂଳ ପ୍ରବନ୍ଧ ।
ରଥବନ୍ଧ ଅଛୁ ଛନ୍ଦ ବିଧାନ ।, ଚନ୍ଦ୍ର ସୂର୍ଯ୍ୟ ଚତୁଷ୍କ ସ୍ୟନ୍ଦନ ।
ପରଶୁ ଖଡ୍ଗ ଦ୍ୱାର କବାଟ । ସର୍ବତୋଭଦ୍ର ସନଙ୍କଣ ଅଟ ।
କଚ୍ଛପ ପ୍ରାସାଦ ନାଗ ଗବାକ୍ଷ । ମୁରଜ ଲତା ବେଜ ମଣ୍ଡପାକ୍ଷ ।
ବୀଣା କୁଳଶ ବର୍ଦ୍ଧନ ଶକ୍ତ । ଗୁଚ୍ଛଶର ଫଳ ଧନୁ କୁକୁଟ ।
ଛୁରିକା କୁଟିଳ ଅସିଜଗନ୍ଧ । ସର୍ପ ଯୁଗଳହିଁ ପୁଣି ଚଳନ୍ତ ।" ଇତ୍ୟାଦ ।
ଚି: କା: ବ: ।

## ଅଳଙ୍କାରର ନମୁନା

ଯମକ—ଭଞ୍ଜସାହିତ୍ୟରେ ଆଠ ପ୍ରକାର ଯମକ ବ୍ୟବହୃତ ହେବା ଦେଖାଯାଏ । ଭିନ୍ନାର୍ଥକ ସ୍ୱରବ୍ୟଞ୍ଜନ ସମୂହର ତାଦୃଶକ୍ରମେ ପୁନରାବୃତ୍ତିକୁ ଯମକ କୁହାଯାଏ । ତାହା ଆଦ୍ୟ, ପ୍ରାନ୍ତ ଓ ମଧ୍ୟରେ ଥିଲେ, ଯଥାକ୍ରମେ ଆଦ୍ୟଯମକ, ପ୍ରାନ୍ତଯମକ ଓ ମଧ୍ୟଯମକ କୁହାଯାଏ, ସେହିପରି ଆଦ୍ୟପ୍ରାନ୍ତଯମକ, ମାଳଯମକ, ସର୍ବଯମକ, ଯୋଡ଼ଯମକ ଓ ମହାଯମକ ବ୍ୟବହୃତ ହୋଇଅଛି । ଯଥା :—

ଆଦ୍ୟଯମକ—(୧) "ବିପଦ ବିପଦ ଚଣ୍ଡ ଘାତରେ ବହାନ୍ତେ,
ବୀରସେ ବିରସେ ତମ କାମଶର କୁନ୍ତେ ।"
ବୈ: ବି: ।

ଏଠାରେ ପ୍ରଥମ ପାଦ ଓ ଦ୍ୱିତୀୟ ପାଦ ଆଦ୍ୟରେ ଯମକ ଥିବାରୁ ଆଦ୍ୟଯମକ ହେଲା । ବିପଦ = ବିପତ୍ତି; ବି ପଦ = ପକ୍ଷୀର ପାଦ; ବୀର ସେ = ସେହି ବୀର ରାମଚନ୍ଦ୍ର, ବିରସେ = ଦୁଃଖରେ ।

ଦୃଷ୍ଟାନ୍ତ (୨) "ଲକ୍ଷଣ ଲକ୍ଷଣବନ୍ତ ପାଦେ ଯା ସେବେ ।
ଭଞ୍ଜ ଭଞ୍ଜ ବୀରବର ସନ୍ତାପ ଏବେ ।" ପ୍ରେ: ସୁ: ।

ପ୍ରାନ୍ତଯମକ (ଅନ୍ତ୍ୟଯମକ)—

ଦୃଷ୍ଟାନ୍ତ (୧) "ବଶିଷ୍ଠରେ ଅନୁକୂଳ ପୁଂସ ଦୀନବନ୍ଧୁ
ବିନୋଦରେ ସଙ୍ଗେ ଘେନ ହରେ ଦନବନ୍ଧୁ ।" ବୈ: ବି: ।

ଦୀନବନ୍ଧୁ = ଦୀନମାନଙ୍କର ବନ୍ଧୁ (ରାମଚନ୍ଦ୍ର ସୀତାଙ୍କ ସହିତ ଦନ କାନ୍ତ) ଦନ = ଦକ୍ଷ, ବନ୍ଧୁ = ସୀତା ।

ଦୃଷ୍ଟାନ୍ତ (୨) "କାହିଁ ଶଙ୍କର ବୋଲ ସଦାଶିବଙ୍କୁ
ନ କଲେ ସେବା କଲେ ସଦାଶିବଙ୍କୁ ଯେ ।
ଥିଲେ ମନରୁ ନାମ ରାଜ କୁମାରୀ
ଦୁଃଖେ ଲଭନ୍ତି କାହିଁ ରାଜକୁମାରୀ ଯେ ।" ପ୍ରେ· ସୁ· ।

ଆଦ୍ୟପ୍ରାନ୍ତ ଯମକ- "ସୁମନ ସରେ ମଦ୍ଦୋଜ୍ଜ୍ୱଳ ଯେ ଅଶୋକ ବିଟପୀ
ସୁମନଶରେ ଶୋକବନ୍ତ ଦେଖି ହେବେ ବିଟପୀ ।"
ସୁ: ପ: ।

Digitized by srujanika@gmail.com

ମାଳଯମକ—ଏହି ଅଳଙ୍କାରରେ ପ୍ରତ୍ୟେକ ପଦରେ ଏକ ଶବ୍ଦର ବହୁବାର ସମାବେଶ ହୋଇଥାଏ ।

ଦୃଷ୍ଟାନ୍ତ—(୧) "ବିସ୍ମୟରେ ମାଳଯମକରେ କବି ମନେ
ବୁଲେ ଭ୍ରମ ଭ୍ରମ ଭ୍ରମ କେଶୀ ଘେନ ବନେ ଯେ ।
ବୃନ୍ଦଭାନୁ ଭାନୁ ଭାନୁ ପ୍ରଭ୍ରତାପ ନାହିଁ ।" ବୈ. ବି. ।

(୨) "ଖଞ୍ଜନନୟନୀ କଟକ କଟକ କଟକ କଟକ ଶୋଭିନୀ
ଖେଦକ ଘେନବ ହାଟକ ହାଟକ ହାଟକ ସୁମନମୋହିନୀ ।
କୋକିଳ ।" (ଯମକରାଜ)

ସର୍ବଯମକ—ଏଥିରେ ପ୍ରଥମ ପଦ ଓ ଦ୍ୱିତୀୟ ପଦର ଶବ୍ଦବିନ୍ୟାସ ଏକାଭଳି, କିନ୍ତୁ ଅର୍ଥ ଭିନ୍ନ । ଯଥା—

(୧) "ଅହି ମକର ତାପ ନାଶେ ଶୋଭି ସାରସଚନ୍ଦେ ।
ଅହିମକର ତାପ ନାଶେ ଶୋଭି ସାରସଚନ୍ଦେ ।" ଲ: ବ: ।

ଅହି = ସର୍ପ; ମକର = ମଗର; ସାରସଚନ୍ଦ = ପଦ୍ମ ସମୂହ
ଅହିମକର = ସୂର୍ଯ୍ୟ; ସାରସଚନ୍ଦ = ହଂସମଣ୍ଡଳୀ ।

(୨) ସିନ୍ଧୁଜାତ କୂଳେ ପ୍ରବଳ ତରଙ୍ଗେ ବାଡ଼ବ ରଙ୍ଗେ ଭ୍ରମବାଧି ।
ସିନ୍ଧୁଜାତ କୂଳେ ପ୍ରବଳ ତରଙ୍ଗେ ବାଡ଼ବ ରଙ୍ଗେ ଭ୍ରମବାଧି ।
ଛା ୨୮, କୋ: ବ୍ର: ସୁ: ।

(୩) ବରାହବରେ ପ୍ରକାଶମାନ ଯେ ଦନ୍ତରେ;
ବରାହବରେ ପ୍ରକାଶମାନ ଯେ ଦନ୍ତରେ । ବୈ: ବି: ।

ବରାହବରେ = ଶ୍ରେଷ୍ଠ ବରାହମାନେ; ବରାହବରେ = ଘୋର ଯୁଦ୍ଧରେ; ଦନ୍ତରେ = ଦାନ୍ତ ଦ୍ୱାରା; ଦନ୍ତରେ = କୁଞ୍ଜ ମଧ୍ୟରେ; ପ୍ରକାଶମାନ = ଦୀପ୍ତିମାନ; ପ୍ରକାଶମାନ = ପ୍ରକାଶିତ ।

ମଧ୍ୟଯମକ—ଏଥିରେ ଯମକ ଥାଏ ପାଦର ମଧ୍ୟରେ ।

ଯଥା—(୧)— "ଦେଖରେ ନଳିନ ନଳିନୀ ନଳିନୀରେ ପୂରିତ;
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ ।" ଲ: ବ: ।

ନଳିନ = ହେ ପଦ୍ମନେତ୍ର; ନଳିନୀ = ପୁଷ୍କରିଣୀ; ନଳିନୀ = ପଦ୍ମ; ଭ୍ରମରେ = ଭ୍ରମରମାନେ; ଭ୍ରମରେ = ଭ୍ରାନ୍ତିବଶତଃ; ଭ୍ରମରେ = ଜଳଭଉଁରିମାନଙ୍କ ଦ୍ୱାରା ।

(୨) "ସଫଳ ରସାଳ ରସାଳ ତରୁ ବକୁଳବନ୍ତ ।
ସଙ୍କୀର୍ତ୍ତିତ ବୃଦ୍ଧି ବଢ଼ାଲେ ବ-ଢ଼ାଲେ ଅଚେରିହିତ ।" ସୁ: ପ: ।

Digitized by srujanika@gmail.com

(ଗ) "କ୍ଷଣେ ରୋଦନ୍ତେ ଛିନ୍ନ ଛିନ୍ନାଞ୍ଜନକେଶୀ ମନକୁ ମନ ଗିଆଇବ"। ପ୍ରେ: ସୁ:।

ମହାଯମକ—ଯେଉଁ ଯମକରେ ପଦର ପ୍ରତ୍ୟେକ ଧାଡ଼ିର ଅକ୍ଷରମାନଙ୍କରେ ବହୁବାର ସମାନତା ଥାଏ, କିନ୍ତୁ ଅର୍ଥ ପୃଥକ୍, ତାକୁ ମହାଯମକ ବୋଲିଯାଏ।

ଯଥା—(୧) "ତପର ତପନରେଣ ତ ପର ତପନ,
ତପର ତପନ ତୂଳ ତ ପର ତପନ।" [ ପ୍ରେମ ମଞ୍ଜରୀ ]

(୨) "ବସନ୍ତ ବସନ ବଣ ମହା ଯମକରେ,
ବସନ୍ତ ବସନ୍ତ ପକ୍ଷୀ ବସନ୍ତ ଭ୍ରମରେ ଯେ।
ସାଥୀ ସାଥୀ ଶୋଭା ଦଶି କୁମୁଦ କୁମୁଦ,
ବଲେକ ହାସ ପ୍ରକାଶି କୁମୁଦକୁ ମୁଦ ଯେ।" ବୈ: ବ:।

ଯୋଡ଼ିଯମକ—ପ୍ରତ୍ୟେକ ପାଦରେ ଏକାଧିକ ଶବ୍ଦ ଓ ଅକ୍ଷର ଏକାଧିକବାର ଯୋଡ଼ି ଯୋଡ଼ି ହୋଇ ଯୋଗ କରାଯିବା ସ୍ଥଳକୁ ଯୋଡ଼ିଯମକ କୁହାଯାଏ।

ଯଥା— "ଦିନ ଘନ ସାର-ସାର ଉଣପାଳି ତାର ତାର ବରମୁଖୀ ଦେଇ ବାର ବାର। ଡାକନ୍ତେ ମୟୂରଭର ଉଲୁସି ଦର୍ଦୁର ଦୂର ଚେତା କଲ୍ପ ହୋଇ ଥର ଥର ହେ। ଜଳଧର।"
ପ୍ରେ: ସୁ:।

ତ୍ରିଭଙ୍ଗ ବା ତ୍ରୈବୃଣ୍ଡ ଯମକ—ପ୍ରତ୍ୟେକ ପାଦରେ ଯମକ ତିନଥର ଦେଖାଯାଏ। ଯଥା—
"ଆନେ ଭ୍ରମରେ ଭକେ ଭ୍ରମରେ ମତ୍ତେ ପ୍ରେମରେ ସଦ୍ମେ।
ଚନ୍ଦ୍ର ତୋଷିବେ, ପାଶେ ବସିବେ ପୁଣି ଆସିବେ ସଦ୍ମେ।" ପ୍ରେ: ସୁ:।

ଭ୍ରମରେ=ଭ୍ରମରମାନେ; ଭ୍ରମରେ=ଭ୍ରାନ୍ତ ହୋଇ ଆନନ୍ଦରେ; ସଦ୍ମେ=ଘରକୁ।
ସିଂହାବଲୋକନ—ଏଥିରେ ପ୍ରଥମ ପାଦର ପ୍ରାନ୍ତ ଦୁଇ ଅକ୍ଷର ସହିତ ଦ୍ୱିତୀୟ ପାଦର ଆଦ୍ୟ ଦୁଇ ଅକ୍ଷରର ସାମଞ୍ଜସ୍ୟ ଥାଏ।

"ବଳାଇ ମାନସ ଅନା ଅନା ପ୍ରାଣବନ୍ଧୁ।
ବନ୍ଧୁକ ରଞ୍ଜନ ଅଧରଙ୍ଗ ନରବନ୍ଧୁ ଯେ।
ବନ୍ଧୁର ପଥରି ହେଜ ହେଜ ପଦ ବଳା।
ବଳା ଧ୍ୱଜ ପ୍ରାପ୍ତେ ଟେକ୍ଷି ଶବଦପ୍ରବଳା ଯେ।" ଛ ୧୯, ବୈ: ବ:।

ଲୋମ ବିଲୋମ—ସମସ୍ତ ପଦକୁ ମୂଳରୁ ଶେଷଯାଏ ପଢ଼ିଗଲେ ଯାହା, ଶେଷରୁ ମୂଳଯାଏ ପଢ଼ିଗଲେ ତାହା।

ଯଥା—୧. "ସତ ନାହିଁ ନାଳ ନାହିଁ ନାସତ
ସଦାତୋ ମୁଦ ହୃଦ ମୁଁ ତୋ ଦାସ।" ସୁ: ପ:।
୨. "ମମ ସୁରସାଳସୀ, ଶୀଳ ସାର ସୁସମ।" କୋ: ବୃ:।

Digitized by srujanika@gmail.com

ବକ୍ରୋକ୍ତି :—ଦୁଇ ଅର୍ଥବୋଧକ, ଜଣକର ଏକାର୍ଥରେ ପ୍ରଯୁକ୍ତ ଶବ୍ଦକୁ ଅନ୍ୟ ଜଣେ ଯେବେ ଭିନ୍ନ ଅର୍ଥରେ ଗ୍ରହଣ କରେ ତାହାହେଲେ ବକ୍ରୋକ୍ତି ଅଳଙ୍କାର ହୁଏ ।

ଯଥା—(୧)          "ବକ୍ରୋକ୍ତି ପ୍ରକାଶ କରି ଚତୁର ରଚନ ।
ବସ୍ତାଛୁ ନୃତ୍ୟ ଶେଷ କେ କି କହ୍ନ ମାନ ଯେ ।
ବଲ୍ଲଭ ଡହିଁ ମଧୁର ଧ୍ୱନକ ବ୍ରଜନା
ବେଣୀ ନାଚଲେ ନାଚନ୍ତା ଉତ୍ଫୁଲ୍ଲ ସୁମନା ଯେ ।"     ଗୁ ୧୯, ବୈ: ବି: ।

ବକ୍ରୋକ୍ତିର ୨ୟ ଉଦାହରଣ—

"ପୁନ୍ନାଗ ନାଗର ଦେଖରେ ବୋଲ କେ ଦେଖାଉ ଅଙ୍ଗୁଳିରେ କରି
ଏହ ତ ତରୁ ତରୁଣ ଶ୍ରେଷ୍ଠ ନୋହେଁ ତରୁଣୀରଞ୍ଜନ ପଣ୍ଡିତ,
ମଲ୍ଲୀ ବୋଲନ୍ତେ କାହିଁକ ସେ ବୋଲ ହସଇ,
ମାଧବୀକ ଗୃହିଁ ମାଧବୀ ବୋଇଲେ ଏ କି ମଧୁପୁର ଷ୍ପଷଇ ।"     କୋ: ବ୍ର: ସୁ: ।

ଏଠାରେ 'ପୁନ୍ନାଗ', 'ମଲ୍ଲୀ', 'ମାଧବୀ' ଶବ୍ଦର ଅର୍ଥାନ୍ତର କଳ୍ପନା ଦେଖାଯାଏ । ଅତଏବ ଅର୍ଥମୂଳକ ବକ୍ରୋକ୍ତି ।

ଉତ୍ପ୍ରେକ୍ଷାଲକ୍ଷଣ:-

"ଉପମେୟ ଉପମାନ ସମ୍ଭାବନା ସିଦ୍ଧ
ଉତ୍ପ୍ରେକ୍ଷାଲଙ୍କାର ନାମେ ଲଭିଛ ପ୍ରସିଦ୍ଧି ।"
'ବାସବ ଦିଗେ ଅରୁଣ କରଣୀ,
ବ୍ରଜନୀ କଲ୍ଲ ରକ୍ତ ପିଣ୍ଡ ଆଣି ।
ବମ୍ଭ ସବିତାର ଦଶୀ ଆସିଲ,
ବଦନେ କଣ୍ଠେ ଶୀତ ବାତ ସେ ହେଲ ।"          ବୈ: ବି: ।

୨ — "ସହସ୍ର ପାଦ ପ୍ରକାଶ ଉପମାଏ ସୁତ,
ସୁଷୁମ୍ଣା ଯୋଗ ହେଲଣି ଉଦୟଶିଖରି ।
ଶମ୍ବର ବଟପ ତେଣୁ କୁଳଟା ଜନରୁ,
ଷଡ୍ଭାବ ହୋଇଲେ ଅତି ଶାସିତ ମନରୁ ।" ଇତ୍ୟାଦି ।
ଗୁ ୧୬, ସୁ: ପ: ।

ସହସ୍ରପାଦ—ସୂର୍ଯ୍ୟ; ଶିଖରି—ପର୍ବତ ।

ଏକାକ୍ଷର—ଯେଉଁ ରଚନା ବା ପଦ୍ୟରେ ଗୋଟିଏ ମାତ୍ର ଅକ୍ଷର ବ୍ୟବହୃତ ହୋଇଥାଏ । ଯଥା—

(୧) "କକୁ କକୁ କୋକୋ କାକ କାକା କକୁ ଧକ ।
କକେ କକ କେକା କେକୋ କକ କାଙ୍କ କକ ।
ନାଶି ଏମାନଙ୍କୁ ପୋଷି ବ୍ୟାଧ ବ୍ୟାଳ ତେବେ ।
ରକ୍ଷି ରକ୍ଷି ଗୋପ୍ୟ ଯୁଦ୍ଧରେ ବଞ୍ଚାଇଲୁ ଏବେ ।" ଗୁ ୧୬, ପ୍ରେ: ସୁ: ।

Digitized by srujanika@gmail.com

ଅର୍ଥ—କଳୁ—ବର୍ଷାକାଳ ପବନକୁ, କୃକୃ—ଡାହୁକ ଶବ୍ଦକୁ, କୋକୋ—ଚକ୍ରବାକ ଶବ୍ଦକୁ, କାକ କାକା—କାକର କାକା ଶବ୍ଦକୁ, କଳୁ—ବର୍ଷାଜଳକୁ, କଳ—କରକା ପଥରକୁ, କକେ—ମୟୂର ଶବ୍ଦକୁ, କକ—ଝିଙ୍କରପକ୍ଷୀ ନାଦକୁ, କେଙ୍କା—ମେଘ ଘଡ଼ଘଡ଼କୁ, କେକୋ—ଭେକ ଶବ୍ଦକୁ, କକ—କଙ୍କିଣିଆଳର କାଙ୍କ ଶବ୍ଦକୁ ଶୁଣି, କଳ—କାମଡାପକୁ ନାଶିବା ସକାଶେ ବ୍ୟାଧ—ବାଣୁଆ ଓ ବ୍ୟାଳ ନଳୁଆ କେଳାକୁ ପୋଷି ନବ୍ୟପଦ୍ମ ସ୍ଥାନରେ ସକାମକ ଅତ୍ୟନ୍ତ ଯତ୍ନରେ ପାଳନ କଲୁଁ ।

(୨) "ହ୍ରା ହ୍ରା ହ୍ରା ହ୍ରା ହ୍ରା ହ୍ରୁଁ ହ୍ରୁଁ ହ୍ରୁ ହ୍ରୁଁ ହ୍ରୁଁ ହ୍ରୁଁ ହ୍ରଂ ହ୍ରଂ ହ୍ରଂ ହ୍ରଂ ହ୍ରଂ ହ୍ରୁଁ ହ୍ରୁଁ ହ୍ରୁଁ ହ୍ରୁଁ ହ୍ରୁଁ ହ୍ରୁଁ । ଯେମନ୍ତ......... ।" ଯ୨୪, ଚ:କା:ବ: ।

ଦ୍ୱି ଅକ୍ଷର—"ରସାରେ ସାର ସୁରସ ସରସୀ ।
ଫସାର ଶିଖ ସୁରସ ସରସୀ ।" ଚ: କା: ବ: ।

ଏ ସକାର ନ୍ୟସ୍ତ— "ସାଂଶ ଶଶୀ ଶିଶୁ ଶ୍ରୀଶେଷା ଶେଷ ।
ସ୍ୱାଂଶ ଶଶୀଶିଶୁ ଶୀର୍ଣ୍ଣେଶ ଶ୍ରୀଶ । ଚ: କା: ବ: ।

ଯୋଷ୍ଠକ (ସର୍ଓଷ୍ଠ୍ୟ) :—ଯେଉଁ ବାକ୍ୟରେ ପ୍ରତ୍ୟେକ ପଦ ଓ ପ୍ରତ୍ୟେକ ଅକ୍ଷର ଓଷ୍ଠ୍ୟବର୍ଣ୍ଣ, ସେଠାରେ ଏହ ଅଳଙ୍କାର ହୁଏ । ଏହା ସାଧାରଣତଃ ଅଳଙ୍କାର ଅନ୍ତର୍ଗତ ନୁହେଁ ।

ଯଥା—(୧) "ଶ୍ରୀମ ପ୍ରାଭବ ଭୂମିପ ପ୍ରାଭବେ । ବାଷ୍ପ ପ୍ରଭବ ଭବ ଭବ ଭବେ । ପୁଷ୍ପ ବଭବ ବପୁ ପ୍ରାପେୟ ପବ । ବପ୍ରଭ ପ୍ରଭୁଭବ ଭବ ଭବ । ଚ: କା: ବ: ।

(୨) "ପୁଷ୍ପ ପବ ପ୍ରଭ ପ୍ରଭ ଭ୍ରମୁ ଭବେ ଭୁବ ।
ଶ୍ରୀମ ବାଷ୍ପ ଭବ ଭବେ ଭବ ଭବ ଭବ ।
ଭବପ୍ରଭବ ଭୂମିପ ପ୍ରଭବ ବଭବେ ।
ବଭେ ପ୍ରଭେ ଶ୍ରୀମ ଭବ ଭ୍ରମେ ଭ୍ରମି ଭବେ ।" ଛ୧୭, ପ୍ରେ: ସୁ:

ପବ = ବଜ୍ରଚିହ୍ନ, ଭୁବ = ପୃଥିବୀରେ, ଭବପ୍ରଭବ—କନ୍ଦର୍ପ,—ଭୂମିପ,—ରାଜା, ଭବ—ମହାଦେବ, ଭବ—ଶୁଭ ହେଲା ।

ନବୋଷ୍ଠକ—"ନୀରଜଦଳ-ଶଯ୍ୟନ କଣ ନିରନ୍ତର ।
କରିଥାଉଁ ନଦୀଘରେ ସଜନୀ-ନିକର ।
ଘନସାର ଚନ୍ଦନ ଶୁଖଇ ଅଙ୍ଗେ ଦେଲେ ।
ଜଗନ୍ନାଥେ ସିନା ସେ କାଳରେ ରକ୍ଷା କଲେ ।" ପ୍ରେ: ସୁ: ।

ନୀରଜଦଳ—ପଦ୍ମପତ୍ର, ସଜନୀନିକର—ସଖୀମାନେ, ଘନସାର—କର୍ପୂର ।

ଅଭଙ୍ଗ ଶ୍ଳେଷ—ଯେଉଁ ରଚନାରେ ପଦମାନଙ୍କୁ ନ ଭାଙ୍ଗି ପ୍ରତ୍ୟେକ ବାକ୍ୟର ଦୁଇଟି ବା ତତୋଽଧିକ ଅର୍ଥ ହୋଇ ପାରେ ।

ଯଥା— ବାବୁ ନାକଶିଖ ଦାନ ଯୋଗ୍ୟ ଯୋଷାକୁ । ବୈ: ବ: ।

Digitized by srujanika@gmail.com

ସଭଙ୍ଗ ଶ୍ଳେଷ—ଯେଉଁ ରଚନାରେ ବିନ୍ୟସ୍ତ ପଦମାନଙ୍କର ଗୋଟିଏ ଅର୍ଥ ହୁଏ, କିନ୍ତୁ ସେ ପଦମାନଙ୍କ ଅକ୍ଷରକୁ ଭାଙ୍ଗି ଦେଲେ ନୂତନ ଶବ୍ଦ ଓ ନୂତନ ଅର୍ଥ ହୁଏ ।

ଉଦାହରଣ—"ବହୁର କାନ ନ କର ଆଲିଙ୍ଗନକୁ ।" ବୈ: ବି: ।

ଭଙ୍ଗାଭଙ୍ଗ ଶ୍ଳେଷ—ଯେଉଁ ରଚନାରେ ଅଭଙ୍ଗ ଶ୍ଳେଷ ଓ ସଭଙ୍ଗ ଶ୍ଳେଷଦ୍ୱାରା ଦ୍ୱିବିଧ ଅର୍ଥ ପ୍ରକାଶ ପାଏ ।

ଉ— ୧ । ଦନ୍ତ-କଣ୍ଟକ ଭୃଙ୍ଗ ପ୍ରଫୁଲ୍ଲତାରୁ ଶକଳା-ଧାରୁ ଧାରେ ଶୋହି । କୋ: ବ୍ର: ସୁ: ।

ଉ—୨ । ସୀନତାପ ବିନାଶନ ପାଇକ ସେ ହରି,<br>
ଉକ୍ଷ୍ବଳ୍ପତାନୋହ୍ରଛ ଅଛୁ ତ ବିଶ୍ୱବଶି । ବି: ଚି: ।

ଭଙ୍ଗାଭଙ୍ଗ, ଦତ୍ତାକ୍ଷର, ଚ୍ୟୁତଦତ୍ତାକ୍ଷର—

"ବାଜନ୍ତ ରସନା ବଳା ବରଜନା ନୂପୁର ପ୍ରଗୁର ମାଧୁର୍ଯ୍ୟ ।<br>
ବୋଲନ୍ତ ରସନା ବଳାନା ସୁମନା ନ ପୁରଶୋଣ୍ଟି ଏ ହେଲ ।" ଗୁ୧୧, ବୈ:ବି:

ସୀତାଙ୍କ ସ୍ୱୟମ୍ବର ବେଳେ, ବଳା, ନୂପୁର ଶବ୍ଦ ଛଳରେ କହନ୍ତି--

ହେ ରାଜାମାନେ ! ରସନା (ରସ । , ତାହା ଭଙ୍ଗ ହେଲ । ବଳା ଶବ୍ଦରେ 'ନା' 'ସୁମନ' ଦତ୍ତ ହେବାରୁ (ଅଭଙ୍ଗ ଦତ୍ତାକ୍ଷର ହେଲ) ଅର୍ଥାତ୍ ମନ ବଳାନା, ସୀତାଙ୍କୁ ପାଇବାକୁ ମନ କରନା । ନୂପୁର ଶବ୍ଦରୁ 'ନ ଚ୍ୟୁତ କରି 'ହି'ଦତ୍ତ ହେଲ ଓ ପ୍ରାନ୍ତରେ ଶୋଣ୍ଟି ଦତ୍ତ ହେବାଦ୍ୱାରା ହେଲ— ଏ ହି ପୁରଶୋଣ୍ଟି (ଏହା ଚ୍ୟୁତଦତ୍ତାକ୍ଷର) ।

ଚ୍ୟୁତାକ୍ଷର—ଏଥିର ପାଦ ମଧ୍ୟରେ ଏକ ପଦରୁ ଗୋଟିଏ ଅକ୍ଷର କାଟି ଦେଲେ ଅର୍ଥାଗମ ହୁଏ । ଯଥା—

(୧) "କଟିଲା ଉଣି 'ଙ୍କ' ନରେଶନନ୍ଦନୀ ପାଠପଠିମ ପର ଦଣେ ।" କୋ: ବ୍ର: ସୁ: ।

(୨) "ଯୌବନେ ପୁଷ୍ପବିକାଶେ ବିଭ୍ରମର ଶୋହି । କପୀଡ଼ାତ ବରହରେ ହେଉ ଥାଇ ସହି । ଅପୁରେ ପୂଜା ବହୁତ ତାହା ରକ୍ଷା ପାଇଁ । କହୁଥାଇ ବାସରମାନଙ୍କେ ପ୍ରାଣସହୀ" । ପ୍ରେ: ସୁ:

ଦତ୍ତାକ୍ଷର—ଏଥିର ପାଦ ମଧ୍ୟରେ ଏକ ଏକ ଅକ୍ଷର ଯୋଗ କଲେ ଅର୍ଥାଗମ ହୁଏ । ଯଥା—

"ଜଗମୋହ (ମ) ଚୂଡ଼ା (କୁ) ସୁମେ କେବେ ନ କରଇ ।<br>
ବନପ୍ରିୟ (ର) ସାଲେ ତାକୁ କଣ୍ଠ ବୁଜୁଥାଇ ।<br>
ନ ଅନାଇ ଚନ୍ଦ୍ରମାକୁ (ଆ) କାଶେ ଯେଣୁହାସେ ।<br>
ଏହ୍ପରି କହୁଥାଇ ସ୍ୱରଭଙ୍ଗ ବଶେ ।" ପ୍ରେ: ସୁ:

Digitized by srujanika@gmail.com

ଦନ୍ତଚ୍ୟୁତାକ୍ଷର—

ଯଥା— ମଦନ ବ୍ୟାକୁଳରୁ ଜାଣିଲି ଯୁବାବର ।
୧ ବରଦ କାଳେ ବଞ୍ଚିବା ମହାକ୍ଷଣ କର ।
୨ ରକ୍ତପାର ପ୍ରାପ୍ତେ ଦୁଃଖଗ୍ରସ୍ତି ଘୋଟିଥିଲା ।
ରୁମ୍ଭ ଦେବା ପ୍ରେମପଦ କୁମ୍ଭଭବ ହେଲା ।
୧ଚ୍ୟୁତ—ବ, ଦନ୍ତ-ଶ, ୨ ଚ୍ୟୁତ—ର, ଦନ୍ତ—ଅ ।

ମଣ୍ଡୁକପ୍ଲୁତ—ଏ ରଚନାରେ ଏକ ବା ତତୋଽଧିକ ପଦ ମଧ୍ୟରେ ଏକ ବା ଅଧିକ ଅକ୍ଷର ବହୁବାର ପ୍ରଯୁକ୍ତ ହୋଇଥାଏ ।

ଉ — "'ଦେ' ଖ ର 'ବ' ଅସ୍ତ 'ଯୁ' ଖଦା 'ନ' ରେ
'ଆ' ସୁତୋ 'ଆ' ଲୀ ପ୍ରା 'ଣ' ରଖ 'ମୋ' ରେ ।" ଚ: କା: ବ: ।

ମେଷଯୁଦ୍ଧ ଏଥିରେ ଯେଉଁ ପାଦ ରଚିତ ହୁଏ, ସେଇ ପାଦକୁ ଓଲଟାଇ ପଢ଼ିଲେ ଠିକ ସେଇତା ପଢ଼ାଯାଏ । ଯଥା —

୧ । "ବରଦ ବରଯାନନ ଯାର ବ ଦରବ ।" ବୈ: ବି: ।

୨ । "ରସାଳସି କାଶୀରସା ରଦ୍ଧ ରଦ୍ଧ ରସା ରସି କାଶୀ ଲ ସାର ।" ଚ: କା: ବ: ।

ଅନୁପ୍ରାସ—ତୁଳ୍ୟ ବର୍ଣ୍ଣବିନ୍ୟାସ । ରଚନା ବା ପଦ୍ୟର ଭିନ୍ନ ଭିନ୍ନ ସ୍ଥାନରେ ଏକ ବା ଏକାଧିକ ଅକ୍ଷରର ପ୍ରୟୋଗ । ଯଥା —

"ଦେଖି ନବ କାଳିକା ବକାଳିକା ମାଳିକା ଆଳି କାଳିକା କାନ୍ତ ସ୍ମୃତି,
ରକ୍ଷା କେମନ୍ତେ କରି କରିବା ମନ୍ଦ୍ରଜରି ଗର୍ଜନ୍ତ ଏମନ୍ତ ବିଶ୍ୱତି ।
ସେ ସହୁଚରି ।

ଖ୍ୟାବେ ବଞ୍ଚିଲେ ଏ କାଳକୁ, କଥା ଥିବ ଜାଳ କାଳକୁ
ଏକେ ତ କ୍ଷୀଣ ଧନ ହେଲି ଦୁର୍ଦ୍ଦିନ ଧନ ନ ଲଭି ବକ୍ଷଜ ମେଳକୁ
ରେ ସହୁଚରି ।" ଲ: ବ:

ଏଠାରେ 'ଳ କ' ପର୍ଯ୍ୟାୟକ୍ରମେ ବାରମ୍ବାର ବ୍ୟବହୃତ ହୋଇଅଛି ।

ଉପମା ଅଳଙ୍କାର—ଉପମେୟରେ ଉପମାନର ସାଦୃଶ୍ୟ ବର୍ଣ୍ଣିତ ହେଲେ ଉପମାଳଙ୍କାର ହୁଏ । ଯଥା—

"ବୃକ୍ଷତଳ ତପିପତ୍ନୀ ତହିଁ ଏକାକୃତ
ବଲ୍କଲ ପିଧାନ କରି ଜଟା ଧରିଥାନ୍ତି ।
ବେଦସାର ମୂଳ ସଦ ସୁମନ ଫଳଦ
ବାସକୃତ ପର୍ଣ୍ଣଚୟ ଅତ ସ୍ଥ ର ହୁଦ ।" ବୈ: ବି: ।

Digitized by srujanika@gmail.com

ଅସମ ଅଳଙ୍କାର—"ଉପମାନ ପ୍ରତିଷେଧ ବର୍ଣ୍ଣ୍ୟ ପଦାର୍ଥର
ଚମତ୍କାରୀ ହେଲେ ହୁଏ ଅସମାଲଙ୍କାର ।"

ଦୃଷ୍ଟାନ୍ତ—"ବଳସ୍ୱୀ ବୀର ବଳସ୍ତ୍ର କର ଯିବା ମିଥିଳାପୁର,
ବାହାର ହୋଇ ବହାର ତହିଁ କରନ୍ତୁ ମୁନିବର ।
ବଇଦେହୀ ଯେ ସୁନ୍ଦରୀବୃନ୍ଦଙ୍କ ଅମୂଲ୍ୟ ଚୂଡ଼ାମଣି
ବର୍ତ୍ତମାନ ସେ ଭୂତ ଭବଷ୍ୟେ ନାହିଁ ନୋହିବ ପୁଣି ।" ବୈ:ବ: ।

ଏଠାରେ ବୈଦେହୀ ସମାନ କେହି ନାହିଁ—ଏହା ପ୍ରକାଶ ପାଏ ।

ଉପମେୟୋପମା – "ଉପମେୟୋପମା ଦୁଇବସ୍ତୁ ମନୋହର
ଉପମେୟ ଉପମାନ ହେଲେ ପରସ୍ପର ।"
"ବୃକ୍ଷତଳ ତପିପନ୍ତି ତହିଁ ଏକାକୃତ,
ବଲ୍‌କଲ ପିଧାନ କରି ଜଟା ଧରିଛନ୍ତି ।" ବୈ: ବ: ।

ଏଠାରେ ବୃକ୍ଷତଳ ତପିପନ୍ତି ତୁଲ୍ୟ, ଉଭୟଙ୍କୁ ଉପମେୟ ଭାବ ପ୍ରକାଶ ପାଏ ।

ପ୍ରତୀପ ଅଳଙ୍କାର—"ପ୍ରତୀପାଲଙ୍କାର ହୁଏ ଯହିଁ ଅଭିମତ,
ଉପମାନ ଉପମେୟ ରୂପେ ବ୍ୟବହୃତ ।"

ଯଥା—"ବନ୍ଧୁ ସମୁଦ୍ରମନ୍ଥନ ଚନ୍ଦ୍ରଜନମ ଯେଉଁ କାଳେ
ବଦନ କ୍ଷୀଣ କଳଙ୍କ ଜାଣ ସେ ହୋଇଥିଲେ ।
ବଦନେ ଜାନକୀର ସମାନ ମନ ଜାଣିଛି ବନ୍ଧୁ
ବମୁବେଷ୍ଟନ ନୋହିଲା ବର୍ଣ୍ଣିଛିବେଟି କାଟିଦେଇ ।" ବୈ:ବ:

ଏଥିରେ ବଧିଚନ୍ଦ୍ର ସୀତାମୁଖ ଏକ କଥା ନୁହେ । ସୀତାମୁଖ ସଙ୍ଗେ ଚନ୍ଦ୍ର ଦରର୍ଥକ ବୋଲି ପ୍ରକାଶ ପାଉଛି ।

ଉଲ୍ଲେଖାଲଙ୍କାର—"ଏକ ବସ୍ତୁ ଧର୍ମ ଭେଦେ ଅନେକ ପ୍ରକାର
ଉଲ୍ଲିଖିତ ହୋଇଥିଲେ ଉଲ୍ଲେଖାଲଙ୍କାର ।"

ଦୃଷ୍ଟାନ୍ତ—"ବେଦବେଦାନ୍ତେ ବଧାତା, ବ୍ୟାକରଣେ ହର
ସଙ୍ଗୀତରେ ନାରଦ, ଶୃଙ୍ଗାରଶାସ୍ତ୍ରେ ମାର ।
ଅଶ୍ୱବେଦେ ମିହିର, ଭୈରବ ପରି ଗତି
କବପଣେ ପଣ୍ଡିତ, ଜ୍ୟୋତିଷେ ବୃହସ୍ପତି ।
ଧନୁର୍ଦ୍ଧରେ ଅର୍ଜ୍ଜୁନ, ଗଦାରେ ବୃକୋଦର
ଦାନରେ କର୍ଣ୍ଣ, ମାନରେ କୁରୁଦଣ୍ଡଧର ।
ବଳିଷ୍ଠରେ ବଳୀ, ଧାର୍ମିକରେ ଯୁଧିଷ୍ଠିର
ସୁନ୍ଦର ପଣରେ ତାଙ୍କୁ ସେହି ପଞ୍ଚାନ୍ତର ।" ଲ: ବ:

Digitized by srujanika@gmail.com

ଭ୍ରାନ୍ତ ଅଳଙ୍କାର—"ସାଦୃଶ୍ୟ ବଶତଃ ଏକେ ଅନ୍ୟ ପଦାର୍ଥର
ଭ୍ରମ ଜନମିଲେ ହୁଏ ଭ୍ରାନ୍ତ ଅଳଙ୍କାର ।"

ଦୃଷ୍ଟାନ୍ତ—"ଅପୂର୍ବ ଅମ୍ବୁଜମୁଖକୁ ଦେଖି ଭୃଙ୍ଗ ଚକୋର
ଚୁମ୍ବିବା ଲୋଭରେ ଧାଇଁଲେ ଶ୍ରୁତ ଦେଖି କାଳର
କେଶ ଦରଶନେ ରଥାଙ୍ଗ ଧାଇଁ ଆହାରକାରଣେ
ବନ୍ଧୁବିଚ୍ଛେଦଭୟରୁ ପଳାଇ ଗଲେ ନ ରହି ପାଶେ ।" ଲା: ବ:

ଏହି ପଦ୍ୟରେ ଭ୍ରାନ୍ତ ପରେ ଭ୍ରାନ୍ତ ମନକୁ ଅଥୟ କରୁଛି । ପ୍ରଥମେ ଭ୍ରମର ଓ ଚକୋର ମୁଖକୁ ପଦ୍ମ ଓ ଚନ୍ଦ୍ର ମନେକରି, ଦ୍ୱିତୀୟରେ ରଥାଙ୍ଗ ବାଳକୁ ଶୈବାଳ ମନେକରି କବଳ ହେଲେ ।.

ପର୍ଯ୍ୟାୟୋକ୍ତ ଅଳଙ୍କାର—"ବକ୍ରତା ପ୍ରକାରେ ବାଞ୍ଛିତ ଅର୍ଥ
ଭଙ୍ଗ୍ୟନ୍ତରେ ଉକ୍ତ ହେଲେ ହୁଏ ପର୍ଯ୍ୟାୟୋକ୍ତ ।"

ଉଦାହରଣ—"ମାର୍ଗ ମାରକନେ ରଜ ନକର ଆଣି ଯାଇ
ରଜନୀକର ଆଣନ୍ତି ଶକଟରେ ବାହି ।
ହସ୍ତୀଙ୍କ ପାଇଁ ଡଆଳେ ବୈଦ୍ୟକୁଳ
ଘରବାହେ ଘରରେ ଆଣନ୍ତି ଜାତିଫଳ
ଶବରୀ ଶବର ଶେଷୁ ଅରଣ୍ୟକୁ ଯାଇ
ହସ୍ତିଦନ୍ତାଗ୍ରେ ଜଡ଼ି ମୋତି ପଡ଼ିଥାଇ ।
ବଦରି ଆଦରେ ନେଇ ସରୋବରେ ଧୋଇ
ବଳା ତା ନ ମିଳିବ ବୋଲି ଆସନ୍ତି ପକାଇ ।" ଲା: ବ: ।

କର୍ପୂର ଜାତିଫଳ ଓ ଗଜମୁକ୍ତା ସିଂହଳରେ ପ୍ରଚୁର ମିଳେ । ଏହି କଥା କବି ବଚନ ଭଙ୍ଗୀରେ ଅନ୍ୟ ରୀତିରେ ବ୍ୟକ୍ତ କରିଛନ୍ତି ।

ଆକ୍ଷେପ ଅଳଙ୍କାର :—" ପ୍ରଥମରେ କହିଥିବା ବଚନ, ଉତ୍ତର
କରି ନଷେଧିଲେ ହୁଏ ଆକ୍ଷେପାଳଙ୍କାର ।"

ଉ:—୧, "ଏଥି ଅନନ୍ତରେ ରସିକ ସାର
କର୍ଣ୍ଣ ମୁଖରେ ସୁଧା ପାନ କର

ନୃପସୁତା ଆଗେ ପେଡ଼ି ଫେଡ଼ିଲ
ସେ ରୂପ ଉପରେ ନେତ୍ର ପଡ଼ିଲା ।

କି ପଡ଼ିଲା ନାହିଁ ଜଡ଼ିଲା ମନ,
ଜଡ଼ିଲା ନାହିଁଟି ବୁଡ଼ିଲା ଜ୍ଞାନ ।" ଲା: ବ: ।

Digitized by srujanika@gmail.com

ଉକ୍ତ ପଦ୍ୟାଂଶରେ କବି 'କେଶ କୁଟିଳ' କହୁ ନିଷେଧପୂର୍ବକ କହନ୍ତି —'ଜଟିଳ ମନ', ପୁଣି 'କୁଟିଳ ଜ୍ଞାନ'। ଅତଏବ ଅର୍ଥ ଆକ୍ଷିପ୍ତ ହେଉଥିବାରୁ ଆକ୍ଷେପ ଅଳଙ୍କାର ହୁଏ ।

ଉ:—୨ କେ ବୋଇଲା ମୋହ ପାଇଁ ନ ଖେଳିବ
ସାରିବ ବେଳ କାଳେ ମାତ,
ତୁମ୍ଭେ ସର୍ବ ଶୁଭେ ଥିଲେ ସବୁ ଅଛୁ
ନମ୍ରକରେ କହେ ଯୁବତୀ
କେ ସଖୀ ଦ୍ୱାରଦେ ଏମନ୍ତ କହୁଥାଇ
ବାହୁଡ଼ି ଆସି ଯାହାକୁ ବିଷ ହେବ
ଏ ରୂପେ ନୋହିବ ଅନ୍ୱେଷା । ଲ: ବ: ।

ଅସମ୍ଭବ ଅଳଙ୍କାର—"ଯହିଁ ଅସମ୍ଭବ ରୂପ ଅର୍ଥର ସାଧନ
ବର୍ଣ୍ଣିତ ହୁଅଇ ତହିଁ ଅସମ୍ଭବ ମାନ ।"

ଦୃଷ୍ଟାନ୍ତ—"ଚକୁରଶୋଣି ମୁକୁର ପ୍ରତିବିମ୍ବ ଆଲିଙ୍ଗନେ ଯେବେ ଅଟିବ
ମୃଗତୃଷ୍ଣା ଜଳ ତୃଷ୍ଣାକୁ ନାଶିବ ସ୍ୱପ୍ନ ତେବେ ସତ ଦିଶିବ ।
କହେ ସଚିବ-ସୁତା ସବୁ ବଡ଼ ଉଇବ
ନାହା ମନେ ଥିଲା ଅଗାଧ ସମୁଦ୍ର ଚଳୁ ଭିତରେ ସମ୍ଭାଇବ ।" ଲ: ବ: ।

ବିଷମ ଅଳଙ୍କାର—"ଅନୁରୂପ ନୋହୁଥିବା ପଦାର୍ଥ ଦ୍ୱୟର
ସମ୍ବନ୍ଧ ବର୍ଣ୍ଣନେ ହୁଏ ବିଷମାଳଙ୍କାର ।"

ଯଥା—"ଶୁକ ଏ ଦଶାକୁ ତାର ଅନାଇ ବିଚାରେ,
ଧାତାରୁ ଦାରୁଣ ହୋଇ ନାହିଁ ତ ସଂସାରେ ।
ଏତେ ଦୁଃଖ ତ ଏହାର,
ଏତେ ଏତେ ବୁଦ୍ଧି କଲା କେବଣ ବୁଦ୍ଧିର ।
ଶ୍ୱେତ ଶ୍ୱେତକୁ ଯୋଖିଲା ମଳୟଅନଳ,
ଶିବ ଗଳେ କଲା ସିନ୍ଧୁମନ୍ଥନେ ଗରଳ ।
ଦେଲା ରାହୁକୁ ଅମୃତ,
କଳାନିଧି ପରଦ୍ରବ୍ୟେ କଳଙ୍କ ଅଙ୍କିତ ।
ତୀର୍ଥରାଜ ଜଳ କଲା ଲବଣ ସହିତ,
ଧର୍ମେ ନୀଚ ପରାଭବ ବିହିଲା ଯେମନ୍ତ ।
ତଥା କୋମଳ-ପିଣ୍ଡକୁ,
ବିହିଲା ଉଦଣ୍ଡ ଫୁଲକୋଦଣ୍ଡ ଦଣ୍ଡକୁ ।" ଲ: ବ: ।

ଅନ୍ୟୋନ୍ୟ ଅଳଙ୍କାର—

ପରସ୍ପର କାର୍ଯ୍ୟରେ ପରସ୍ପରର ଉପକାର ସାଧିତ ହେଲେ ଅନ୍ୟୋନ୍ୟାଳଙ୍କାର ହୁଏ । ଯଥା—

୧ । "ତଥାପି ଭୂଷଣ ନୋହେ ଦୂଷଣ, ତୁହି ଚନ୍ଦ୍ରମା ସେ ରଜନୀ ଜାଣ
ପରସ୍ପରେ କରେ ଶୋଭା ଅଧିକା, ସୁକୁମାରି ବୋଲି ନ କର ଶଙ୍କା ।
ଏଥିଁ ହେବ ଖର, ପୟୋଧର ତ ଧରାଧର ପର ।" କୋ: ଭୁ: ସୁ: ।

Digitized by srujanika@gmail.com

୨ । "ଫଳ ଭ୍ରମର ବାନ୍ଧିଲ ଭ୍ରମର ଫୁଲ ଭିତର
ମଧୁ ଦେଇ ଫୁଲ ତୋଷ କରେ,
ଅନୁସରଇ ଭ୍ରମର, ତୋର ମୋର ଏ ପ୍ରକାର
ସ୍ନେହ ନ ତୁଟିବ ଛାଡ଼ିବାରେ ରେ ।

ମହେଶ୍ୱର, ନିସ୍ତାରଣ ଜାଣେ ମୁଁ ଏ କଥା,
ମାଜିଲା ମୁକୁର ପରି ନିର୍ମଳ ତୋ ହୃଦ ଯୋଗ
ପ୍ରତିବିମ୍ବ ମୋର ହୃଦବ୍ୟଥା ରେ ।" ଲା: ବ: ।

ଯଥାସଂଖ୍ୟ ଅଳଙ୍କାର—"ପ୍ରଥମ ନିର୍ଦ୍ଦେଶ କ୍ରମେ ବସ୍ତୁମାନଙ୍କର
ଅନ୍ୱୟ ଘଟିଲେ ଯଥାସଂଖ୍ୟ ଅଳଙ୍କାର ।"

ଯଥା—"ବୈଦେହୀ ଶ୍ରୀରାମ କି ସେ କରିଣୀ କରୀ
ବନୋଦନଦୀରେ କୁଞ୍ଜ କୁଟୀରେ କେଳି ।" ବୈ: ବି: ।

ପରିସଂଖ୍ୟା ଅଳଙ୍କାର—"ଏକର ନିଷେଧ ତଥା ଦୃଢ଼ତା ଅନ୍ୟର
ପ୍ରକାଶ ପାଇଲେ ପରିସଂଖ୍ୟା ଅଳଙ୍କାର ।"

ଯଥା—"ଜଳଜାତ ବିନା ଗଜ ନ ଆଣନ୍ତି ବନୁଁ,
ଅଶ୍ୱଶାଳେ ବନ୍ଧା ନୋହେ ସିନ୍ଧୁଜାତ ବିନୁଁ ।
ମୂଷିକରେ ନେପାଳୀ ପାଳନ୍ତି ସ ଆଦରେ
ଗନ୍ଧ ମାର୍ଜାର ପୋଷିତ ବିଡ଼ାଳ ପଦରେ ।
ମାନ ଆଳୀ ଦକ୍ଷିଣା ବଣିକ ବିନା କମ୍ବୁ,
ନ ଘେନନ୍ତି ଦେବାକୁ ହର ଚରଣେ ଅମ୍ବୁ ।
ଏକ ମୁଖୀ ରୁଦ୍ରାକ୍ଷ ଗ୍ରହଣ ଯୋଗୀ କରେ
ବାଳକେ କଣନ୍ତି ଦ୍ରାକ୍ଷା କେବଳ କୋଳରେ ।" ଲା: ବ: ।

ଅର୍ଥାପତ୍ତି ଅଳଙ୍କାର—"କୈମୁତିକ ନ୍ୟାୟ ବଳେ ଅର୍ଥର ସାଧନ
ହେଉଥିଲେ ଅର୍ଥାପତ୍ତି ଅଳଙ୍କାର ମାନ ।"
( କୈମୁତିକ—କିମୁତ ଅନ୍ୟ, ଅନ୍ୟ କଥା ଛାଡ଼ )

ଦୃଷ୍ଟାନ୍ତ—"ନୈଷଧରେ ପଢ଼େ ଶୁକ-ଦ୍ୱି-ଯାନ,
ଶୁକ ବିରଚିତ ଚଉତି ଶ୍ଳୋକ,
ସୁକବିମାନେ ତା ଅର୍ଥ ନଦେବା
ବିଚାର କରି ଜାହ୍ନିକି ଘେନିବା ।" କୋ: ଦ୍ର: ସୁ: ।

କାବ୍ୟଲିଙ୍ଗ ଅଳଙ୍କାର—"ପଦାର୍ଥ ବା ବାକ୍ୟାର୍ଥର ଗମ୍ୟ ହେତୁଭାବ
ପ୍ରକୃତୋପଯୋଗୀ ହେଲେ କାବ୍ୟଲିଙ୍ଗ ଭାବ ।"

Digitized by srujanika@gmail.com

ଯଥା—"ବାନ୍ଧବୀ ପଣ୍ ମୋ ନାହିଁ ଯୁବତୀ
ବାସେ ଦେବୁ ସଜ ସଙ୍ଗେକ ପତି
ବାମଦେବାରି ହୃଦେ ଯୋଷି ଶର
ବନ୍ଧୁ ମୋହି ହୋଇ ଅଛବ କର
ବାନ୍ଧବ କ ଲକ୍ଷ, ବଶୀକୁ ହେବ ଗୁଣ ଶିଳୀମୁଖ ।" ବୈ: ବ: ।

ପ୍ରୌଢ଼ୋକ୍ତି ଅଲଙ୍କାର—"ବର୍ଣ୍ଣର ଉତ୍କର୍ଷ ସିଦ୍ଧି ଆଶେ ଅହେତୁର,
ହେତୁତ୍ୱ କଳ୍ପିତ ହେଲେ ପ୍ରୌଢ଼ୋକ୍ତ୍ୟଲଙ୍କାର ।

ଯଥା—"ମୁଖ ହେବ ଏମନ୍ତ ବଖ୍ୟାତ ପଦ୍ମ ବଧୂ
ହସ୍ତବଳା କରି ଆଗୁ ଗଢ଼ିଥିଲ ସାଧୁ ଯେ,
ତହୁଁ ବାସ ଆହ୍ଲାଦ ଦର୍ପଣରୁ ଝଳ
ଲହରୀରୁ କୁଟିଳ ଅଞ୍ଜନପୁଞ୍ଜ କାଳୀ ଯେ,
କୁରଙ୍ଗରୁ ତରଙ୍ଗ ବିଦ୍ରୁମ ରଙ୍ଗ ହରି
ଲବଣୀ ଶିରୀଷରୁ କୋମଳ ବ୍ରଂଳ ଗୁଳି ଯେ,
ସୁବର୍ଣ୍ଣରୁ ବର୍ଣ୍ଣ ରାଜହଂସ ଠାରୁ ଗତି
ଏ ରୂପେ ଉପମାବର୍ଗ ଯେତେକ ଅଛନ୍ତି ଯେ
ବନ୍ଧୁ ସବୁଠାରୁ ସାର ସାର ଭାଗ ଆଣି
ପୁରଟ ପ୍ରତିମା ପରି ରଚିଲା ତରୁଣୀ ଯେ ।" ଲ: ବ: ।

ସମ୍ଭାବନା ଅଲଙ୍କାର—"ଅନ୍ୟର ସାଧନ ଅର୍ଥେ ପଦାର୍ଥ କଳ୍ପନା
ଅଦ୍ଭୁତ ହୋଇଛୁ ଯହିଁ ତହିଁ ସମ୍ଭାବନା ।"

ଯଥା—"ଚକୁରଶୋଣୀ ମୁକୁର ପ୍ରତିବିମ୍ବ ଆଲିଙ୍ଗନେ ହେବେ ଆସିକ୍ତ
ମୃଗତୃଷ୍ଣାଜଳ ତୃଷ୍ଣାକୁ ନାଶିବ ସ୍ୱପ୍ନ ତେବେ ସତ ହୋଇବ ।
କହେ ସତବସୁତା ସବୁ ବଡ଼ ଦଇବ,
ଜାହ୍ନା ମନେ ଥିଲା ଅଗାଧ ସମୁଦ୍ର ଚକ୍ଷୁ ଭିତରେ ସମ୍ଭାଇବ ।" ଲ: ବ: ।

ଲଳିତ ଅଲଙ୍କାର—"ପ୍ରସ୍ତୁତରେ ତାର ପ୍ରତିରୂପ ଅପ୍ରସ୍ତୁତ
ବୃତ୍ତାନ୍ତ ବର୍ଣ୍ଣିତ ହେଲେ ହୁଅଇ ଲଳିତ ।"

ଯଥା—"ପୁଣି ବୋଲଇ ହେ ଜାଣି ମୁଁ ନଥିଲି ଦଇବ ରୁ ଏଡ଼େ ଦାରୁଣ,
କ୍ଷୁଧାତୁରକୁ ସୁଧା ଭକ୍ଷ ଭୋଜନ ପରଶିଲୁ କେଉଁ କାରଣ ।
ଭକ୍ତି ବସିବା—ବେଳେ କୁଳିଶ ବୃଷ୍ଟି କଲୁ,
ଯେବେ କଲୁ ତେବେ ପରାଣ ନ ନେଲୁ ଏଡ଼େ ବ୍ୟାକୁଳ କପାଁ କଲୁ ।" ଲ: ବ: ।

ରତ୍ନାବଳୀ ଅଲଙ୍କାର—"ସୁପ୍ରସିଦ୍ଧ ଅଟେ ସହପାଠ ଯାହାଙ୍କର
ସେମାନଙ୍କ ନ୍ୟାସେ ରତ୍ନାବଳୀ ଅଲଙ୍କାର ।"

Digitized by srujanika@gmail.com

ଯଥା—"ବହୁ କୃପଣ ସାଧନ କରେ ଛେଦନ ଶଙ୍କା ଜମ୍ବୁପୃଷ୍ଠରେ
ଆରମ୍ଭ ହୋମ କର୍ମ କୃଶ ରେ ବର୍ଦ୍ଧନ ଗ୍ରନ୍ଥ ଯେ,
ବାହୁଲୀ ଧରୁଁ କୌଷ୍ଠ ଚମକେ, ଭୋଜନ କାଳେ ଭସ୍ମଦଶାନେ ।
ଶୟନେ ଗୁଳି କରଣେ ଶଙ୍କେ ଶାଳ୍ମଳୀ ଝଡ ଯେ,
ବନ୍ଧୁଁ ଦେବ ପୂଜନେ ପୃଷ୍ଠରେ ଭସ୍ମ ଯେ,
ବଳେ ଜପାନ୍ତ ଦେବ ହୁଏ ଉଦ୍ଭବ ଯେ,
ବସୋର କର ପ୍ରତାପେ କର କରଭ ହେଲେ ପ୍ରଜା ଅକର
ପୃଥ୍ୱୀମଣ୍ଡଳ ରାଜନକର ମହା ଦୁର୍ଲ୍ଲଭ୍ୟ ଯେ ।" ବୈ: ବ: ।

ସାମାନ୍ୟ ଅଳଙ୍କାର—"ସାଦୃଶ୍ୟ ବଶତଃ ସମ ଦୁଇଟି ବସ୍ତୁର
ବିଶେଷ ଅଲକ୍ଷୀ ହେଲେ ସାମାନ୍ୟାଳଙ୍କାର ।"

ଯଥା—"ନାସ୍ତି ବାଣ ବାଣ ନୋହୁଲେ ତଦ୍ଧି ଘଞ୍ଚଏ ଯାଏଁ
ହସ କୁମୁଦ ନେତ୍ରମୀନ ମୁଖ କମଳ ପ୍ରାପ୍ତେ ।
ଜଘନ ପୁଳିନ ଉରଜ ଚକ୍ରବାକ ମିଥୁନ,
ରୋମାବଳୀ ଅଳି ଆବଳୀ ଗତି ହଂସ ସମାନ ।" ଲ: ବ: ।

ଉନ୍ମୀଳିତ ଅଳଙ୍କାର—ଦୁଇଟି ବସ୍ତୁ ଏକ ପରି ଜଣାଯାଉଥିଲେ, କୌଣସି କାରଣରୁ ପ୍ରଭେଦ ଧରାଯାଇ ଥିଲେ ଉନ୍ମୀଳିତ ଅଳଙ୍କାର ହୁଏ ।

ଯଥା—"ଉଷ୍ଣଦେଲେ ପୀତାମ୍ବରକୁ ହରୁସନ୍ଧକ କୁଣ୍ଡ,
ପିଣ୍ଡ ନିତମ୍ବିନୀ ନବକେ ନୀବୀବନ୍ଧକୁ ବାନ୍ଧି ।
ତୋର ହୋଇଲା ଗୋର ଦେହ ଆଲିଙ୍ଗନକୁ ପାଇଁ:
ଧନ୍ତ ନ ଥିଲେ ଶାଢ଼ୀ ଥିଲା ପରି ଦଶନ୍ତା ନାହିଁ ।" ଲ: ବ' ।

ବିଶେଷ ଅଳଙ୍କାର—"ସାଦୃଶ୍ୟେ ଅଭିନ୍ନ ବସ୍ତୁ ଦ୍ୱୟେ ବିଶେଷର
ପ୍ରତୀତ ଘଟିଲେ ହୁଏ ବିଶେଷାଳଙ୍କାର ।"

ଯଥା—"ଛନ୍ଦୁ ନୁହଇ ଏ ପୁଣ ସନ୍ଧୁ ରତନେ ନିର୍ମାଣ,
ପନ୍ଧୁ ପ୍ରକାଶରୁ ଜାଣି ହେବା ରଜନୀ ଯେ ।" କୋ: ଜୁ: ସୁ: ।

ବ୍ୟାଜୋକ୍ତି ଅଳଙ୍କାର—"ଅନ୍ୟହେତୁ ପ୍ରଦର୍ଶନେ ପ୍ରକୃତ ଗୋପନ,
ହେଲେ ବ୍ୟାଜ-ଉକ୍ତି ନାମେ ଅଳଙ୍କାର ମାନ ।"

ଯଥା—"ସୁମନ ତୋଳୁଁ ଭୁଜଙ୍ଗ ମୁଖେ ପଡ଼ିଥିଲି ଭ ଦଶାରେ
ଶ୍ୱାସ ପ୍ରଖର, ଚମକେ ଉର, ତରବ ପଗ୍ର ଦଶାରେ ।" ର: ପ: ।

ଅତ୍ୟୁକ୍ତି ଅଳଙ୍କାର—ବର୍ଣ୍ଣିତ ବିଷୟ ଲୋକୋତ୍ତର ଓ ଅଯଥାର୍ଥ ହେଲେ, ଅତ୍ୟୁକ୍ତି ଅଳଙ୍କାର ହୁଏ ।



Digitized by srujanika@gmail.com

ଯଥା—"ଗୋରୋଚନା ପ୍ରକାରେ ଯନ୍ତ୍ରରେ ମୃଗମଦ
ଜଡ଼ ଜୀର୍ଣ୍ଣ ବସନକୁ ବିକାନ୍ତି ପୁଳିନ୍ଦ,
କୁଙ୍କୁମ ଉକୁଟାଇ ହୁଅନ୍ତି ନାସ୍ତି ଯନ୍ତ୍ରି
ହରିଦ୍ରାରେ ଆଦର କରିବେ କାହିଁପାଇଁ ।" ଲ: ବ: ।

ସଙ୍କରାଲଙ୍କାର—"କ୍ଷୀର ନୀର ନ୍ୟାୟେ ଅଲଙ୍କାରମାନଙ୍କର
ସମାବେଶ ଥିଲେ ହୁଏ ସଙ୍କରାଲଙ୍କାର ।"

ଯଥା—"ବନର କେଉଁ ପ୍ରଦେଶ ଅଦ୍ଭୁତ ପ୍ରକାର,
ବସନ୍ତ ଅନୁଭବରେ ଶିଖୀ ଶୋଭାକର ।
ବରୁଣ ଦେବ ବଲ୍ଲଭ ଉଦୟ କରନ୍ତୁ
ବନ୍ଧୁ ସୁମନ ତୋଷକର ହୋଇଅଛୁ ।" ବୈ: ବି: ।

ଚିତ୍ରାଲଙ୍କାର—ପଦ୍ମ, ଶକଟ, ଚକ୍ର ଇତ୍ୟାଦି ଭିନ୍ନ ଭିନ୍ନ ଚିତ୍ରରେ ପଦ୍ୟର ବର୍ଣ୍ଣଗୁଡ଼ିକ ବିନ୍ୟସ୍ତ ହେଲେ ଚିତ୍ରାଲଙ୍କାର ହୁଏ । ଏହାର ବିସ୍ତର ବର୍ଣ୍ଣନା ଚିତ୍ରକାବ୍ୟ ବନ୍ଧୋଦୟରେ ଦ୍ରଷ୍ଟବ୍ୟ । ଏଠାରେ ଦେବା ଅନାବଶ୍ୟକ ।

ଶ୍ଳେଷ—ଶବ୍ଦ ଦୁଇ ବା ତତୋଽଧିକ ଅର୍ଥରେ ପ୍ରଯୁକ୍ତ ହେଲେ ଶ୍ଳେଷାଲଙ୍କାର ହୁଏ । ଯଥା—

୧ । "ସମାନ ପୌଲସ୍ତ୍ୟ ରାଜ ଦୁର୍ଯ୍ୟୋଧନ ମନ୍ଦୋଦରୀରେ ସ୍ନେହବନ୍ତ ..." ଛାଂ୪, ସୁ: ପ: ।

୨ । "ବାଗୁ ନାକଶିରୀ ଦାନ ଯୋଗ୍ୟ ଯୋଷାକୁ
ବିହ୍ବର କାନନ କର ଆଲିଙ୍ଗନକୁ ।" ବୈ: ବି: ।

ନାକଶିରୀ ଦାନ = ସ୍ୱର୍ଗ ସମ୍ପତ୍ତି ଦାନ, ନାସିକା ଶୋଭା ବିନାଶ ।

ବ୍ୟଙ୍ଗଶ୍ଳେଷ—"ସେହାଟେ ଉରଜଙ୍କ........." ଛାଂ ୭, ସୁ: ପ: ।

ରୂପକ ଶ୍ଳେଷ—"ସିହାଣୀ ସ୍ତୁହାଁଣି ମନୋରମା........." ପ ୩, ଛାଂ ୨, ସୁ: ପ: ।

ସରୂପକ ଶ୍ଳେଷ—ଛାଂ ୫୨, ବୈ: ବି: ।

ରୂପକ—ଉପମାନ ଓ ଉପମେୟର ଅଭେଦ କଥନକୁ ରୂପକ ଅଲଙ୍କାର କୁହାଯାଏ । ଯଥା—

"କର କୃଷକ ରାମାଗାତ୍ର କ୍ଷେତ୍ର ।
ନଖ-ଲଙ୍ଗଳେ ଚଷିଲା ତ୍ୱରିତ ।" ଇତ୍ୟାଦି । ପ୍ରେ: ସୁ: ।

ଅଦ୍ଭୁତ ରୂପକ—"ସର୍ପପୁରେ ଯାଇଁ ପର୍ବତ କହିଲେ ମହାଜାତ ହେମମଞ୍ଜରୀ
ସୁଗନ୍ଧବତୀ ସ୍ୱଇଚ୍ଛାରେ ଚଳିତ ପଦ୍ମାବଳୀରେ କି ମାଧୁରୀ ।" ଇତ୍ୟାଦି । ସୁ: ପ:

ଛଳରୂପକ—"ସିହାଣୀ ହସି କହିଲା ବାଳା ରଣ ରଣ....." ସୁ: ପ: ।

ଛଳ—"ସାନୁଜ ଧର୍ମରାଜର ହୋଇବାରୁ ପରା ଏଡ଼ିକି ଦୟାଖ୍ୟାନ....." ସୁ: ପ: ।

Digitized by srujanika@gmail.com

ଅଭୂତୋପମା :—ଉପମାଳଙ୍କାରରେ ଉପମେୟ ସଙ୍ଗେ ଉପମାନର ତୁଳନା ହୁଏ । ତାହା ନାନାବିଧ—ଅଭୂତୋପମା, ସନ୍ଦେହ ପ୍ରଭୃତି ।

ଉଦାହରଣ :—ଅଭୂତୋପମା—"ସ୍ୱର୍ଣ୍ଣମଣ୍ଡରେ ସ୍ୱନମନ୍ତ ଏମନ୍ତ ପର୍ବତ ପରେ ଜାତ ଲତା । ଲତାରୁ ଏବେ ପର୍ବତ ଜାତ ହେଲା ଗୃହିଁ କର୍ମିବେ ଉଦ୍ଧ୍ୱରେତା..." ଇତ୍ୟାଦ । ଗ୍ରୀ°, ପ୍ରେ:ସୁ: ।

ସନ୍ଦେହ—ଉପମେୟ ଓ ଉପମାନର ପାର୍ଥକ୍ୟ ନିରୂପଣରେ ଗାଢ଼ ବିଗ୍ଭର ଆବଶ୍ୟକ ହେଲେ ସନ୍ଦେହ ଅଲଙ୍କାର ହୁଏ ।

ଯଥା :—"ଭ୍ରକୁଟୀ ନୁହଇ ମାର ଅଛୁ ଫୁଲ ଧନୁଶର
ନୁହେ ସୁଧାକର ତହିଁ କଳଙ୍କ ଅଛୁ,
ଆଉ ଦେବତାମାନଙ୍କୁ କପାଁ ଅଣିବା ମନକୁ
ମୋହର ସୁକୃତ ଏ ପୁରୁଷ ହୋଇଛୁ ।
ମୋର ପୁଣି ସୁକୃତ କେତେ,
ଏମନ୍ତ ଶୋଭା ଜାତ ହେବାରୁ ଜଗତେ ।" ଲ: ବ: ।

ବ୍ୟତିରେକ :—ଉପମାନରୁ ଉପମେୟର ଆଧିକ୍ୟ ବୁଝାଗଲେ ବ୍ୟତିରେକ ଅଲଙ୍କାର ହୁଏ ।

ଯଥା :—"ବିନ୍ଧୁ ସମୁଦ୍ର ମନ୍ଥନ ଚନ୍ଦ୍ର ଜନମ ଯେଉଁ କାଳେ,
ବିହୀନ କ୍ଷୀଣ କଳଙ୍କ ଜାଣ ନିର୍ମଳ ହୋଇଥିଲେ ।
ବଦନେ ଜାନକୀର ସମାନ ମନ ଜାଣିଛି ବିଧି,
ବିମ୍ବ ବେଷ୍ଟନ ନୋହିଲା ବର୍ଣ୍ଣିଲାବେଳି କାଟି ଦେଇ ।" ବୈ: ବି: ।

ଏଠାରେ ଉପମାନ ଚନ୍ଦ୍ରଠାରୁ ଉପମେୟ ସୀତାଙ୍କ ମୁଖର ଆଧିକ୍ୟ ବୁଝାଯାଉଥିବାରୁ ବ୍ୟତିରେକ ଅଲଙ୍କାର ହେଲା ।

ଅସମ୍ବନ୍ଧାତିଶୟୋକ୍ତି—ପ୍ରକୃତ ବିଷୟକୁ ନ କହି ଉପମାନରେ ତାହାର ଅଭେଦ କଳ୍ପନା ଓ ଅସମ୍ବନ୍ଧ ବର୍ଣ୍ଣନା କରିବାର ନାମ ଅସମ୍ବନ୍ଧାତିଶୟୋକ୍ତି ଅଲଙ୍କାର ।

ଯଥା :—"ସ୍ୱୟମ୍ଭୂବାଣ ଠାବରୁ କର ରଣ କର କ୍ଷୀରୁ
ମଣିରେ ନିର୍ମାଣି ସାର ଗୃହରୁ ଚକୁର,
ସିଞ୍ଚାଡ଼ ଦେଲେ ଯେ ପାଣି ଶେଷ କଳା ପଦ୍ମ ଶ୍ରେଣୀ-
ଭୂତେ ରହି ବିନ୍ଦୁ ବିନ୍ଦୁ ହୋଇ ସୁନ୍ଦର ।
ସୁବୃଷ୍ଟ ଏ ରୂପେ ହୁଅଇ,
ସୁମନ୍ତ ଚୂର୍ଣ୍ଣିକୁ କୂଳ କୋଳ ନ କହି ।" ସୁ: ପ: ।

ଦୃଷ୍ଟାନ୍ତ :—"ସାଧାରଣ ଧର୍ମବାଚକ ପଦଦ୍ୱୟ ଆପାତତଃ ଭିନ୍ନାର୍ଥବୋଧକ ହେଲେହେଁ ଯେଉଁଠାରେ ଧର୍ମର ବିମ୍ବ ପ୍ରତିବିମ୍ବ ଭାବଦ୍ୱାରା ବାକ୍ୟଦ୍ୱୟର ଉପମାନ ଓ ଉପମେୟ ଭାବ ପରିସ୍ଫୁଟ ହୁଏ ସେଠାରେ ଦୃଷ୍ଟାନ୍ତ ଅଲଙ୍କାର ହୁଏ ।" ଯଥା—

Digitized by srujanika@gmail.com

"ଦୂରେ ଥିଲେ ପାଶେ ଅଛୁ ଏହା ଶିବୁ ଯେବେ,
କେତେ ଦୂରେ ଚନ୍ଦ୍ର, କେତେ ଦୂରେ କୁମୁଦିନୀ ।
ପ୍ରୀତି ଅଭେଦ ତାଙ୍କର,
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।" ଛାଂ୧୪, ପ୍ରେ: ସୁ: ।

ବିରୋଧାଭାସ—କର୍ମ ଓ ଗୁଣର ପରସ୍ପର ବିରୁଦ୍ଧଭାବ ବର୍ଣ୍ଣିତ ହେଲେ, ଯଥାର୍ଥରେ ବିରୁଦ୍ଧ ହୋଇ ନ ଥିଲେ ବିରୋଧାଭାସ ଅଳଙ୍କାର ହୁଏ । ଯଥା—

"ଶୁଭ ଯୋଗରେ ସଜଳ ବନ୍ଦାପନା ଦିନ ।
ନସଜଳ ଦିନ କାନ୍ତ ଅତ୍ୟନ୍ତ ଉତ୍ପନ୍ନ ଯେ ।" ଛାଂ୬, ପ୍ରେ: ସୁ: ।

ବିରୋଧାଭାସର ୨ୟ ଦୃଷ୍ଟାନ୍ତ—

"ବିବର୍ଜିତ ପଳାଶୀରେ ପଳାଶୀରେ ଘନ,
ବିନାତପ ପ୍ରଭା ତପ ପ୍ରଭାରେ ପ୍ରଧାନ ଯେ ।
ବିଭୂତି ବାଞ୍ଛକ ନୋହି ବିଭୂତି ବାଞ୍ଛକ,
ବର୍ଜିତ କାମ-ଉଦୟ କାମ ଉଦୟକ ଯେ । ବୈ: ବି: ।

ପଳାଶୀ—ମାଂସାଶୀ, ବୃକ୍ଷ; ତପ ପ୍ରଭା—ସୂର୍ଯ୍ୟ କିରଣ କାନ୍ତି, ତପସ୍ୟାର କାନ୍ତି, ବିଭୂତି—ଐଶ୍ୱର୍ଯ୍ୟ, ଭସ୍ମ, କାମ ଉଦୟ ରହିତ—ନିଷ୍କାମ, କାମଉଦୟକ—କାମ ଉଦ୍ଦୀପକ ।

ପୁନରୁକ୍ତବଦାଭାସ—ଦୁଇ ବା ତତୋଽଧିକ ଏକାର୍ଥବାଚକ ଶବ୍ଦ ବ୍ୟବହୃତ ହୋଇ ଯେଉଁଠାରେ ପୁନରୁକ୍ତ ପ୍ରାୟ ପ୍ରତୀତ ହୁଏ, ସେଠାରେ ପୁନରୁକ୍ତ ବଦାଭାସ ଅଳଙ୍କାର ହୁଏ । ଯଥା—

"ସରୋଜ ଅମ୍ବୁଜ ଚନ୍ଦ୍ର ଆଦରଣବଦନୀ ସୁହାସିନବସନା ।
ସୁରମା ବିଦ୍ରୁପ ପ୍ରବଳା ମିହିର ଅରୁଣ ଦଶନ ବସନା, ସୁଧାଂଶୁ....." । ସୁ: ପ: ।

ଅନ୍ତର୍ଲପିକା—ଏଥିରେ ପ୍ରତି ଧାଡ଼ିରେ ଥିବା ପ୍ରଶ୍ନର ଉତ୍ତର ବା ସମାଧାନ ରୂପେ ଯେଉଁ ପଦମାନ ବାହାରେ, ସେହି ପଦମାନଙ୍କର ଆଦ୍ୟ, ମଧ୍ୟ ବା ପ୍ରାନ୍ତ ଅକ୍ଷରମାନଙ୍କୁ ଧାଡ଼ିମୂଳଆ କରି ବସାଇଲେ ରଚକଙ୍କ ମନୋଭାବ ବ୍ୟକ୍ତ ହୁଏ । ଅନ୍ତର୍ଲିପିରେ ରଚକଙ୍କ ମନୋଭାବ ଅନ୍ତର୍ନିହିତ ଥାଏ ( ବହିର୍ଲିପିରେ ଏହା ପ୍ରକାଶିତ ଥାଏ ) । ଯଥା—

(୧) "ସଙ୍ଗକଳ କେ ଜଳଦମଯ୍ନନ୍ତୀର । ଗୋପପୁରେ କେ ଅଧିକାରୀ ସଙ୍ଗାତ ।
ସୃଷ୍ଟି ସର୍ଜନା କେ କରଇ ......" ସୁ: ପ: ।

(୨) "ବିହାରସ୍ଥାନ କେ ମୀନମାନଙ୍କ ଅଟଇ (ବନ)
ବାସ୍ତସରେ କେହୁ ପ୍ରତିପାଳିତ ହୁଅଇ ଯେ (ପିକ)
ବିଭବଣ ପ୍ରକାଶେ କି କରେ ପକ୍ଷୀ ଆଳି (ରୁତ)
ବିରୁପାକ୍ଷ ନେତ୍ରାନଳେ କେହୁ ଗଲ ଜଳି ଯେ (ମାର)
ବିଷ୍ଣୁକୋଳେ ସର୍ବକାଳେ କେହୁ ମନୋହର (ରମା)
ବିଶ୍ୱରେ କରୁଛୁ କେହୁ ପର ଉପକାର ଯେ (ତରୁ)" ଇତ୍ୟାଦି, ଛାଂ୧୯, ବୈ: ବି: ।

Digitized by srujanika@gmail.com

ବନ୍ଧଲିପିକା—ଏଥିରେ ପ୍ରତିପଦର ଆଦ୍ୟ, ମଧ୍ୟ, ଦ୍ୱିତୀୟ ବା ଶେଷ ଅକ୍ଷରମାନଙ୍କୁ ଯଥାକ୍ରମେ ଧାଡ଼ିମୂଳରେ ଲେଖି ବସାଇଲେ ସେ ଅକ୍ଷରମାନଙ୍କ ଦ୍ୱାରା ଯେଉଁ ବାକ୍ୟ ହେବ, ତହିଁରୁ ରଚକଙ୍କ ମନୋଭାବ ବ୍ୟକ୍ତ ହୁଏ । ବନ୍ଧଲିପିକାରେ ରଚକଙ୍କ ମନୋଭାବ ପ୍ରକାଶିତ ଥାଏ ।

ଉ—(୧) "ସତର ନକ୍ଷତ୍ର ହୋଇ ବେଦ ବର୍ଣ୍ଣେ ସେ ବୃପସ୍ଥିତରେ ଆସାର
ସୋମଶେଖର ନାମ ପୁଣି ପ୍ରକାଶ ବୃନ୍ଦାବନ ଲୀଳା ବହାର ।
ସଙ୍ଗୀତ......... ।" ସୁ: ପ: ।

(୨) ବନ୍ଦ୍ୟ କେ ଜଗତେ, କେନ୍ଦ୍ର ଉଲକର ସ୍ଥାନ
ବସି ଘେନା କ କରି, ବେଣ୍ୟାର୍ଚ୍ଚ କ ରଞ୍ଜନ ଯେ ।
ବ୍ୟୋମକେଶମୋହନୀ କେ, ଶିଶୁ କେ ପାଳଇ
ବଢ଼ ଖେଳରେ କେ ଯେନ, ଘନ କ ମୁଖଇ ଯେ ।
ବଧିତେ କେନ୍ତୁ ପ୍ରବନ୍ଧ, ଋଷି କ କରନ୍ତି
ବନ୍ଦେ ଉଡ଼ୁଙ୍ଗ ଶୃଙ୍ଗ କେ, ତପେ କ ହୁଅନ୍ତି ଯେ ।"
ଇତ୍ୟାଦ, ବୈ: ବି: ।

ଉପରୋକ୍ତ ପ୍ରକାରେ ୧୬ଟି ଶବ୍ଦ କହି ପ୍ରତ୍ୟେକ ଶବ୍ଦର "ବାମ ନାଶି ଦକ୍ଷିଣକୁ ଭଜ" ବୋଲି ବୁଝାଯାଇଛି । ସେଥିରେ ପ୍ରଣେତାଙ୍କ ଉତ୍ତର ସନ୍ନିବେଶିତ । କବି କହନ୍ତି—"ବନ୍ଧଲିପିକା ଜାଣ ଜାତ ପାଞ୍ଚ । ୫ଟ ପ୍ରକାରେ ଅନ୍ତଲିପି ସଞ୍ଚ ।" ଚ: ଜା: ବ: ।

ମନ୍ତବ୍ୟ :—

କବିଙ୍କ ଅସାଧାରଣ ପ୍ରତିଭା, ଶବ୍ଦସମୁଦ୍ରରେ ଆଧିପତ୍ୟ ଥିବା ହେତୁ, ସେ ସ୍ୱୀୟ ବିଭିନ୍ନ ଗ୍ରନ୍ଥରେ ସୌନ୍ଦର୍ଯ୍ୟ, ଗାମ୍ଭୀର୍ଯ୍ୟ, ବୈଚିତ୍ର୍ୟ ସର୍ଜନ କରି ପାଠକ ପାଠିକାମାନଙ୍କୁ ମୁଗ୍ଧ କରି ପାରିଛନ୍ତି ।

"କହେ ଉପେନ୍ଦ୍ର, ମୁଁ ଲଭିଛି ଶବଦ ସମୁଦ୍ର" କବିଗୁରୁଙ୍କ ଅନେକ ଅଛି ପୁଣ, ଲ: ବ:, ୮-୬୦ ଇତ୍ୟାଦ ଯଥାର୍ଥ । ମନ୍ତବ୍ୟଦାର ସେଇ ହେତୁ କହନ୍ତି—ଯଥାର୍ଥରେ ଉପେନ୍ଦ୍ର ଭଞ୍ଜ ଜଣେ ଅଲୌକିକ ସାହିତ୍ୟସାଧକ ; ଶବ୍ଦ ଯୋଜନାରେ ତାଙ୍କର ସାମର୍ଥ୍ୟ ଚମତ୍କାରପ୍ରଦ ; ଛନ୍ଦୋବନ୍ଧ, ଅଳଙ୍କାର ପ୍ରୟୋଗରେ ସେ ଅଦ୍ୱିତୀୟ । ଅନ୍ୟାନ୍ୟ ସମସାମୟିକ କବି ଏବଂ ପରବର୍ତ୍ତୀ ସାହିତ୍ୟସେବୀମାନେ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଗ୍ରନ୍ଥରଚନା କରନ୍ତି । *

---

* "Upendra Bhanja really speaking is a mighty literary acrobat who has shown his great skill in verbal jugglery. In the art of allitarative composition he is second to none and it is his example which has been followed and immitated in this direction by his contemporaries and successors."—B. C. Mazumdar.

Digitized by srujanika@gmail.com

## ଶାସ୍ତ୍ରଜ୍ଞାନ

ଉଚ୍ଚକୋଟୀର କବିତା ବହୁମୁଖୀ ଶାସ୍ତ୍ରାନୁଶୀଳନସାପେକ୍ଷ । ଉପେନ୍ଦ୍ରଭଞ୍ଜଙ୍କ ଦୁର୍ଲ୍ଲଭ କାବ୍ୟ କବିତା ତାଙ୍କର ବହୁଶାସ୍ତ୍ରଦର୍ଶିତା ଓ ଅସାଧାରଣ ବୁଦ୍ଧିମତ୍ତା ଓ ବ୍ୟୁତ୍ପତ୍ତିର ସାରସ୍ୱତ ଫଳ ବୋଲି ବିଜ୍ଞ ପାଠକ ଏବଂ ନିରପେକ୍ଷ ସମାଲୋଚକମାନଙ୍କ ଦ୍ୱାରା ବାରମ୍ବାର ଅବଧାରିତ ହୁଏ । ସଂସ୍କୃତ ଷଟ୍‌କାବ୍ୟ, ପୁରାଣଶାସ୍ତ୍ର, ଇତିହାସ, ଜ୍ୟୋତିଷ, ଆୟୁର୍ବେଦ, ଧନୁର୍ବେଦ, ତନ୍ତ୍ର, ଅଭିଧାନ, ଛନ୍ଦ, ଅଲଙ୍କାର, ବ୍ୟାକରଣ, କଳାବିଦ୍ୟା, କାମସୂତ୍ର, ଦଣ୍ଡନୀତି, ରାଜନୀତି, ସ୍ମୃତି, ଦର୍ଶନ, ଭୂଗୋଳ ପ୍ରଭୃତିରେ ସେ ପ୍ରବୀଣ ଥିବା ବିଷୟ ତାଙ୍କ ପ୍ରଣୀତ ଗ୍ରନ୍ଥାବଳୀରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ।

## ସଂସ୍କୃତ ସାହିତ୍ୟ

ସଂସ୍କୃତ ସାହିତ୍ୟରେ କବିଙ୍କର ଯେ ଅଗାଧ ପାଣ୍ଡିତ୍ୟ ଥିଲା ତାହା ଦର୍ଶାଇବାକୁ ଉଦ୍ୟମ କରିବା ନିରର୍ଥକ । ତାଙ୍କର ପ୍ରତ୍ୟେକ ଗ୍ରନ୍ଥ, ଗ୍ରନ୍ଥର ପ୍ରାୟ ପ୍ରତ୍ୟେକ ଶବ୍ଦ ସଂସ୍କୃତମୂଳକ । ଛନ୍ଦୋବନ୍ଧ, ରସଧ୍ୱନି ଇତ୍ୟାଦି ସଂସ୍କୃତ ସାହିତ୍ୟର ଆଦର୍ଶରେ ଅଙ୍କନ କରିଥିବା, ସ୍ୱୟଂ ସେ ଏକାଧିକ ଗ୍ରନ୍ଥରେ ସ୍ୱୀକାର କରିଛନ୍ତି । "କବିକଳ୍ପଲତା ମତେ ଏ ଭାବେ । ସାହିତ୍ୟ-ରତ୍ନାକର ମାଘକାବ୍ୟେ ।" ଚି: କା: ବି: । କ୍ୱାପରେ ଯାହା ବାଲ୍ମୀକେ କାଳିଦାସେ ଖ୍ୟାତ । କରିଛନ୍ତି ତାହା ରଚନେ ଚିତ୍ତ । କହୁଅଛି ଶୁଣ ସୁଜନ ଜନ । ଇତ୍ୟାଦି । ଚି: କା: ବି: । ଜୈମିନିଙ୍କ ମୀମାଂସା ଶାସ୍ତ୍ର, ବ୍ୟାସଙ୍କ ବେଦାନ୍ତ, ପତଞ୍ଜଳିଙ୍କ ଯୋଗଶାସ୍ତ୍ର, କଣାଦଙ୍କ ବୈଶେଷିକ ଦର୍ଶନ, କପିଳମୁନିଙ୍କ ସାଂଖ୍ୟ (ଦର୍ଶନ) ପ୍ରଭୃତି ଭଲେ ଆଲୋଚନା କରିଥିବା କଥା ନିମ୍ନଲିଖିତ ପଂକ୍ତିରୁ ସ୍ପଷ୍ଟ—"ମୀମାଂସା ବେଦ ବେଦାନ୍ତେ । ଟୀକା ପୁସ୍ତକ ଏ ସତେ । ଜୈମିନି ବିଖ୍ୟାତ ବ୍ୟାସ । ପ୍ରଶଂସି ତୋଷ ଯେ । କଲ୍ୟାଣେ କର ଅଞ୍ଜଳି । କରେ ଶୁଣି ପତଞ୍ଜଳି । ବଇଷିଶକ ସାଂଖ୍ୟରେ ସାକ୍ଷୀ ପ୍ରକାରେ ।" ଛା ୪, କୋ: ବି: ସୁ: । ଭୋଜରାଜ, ବାତ୍ସ୍ୟାୟନ, ଜୟଦେବ, ଶ୍ରୀହର୍ଷ ପ୍ରଭୃତିଙ୍କ ପଦାଙ୍କାନୁସରଣ ସେ କରିଥିବା କଥା ସର୍ବବାଦିସମ୍ମତ । ରସତରଙ୍ଗିଣୀ, ସାହିତ୍ୟଦର୍ପଣ କବିଙ୍କ ସୁଖପାଠ୍ୟ ଗ୍ରନ୍ଥ । ରସପଞ୍ଚକ ବର୍ଣ୍ଣିରେ ବର୍ଣ୍ଣନା ହେବାରୁ ରସପଞ୍ଚକ ଏ ବୋଲାଇବ । ରସ-ତରଙ୍ଗିଣୀ ଗ୍ରନ୍ଥ ସାହିତ୍ୟଦର୍ପଣ କବି ସମ୍ମତ ଏ ଆସିବ । ଛା ୧, ର: ପ: । ପ୍ରତି ପ୍ରତି କରି ରଚଇ ସାହିତ୍ୟ-ଦର୍ପଣ କବି ସମ୍ମତେ ହେ ପଣ୍ଡିତେ । ର: ପ: ।

ଏତଦ୍‌ବ୍ୟତୀତ 'ଗୀତାଭିଧାନ'ରେ କବି ନିମ୍ନମତେ କହିଛନ୍ତି—

ଗୀତ ଅଭିଧାନ ହୋଇ ସାବଧାନ
ଶୁଣ ସୁଜନେ ସନ୍ତୋଷେ ।
ଅମର, ତ୍ରିକାଣ୍ଡ, ଯାଦବ ଶାଶ୍ୱତ,
ମେଦିନୀ, ବିଶ୍ୱପ୍ରକାଶେ । ୧ ।
ପ୍ରଚୁର ଶବଦ ଯେତେ ତା କହିବି
ଗୁଢ଼ ଅପ୍ରଚୁରମାନ ।"
ଇତ୍ୟାଦି ।

Digitized by srujanika@gmail.com

ଏଥିରୁ ବୁଝାଯାଏ ଯେ, କବି ଅଗାଧ ଶବ୍ଦପାଣ୍ଡିତ୍ୟ ଲାଭ ପାଇଁ ବହୁ ସୁପ୍ରସିଦ୍ଧ ସଂସ୍କୃତ କୋଷଗ୍ରନ୍ଥମାନ ଅଧ୍ୟୟନ କରି ଆୟତ୍ତ କରିଥିଲେ ।* ପାଠକପାଠିକାଙ୍କ ସୁବିଧା ପାଇଁ ସଂସ୍କୃତ କୋଷଗ୍ରନ୍ଥମାନଙ୍କର ଏକ ସଂକ୍ଷିପ୍ତସାର ଗ୍ରନ୍ଥ—'ଗୀତାଭିଧାନ' ସଙ୍କଳନ କରିଥିଲେ । ଗୀତାଭିଧାନର ଉପରୋକ୍ତ ପ୍ରଥମ ପଦରେ 'ଛ'ଟି କୋଷ ଗ୍ରନ୍ଥର ଉଲ୍ଲେଖ ଅଛି । ଅମରସିଂହ କୃତ (୧) ଅମରକୋଷ (ସମୟ ଖ୍ରୀ:ଅ: ୪ର୍ଥ, ୫ମ ଶତାବ୍ଦୀ), (୨) ଶାଶ୍ୱତଙ୍କ କୃତ 'ଅନେକାର୍ଥସମୁଚ୍ଚୟ' (୬ଷ୍ଠ-୭ମ ଶତାବ୍ଦୀ) (୩) ଯାଦବ-ପ୍ରକାଶଙ୍କ ପ୍ରଣୀତ ବୈଜୟନ୍ତୀ (ପ୍ରାୟ ୧୧ଶ ଶତାବ୍ଦୀ) (୪) ମହେଶ୍ୱର ଆଚାର୍ଯ୍ୟଙ୍କ କୃତ 'ବିଶ୍ୱପ୍ରକାଶ' (୧୨ଶ ଶତାବ୍ଦୀ) (୫) ମେଦିନୀ କରଙ୍କ କୃତ 'ମେଦିନୀକୋଷ' (୧୩ଶ-୧୪ଶ ଶତାବ୍ଦୀ), (୬) ପୁରୁଷୋତ୍ତମ ଦେବଙ୍କ 'ତ୍ରିକାଣ୍ଡ' (ପ୍ରାୟ ଖ୍ରୀ: ଅ: ※ ୧୩୦୦) ମଧ୍ୟରୁ ଅମରକୋଷ ସର୍ବାପେକ୍ଷା ପ୍ରାଚୀନ ।

'ଅମରକୋଷ', 'କାମସୂତ୍ର'ରେ କବିଙ୍କର ପ୍ରବୀଣତା ଥିଲା । ଅମରକୋଷକାର "ବିନାୟକମତରୁ ସୀତାଠାବେ । ବରବର୍ଣ୍ଣିନୀ ବର୍ଣ୍ଣେନ୍ଦ୍ର ଉତ୍ତମା ନାମା ହୋଇଛୁ ।" ପ୭, ବୈ: ବ: । କାମସୂତ୍ର ଅନୁସାରେ ବିରହୀ, ବିରହିଣୀଙ୍କ ଲକ୍ଷଣ :—"ବାର ବାର ସର ଦରେଭା ଶୟନ ବର୍ଜି ନାହିଁ ଚନ୍ଦ୍ରବଦନେ । ଭଜ ବହୁତ ଘନସାର ସୁକେଶୀ ଭଜ୍ଜିଲୁ ନ ବିଷ୍ଟ ସ୍ୱପନେ; ଚପଳ—ସଦା ରହିଅଛୁ ଶରୀରେ । ବ୍ୟାଧି ଜନନୀ କି ଗୋଚର ନୁହଇ କରେ ଚନ୍ଦ୍ରା ଯେ ବାଧିରେ ।" "ବିରହ ନାମରେ ବିରହୀ, ମନୁ ଜନମି ତାହା ଦହି । ... ...ବଢ଼ଇ ତୃଷ୍ଣା ଅତିଶୟ, ଦାହଜନିତ ଅପ୍ରମେୟ । କଣ୍ଠ କପାଳେ ଦେଇ ଝାଳ, କମ୍ପ କ୍ଷଣ କ୍ଷଣକେ ମେଳ । ନଲାଗେ ବେଳେ ବେଳେ ନାଡ଼ି, ପ୍ରଳାପ କାତ ଘନ୍ଘନି । ଫୁଟଇ ତନୁ ଖରଶ୍ୱାସ, ପାଣ୍ଡୁର କରଇ ଅଶେଷ ।" କୋ: ବ୍ର: ପୁ: । "ଯୌବନେ ପୂର୍ଣ୍ଣତା ପାଇଲା । ଲକ୍ଷଣେ ସହିତ ହୋଇଲା । ସେ ବଶୀକରଣ ବିବିଧ, ପ୍ରକାଶ ହାସ ଔଷଧ । ମୋହନମନ୍ତ୍ର ମୃଦୁବାଣୀ, ବୋଲଇ ରମଣୀଙ୍କ ମଣି ।" କୋ: ବ୍ର: ପୁ: । "ସ୍ମରଶାସ୍ତ୍ର ଅଳଙ୍କାରେ ଯେ ପ୍ରତିପାଦିତ ହେ ।" ଲା: ବ: । ସେ ସଂସ୍କୃତରେ ଚମ୍ପୂ ଲେଖିଥିବା ଜଣାଯାଏ । ତାହା ଭକ୍ତଙ୍କର କି ନୁହେ, ତାହା ନିର୍ଣ୍ଣିତରୂପେ କହିହେବ ନାହିଁ । ସେଥିରୁ କିଛି ଏଠାରେ ପ୍ରଦତ୍ତ ହେଲା:—"ଚନ୍ଦ୍ରସ୍ତନୀ ଚପଲାଙ୍ଗୀ ଚଳନ୍ନୂପୁର ଶିଞ୍ଜିତା, ଚନ୍ଦ୍ର ତଂ ଚନ୍ଦନଂ ଦେହେ ଚନ୍ଦ୍ରବଦନୀ ସୁନ୍ଦରୀ । କନକାଙ୍ଗୀ ନେତ୍ରକୁରଙ୍ଗେ ମାରଣଂ ମମ ବକ୍ଷସି, କୃତଂ ଯାମି କାମବଶେ ସମ୍ପୀଡିତମାଶ୍ରିତା ।" ( ଭକ୍ତୀୟ ଚମ୍ପୂ )

## ଶବ୍ଦବାକ୍ୟ ବନ୍ଧୋଦୟରେ—

ଗୃହୀ ଆରମ୍ଭିଲ ପ୍ରଶ୍ନ ଉତ୍ତରେ । ଅନୁଷ୍ଟୁପ ଶ୍ଲୋକ ଛନ୍ଦ ଗୀତରେ ।

ଏ ପ୍ରଶ୍ନର ଉତ୍ତର

| | |
|---|---|
| ତୋର ପ୍ରତିପଦ କେଉଁ ସଂସ୍କୃତେ । | ତବ |
| ତୋର ଅସ୍ତ୍ର କେ ମାରଇ ଜଗତେ । | ରୂପ |
| ସାର୍ଥସ୍ଥାନ ଆଡ଼ରେ କି ଶାରଦା । | ପ୍ରତି |
| ରବି ଜାଯ୍ୟା କେ ଖେ ଉ କି ନୁଅନ୍ତି । | ଗ୍ରସ୍ତା-ଗଜତେ |
| ଆପଣାର କି ବାଣୀ ହବ୍ୟ ଶ୍ରେଷେ । | ମମ |
| ନେତ୍ରଦ୍ୱୟେ ଷଷ୍ଠୀରେ କି ଆଶ୍ରେଷେ । | ନେତ୍ରୟୋଃ |

---

※ ଉକ୍ତ ସମସ୍ତ ସଂସ୍କୃତ ସାହିତ୍ୟର ଐତିହାସିକ ମାକଡ଼ୋନେଲ ସ୍ଥିର କରିଛନ୍ତି ।

Digitized by srujanika@gmail.com

ପ୍ରଜାପତି ବର୍ଣ୍ଣେ ଦିଅ ଇକାର । — କିଂ
ଲକ୍ଷ୍ମୀ ଲେଖି କରି ତା ସାନୁସ୍ୱାରଂ । — ମାଂ
ଖେଦ ଦେବାରେ କି ବୋଲନ୍ତି ଦିବ୍ୟ । — ଖେଦୟସେ
ସମ୍ବୋଧନେ ନାରୀରେ କି ସମ୍ଭବେ । — ମୁଗ୍ଧେ
ବ୍ୟଥରିଦି ପ୍ରୟୋଗେ କି ଉତ୍ତର । — ମୁଧା
ଷଷ୍ଠୀ ଏକୋକ୍ତିରେ କି ହରପର । — କାମସ୍ୟ
ମାରଣର ତୃତୀୟା ବିଭକ୍ତିରେ । — ମାର୍ଗଣୈଃ ।
ପାଦପ୍ରାନ୍ତ ସସର୍ଗ ବିସର୍ଗରେ ।" — ଇତ୍ୟାଦି ।

## ପୁରାଣଶାସ୍ତ୍ର

ଭଞ୍ଜଙ୍କ ପୌରାଣିକ କାବ୍ୟ—ବୈଦେହୀଶବିଳାସ, ସୁଭଦ୍ରାପରିଣୟ, କଳାକଉତୁକ ଇତ୍ୟାଦିରୁ ତାଙ୍କର ଅସୀମ ପୌରାଣିକ ଜ୍ଞାନ ସ୍ପଷ୍ଟ ଅବଧାରିତ ହୁଏ । ତା ସଙ୍ଗେ ସଙ୍ଗେ ସେ ଅନ୍ୟାନ୍ୟ କାଳ୍ପନିକ, ଆଳଙ୍କାରିକ ଗ୍ରନ୍ଥଗୁଡ଼ିକରେ ମଧ୍ୟ ଉପମା, ଉପମେୟ ଭାବରେ ସ୍ଥାନେ ସ୍ଥାନେ ନାନା ପୌରାଣିକ ତଥ୍ୟ ଗୁନ୍ଥି କାବ୍ୟଗୁଡ଼ିକର ମର୍ଯ୍ୟାଦା, ଭାଷାର ବୈଚିତ୍ର୍ୟ, ଭାବର ଗାମ୍ଭୀର୍ଯ୍ୟ ଫୁଟାଇଛନ୍ତି । ପୁରାଣ ଅନୁସାରେ ମହର୍ଷିଙ୍କଠାରୁ ପ୍ରାଣୀ ଏବଂ ଜଡ଼ଜଗତ ଉଦ୍ଭୂତ । ସେମାନଙ୍କର ସହସ୍ର ସହସ୍ର ପୁରର ବଂଶତାଲିକା ସ୍ମୃତି-ପଟରେ ଅଙ୍କିତ ରଖି ସୂକ୍ଷ୍ମାନୁସୂକ୍ଷ୍ମ କାରୁକାର୍ଯ୍ୟରେ ରଚିତ-କାବ୍ୟ-କୋଣାର୍କ ଗଢ଼ିବା ସାଧାରଣ ବୁଦ୍ଧିମତ୍ତାର କଥା ନୁହେଁ । "ଲବେ ଥାଏ ନୋହେ ମରୁତ । ଭାବ ମୁଁ ଦିତି ଗର୍ଭଜାତ ।" ଇତ୍ୟାଦି । କୋ: ବ୍ର: ସୁ: । ସନକ, ବ୍ୟାସ, ଗୌତମ, ଶୁକ, ପୁଲହ, କ୍ରତୁ, ଭୃଗୁ, କୌଶିକ, ଅଙ୍ଗିରା, ପରାଶର, ଜନକ, ମୃକଣ୍ଡୁସୁତ ସେ" ଇତ୍ୟାଦି । ପ ୧୭-୧୮, ଛା ୭, ସୁ: ପ: । "କଉଶିକାତଟ ନିକଟ ଅଟବୀ ମଧ୍ୟେ ବ୍ରଜଲୀଳା ହେଉଛୁ …… …।" କୋ: ବ୍ର: ସୁ: । ଗୁଣରେ ରୁଚି ରାଧିକା ଚନ୍ଦ୍ରାବଳୀ ବିରାଜିତ ଅନୁପମରେ, କୁଞ୍ଜରେ ଲଳିତା ବିଶାଖା କ୍ରୀଡ଼ିତ ଇନ୍ଦୁରେଖା ରଙ୍ଗ ରମ୍ୟରେ…… .." କୋ: ବ୍ର: ସୁ: । "ବନର କେଉଁ ପ୍ରଦେଶ ଦିଶିଛିବି ଧନି । ବିଜନତ ଦୈତ୍ୟଗଣ ରୂପ ଅଛୁ ଧରି………" ବୈ: ବି: । କବିଙ୍କ ପୌରାଣିକ ପାଣ୍ଡିତ୍ୟ ସମ୍ପର୍କରେ ଅଧିକ ଦୃଷ୍ଟାନ୍ତ ଅନାବଶ୍ୟକ ।

ରାମାୟଣ, ମହାଭାରତ ତୁଳ୍ୟ ନୀତିବ୍ୟଞ୍ଜକ ଘଟଣାପୂର୍ଣ୍ଣ ଗ୍ରନ୍ଥ ଜଗତରେ ବିରଳ । ପାଶ୍ଚାତ୍ୟ ପଣ୍ଡିତ ଓ ପାଠକବର୍ଗ ସେଥିରେ ମୁଗ୍ଧ ହୋଇ ଭୂୟସୀ ପ୍ରଶଂସା କରିଅଛନ୍ତି । ଦୁର୍ଲଭ ଗ୍ରନ୍ଥ ଓ ଶ୍ରେଷ୍ଠ କବିମାନଙ୍କୁ ଅସମ୍ଭବ ଯୁକ୍ତି ଦ୍ୱାରା ନିଜର କରିବା ପାଇଁ ବେଳେ ବେଳେ କେହି କେହି ଉଦ୍ୟମ କରନ୍ତି । ଜର୍ମାନ ଅଧ୍ୟାପକ ଭେବର୍ ହୋମରଙ୍କ ହେଲେନ୍, ବାଲ୍ମୀକିଙ୍କ ସୀତାଦେବୀ ଚରିତ୍ରରେ କଳ୍ପିତ ସାମଞ୍ଜସ୍ୟ ଅନୁଭବ କରି ରାମାୟଣରେ ହୋମରଙ୍କ ପଥ ଅନୁସରଣ କରାଯାଇଛି ବୋଲି ମତ ବ୍ୟକ୍ତ କରିଥିଲେ । ଭାରତର ସ୍ୱନାମଧନ୍ୟ ଲେଖକ ଓ ରାଜନୀତିକ 'ତେଲଙ୍ଗ' ଭେବରଙ୍କ ବିକୃତ ମତ ଖଣ୍ଡନ କରି ଭେବରଙ୍କୁ ପ୍ରକୃତିସ୍ଥ କରିଥିଲେ । ଉପେନ୍ଦ୍ର ଭଞ୍ଜ ଏପରି ପବିତ୍ର ଗ୍ରନ୍ଥର ନୀତିବ୍ୟଞ୍ଜକ ଘଟଣାବଳି ନିଜର ପ୍ରତ୍ୟେକ ପୌରାଣିକ ଗ୍ରନ୍ଥରେ କୃତିତ୍ୱର ସହିତ ଗୁନ୍ଥି ଗ୍ରନ୍ଥଗୁଡ଼ିକ ରମଣୀୟ କରି ପାରିଛନ୍ତି ।

ବିଶ୍ୱବିଖ୍ୟାତ କବିମାନେ ବିଭିନ୍ନ ଶ୍ରେଷ୍ଠ ଗ୍ରନ୍ଥରୁ ନାନା ତଥ୍ୟ ଗ୍ରହଣ କରି ନିଜ ନିଜର କାବ୍ୟ କବିତା ଲୋଭନୀୟ କରିଥାନ୍ତି । 'ପ୍ଲୁଟାର୍କ ଲାଇବସ୍'ରୁ ସେକ୍ସପିଅର ବିଷୟବସ୍ତୁ ଗ୍ରହଣ କରି ବହୁ ଗ୍ରନ୍ଥ ରଚନା କରିଛନ୍ତି; ଇଟାଲୀୟ ନଭେଲରୁ ଚସର୍ ବିଷୟବସ୍ତୁ ଗ୍ରହଣ କରି ପ୍ରସିଦ୍ଧ 'କ୍ୟାଣ୍ଟରବରୀ ଟେଲସ୍' ପ୍ରଣୟନ କରିଛନ୍ତି । ଜଗତ୍‌ପୂଜ୍ୟ ରାମାୟଣରୁ ଭଞ୍ଜେ ସେହିପରି ବହୁ ବିଷୟବସ୍ତୁ ଗ୍ରହଣ କରି ରାମାୟଣକୁ ନୂତନ ଚିତ୍ତାକର୍ଷକ ରୀତିରେ ଲୋକସମ୍ମୁଖରେ ପ୍ରଚାର କରିଥିବା ଅତ୍ୟନ୍ତ ଶ୍ଲାଘାର ବିଷୟ ।

Digitized by srujanika@gmail.com

## ଜ୍ୟୋତିଷ

କବିଙ୍କ ପ୍ରତ୍ୟେକ ଗ୍ରନ୍ଥରେ ବିଶେଷତଃ ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ବୈଦେହୀଶବିଳାସରେ ସେ ଜ୍ୟୋତିଷବିଜ୍ଞାନର ବ୍ୟାପକ ପରିଚୟ ଦେଇଛନ୍ତି । ସାଧାରଣତଃ ସେ ଜନ୍ମ, ତୀର୍ଥଯାତ୍ରା, ଯୁଦ୍ଧଯାତ୍ରା, ପାଣିଗ୍ରହଣ ଇତ୍ୟାଦି ବେଳେ ଜ୍ୟୋତିଷ ବିଜ୍ଞାନ ଚର୍ଚ୍ଚା କରି କାବ୍ୟ କବିତା ଶ୍ରୀସମ୍ପନ୍ନ କରିଛନ୍ତି । ଦୃଷ୍ଟାନ୍ତ—

"ଜ୍ୟେଷ୍ଠ ଶୁକ୍ଳ ଦ୍ୱାଦଶୀ ସୋମବାର ହୋଏ
ସନ୍ଧ୍ୟାନ୍ତ କଲାକୁ ଯୋଗ ଦିବସ ଜୋଡ଼ଏ ଯେ ।
ସ୍ୱାତି ତାର ବୃଷଚନ୍ଦ୍ର, ଶୁଭ ନାମେ ଯୋଗ ।
ସେ ଦିନ ବେଳର ଷଡ଼ ଘୂରି ହୋଏ ଭୋଗ ଯେ ।
ରବି ବୃଷେ ବୁଧଚନ୍ଦ୍ର ମିଥୁନରେ ସ୍ଥିତି ।
କର୍କଟ ଲଗ୍ନ ତହିଁ ସଙ୍ଗ ବୃହସ୍ପତି ଯେ ।
ତଳ କେନ୍ଦ୍ରବର୍ତ୍ତୀ ଶୁକ୍ରେ ଶନିଶ୍ଚର ମୀନେ ।
ମଙ୍ଗଳ ମଙ୍ଗଳକାରୀ ଭୃଗୁସ୍ଥରେ କନ୍ୟା ଯେ ।
ସ୍ୱର୍ଭାନୁ ମକର କରେ ବଳାସକୁ ତୋଷେ ।
ଏହିକାଳେ ବର ବିଭାମଣ୍ଡପରେ ବସେ ଯେ ।" ଲା: ବ: ।

"ଆହେ ନବଗ୍ରହେ ବନ୍ଧୁ ଦରଶନ ବେଳେ ।
ମୋର ରାଶି ଏକାଦଶେ ରହ ଏକମେଳେ ଯେ ।" ଲା: ବ: ।

"କନ୍ୟା ତୁଲ ଅଙ୍ଗ ସିଂହ କଟି···।" ପ ୧୨, ୧୩, ଛା ୨୩, ଲା: ବ: ।

"କହେ ଜ୍ୟୋତିଷ ମଙ୍ଗଳବେଳ ହେଲା......" ଲା: ବ: ।

"ବୃହସ୍ପତି ରାଶି ଅଷ୍ଟମେ ବଳସି ନୃପତି ହୋଇବେ କେହ୍ନେ ··" ଛା ୧୨, ବୈ:ବି: "ଯେଉଁ ଉଚ୍ଚ ଲଗ୍ନେ କାବ୍ୟ ଉଦିତ......" କୋ: ବ୍ର: ସୁ: । "ବଳଦ୍ୱୟସ୍ତୁ ସୌରମତେ..." ଛା୫୫ ବୈ: ବି: । "ଜ୍ୟୋତିଷଚକ୍ରେ ଥିଲେ ବସି । ଜ୍ୟୋତିଷ ଏକାଳେ ଭାଷି । ଜାତରୂପାଙ୍ଗୀ ନୃପଜ । ଜାତକ ବୁଝିବା ଆଜ ଯେ ।" ଇତ୍ୟାଦି । ପ୨—୨୨, ଛା୩୨, କୋ: ବ୍ର: ସୁ: । ଜ୍ୟୋତିଷେ ଜାତକେ ଲେଖିଥିବେ ପରା ଦେବରାଜ ଭୋଗ ହେଲା ଯେ..." ଛା: ଭୂ: । ବିଜ୍ଞ ବ୍ୟକ୍ତିଙ୍କ ମଧ୍ୟରୁ ଅଧିକାଂଶ ଜ୍ୟୋତିଷ ଫଳାଫଳ ପ୍ରତି ଅନାସ୍ଥା ଭାବ ପୋଷଣ କରିଥାନ୍ତି । ଅନେକଙ୍କର ସେଥିରେ ଅଟଳ ଆସ୍ଥା ଥିଲେ ମଧ୍ୟ, ଶାସ୍ତ୍ରସମ୍ମତ କାର୍ଯ୍ୟ ସେମାନଙ୍କ ମଧ୍ୟରୁ କ୍ୱଚିତ୍ କରିଥାନ୍ତି । କବିଙ୍କର କିନ୍ତୁ ସେଥିରେ ଯେଉଁପରି ପାଣ୍ଡିତ୍ୟ ଥିଲା, ସେହିପରି ଅଟଳ ବିଶ୍ୱାସ ଥିବାରୁ, କବିତାର ମଧ୍ୟେ ମଧ୍ୟେ କବିଙ୍କ ଜ୍ୟୋତିଷଚର୍ଚ୍ଚା ଅତ୍ୟନ୍ତ ସରସ ସଙ୍ଗତ ଓ ପ୍ରାଣବନ୍ତ ହୋଇ ଉଠିଛି । "ବୃହସ୍ପତି ରାଶି ଅଷ୍ଟମେ ବଳସି (ରାମଚନ୍ଦ୍ର) ନୃପତି ହୋଇବେ କେହ୍ନେ"— ଏତେ ସମୀଚୀନ ଏବଂ ସୁରୁଚିସମ୍ପନ୍ନ ହୋଇପାରିଛି ଯେ, ଏଇ ପଦକୁ ବିଜ୍ଞ, ଅନଭିଜ୍ଞ, ଭିକ୍ଷୁକ, ଗାୟକ ଇତ୍ୟାଦି ବହୁ ଲୋକମୁଖରେ ଶୁଣାଯାଏ । "ପାଟଯୋଷୀ ତାକି ଭଲ ବେଳକୁ ଜାଣିଲେ, ଉତ୍ତମ ସୁଝିଲ ବେନି ଜାତକ ବୁଝିଲେ ଯେ ।" ଛା୨୮, ଲା: ବ: । ଏହି କଥା ଆଜି ପର୍ଯ୍ୟନ୍ତ ହିନ୍ଦୁ ସମ୍ପ୍ରଦାୟରେ ପ୍ରଚଳିତ । ଲା: ବ: । କୋଟିବ୍ରହ୍ମାଣ୍ଡସୁନ୍ଦରୀର ସହଚରୀମାନଙ୍କ ମଧ୍ୟରେ ଦୈବଜ୍ଞା ଉପାଧ୍ୟାୟୀ ଜଣେ, ସେ କଥା କଥାକେ ଜ୍ୟୋତିଷ ପଦ୍ଧତି ଉତ୍ଥାପନ କରନ୍ତି—"ଜ୍ୟୋତିର୍ବିଦ୍ୟାଭୂଷି ଏ ଶୋଭାରାଶି । ନକ୍ଷତ୍ରମାଳା ଯୋଗେ ଶୋଭା ଦିଶି । ପୁଣି ଚନ୍ଦ୍ରଯୋଗ କରେ ଏ ନିତ୍ୟ । ଶିଶିର ସଙ୍ଗରେ ସଭେଦ କୃତ । ଦେବତାଙ୍କ ଭୁଜେ । ଉଦିତ ହେବ କବି ଦୃଷ୍ଟି ଉର୍ଜେ" । ପ୧୨, ଛା୧୨, କୋ: ବ୍ର: ସୁ: ।

Digitized by srujanika@gmail.com

## ଆୟୁର୍ବେଦ

ପ୍ରତ୍ୟେକ ସ୍ତ୍ରୀ, ପୁରୁଷର ସାଧାରଣ ଭାବରେ ହେଉ ମଧ୍ୟ ଆୟୁର୍ବେଦରେ ପ୍ରବେଶ ଥିବା ଆବଶ୍ୟକ । ଶିଶୁ, ବାଳକ ବାଳିକାମାନଙ୍କ ଘନ ଘନ ଚିକିତ୍ସା ପାଇଁ 'ଘୋରୁପେଣ୍ଡି' ଘରେ ଘରେ ପରମ୍ପରାନୁକ୍ରମେ ରହିଛି । ତାର ସଦ୍‌ବ୍ୟବହାର ମା' ମାନେ କରିଥାନ୍ତି । ସର୍ବସାଧାରଣଙ୍କ ମଧ୍ୟରେ ଚିକିତ୍ସାଅନଭିଜ୍ଞ କେହି ନାହିଁ । ଜ୍ୱର, କାଶ, କଫ, ଶିରୋବ୍ୟଥା, ଉଦରଯନ୍ତ୍ରଣା, ଝାଡ଼ା, ଗ୍ରହଣୀ, ଘା ଘାଉଡ଼, କାଛୁ ଇତ୍ୟାଦି ସମ୍ବନ୍ଧରେ ଯେ କୌଣସି ବ୍ୟକ୍ତି ଉପଚାର ବୋଲି କଥେ କଥେ କହି ଦେଇଥାନ୍ତି । ବର୍ତ୍ତମାନ ଓଡ଼ିଶାରେ ୧୩୭୦୦ ଲୋକ ପାଇଁ ଗୋଟିଏ ଡାକ୍ତର ଥିଲାବେଳେ, ଜନସଂଖ୍ୟାର ଶତକଡ଼ା ୯୦ ବାସକରି ରହିଥିବା ପଲ୍ଲୀମାନଙ୍କ ମଫସଲ ଗୁଡ଼ିକର ପ୍ରଧାନ ସମ୍ବଳ ହେଉଛି ଚେର ମୂଳ ଓ ନିଜ ନିଜର ଅପରିପକ୍ୱ ଅଭିଜ୍ଞତା ମାତ୍ର । କବିଙ୍କ ସମୟରେ 'ଡାକ୍ତର' ଆଦୌ ନ ଥିଲେ ; ସେ ସେହିହେତୁ କହନ୍ତି—"...ନ କରନ୍ତି ମୋ ପରିକି ବ୍ୟାଧି ପ୍ରତୀକାର, ଜାଙ୍ଗଳିକେ ଦେଇ କପର୍ଦ୍ଦି, ବୋଲିବ ବୁଲି ଆଣନ୍ତୁ ଆନ ସମ୍ବାଦ ।" ର: ଦା: । "ଧୂମ୍ର ରସ ଗଦ ପ୍ରାପ୍ତେ ଏଥିଁ ପାରେ ତାରି ।" ପ୍ରେ: ସୁ: । "ସେ ବିଶେ ଘାରି ହେଉଛି ପଦ ନ ମାନଇ ।" କୋ: ବ୍ର: ସୁ: । ଅଖଣ୍ଡ 'ସ୍ୱାସ୍ଥ୍ୟ'—ପରମେଶ୍ୱରଙ୍କ ଶ୍ରେଷ୍ଠ ଆଶୀର୍ବାଦ । * ପରମେଶ୍ୱରଙ୍କ ଆଶୀର୍ବାଦରେ ଉପେନ୍ଦ୍ର ଭଞ୍ଜ ଇତର ଶାସ୍ତ୍ରାଦିରେ ଯେପରି ସୁଦକ୍ଷ ଥିଲେ, ଆୟୁର୍ବେଦରେ ସେହିପରି ଥିଲେ ବୋଲି ଗ୍ରନ୍ଥାଦିରୁ ପ୍ରମାଣିତ ହୁଏ । ଚରକ, ସୁଶ୍ରୁତ, ଶାରଙ୍ଗଧର ପ୍ରଭୃତି ଥିଲେ ଅସାଧାରଣ ଆୟୁର୍ବେଦବିତ୍ । କବି ପ୍ରସଙ୍ଗାନୁକ୍ରମେ କହନ୍ତି—"ବୈଦ୍ୟ-ଶାଦୃ ଳେ ଅଶ୍ୱିନୀ କୁମାରେ । ମୃଗ କରି ଚିତ୍ତେ ବିବେକ କରେ । ଥିଲେ ତାଙ୍କର ଚରକସୁଶ୍ରୁତ । ବୃହିଆଜ୍ୟେ ଅସି ଆମ ପୁରତ ।" କୋ:ବ୍ର:ସୁ: । ଚରକ, ସୁଶ୍ରୁତ ଇତ୍ୟାଦିଙ୍କ ପ୍ରଣୀତ ଗ୍ରନ୍ଥଗୁଡ଼ିକ ସେ ଭଲ ଭାବରେ ଆଲୋଚନା କରି ଆୟତ୍ତ କରିଥିବାରୁ ଯେ କହନ୍ତି—"କରି ଚରକ ସୁଶ୍ରୁତଭାବ । ନାନା ରସ ସଂଗ୍ରହର ଠାବ । ଅ ଭିଷକ ବ୍ୟାଧି ପ୍ରଦାନ ବିନାରେ ଅନୁଗତର କି ବିନାଶିବ ହେ ସୁନ୍ଦର ।" ପ୨୨, ଛା୨୪, କୋ: ବ୍ର: ସୁ: । ବିଭିନ୍ନ ଗ୍ରନ୍ଥରେ କବିଙ୍କ ଆୟୁର୍ବେଦପାଣ୍ଡିତ୍ୟର ଯଥେଷ୍ଟ ପ୍ରମାଣ ଅଛି । କିଛି ଏଥିରେ ଦେଖନ୍ତୁ :—"ବୈଦ୍ୟ ସୁଷେଣ କୁତୂହଳେ, ବ୍ୟାଧି ଛେଦିରେ ।" ଛା୪୪, ବୈ: ବି: । "ଶରୀରଠାରେ ହିତକର ଜଳ ଯେମନ୍ତ ସନ୍ନିପାତରେ କରେ ନାଶ ।" ଛା: ଭୂ: । "କି କରନ୍ତି କି ବୋଲନ୍ତି ନ ପାରନ୍ତି ଜାଣି । ପିତ୍ତବେଗ ଅଧିକ ହୋଇଲେ ଯଥା ପ୍ରାଣୀ ଯେ । ସନ୍ନିପାତ ପ୍ରାପ୍ତ କ୍ଷଣେ କ୍ଷଣେ ତନ୍ଦ୍ରାନାଡ଼ି । ବାତଙ୍କା ପରାପ୍ତ ବେପଥୁରେ ଛନ୍ତି ଜଡ଼ ଯେ ।" ଲା: ବ । "ଶରଣ କଲି ବୈଦ୍ୟଙ୍କୁ ମାରଣ । ଇଙ୍ଗିତେ ଦେଖାଦେଲି ଶରଣ ।" ଲା: ବ: । 'ଦେବ ସିତା ମେଥି କ୍ଷୀରେ । ନିତ୍ୟ ପ୍ରଭାତ କାଳରେ । ବିଡ଼ାଙ୍ଗ ଚୂର୍ଣ୍ଣ ଦିବସେ । ଚିକ୍କଣରେ ଥୋଇ ତୋଷେ । ମଧୁ ନବନୀତ ଯୁତେ । ଅଶନକୁ ଦିଅ ଟିକେ । ଛା୨୮, ଲା: ବ: । "(ବିଦାରୀ କ୍ଷୀର ଶୁକ୍ଳେକ୍ଷୁଗନ୍ଧା କୋଷ୍ଣୀ ଚ ଯା ସିତା.........") ବୈଦ୍ୟ ଯଥା ମନାସିଲି ବ୍ୟାଧିବନ୍ତ ବାଞ୍ଛା ଗୋ । ଲା: ବ: । ବୈଦ୍ୟ ସୁବୃଦ୍ଧ ବାଣୀ ତାର ଔଷଧି ନ ରୁଚ ଭକ୍ଷଣେ । ବ୍ୟାଧିନାଶକାରୀ ଯେବେ ତା ନକରି ପ୍ରବର୍ତ୍ତେ ଶରଣେ । ବୈ: ବି:

## ଭୂଗୋଳ

ଭୌଗୋଳିକ ଅନୁଭୂତି ବ୍ୟତୀତ ସାହିତ୍ୟିକ, ରାଜନୀତିକ, ସାମରିକ, ଅର୍ଥନୀତିକ ପ୍ରଭୃତି ମହତ୍ କାର୍ଯ୍ୟରେ ହସ୍ତକ୍ଷେପ କରିବା ବିଡ଼ମ୍ବନା । କବିଙ୍କ ଭୌଗୋଳିକ ଜ୍ଞାନର ସ୍ପଷ୍ଟ ପ୍ରମାଣ ତାଙ୍କର ପ୍ରତ୍ୟେକ

*The highest of earthly blessings is a sound mind in a sound body.—Latin Poet.

Digitized by srujanika@gmail.com

ଗ୍ରନ୍ଥରେ ପୁଣ ରହିଥିଲେ ମଧ୍ୟ ସେଥିରୁ ସାମାନ୍ୟ କିଛି ଏଠାରେ ପ୍ରଦତ୍ତ ହେଲା । ସ୍ୱୟମ୍ବର ସଭାରେ ଉପସ୍ଥିତ ଥିବା ରାଜାମାନଙ୍କୁ ଲକ୍ଷ୍ୟ କରି ରାଜର୍ଷି ଜନକ କହନ୍ତି-"ବିତପନ କଲେ ନେଇ ତପନବଂଶିକ ତନ୍ଦ୍ରି ସଭାରେ ଲେଖା ଅନାଇ ନୃପ ସକଳ । ବିଦର୍ଭ[୧],କର୍ଣ୍ଣାଟ[୨],ଲାଟ[୩],ସଉରାଷ୍ଟ୍ର[୪],ମରହଟ୍ଟ,[୫]କୁନ୍ତଳ କେରଳ[୬] ଚୋଳ[୭], ସିନ୍ଧୁ[୮], ଉତ୍କଳ । ବାହ୍ଲିକ[୯], ତୁରଷ୍କ, ନୈଷଧ[୧୦] । ବଙ୍ଗ, ଅଙ୍ଗ[୧୧], କଳିଙ୍ଗ[୧୨], ତୈଲଙ୍ଗ, ମଗଧ[୧୩] । ବୈଦ୍ଧ, ଚେଦି[୧୪], ମଘ[୧୫], ମତ୍ସ୍ୟ[୧୬], ଦ୍ରାବିଡ଼[୧୭], ଗଉଡ଼, ମ୍ଲେଚ୍ଛ, ଆରବ, ମାଳବ[୧୮], କୁଚ୍ଛ[୧୯], କୁରୁ[୨୦], ପଞ୍ଚାଳ[୨୧] । ବନାଉଦ[୨୨], କନାଉଜ[୨୩], କାଶ୍ମୀର, କାମେରୀ, କୁଞ୍ଜ[୨୪], ଗଳ, ଉହାଲ, ଲେମଶ, ପୁଣ୍ଡ୍ର[୨୫], କୋଶଳ[୨୬], । ବେଲାଉଲ ଆଦି ଏ ଠକ । ବିଶେଷି କହିବା କେତେ ନହେ ଜନକ । ରା ୯, ବୈ: ଖ: । କୋଶଳ ଦେଶ ରାଜକୁମାରଙ୍କ ଚରପଟ ଦେଶେ ଦେଶେ ପ୍ରେରିତ ହେଲା । କବି ଏହି ସମୟରେ ଗୋଟିଏ ଭୌଗୋଳିକ ଚିତ୍ର ଦେଇଛନ୍ତି :—

"ମାଳବରେ ମାଳ-ବରେ ନାଶ୍ର ବହିଲେ । ଅଙ୍ଗେ ଅଙ୍ଗନାଚରି ଆସ୍ୱାଦି ନୋହିଲେ । ଉତ୍କଳ ଉତ୍କଳ ରମା ବରହେ ହେଲେ । ବିଦେହେ ବିଦେହେ ଯେତେ ଯୋଷା ତରଲେ ।" ଇତ୍ୟାଦି, ପ୧୧—୨୨ ଛା୧, ପ୍ରେ: ସୁ: । ଅନ୍ୟ ଦୃଷ୍ଟାନ୍ତ—"ଜମ୍ବୁ, ପ୍ଲକ୍ଷ, କୁଶ, କ୍ରୌଞ୍ଚ, ଶାକ ଶାଳ୍ମଳୀରେ ଘଞ୍ଚ ହୋଇ ପୁଷ୍କରକୁ

---

୧ ବିରାର ଦେଶ, ବଡ଼ନାଗପୁର (ବିରାଟ ନଗର) । ୨ ଦ୍ରାବିଡ଼ର ଉତ୍ତର ପଶ୍ଚିମସ୍ଥ ଦେଶ; ଦକ୍ଷିଣ-ଭାରତର ପୂର୍ବ ଉପକୂଳସ୍ଥ ଦେଶ । ୩ ଗୁଜରାଟ । ୪ ସୌରାଷ୍ଟ୍ର, ସୁରାଟଦେଶ, ଆଧୁନିକ କାଠିଆବାଡ଼, ଏହା ଗୁଜରାଟ—କାଠିଆବାଡ଼ର ପ୍ରାଚୀନ ନାମ । ୫ ମରହଟ୍ଟୀ ଭାଷା ପ୍ରଚଳିତ ଦେଶ —ବମ୍ବେ, ବେରାର, ମଧ୍ୟଭାରତ, ପୁନା, ଗୋଆଳିୟର, ଇନ୍ଦୋର ଓ ନାଗପୁର । ୬ ଭାରତର ଦକ୍ଷିଣ ପଶ୍ଚିମ ଉପକୂଳସ୍ଥ ମାଲବାର ପ୍ରଦେଶ ।୭ ଦକ୍ଷିଣଭାରତର ଦ: ପୂ: ତାଞ୍ଜୋର, ପାଣ୍ଡ୍ୟମଣ୍ଡଳର ଉତ୍ତରପିନାକିନୀ ନଦୀ ପର୍ଯ୍ୟନ୍ତ ଏହି ଦେଶର ସୀମା—(ଏ ଉତ୍ପାତୁଁ ପଡ଼ିବ ଚୋଳେ ଚଞ୍ଚଳତା । ଲ: ବ: ) ୧୮ । ୮ ସିନ୍ଧୁ ପ୍ରଦେଶ । ୯ ତାତାର (Tartar) ସାମ୍ରାଜ୍ୟର ଦେଶ । ୧୦ (ନିଷଧ) ସୌବୀରରାଜ୍ୟର ଉତ୍ତରସ୍ଥ ପ୍ରାଚୀନ ଦେଶ; ବିନ୍ଧ୍ୟପର୍ବତର ଉତ୍ତରବର୍ତ୍ତୀ ଆଧୁନିକ କୁମାୟୁନ ଅଞ୍ଚଳ । ୧୧ ବିହାରର ଭାଗଲପୁରର ଚତୁର୍ଦ୍ଦିଗ ଅଞ୍ଚଳ । ୧୨ ବୈତରଣୀ ନଦୀଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ପ୍ରାଚୀନ ରାଜ୍ୟ, ପୁରୀ, କଟକ, ବାଲେଶ୍ୱର କଳିଙ୍ଗର ଅନ୍ତର୍ଗତ ଥିଲା । ୧୩ ବିହାରପ୍ରଦେଶର ଦକ୍ଷିଣାଂଶର ପ୍ରାଚୀନ ନାମ । ୧୪ ଚନ୍ଦେଲ ଦେଶ । ୧୫ ବ୍ରହ୍ମଦେଶୀୟ ଆରାକାନ ପ୍ରଦେଶ । ୧୬ ବର୍ତ୍ତମାନ ଜୟପୁର ରଙ୍ଗପୁର ଦିନାଜପୁର ଓ କୁଚବିହାର । ୧୭ ଦକ୍ଷିଣଭାରତର ଦେଶ, ମାନ୍ଦ୍ରାଜର ଦକ୍ଷିଣଠାରୁ କେପ କମାରିନ ପର୍ଯ୍ୟନ୍ତ ଦେଶ । ୧୮ ଅବନ୍ତୀ ଦେଶ—(ମାଳବେ ଭ୍ରମରରୁ ଲେଖନ କରି, ଏକାଳେ ବିଦେଶ ତ ଲେଖା ନ କରି । ପ୍ରେ: ସୁ:) । ୧୯ ଗୁଜୁରାଟ ଓ ସିନ୍ଧୁ ପ୍ରଦେଶର ମଧ୍ୟବର୍ତ୍ତୀ ଦ୍ୱୀପ ରାଜ୍ୟ । ୨୦ ଆଧୁନିକ ଦିଲ୍ଲୀର ଚତୁଃପାର୍ଶ୍ୱସ୍ଥ ଦେଶ, ହିମାଳୟର ଉତ୍ତରରେ ଅବସ୍ଥିତ ଉତ୍ତର କୁରୁ, ହିମାଳୟର ଦକ୍ଷିଣରେ ପାଞ୍ଚାଳାଦି—ଦକ୍ଷିଣ କୁରୁ । ୨୧ ଦକ୍ଷିଣ କୁରୁ, (ମତାନ୍ତରେ ପଞ୍ଜାବ) । ୨୨ ଆରବ ବା ପାରସ୍ୟର ପ୍ରାଚୀନ ନାମ । ୨୩ (କାନ୍ୟକୁବ୍ଜ) ଗଙ୍ଗାନଦୀର ଉପନଦୀ କାଳୀନଦୀକୂଳରେ ଅବସ୍ଥିତ ଉତ୍ତରପଶ୍ଚିମ ଭାରତର ପ୍ରାଚୀନ ନଗରୀ, ଆଧୁନିକ ଫରକ୍କାବାଦ୍ ଜିଲ୍ଲା ଅନ୍ତର୍ଗତ । ୨୪ ବୃନ୍ଦାବନ । ୨୫ ଗୌଡ଼ ଦେଶ, ଗଙ୍ଗାକୂଳରୁ ବିହାରପ୍ରଦେଶର ଦକ୍ଷିଣ ପର୍ଯ୍ୟନ୍ତ ଦେଶ । ୨୬ ଅଯୋଧ୍ୟା ଓ କାଶ୍ମୀର ଉତ୍ତରସ୍ଥ ସମଗ୍ର ଦେଶ, ଦକ୍ଷିଣ କୋଶଳ—ସମ୍ବଲପୁର, କଳାହାଣ୍ଡି, ବସ୍ତର ଓ ରାୟପୁର ।

Digitized by srujanika@gmail.com

ବୋଲି ଯିବ ।" ଲା: ବ: । ସ୍ୱଦେଶ ଓ ପ୍ରଦେଶର ପ୍ରଧାନ ନଦୀଗୁଡ଼ିକର ନାମ କବି ଜାଣିଥିବାକୁ ଭୁଲି ନାହାନ୍ତି । ଯଥା—"ସିନ୍ଧୁ, କାବେରୀ, ଜାହ୍ନବୀ, ଗୋଦା, ଯମୁନା, ବ୍ରାହ୍ମଣୀ, ଚିତ୍ରୋତ୍ପଳା, ଭାର୍ଗବୀ, ସରସ୍ୱତୀ, ମେଘନା, ସୁବର୍ଣ୍ଣରେଖା, ସ୍ୱ-ଋଷିକୁଲ୍ୟା, ସରଯୂ, ଚନ୍ଦ୍ରଭାଗା, ସୁରଳା, କୌଶିକୀ, ସରିବତୀ, ବିମଳା, ସୁରୁଙ୍ଗଭଦ୍ରା ଯେ ।" ଗ୍ରୀ୨, ସୁ: ପ: । ଜଗତ ଡିମ୍ବାକୃତି ବୋଲି କବିଙ୍କ ଦୃଢ଼ ଧାରଣା ଥିବାରୁ ସେ କହନ୍ତି—"ଡିମ୍ବାକୃତ ଚତୁର୍ଦ୍ଦଶପୁର ଯାର ଖେଳଘର ଅଟଇ ନିଶ୍ଚୟ ।" ଗ୍ରୀ୧୪, ପ୧୭—ଗ୍ରୀ: ଭୁ: । କବିଙ୍କ ଭୌଗୋଳିକ ଚିତ୍ରଣରେ ତ୍ରୁଟି ଥିବା କେହି କେହି କହନ୍ତି, କିନ୍ତୁ ମାନଚିତ୍ର ଓ ଅନ୍ୟାନ୍ୟ ନିଦର୍ଶନ ସାହାଯ୍ୟରେ ପରୀକ୍ଷିତ ଚିତ୍ରଣଗୁଡ଼ିକ ନିର୍ଭୁଲ ଜଣାଯାଏ । 'ଲାବଣ୍ୟବତୀ' ସପ୍ତମ ଛାନ୍ଦରେ ବିଭିନ୍ନ ଦେଶର ବିଭିନ୍ନ ଜନପଦ, ଜୀବଜନ୍ତୁ, ରତ୍ନ ପ୍ରଭୃତିର ବିଶଦ ଉଲ୍ଲେଖ ଅଛି । ସେଥିରୁ କବିଙ୍କ ଭୌଗୋଳିକ ଜ୍ଞାନର ସ୍ପଷ୍ଟ ଓ ନିର୍ଭୁଲ ପରିଚୟ ମିଳେ । ଯଥା—"ଶଙ୍ଖ ଦକ୍ଷିଣାବର୍ତ୍ତିକ ଶୁଭ୍ରତର ।"

ଶୁଭ୍ର କାଗଜ ଲାହୁର ଦେଶ ଜାତ, ବାସ' କାଞ୍ଚନ ମାଳା ଅପରିମିତ ।
ସିନ୍ଧୁଜାତ ହସ୍ତ ଭାରବାହ ଖର, ବଙ୍ଗଜାତ ଗଜ ପାଟଶାଳ ଖିର ।
ନେପାଳକା ମୃଗିକା ସାଲଆ ଗୁରୁ, ଲବଙ୍ଗର ଲତା ଜାତିଫଳ ତରୁ ।"

ଇତ୍ୟାଦି ।

## ବ୍ୟାକରଣ

ଯେଉଁ ସ୍ୱନାମଧନ୍ୟ କବିଙ୍କର ଗ୍ରନ୍ଥାବଳୀ ବହୁ ବିଭିନ୍ନ ଅଳଙ୍କାରରେ ଅଳଙ୍କୃତ, କୌଣସି କୌଣସି କାବ୍ୟାଂଶ ଏକାଧିକ ଅର୍ଥବୋଧକ, ବହୁଗ୍ରନ୍ଥ ବିଭିନ୍ନ ଛନ୍ଦୋବିଶିଷ୍ଟ, ଗ୍ରନ୍ଥର ପ୍ରତ୍ୟେକ ପଦ ବହୁ ଅର୍ଥସମ୍ବଳିତ, ପାଣ୍ଡିତ୍ୟ ଓ ପ୍ରତିଭା ଯେଉଁଠାରେ ବସା ବାନ୍ଧି ପାଠକପାଠିକାଙ୍କ ହୃଦୟରେ ଯୁଗପତ୍ ବିସ୍ମୟ ଓ ଆନନ୍ଦ ସୃଜନ କରିବାରେ ବ୍ୟସ୍ତ, ଯେଉଁ ସିଦ୍ଧ ସାଧକ ଗୁଣୀ ମନୀଷୀଙ୍କ ଲିଖନଶୈଳୀ ଉପରେ ବ୍ୟାକରଣଗ୍ରନ୍ଥ ରଚନା କରିଯାଇପାରେ (କିଏ ବୋଲି, ପରୀକ୍ଷା ଘୋଷଣା ଦେଇ ଆସୁଛି) ସେହି କବି-ସମ୍ରାଟ୍ ଉପେନ୍ଦ୍ରଙ୍କର ବ୍ୟାକରଣ ଜ୍ଞାନସମ୍ବନ୍ଧୀୟ ଆଲୋଚନାପ୍ରୟାସ ଧୃଷ୍ଟତା ମାତ୍ର । ସେ କହନ୍ତି—

"କଳଙ୍କ ବିହୀନ ମୋ ଗୀତ । ଖଳ ଗହ୍ୱରେ ଅଦୂଷିତ ।" ଲା: ବ: ଗ୍ରୀ୧୭ ।

ସେ ପାଣିନି ପ୍ରଭୃତି ବ୍ୟାକରଣ ପୁଙ୍ଖାନୁପୁଙ୍ଖ ରୂପେ ଆଲୋଚନା କରିଥିବାରୁ, ସ୍ୱଗ୍ରନ୍ଥରେ ସେ ବ୍ୟାକରଣପ୍ରସଙ୍ଗ ପ୍ରସଙ୍ଗାନୁକ୍ରମେ ବାରମ୍ବାର ଉତ୍ଥାପନ କରିଛନ୍ତି । "ଲକ୍ଷ୍ମୀ ପରି ବ୍ୟାକରଣେ । ପାଣିନୀୟ ମନେ ଗୁଣେ ।" ଗ୍ରୀ୪ କୋ: ବ୍ର: ସୁ । "ବ୍ୟାକରଣ ସାଧନରେ ବର୍ଣ୍ଣର ସ୍ୱରୂପ ଯେ......" ପ୧୧, ଗ୍ରୀ୧୪, ବୈ: ବି: । "ବେଦାନ୍ତେ ବିଧାତା; ବ୍ୟାକରଣେ ହର ," ଲା: ବ: ।

## ପଦାର୍ଥବିଦ୍ୟା

କବି ପଦାର୍ଥବିଦ୍ୟାରେ ସେ ପ୍ରବୀଣ ଥିଲେ, ତାହା ତାଙ୍କ କାବ୍ୟରୁ ଧରାଯାଏ । ଉପେନ୍ଦ୍ରଙ୍କ ସମୟରେ ରାଜାମାନଙ୍କଠାରେ ସାଧାରଣତଃ ବହୁ ଦୁର୍ଲ୍ଲଭ ମଣି, ମାଣିକ୍ୟ, ହୀରା, ନୀଳା ପ୍ରଭୃତି ରତ୍ନ ଥାଏ । ଘୁମୁସର ଭଞ୍ଜରାଜାମାନଙ୍କର ଥିଲା । କୁଲାଡ଼ ସମୀପବର୍ତ୍ତୀ ଏକ ଗିରିଗୁହାରେ ଅତ୍ୟନ୍ତ ଯତ୍ନରେ କିଛି ରତ୍ନ ସାଇତା ଯାଇଥିଲା । ସେଠାରେ ରାତ୍ରି, ଦିବସ ଅନବରତ କନ୍ଧ ପ୍ରହରୀମାନେ ପହରା ଦେଉଥିଲେ । ଉକ୍ତ ଭଞ୍ଜବଂଶଜ କବି ଉପେନ୍ଦ୍ରଙ୍କର ରତ୍ନଜ୍ଞାନ ଅକଳନା ଥିବା ଜଣାଯାଏ । ବ୍ରହ୍ମଜାତ ହୀରା, ପଦ୍ମରାଗ ମାଣିକ୍ୟ, ଜମ୍ବୁନଦ ହେମ, ମେଷ ଚକ୍ଷୁ ନୀଳା, ଚନ୍ଦ୍ରକାନ୍ତ ପାଷାଣ ପ୍ରଭୃତି ଯେ ଶ୍ରେଷ୍ଠ, ତାହା ସେ ସ୍ପଷ୍ଟରେ ବୁଝାଇଛନ୍ତି—

Digitized by srujanika@gmail.com

ମେଷ ଚକ୍ଷୁ ମାଳା କୃଷ୍ଣକାଠ ସ୍ରଗ, ତାର ମୁକ୍ତା କୁକ୍କୁଟ ଡମ୍ବ ପଗ ।
ଅଚ୍ଛ ସୁମାଣିକ୍ୟ ପଦ୍ମରାଗ ଜାତ, ଅଷ୍ଟବନ୍ଧ ପ୍ରବାଳଦ୍ଧି ପନ୍ତ ପନ୍ତ ।
ଚନ୍ଦ୍ରକାନ୍ତ ପାଷାଣ ମଲେନ୍ଦ୍ର ମଣି ଲକ୍ଷ୍ମୀନାରାୟଣ ଶିଳା ନୋହେ ଗଣି ।
ଅଗରଚନ୍ଦନ ଅତର ଶ୍ରୀକର୍ପୂର, ଜନ୍ତୁ ପାତଳ ଚୂଆ ପମୀରମୀର ।
ସମରାଜ କୁଆଦ ଜାହ୍ନବୀ ଜଳ, ମନୋହର ବଂଶପତ୍ରି ହତୋଳ ।
ରୌପ୍ୟ ଇଚ୍ଛାକୁ ଫୁଲ ଗୁଲରେ ଦେଇ, ନମ୍ବ ନନ୍ଦ ବିନା ଆନ ପ୍ରେମ ନାହିଁ ।
ମଣି ପଟ୍ଟରେ ମିହୃରମଣି ଲେଖ, ଦନ୍ତେ ଦନ୍ତାଦିନ୍ତ ନଖେ ବ୍ୟାଘ୍ରନଖ ।
ଚର୍ମ ଆସନରେ ସାର ବୋଲଦାର, ଚର୍ମ ଆଢ଼ଣୀ ଖଡ଼ଗ ଚର୍ମବାର ।
ହନା ତରବାରି ବୃଦ୍ଧ ଜମଦର, ଶଙ୍ଖ ଦକ୍ଷିଣାବର୍ତ୍ତିନ ଶୁକତର ।
ଏକମୁଖୀ ରୁଦ୍ରାକ୍ଷରେ ସୁଶୋଭନ, ସ୍ୱରୁ କନକ ମୃଗ ଚଉସ୍ତମାନ ।

— — —

ଚକୋରକ ଦନଙ୍କାତା ପାରବତ, କଲପନ ଶୁନ୍ୟଖ୍ରୀ ସୁରଞ୍ଜିତ ।
ଲୌହ ଚୁମ୍ବକ ପରଶୁ ଗ୍ରାବ ସହି, ଇତ୍ୟାଦ । ପ ୭ ୨୨-ଅ ଲ: ବ: ।

———

## ଚରିତ୍ର

### ଦେବଭକ୍ତି

ଶ୍ରମ, ସାଧନା, ଶାସ୍ତ୍ରାନୁଶୀଳନ, ପ୍ରତିଭା ବଳରେ ଉପେନ୍ଦ୍ର ଭଞ୍ଜ ଅସଂଖ୍ୟ ଦୁର୍ଲ୍ଲଭ ଗ୍ରନ୍ଥ ପ୍ରଣୟନ କରିଥିଲେ ମଧ୍ୟ, ତାଙ୍କର ଈଶ୍ୱର ବିଶ୍ୱାସ ଏତେ ଗାଢ଼ ଓ ଦୃଢ଼ ଯେ, ସେ କହନ୍ତି,—"ତାରକ ମନ୍ତ୍ର ପରସାଦେ, ମୋହର କବିପଣ ଉଦେ ।" ଲା: ବ: । "କହେ ଉପଇନ୍ଦ୍ର ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠନାଥ ସାକ୍ଷାତ, ଜାତ କଲେ କ୍ଷୀରାର୍ଣ୍ଣବୁଁ ସୁଧା, ମୋର ଗିରାର୍ଣ୍ଣବୁ ରସଗୀତ । ......" ପ ୩୦, ଗ୍ର ୧୬, କୋ: ବ୍ର: ସୁ: । ଶାସ୍ତ୍ରଜ୍ଞାନ ନ ଥାଇ, ଉପେନ୍ଦ୍ର ଭଞ୍ଜ କେବଳ ତାରକ ମନ୍ତ୍ର ପ୍ରସାଦରେ ବିଖ୍ୟାତ କବି ହୋଇ ପାରିଲେ—ଏହି ଭ୍ରାନ୍ତ ଧାରଣାରୁ ପାଠକଙ୍କୁ ରକ୍ଷା କରିବା ପାଇଁ ସେ କହନ୍ତି—"ସାଂଖ୍ୟ ଆଦି ଷଡ଼ଶାସ୍ତ୍ର ମୁଁ ଜାଣଇଁ ରାଧାଭେଦୀ କହେ ସର୍ବେ ।" ପ ୧୮, ଗ୍ର ୯, ସୁ: ପ: । କବିମାନେ ଅନେକ ସମୟରେ ନିଜକୁ ପ୍ରଯୁଜ୍ୟ ହେବା ପ୍ରସଙ୍ଗ ଅନ୍ୟ ଭଙ୍ଗୀରେ ଏବଂ ଅନ୍ୟ ଉପଲକ୍ଷ୍ୟରେ ଶୁଣାନ୍ତି । ଚନ୍ଦ୍ରଭାନୁଙ୍କୁ ଉପଲକ୍ଷେ ସେ କହନ୍ତି—"ବେଦାନ୍ତେ ବିଧାତା, ବ୍ୟାକରଣେ ହର । ସଙ୍ଗୀତରେ ନାରଦ, ଶୃଙ୍ଗାରଶାସ୍ତ୍ରେ ମାର । କବିପଣେ ଗଣେଶ, ଜ୍ୟୋତିଷେ ବୃହସ୍ପତି, ଅଶ୍ୱାରୋହେ ମିହିର ଭୈରବ ପରି ଗତି । ବଳିଷ୍ଠରେ ବଳୀ ଧାର୍ମିକରେ ଯୁଧିଷ୍ଠିର, ସୁନ୍ଦରପଣରେ ତାଙ୍କୁ ନାହିଁ ପଟାନ୍ତର ।" ଲା: ବ: । କେତେକ ପ୍ରତିଭା ସମ୍ପନ୍ନ ବ୍ୟକ୍ତି ନାନା ତଥ୍ୟ ଆବିଷ୍କାର, ଦେଶଜୟ, ଗ୍ରନ୍ଥପ୍ରଣୟନ ଇତ୍ୟାଦି ଅଲୌକିକ କାର୍ଯ୍ୟ କରନ୍ତି, କିନ୍ତୁ ସେମାନଙ୍କ ସକଳ କାର୍ଯ୍ୟର ନିୟନ୍ତା କେବଳ ପରମେଶ୍ୱର ବୋଲି ସେମାନଙ୍କ ଆନ୍ତରିକ ବିଶ୍ୱାସ ଥାଏ । ସେହିପରି ଅଟଳ ବିଶ୍ୱାସ କବିଙ୍କର ଥିବାରୁ ସେ ସ୍ୱ ଗ୍ରନ୍ଥରେ ବାରମ୍ବାର କହିଛନ୍ତି—"ଗାରବର ପଦ ଉପଇନ୍ଦ୍ର ମୋର ନାମ । ବାରେ ବାରେ ସେବାରେ ମନାଇଁ ସୀତାରାମ ଯେ । ବିଚାରି କବିତ୍ୱ ମାଗେ ପ୍ରସନ୍ନେ ବୁଦ୍ଧି । ବିରଚିଲି ରାମାୟଣ ଏ ମୋ ବଡ଼ ସିଦ୍ଧି ଯେ ।" ଗ୍ର ୫୨, ବୈ: ବି: । "ବିଶଚନ୍ଦ୍ର ରଚିତରେ ବିଜ୍ଞେ ଅର୍ଥୀ ହେବ ହେ ।" ବୈ: ବି: । ପରମେଶ୍ୱରଙ୍କଠାରେ ଆତ୍ମସମର୍ପଣ ଦ୍ୱାରା ମନୁଷ୍ୟ ଅସାଧ୍ୟ ସାଧନ କରିପାରେ, ବାଞ୍ଛିତ ଫଳ, ମୁକ୍ତି, ତୃପ୍ତି, ଶାନ୍ତି ପାଇପାରେ; ସେହି ଆଧ୍ୟାତ୍ମିକ ଧାରଣା କବିଙ୍କୁ କର୍ତ୍ତବ୍ୟପଥରୁ ଯାବଜ୍ଜୀବନ କଦାପି ବିଚ୍ୟୁତ କରି ନାହିଁ । "ବୋଲନ୍ତି ଆରତତ୍ରାଣ ଦୀନବନ୍ଧୁ ସେହି । କରି ଏହି ଭରସାକୁ ଆସିଅଛି ମୁହିଁ ।" ପ ୩୫, ଗ୍ର ୨୧, କୋ: ବ୍ର: ସୁ: । "ରାଘବ ଶିବ ଭାବନା କରି ନିରନ୍ତର । କହେ ରସେ ଉପଇନ୍ଦ୍ର ଭଞ୍ଜ ବୀରବର । ଆହେ ପ୍ରଭୁ କୃପା-ଅକୂପାର କୃପା କର । ଖ୍ୟାତ ହେଉ ପ୍ରେମସୁଧାନିଧି ଗୀତ ମୋର ।" ଗ୍ର ୧୬, ପ୍ରେ: ସୁ: । "ହେ ରାମ ଶ୍ୟାମ କାମ ସମ ସୁଷମ ବାମ ଯମ ଭ୍ରମ ବନ୍ଦନ । ଦାନବ ଦୀନବାରି ଦୀନବତ୍ସଳ ଜାନକୀ-ହୃଦୟ-ଚନ୍ଦନ । ...... କରି ଏ କରୁଣା ବିଜ୍ଞ ହସ୍ତଗତ ଏ ପୁସ୍ତକ ମୋର ହୋଇବ । ଅଜ୍ଞ ସମୂହର କର୍ଣ୍ଣକୁହରରୁ କେବେହେଁ ପ୍ରବେଶ ନୋହିବ ।" ର: ହା: । କହିଲେ ଗୋପ ବୃନ୍ଦାବନ ଶୋଭା ଲବ ଲବକ । କବି ଉପଇନ୍ଦ୍ର ଭଞ୍ଜ ଯେ ସୀତାରାମ ଭାବୁକ । ପ ୫୪, ଗ୍ର ୨, କ: କ: ।

### ଦାର୍ଶନିକ ଚିନ୍ତା

କବିଜୀବନ ଯାପନ କରିବା ପୂର୍ବରୁ, ଶ୍ରୁତି, ସ୍ମୃତି, ସାଂଖ୍ୟାଦି ଷଡ୍‌ଦର୍ଶନ ଶାସ୍ତ୍ର ଅଧ୍ୟୟନ ବେଳେ କବିଙ୍କ ହୃଦୟରେ ଦାର୍ଶନିକ ଚିନ୍ତାର ଉନ୍ମେଷ ଘଟି ପରେପରେ ପରିବର୍ଦ୍ଧିତ ହେଲା । ସେହି ହେତୁ ସେ ପ୍ରତ୍ୟେକ ଗ୍ରନ୍ଥରେ ସ୍ଥାନେ ସ୍ଥାନେ ଦାର୍ଶନିକ ଓ ଆଧ୍ୟାତ୍ମିକ ତତ୍ତ୍ୱ ପ୍ରକାଶ କରି ନିଜ ନିଜଙ୍କ ଜୀବନର ପରିଣତି ଚରିତ୍ରନିଷ୍ଠା ଓ ଧର୍ମଧାରଣା ପ୍ରତିପାଦନ କରିଅଛନ୍ତି । ଯଥା—"ନିର୍ବାଣ ମତେ ନିର୍ବାଣ ସାରୂପ୍ୟକୁ ଦେଇ ।

Digitized by srujanika@gmail.com

ସାକ୍ଷୀ ପକ୍ଷୀ ନରଟ ପ୍ରତିମା ରୂପେ ଥାଇ ଯେ ।" କୋ: ବ୍ର: ସୁ: । "ବ୍ରହ୍ମ ପଦବୀ ପାଇଲେ ତ ନୋହିବ ଚରିରୁ ପାସୋର ।" ଲ: ବ: । "ଯାଇଥିଲେ ପାଇଥାନ୍ତୁ ଶ୍ରୁ ପରମ ନିର୍ବାଣ ସୁଖକୁ ।" ସ୍ତୁ ୨୬, ଲ: ବ: । "ରାମ ନାମକୁ ଜପ କରୁଥାଇ । ମୋକ୍ଷରେ ଆଉ ସେ ସଂଶୟ ନାହିଁ ।" କୋ: ବ୍ର: ସୁ: । "ଯେ ସର୍ବଭୂତ ପତି, ତାଙ୍କୁ ଭଜ ବିପତ୍ତି ନିପାତ ନୋହିବ କିପାଇଁ । " ଛ୍ର ୧୪, କୋ: ବ୍ର: ସୁ: । "ସେ ପର ଦୁଃଖ ଘେନିବା ବଜ୍ରସ୍ୱଗୀ ସ୍ୱତ । କି କରିବେ ଜଗନ୍ନାଥେ ଦେଇଛୁ ଉଦନ୍ତ ଯେ ।" ପ୩୫, ଛ୍ର ୧୧, କୋ: ବ୍ର: ସୁ: । ସେ ପ୍ରତ୍ୟେକ ଗ୍ରନ୍ଥର ପ୍ରାରମ୍ଭରେ, ଗ୍ରନ୍ଥର ପ୍ରାୟଶଃ ପ୍ରତ୍ୟେକ ଛାନ୍ଦ ଭଣିତରେ, ଗ୍ରନ୍ଥ ଶେଷରେ ପରମେଶ୍ୱରଙ୍କୁ ଚିନ୍ତା କରିଛନ୍ତି । ହରି ହର, ରାମ, ବଳରାମ, ପରଶୁରାମ, ଲକ୍ଷ୍ମୀ, ରାଧା—ଏ ସମସ୍ତଙ୍କୁ ସେ ଭକ୍ତି ସ୍ତୁତି କରୁଥିଲେ ମଧ୍ୟ, ତାଙ୍କର ପ୍ରଧାନ ଆରାଧ୍ୟ ଦେବ ଦେବୀ—ରାମ ଓ ସୀତା । "ବାସ କରନ୍ତୁ ସେହି ସୀତା ଲୀଳା ସଦା ମୋ ହୃଦ ।" ଛ୍ର୪, ପ୭୨, ବୈ: ବି: । "କହେ ଉପେନ୍ଦ୍ର ଭଞ୍ଜ ଶ୍ରୀରାମ ସୁମରି । ବୈକୁଣ୍ଠପୁର ଲଭିବି ଭବସିନ୍ଧୁ ତରି ଯେ ।" ଛ୍ର୨୧, ପ୫୭, କୋ: ବ୍ର: ସୁ: । ବିଷ୍ଣୁ, ସୂର୍ଯ୍ୟ, ସ୍ତୁତି— ବୈ: ବି:, ଛ୍ର୧ । କହେ କବି ଭଞ୍ଜ ବୀରବର ଦିବ୍ୟରସ । ଆହେ ରାମ ଅବଧେ ଏ ଗୀତ ହେଉ ଶେଷ ହେ । ସୀତା ସହିତ ମୋ ଚିତ୍ତୁ ନୋହିବ ଅନ୍ତର । ଏହି ଅଭିଷ୍ଟକୁ କରିଅଛୁ ନିରନ୍ତର ହେ । ଲ: ବ: ।

## ନମ୍ରତା

ଗ୍ରନ୍ଥପ୍ରଣୟନ କାର୍ଯ୍ୟରେ ହସ୍ତକ୍ଷେପ କରିବା ପୂର୍ବରୁ କବି ପରମେଶ୍ୱରଙ୍କ କୃପାଭିକ୍ଷା ବାରମ୍ବାର କରିଛନ୍ତି । ବିଶ୍ୱନିୟନ୍ତାଙ୍କ କୃପା, ବିଜ୍ଞସାଧାରଣଙ୍କ ସହାନୁଭୂତି ବ୍ୟତୀତ ଯେ କୌଣସି ମହତ୍ କାର୍ଯ୍ୟ ନିଷ୍ପନ୍ନ ହେବା ଅସମ୍ଭବ । ସେ ସେହିହେତୁ ସ୍ୱୀୟ ଗ୍ରନ୍ଥରଚନା କାର୍ଯ୍ୟରେ ସହାୟ ହେବା ପାଇଁ ପ୍ରଥମେ ପରମେଶ୍ୱରଙ୍କୁ, ଦ୍ୱିତୀୟରେ ବିଦ୍ୱଦ୍‌ବର୍ଗଙ୍କୁ ନମ୍ରତାର ଶେଷ ସୀମାରେ ପହଞ୍ଚି ପ୍ରାର୍ଥନା କରିଛନ୍ତି । "ସଦୟ କର ସଦୟ ଅର୍ଣ୍ଣବ ବହନ । କର ଉତ୍ତମ ରସଜ୍ଞ ଜନତନମନ ।" ଅ: ର: । "କଠିନ ଦୋଷ ହରିଲ, ଶିଳାକୁ ଅବଳା କଲ, ସେ ପଦ ପ୍ରସାଦେ ପଦ ସ୍ଫୁରଣେ ମୋଦ ମୁଁ । ଉପେନ୍ଦ୍ର ଭଞ୍ଜ କବି ନିରତେ ଚିତ୍ତରେ ଭାବି ହୋଇବ ଅର୍ଥେ ସରସ ନୋହିବ ଦୋଷ ଯେ ॥" କୋ: ବ୍ର: ସୁ: । "ହରିତ ଅମ୍ବର ସେହି ନୀଳକଣ୍ଠ ନୃପ ନନ୍ଦନ କରଇ ଧ୍ୟାନ ହେ । କୋବିଦେ । ଛ୍ର ୨୪, କୋ: ବ୍ର: ସୁ: ।" "ଯେହୁ ତାରକ ପ୍ରବର୍ତ୍ତକ ଜଗତେ ତାରକ ସ୍ୱଭାବେ ସେ ହିତ । ମହାଗୁରୁ ଭାବୁଁ ସେ କାଶୀଶ୍ୱରଙ୍କୁ ବନ୍ଦନା କରିବା ବିହିତ । ହୋଇଲି କବି ଉପେନ୍ଦ୍ର ଭଞ୍ଜର । କାମଦାୟକ ବିନାୟକଜନକ ଏ ଭାବରେ ପୁଣି ଜର୍ଜର ॥" କୋ: ବ୍ର: ସୁ: । "ଉପେନ୍ଦ୍ର କରଇ ସହସ୍ର ଦଣ୍ଡବତ । ଜନମ ଜନମ କର ତବର ଭକତ ।" ବାଲ୍ମୀକି, ହନୁମାନ, ବ୍ୟାସ, କାଳିଦାସ, ଭୋଜରାଜ ପ୍ରଭୃତି ମହାକବିମାନେ ରାମାୟଣ ଚରିତ ଅବଲମ୍ବନରେ ମହାକାବ୍ୟ, ନାଟକ, ପୁରାଣ, ଚମ୍ପୂ ପ୍ରଭୃତି ପ୍ରଣୟନ କରିଥିବାରୁ କବି ସେମାନଙ୍କର ପ୍ରଶଂସା କରିବା ସଙ୍ଗେ ସଙ୍ଗେ ନିଜ କାର୍ଯ୍ୟ ତଦ୍ୱାରା ସହଜସାଧ୍ୟ ବୋଲି ପ୍ରକାଶ କରିଅଛନ୍ତି—

"ବାଲ୍ମୀକି ବ୍ୟାସ କବି ସନ୍ଧିରେ,
ମହାକାବ୍ୟ କେ ପୁରାଣ କରେ
ମହାନାଟକ ବାତସୁତରେ ହେଲେ ରଚିତା ଯେ ।
ବିହିଲେ କାବ୍ୟ ଯେ କାଳିଦାସ,
ଚମ୍ପୂରଚନା ଭୋଜ ନରେଶ
କୃପାସିନ୍ଧୁ ଏ ଗୀତ ପ୍ରକାଶେ ଛାଡ଼ିଲି ଚିନ୍ତା ଯେ" ।
ଛ୍ର୧, ପ୪, ବୈ: ବି: ।

Digitized by srujanika@gmail.com

## ଆଦର୍ଶ ଗୃହସ୍ଥ

କବିଙ୍କ ଗାର୍ହସ୍ଥ୍ୟଜୀବନ ଅତ୍ୟନ୍ତ ପବିତ୍ର ଓ ଶାସ୍ତ୍ରସମ୍ମତ ଥିଲା । ସେ ଏକପତ୍ନୀବ୍ରତର ପକ୍ଷପାତୀ ଥିଲେ । ତାହା ସେ ଜୀବନରେ ପାଳନ କରି ଭ୍ରମରବୃତ୍ତିଙ୍କ ତୁଳ୍ୟ ତାରତମ୍ୟ ସିଦ୍ଧ କରିଥିଲେ । "ମିଥିଲା ନବ ସଙ୍ଗମ କାଲେ ଯେ କଲେ ନୟମ ଏକପତ୍ନୀ ଏକପତ୍ନୀବ୍ରତ । ଜଗତେ ସେହୁ ଦମିତ ସାଧୁଙ୍କ ସୁଖ ସମ୍ପତ୍ତି .." ଲ: ବ: । ସେ ଚରିତ୍ରନିଷ୍ଠ ଥିବା ହେତୁ ତାହା ତାଙ୍କର କବିତାରେ ସ୍ୱତଃ ସ୍ଫୁରଣ ହୁଏ । ଯଥା—"ସୁଚରିତା ହୋଇ ଇତର ଚରିତ କରି ନାହିଁ କେହୁ ଭାବେ ରେ ସୁନ୍ଦରି ।" ସୁ: ପ: । ଗାର୍ହସ୍ଥ୍ୟ-ଜୀବନରେ ମତଭେଦ, ମନୋମାଳିନ୍ୟ ଅତ୍ୟନ୍ତ ଗର୍ହିତ । ପତିବ୍ରତା ପତ୍ନୀର ପତିଙ୍କୁ ନାନାବିଧ ଲୋକ-ହିତକର ଦାୟିତ୍ୱପୂର୍ଣ୍ଣ କଠିନ କାର୍ଯ୍ୟରେ ଉତ୍ସାହିତ କରିବା କର୍ତ୍ତବ୍ୟ । ଏଥିରେ କୌଣସି ମୁହୂର୍ତ୍ତରେ ହେଉ ମଧ୍ୟ ତ୍ରୁଟି ଘଟିଲେ କର୍ତ୍ତବ୍ୟରେ ବିଘ୍ନ ଘଟେ । ଗାନ୍ଧିଜୀଙ୍କ କସ୍ତୁରବା ଉପଯୁକ୍ତ ସହଧର୍ମିଣୀ ଥିବାରୁ କଠୋର ଅଗ୍ନିପରୀକ୍ଷାର ସମ୍ମୁଖୀନ ହେବାବେଳେ ସେ ସହଧର୍ମିଣୀଙ୍କଠାରୁ ସମୟୋଚିତ ସାହଚର୍ଯ୍ୟ ପାଇ ପାରୁଥିଲେ; ବିପଦବ୍ୟୂହ ମଧ୍ୟରେ ପଡ଼ି ସୁରେନ୍ଦ୍ରନାଥ ବେନାର୍ଜୀ କିଂକର୍ତ୍ତବ୍ୟବିମୂଢ଼ ହୋଇଥିବାବେଳେ କେବଳ ସେ ଗୃହିଣୀଙ୍କ କାଲୋଚିତ ପ୍ରେରଣାରେ ବିପଦ-ବ୍ୟୂହ ଭେଦ କରି ଜୀବନକୁ ଉନ୍ନତ ଓ ସରସ କରି ପାରି-ଥିଲେ । ଅଯୋଗ୍ୟ ଗୃହିଣୀ ଯୋଗୁଁ ବାୟରନ୍ ଗୃହ ମାତୃଭୂମି ତ୍ୟାଗ କରି ଯାବଜ୍ଜୀବନ ଦାରୁଣ ଯନ୍ତ୍ରଣା ଭୋଗ କରିଥିଲେ । ଗୃହସ୍ଥ ଗୃହିଣୀଙ୍କ ଶାନ୍ତ ସନ୍ତୋଷ ସମବେତ ଯତ୍ନରେ ଗୃହ ସ୍ୱର୍ଗୀୟ ଅମରାବତୀରେ ପରିଣତ ହେବା ଅବଶ୍ୟମ୍ଭାବୀ । କବିଙ୍କ ଗାର୍ହସ୍ଥ୍ୟଜୀବନରେ ତାହା ଘଟିଥିବାରୁ ସେ ଗାଇଛନ୍ତି— "ଦୂରେ ଥିଲେ ପାଶେ ଅଛୁ ଏହା ଥିରୁ ଘେନ । କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ । ପ୍ରୀତି ଅଭେଦ ତାଙ୍କର, ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।" ପ ୪, ଗ୍ଲୋ ୪, ପ୍ରେ: ସୁ: । "ମନ ଜାଣିବାକୁ ପ୍ରିୟାସମ ଜଣେ ଖୋଜିଲେ ନ ଥିବ କାହିଁ, ମୋ ମନେ ଘେନୁଛୁ ପ୍ରୀତି ଘେନିବାକୁ ତାହାର ସମାନ ସେହି ।" ଲ: ବ: । କବିଙ୍କୁ ସମାଲୋଚକମାନେ 'ରସିକ' କବି କହନ୍ତି; ତାହା ଯଥାର୍ଥ । ଅତ୍ୟନ୍ତ ରସିକ ସେହିରେ, ଅମୃତ ଭାବ ଓଷ୍ଠମଧୁ ସହିତେ ପିଇଗଲା ପରି ଚହିଁରେ ।" ଲ: ବ: । ପୁଣି ସେ କହନ୍ତି—ରସିକ ସଂସାର ମଧ୍ୟରେ ପ୍ରଶଂସାସାର ହୋଇ ରହୁ ମୋର । ଲ: ବ: । କବିଙ୍କ ଏହି ଉକ୍ତି ସୌହାର୍ଦ୍ଦ୍ୟ ଓ ଗାଢ଼ ପ୍ରେମର ସୂଚନା ଦିଏ । ଯେଉଁମାନେ ତ୍ୟାଗୀ, ବ୍ରହ୍ମଚାରୀ ସେମାନଙ୍କୁ ପ୍ରକୃତ ପ୍ରେମିକର ହୃଦୟ ବୁଝିବାକୁ ଅବକାଶ ନ ଥାଏ । ତାହା ସମର୍ଥନ କରି ଇଂରେଜ କବି ଯଥାର୍ଥ କହିଛନ୍ତି—

"So he that's in him self insensible Of loves sweet influence, misjudges him Who moves according to love's melody."

Calderon.

## ପ୍ରବାସ

ପ୍ରସିଦ୍ଧ କାବ୍ୟରେ ଅନ୍ୟାନ୍ୟ ବର୍ଣ୍ଣନା ମଧ୍ୟରେ ମିଳନ-ବିଚ୍ଛେଦର ଚିତ୍ର ଦେଖିବାକୁ ମିଳେ । ଭଞ୍ଜକାବ୍ୟରେ ମଧ୍ୟ ତାହା ଅଛି । ରାତ୍ରି ବ୍ୟତୀତ ଦିବସର, ଅନ୍ଧାର ବ୍ୟତୀତ ଆଲୋକର, ବିପଦ ବ୍ୟତୀତ ସମ୍ପଦର ଯେପରି ଅସ୍ତିତ୍ୱ କଳ୍ପନା କରି ହୁଅନ୍ତା ନାହିଁ, ସେହିପରି ବିଚ୍ଛେଦ ବ୍ୟତୀତ ମିଳନର ମାଧୁର୍ଯ୍ୟ ବାରି ହୁଅନ୍ତା ନାହିଁ । ଜୀବନ ନୀରସ ହୋଇ ଉଠନ୍ତା; ଅନାବିଲ ପ୍ରେମର ଦୃଢ଼ତା କଳ୍ପନାତୀତ ହୁଅନ୍ତା; ପ୍ରେମିକ ପ୍ରେମିକା ମଧ୍ୟରେ ଗାଢ଼ ସୌହାର୍ଦ୍ଦ୍ୟ ଓ କର୍ତ୍ତବ୍ୟବୋଧ ଆକାଶକୁସୁମ ହୋଇପଡ଼ନ୍ତା; ସୁତରାଂ ସୁଖଦୁଃଖ, ରାତ୍ରି-ଦିବସ, ଅନ୍ଧାରଆଲୋକ, ସମ୍ପଦବିପଦ ତୁଲ୍ୟ ମିଳନବିଚ୍ଛେଦ ସୃଷ୍ଟିର ଅପରିହାର୍ଯ୍ୟ ଅଙ୍ଗସ୍ୱରୂପ । ଭଞ୍ଜଙ୍କର ପ୍ରତ୍ୟେକ କାବ୍ୟରେ ବିଶେଷତଃ କାଳ୍ପନିକ କାବ୍ୟରେ ତାହା ସନ୍ନିବିଷ୍ଟ ଥିବାରୁ, କାବ୍ୟର

Digitized by srujanika@gmail.com

ମର୍ଯ୍ୟାଦା, ମନୋହାରିତା, ସରସତା ଅନବଚ୍ଛିନ୍ନ ଅନୁଭବ କରନ୍ତିଏ । ଏହା ସତ୍ତ୍ୱେ ଗୃହସ୍ଥ ଗୃହିଣୀଠାରୁ ବାରମ୍ବାର ଓ ଦୀର୍ଘ ସମୟ ବା ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ବିଚ୍ଛିନ୍ନ ରହି ପ୍ରବାସ କରିବା ଗୀତ କବି ପସନ୍ଦ କରୁ ନ ଥିଲେ । ଏହା କବିଙ୍କ ବିଭିନ୍ନ ଗ୍ରନ୍ଥରୁ ପ୍ରମାଣିତ ହୁଏ । "କରେ ଯେ ବିଦେଶେ ଆଦର । ତା ଉପମା ଅଛି ସେ ନିଷ୍ଠୁର ହୃଦର ।" ଛା୭, ପ୍ରେ: ସୁ: । ସର୍ବସାଧାରଣଙ୍କ ମଧ୍ୟରେ 'ଅରୁଣୀ ଅପ୍ରବାସୀ' ବୋଲି କଥାଟିଏ ପ୍ରବାଦସ୍ୱରୂପ ପ୍ରଚଳିତ ଅଛି । ଯେ କୌଣସି ବ୍ୟକ୍ତିଙ୍କ ପକ୍ଷରେ 'ଅରୁଣୀ ଅପ୍ରବାସୀ' ହେବା ସୁଖ ସନ୍ତୋଷର ସଙ୍କେତ । ନୂତନ ଦମ୍ପତିଙ୍କ ପକ୍ଷରେ ପ୍ରବାସ ଏକାବେଳେକେ ବର୍ଜ୍ଜନୀୟ ବୋଲି ଜଣେଇବାକୁ କବି କହନ୍ତି—"ଏକାଳେ ପ୍ରବାସେ ଯେ ରହିଲା ସେହି ଗଲା ଛପି..." ୧ ଛାନ୍ଦ, ଦଣ୍ଡଯୋଗ । "ନିଶ୍ଚୟ କଲି ଏମନ୍ତ ରସବତୀ ନ କରିବୁ ମାନ ରେ ଜଗଦୀଶ୍ୱର, ପରବାସ ନ କରିବ କେବେ ।" ଲ: ବ: । "ପତ୍ନି କୁମର ସନ୍ତୋଷ, ସେହିକ୍ଷଣି ଦୂତ ସଙ୍ଗେ ଛାଡ଼ିଲା ପ୍ରବାସ ।" ପ୨୧, ଛା୧୪, ପ୍ରେ: ସୁ: । "ଜାତ ପ୍ରତାପ ଶାନ୍ତ ହେବାରେ ଉଚ୍ଚ ପ୍ରବାସ କଏ ବିସ୍ମରେ—" ପ ୧୭, ଛା୨୭, କୋ: କୃ: ସୁ: । "ଶାଶୁ ଶ୍ୱଶୁର ପୁରଜନ ଶୋଇ, ବର ଅଛନ୍ତି ବିଦେଶେ ଯାଇ; ଏକା ମୁଁ ଥାଇ ନିଦ୍ରା ନୁହଇ—" ପ୨, ଛା ୬, ସୁ: ପ: । ପ୍ରାଣ "ଥାଉ ବିଦେଶୀ ନୋହିବ ଆଉଥରେ"—ଛା୬, ପ୍ରେ: ସୁ: । ସେହି "ଷଣି ସେ କଲି ପ୍ରତିଜ୍ଞା । ବୋଲି ଜେବେ ନ କରିବ ବିଦେଶ" । ଲ: ବ: ।

## ଅଦୃଷ୍ଟବାଦ

ପୂର୍ବଜନ୍ମର ସୁକୃତ ଦୁଷ୍କୃତ ଅନୁପାତରେ ମନୁଷ୍ୟ କର୍ମଫଳ ଭୋଗକରେ । କବିଙ୍କର ଏହି ଆସ୍ଥା ବରାବର ଥିଲା । ସେ କହନ୍ତି—"ସୁକୃତ ଅଛି ଯେ ପୂର୍ବଜନ୍ମେ କରିଥାଇ । ସେ ଭୋଗେ .." ପ୨, ଛା୧୩, ସୁ:ପ: । "ସବୁଠାରୁ ମୂଳକର୍ମ ଦୁର୍ଲ୍ଲଭ ଲଭଇ, ଉଦ୍ୟମେ କର୍ମବିପାକେ କାର୍ଯ୍ୟକୁ ନ ପାଇ ଯେ ।" କୋ: କୃ: ସୁ: । ସୌନ୍ଦର୍ଯ୍ୟ, ଶୌର୍ଯ୍ୟ, ଐଶ୍ୱର୍ଯ୍ୟ, ଯୌବନ, ସମ୍ମାନପାଇଁ ସ୍ଫୀତ ଓ ସଙ୍କୁଚିତ ହେବା ନିରର୍ଥକ । ଏହି ଉପଲକ୍ଷେ କବି କହନ୍ତି—"ସ୍ୱୟଂ ବଡ଼ ହେଲେ ମୂଳ କରମ । ସିନ୍ଧୁ ମନ୍ଥନ ଛଡ଼ାଇଛି ଭ୍ରମ । ସୁରେ ସୁଧା, ବିଷ୍ଣୁ କମଳା ଲଭିଲେ, ବିଷପାନ କରେ ସ୍ୱାମ (ମହାଦେବ) ହେ ସୁନ୍ଦର ।" ପ୨୩, ଛା୧, ସୁ:ପ: । "ସତ କରମ ନରଇ ସଜାଲ ।" ଅ: ର: । "ବାଞ୍ଛିତ କର୍ମହୀନର ଶ୍ରମ କଲି ପ୍ରାପତ କାହିଁ ।" ବୈ: ବ: । "ସୁବଳାଷ୍ଟ କେହି ନାହିଁ କର୍ମକୁ, ସିଦ୍ଧ କରେ କେତେବେଳେ ବାମକୁ ।" ଛା୧, ସୁ: ପ: । "ହିତ ଏରସ କରମ ଅଚଳ" ଅ: ର: । "ବୋଇଲା ଆଳୀ କପାଳି ସତ୍ତୁ; ନୋହିଲା ହୁଏ କରମବନ୍ତୁ କରିଅଛନ୍ତି ସମୁଦ୍ର ଚନ୍ଦ୍ର କେବଳ କରେ ଯେ । ନରେ ସମସ୍ତେ ଇନ୍ଦ୍ର ହୋଇଛି, ନରେ ଧରଣୀ ଟେକି ଧରିଛି..." ପ୩, ଛା୨୭, କୋ: କୃ: ସୁ: । ଅନ୍ୟକୁ ଉପଦେଶ ଦେଇ ସୁପଥଗାମୀ କରିବା ପୂର୍ବରୁ, ନିଜେ ନିଜକୁ ଗଢ଼ିବା ହେଉଛି ପ୍ରଧାନ କାର୍ଯ୍ୟ । ତା ନ ହେଲେ ବିପଦ ପଦେ ପଦେ । ଏଥିପ୍ରତି ଦୃଷ୍ଟିରଖି କବି କହନ୍ତି—"ଯେ ଯାହା ଅର୍ଜଇ ସେ ତାହା ଭୁଞ୍ଜଇ ଏଥି ଅଛି କଉଁ ସଂଶୟ ।" ପ୨, ଛା ୬, ଲ: ବ: । "କର୍ମଫଳରୁ ହେବ ମଧୁ ପିବକ ।" କ: କ: । "ସ୍ୱର୍ଗ ସମ୍ପଦ ଯେଉଁ କର୍ମରେ ଥାଇ; ବିଚାର ମଣେ ବଜ୍ରପତନ ତହିଁରେ ।" ଲ: ବ: ।



Digitized by srujanika@gmail.com

## ଜନ୍ମାନ୍ତରବାଦ

କର୍ମଫଳ ଭୋଗ ପାଇଁ ମନୁଷ୍ୟ ପୁନର୍ବାର ଜନ୍ମପରିଗ୍ରହ କରେ । ସକାମ କର୍ମୀଙ୍କ ପୁନର୍ଜନ୍ମ ବିଷୟରେ ଗୀତା କହେ—"ଶୁକ୍ଳକୃଷ୍ଣେ ଗତୀ ହ୍ୟେତେ, ଜଗତଃ ଶାଶ୍ୱତେ ମତେ । ଏକୟା ଯାତ୍ୟନାବୃତ୍ତି-ମନ୍ୟୟାବର୍ତ୍ତତେ ପୁନଃ ।" ଗ୍ରୀକ୍ ଦାର୍ଶନିକ ପାଇଥାଗରସ୍‌ଙ୍କ (Theory of transmigration of souls) ଜନ୍ମାନ୍ତରବାଦ ମଧ୍ୟ ଉପରୋକ୍ତ ତତ୍ତ୍ୱ ସମର୍ଥନ କରେ । ଉପେନ୍ଦ୍ରଙ୍କ ଜନ୍ମାନ୍ତରବାଦରେ ଅଟଳ ବିଶ୍ୱାସ ଥିବା କଥା ଲାବଣ୍ୟବତୀର ବିଷୟବସ୍ତୁରୁ ପ୍ରମାଣିତ ହୁଏ । 'ଲାବଣ୍ୟବତୀ'ର ପ୍ରସ୍ତାବର, ବାଞ୍ଛାବତୀ ଅନ୍ୟ ଜନ୍ମରେ ଚନ୍ଦ୍ରଭାନୁ, ଲାବଣ୍ୟବତୀ ତଥା କାବ୍ୟର ନାୟକ ନାୟିକା ରୂପେ ଦେଖାଯାନ୍ତି । ଭଞ୍ଜଙ୍କ ବିଭିନ୍ନ କାବ୍ୟରେ ଜନ୍ମାନ୍ତରବାଦର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଯଥା—"ଯେତେ ଜନ୍ମେ ଯେତେ ପୁଣ୍ୟ କରିଛୁ ମୁଁ ଠୂଳେ ।" ଲା: ବ: । ସର୍ଗାବଧି ଅଛୁ ତହିଁ ଝାସିବ । ସେବାରେ ତୋ ଜନ୍ମାନ୍ତରେ ଆସିବ । ପୂର୍ବ ଫଳ ସଙ୍ଗତେ ଦେବ ଭୋଗ । ସୁକୃତରୁ ମୋ ହେବ ସେହି ଯୋଗ ।" ପ୧୮, ଛ୧୧, ସୁ: ପ: । "ଉଭୟଜନ ଜନମ ଜନ୍ମ ଏମନ୍ତ କର୍ମବନ୍ତ ।" ଅ: ର: । "ବିସ୍ମୃତିଲ ତାଙ୍କ ଦେହ ଏ ମାଇଲେ ହୋଇବ ଅମୋକ୍ଷ । ବୈକୁଣ୍ଠ ଗମନ୍ତ ସମ କରୁ ହତ ଦେଖିଛୁ ପ୍ରତ୍ୟକ୍ଷ" ଛ୧୪, ବୈ: ବି: । "ମୋର ଜନ୍ମାନ୍ତରେ ଝଣ୍ଡ ତପ ଥିଲା ।" ପ୧୪, ଛ୧୧, ଲା: ବ: ।

## ପୌତ୍ତଳିକତା

ପିତୃଳାପୂଜା ବିଷୟରେ ଗାନ୍ଧୀଜୀ କହନ୍ତି—ପୌତ୍ତଳିକତା ମନ୍ଦ, କିନ୍ତୁ ପିତୃଳାପୂଜା ନୁହେ । ପୌତ୍ତଳିକ ପ୍ରତିମାକୁ ଜଡ଼ରୂପରେ ଦେଖେ, କିନ୍ତୁ ପିତୃଳା ପୂଜକ ଈଶ୍ୱରସତ୍ତା ସେଥିରେ ଦେଖେ, ଅନୁଭବ କରେ । ହାତରେ ଥିବା ନିତ୍ୟ ବ୍ୟବହାର୍ଯ୍ୟ ଭଗବଦ୍‌ଗୀତା ଏବଂ ଦୋକାନ ଭଗବଦ୍‌ଗୀତା ମଧ୍ୟରେ ଢେର ପାର୍ଥକ୍ୟ ଅଛି । ନିତ୍ୟ ଅଧ୍ୟୟନ, ପୂଜା ଆରାଧନା ଦ୍ୱାରା ନିଜ ଗୀତା ଦେବତା ପାଲଟିଛି, କିନ୍ତୁ ବଜାରଆ ଗୀତା ବନ୍ଧ ହୋଇ ରହିଛି । ଉପେନ୍ଦ୍ର ଭଞ୍ଜ ପୌତ୍ତଳିକତା ସମ୍ବନ୍ଧରେ କହନ୍ତି—"ବିପ୍ରେ ଇନ୍ଧନ ଦେବୀମନେ ପୁଜିଲେ ସେ ଯଥା ନ କହେ କଥା । ବରଦ ହୋଇଲା ପ୍ରାପ୍ତ ସ୍ୱପନରେ ବସି ନ ଟେକିଲା ମଥା ।" ପ୧୬, ଛ୧୬, ବୈ: ବି: ।

## ବଦାନ୍ୟତା

"ଧନ ଅର୍ଜିଲେ ଧର୍ମ କରି, ଧର୍ମେ ପ୍ରାପତ ନରହରି ।" ସ୍ୱଗତୋକ୍ତି । ଠିକ୍ ସେହିପରି ଉପେନ୍ଦ୍ର କହନ୍ତି—"ନିତି ଦେବାର୍ଚ୍ଚନ ସରିବାଯାଏ । କରଇ ମେରୁ ଦାନକୁ ଭୟେ ।" ଲା: ବ: । "ବିନାୟକରେ ସଦାଯୁକ୍ତ ସେହି । ବହୁଳ ଭକ୍ତସବ (ଅନ୍ନଦାନ) ଖ୍ୟାତ ଯହିଁ ।" "ଅକପଟ ବଡ଼ପଣ ସମ୍ପଦ ଅବନି । ସମର୍ପଣ କଟକ ଭରତ ସମ ଯଶ ।" ଅ: ର: । "ପର ଉପକାର ଯଶ ଥୋଇଲେ । ଦେଖ ମହାଦେବ ବିଷ ପିଇଲେ । ଦେଖ ଭୃତ୍ୟପଦ ହୃଦେ ଧରି ହରି ଖ୍ୟାତି ବିପ୍ରାଶ୍ରୀ ବୋଲାଇଲେ ରେ । ସୁନ୍ଦରି । ପ୧୭, ଛ୧୯, ଲା: ବ: । ଦାନ ମଧ୍ୟରେ ଅନ୍ନଦାନ ଶ୍ରେଷ୍ଠ; ଅପାତ୍ରରେ ଦାନ କିନ୍ତୁ ବର୍ଜନୀୟ । ଯେଉଁମାନଙ୍କର ଅନ୍ତରାତ୍ମା ବୁଭୁକ୍ଷୁ, ଦୀନ ଦୁଃଖୀ ପାଇଁ ବ୍ୟାକୁଳ, ସେମାନଙ୍କୁ କୃପଣ ବାରମ୍ବାର ବାରଣ କଲେ ମଧ୍ୟ, ମନା ନ ମାନି ଦାନୀ ଦାନ କରିଥାଏ । "ନ କରେ କି ଦାନୀ ଦାନ ବାରିଲେ କୃପଣ ।" ପ୧୪, ଛ୩୪, କୋ: କୁ: ସୁ: ।

Digitized by srujanika@gmail.com

## ସୌନ୍ଦର୍ଯ୍ୟବୋଧ

କବିଙ୍କ ପ୍ରକୃତିବର୍ଣ୍ଣନା ଅତୁଳନୀୟ । ("The noblest scenes of the earth can be seen and known but by few". —Ruskin) ପ୍ରକୃତିଦେହରୁ ସୌନ୍ଦର୍ଯ୍ୟର ଉପାଦାନଗୁଡ଼ିକ ବାଛିବା ପ୍ରତିଭା ସମ୍ପନ୍ନ କବିଙ୍କ ପକ୍ଷରେ ଯେପରି ସମ୍ଭବ, ଅନ୍ୟ ପକ୍ଷରେ ସେପରି ନୁହେ । ଭଞ୍ଜଙ୍କ ପ୍ରତ୍ୟେକ କାବ୍ୟରେ ବିଶେଷତଃ ବୈଦେହୀଶବିଳାସ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ଲାବଣ୍ୟବତୀରେ କଥୋପକଥନ ରୀତି ଅତ୍ୟନ୍ତ ସ୍ୱାଭାବିକ, ହୃଦୟଗ୍ରାହୀ ଓ ଭାବବ୍ୟଞ୍ଜକ ବୋଧହୁଏ । ବୈଦେହୀଶବିଳାସରେ ରତ୍ନାକରଙ୍କ ସହିତ ଜନନୀ ପ୍ରଭୃତି ଦ୍ୱାଦଶ ବାରାଙ୍ଗନାଙ୍କ କଥୋପକଥନ ଅନେକରୁ ଏକ ଦୃଷ୍ଟାନ୍ତସ୍ୱରୂପ ଗ୍ରହଣ କରାଯାଇ ପାରେ । "ବନେ ତୁମ୍ଭେ ଭ୍ରମ, ଆମ୍ଭେ ବନରେ ବିଳସୁଁ"···ଇତ୍ୟାଦି । ନର, ନାରୀଙ୍କ ଶ୍ରେଷ୍ଠତା ପ୍ରସଙ୍ଗ ନେଇ ରାମଚନ୍ଦ୍ରଙ୍କର ସୀତାଙ୍କ ସହିତ କଥୋପକଥନ ଚମତ୍କାର ଜଣାଯାଏ । ଲାବଣ୍ୟବତୀ ଓ କୋଟିବ୍ରହ୍ମାଣ୍ଡସୁନ୍ଦରୀରେ ସହଚର ଓ ସହଚରୀଙ୍କ ସହିତ ନାୟକ ନାୟିକାଙ୍କ କଥୋପକଥନ, ଦୂତ, ଦୂତୀ, ସନ୍ନ୍ୟାସିନୀ, ମାଳିନୀ, ଐନ୍ଦ୍ରଜାଲିକ ପ୍ରଭୃତିଙ୍କ କଥା ଭାଷା ମହାକାବ୍ୟର ଉପଯୁକ୍ତ ବିବେଚିତ ହୁଏ । "ଦ୍ୱିଜ କହେ କି କହୁଛ ମରଇଁ ମରଇଁ......" ଇତ୍ୟାଦି, ଲା: ବ: । କବିଙ୍କ ସହିତ ମନ୍ତ୍ରୀସୁତଙ୍କ କଥାଭାଷା—"ଏ ଅଙ୍ଗ ସେ ଅଙ୍ଗ ଏସନ ଚେଷ୍ଟନ ପ୍ରସନ୍ନ କଲ କି ବା ଅଲଣା......" କୋ: ବ୍ର: ସୁ: । କବିଙ୍କ ସୌନ୍ଦର୍ଯ୍ୟବୋଧ ସମ୍ବନ୍ଧୀୟ ନାନା ପ୍ରସଙ୍ଗ ପ୍ରସଙ୍ଗାନୁକ୍ରମେ ବିଭିନ୍ନ ପରିଚ୍ଛେଦରେ ଉତ୍ଥାପନ କରାଯାଇଛି । ବର୍ତ୍ତମାନ ସେ ସମ୍ପର୍କରେ ବ୍ୟାପକ ଆଲୋଚନା ଅନାବଶ୍ୟକ ।

## ଦେଶପ୍ରେମ

ଶ୍ରେଷ୍ଠ ନାଗରିକର ଶ୍ରେଷ୍ଠ ଲକ୍ଷଣ ହେଉଛି—ଦେଶପ୍ରେମ । କବି, ତ୍ୟାଗୀ, ଯୋଗୀ, ରାଜନୀତିକ, ଦେଶସେବକ, ଆବିଷ୍କାରକ, ସଂସ୍କାରକ, ପ୍ରଚାରକ, ସିଦ୍ଧସାଧକ ପ୍ରଭୃତି ଭାବରେ ସୁଧୀବର୍ଗ ସୁଧାସିକ୍ତ ଦେଶପ୍ରେମ-ସ୍ରୋତ ମାତୃଭୂମିର ବିଶାଳ ପବିତ୍ର ପ୍ରାଙ୍ଗଣରେ ଅହରହ ପ୍ରବାହିତ ରଖି କୋଟି କୋଟି ଦେଶବାସୀଙ୍କ ଅପାର କଲ୍ୟାଣ ସାଧନ କରିଥାନ୍ତି । କବି ହିସାବରେ ଉପେନ୍ଦ୍ର ଭଞ୍ଜଙ୍କ ଦେଶପ୍ରେମର ଉତ୍କୃଷ୍ଟ ପ୍ରମାଣ ତାଙ୍କ ଗ୍ରନ୍ଥରୁ ଯେପରି ପ୍ରମାଣିତ ହୁଏ, ସେ ସମସ୍ତ ପୁଙ୍ଖାନୁପୁଙ୍ଖ ରୂପେ ଆଲୋଚନା କରିବା ଆୟାସସାଧ୍ୟ ବ୍ୟାପାର; ସେଥିରୁ କିଛି ଏଠାରେ ଉଲ୍ଲେଖ କରାଗଲା । "କୃପାବଶେ ବୋଇଲେ ଉତ୍କଳେ ଜନ୍ମ ହୋଇ । କ୍ଷେତ୍ରରାଜେ ବହୁକାଳ ବିଷ୍ଣୁସେବ ତୁହି ।" ର: ନା: । "ଉତ୍କଳ, ରାଜାହିଁ ଉତ୍କଟ ହତେ ଯେ" ଛା ୬୩, କୋ: ବ୍ର: ସୁ: । "ହୋଇଥିବ ପୁଣ୍ୟ ରସ ସରସ୍ୱତୀ ସଦା । ନିରତ ପବିତ୍ର ହୋଇ ରେବାରେ ବାହୁଦା ଯେ ।" କୋ: ବ୍ର: ସୁ: । "ସୁବର୍ଣ୍ଣରେଖା, ସୁରଷିକୁଲ୍ୟା, ସରଯୂ ଚନ୍ଦ୍ରଭାଗା ସୁରଳା ।" ସୁ: ପ: । "ବଡ଼ଦେଉଳ ଅଗ୍ରତରେ ଗୁଣ୍ଡିଚା ରଥ ଯେ ଦେଖିଛୁ ତରକ । ବିଲୋକନେ କୈଳାସୀ ସ୍ୱର୍ଗଲୋକ । ବିଦିତ ନରେଶେ ଉତ୍ସବ ସେଠାରେ ଓ ନବ ଧନ ସଂଖ୍ୟା କେ । ବିଦୂଷେ । ଛା ୫୧, ବୈ: ବି: । ସ୍ୱର୍ଗାଦପି ଗରୀୟସୀ ବିଶାଳ ଉତ୍କଳ ଅନ୍ତର୍ଗତ ଶ୍ରୀ ନୀଳାଚଳଧାମ ଉଦ୍ଦେଶ୍ୟରେ କବି କହନ୍ତି— "ଯେଉଁ କ୍ଷେତ୍ରରାଜ ବିରାଜମାନ ମକରଧ୍ୱଜେ । ଶ୍ରବଣେ ଚରିତ ଚରିତ ଜନ ଦୁରିତ ଗଞ୍ଜେ । ଯେବଣ କଟକେ ଛଟକେ ବିରଟକେ ମୁକତ । ମହାପ୍ରସାଦରେ ସାଦରେ ଲୋକମାନେ ଲଭନ୍ତି । ଅଲପ କାଳପ-ବଟରେ ଯହିଁ ଗ୍ରୀଷ୍ମା ଆଶ୍ରିତ, କଲପି କଲପି ନରକ ନର ତରଲି ମତ । ବିନା କୃଷାନୁରେ ତନୁରେ କୁଣ୍ଡ ପତନେ ଯହିଁ, କାକର ହେଲ କର ବୃତ କାସ ବଗୁର ତହିଁ । ଦକ୍ଷିଣ ଦକ୍ଷିଣ ସମୁଦ୍ର ପାପ କ୍ଷୀଣକୁ ତହିଁ, ଯମଦୂତଙ୍କର ବଡ଼ଭୀ ବଡ଼ଭିକ ଅନାଇଁ । ଅବିଦ୍ୟାଚକ୍ର ଚକ୍ର ପ୍ରାପ୍ତେ ଚକ୍ର କଳିବିତ୍ୟାଗ, ପ୍ରସନ୍ନ ଦର୍ଶନେ କରାଇ ଅନ୍ତେ ସେ ସ୍ୱର୍ଗଭୋଗ ।

Digitized by srujanika@gmail.com

ପତାକା ଅଞ୍ଚଳ ଚଞ୍ଚଳ ଡାକେ ପାପିଙ୍କି ଅବା, ଏ ନୀଳକଣ୍ଠ-ନଗରକୁ ଆସ ଭଲ କରିବା । ଯେତେଦୂର ଘଣ୍ଟ ନିନାଦ ଶୁଭେ ନନ୍ଦରେ ନେଇ, ପଳାଏ ଅନୃତ ଦୁଷ୍କୃତ ଗଲେ ଗଳଥା ଦେଇ । ସୁମନ ମନରେ ଇଚ୍ଛନ୍ତି ତହିଁ ବେତ୍ରାଘାତକୁ; ଗମନରେ ନରେ ତେଜନ୍ତି ଶମନର ଭୟକୁ । ଗିରିଶ ଆଜ୍ଞାରେ ଗିରିଶ ଅଷ୍ଟ କ୍ଷେତ୍ର ରକ୍ଷକ, ଚଣ୍ଡୀ ଚଣ୍ଡୀ ଭୃତ ଖଣ୍ଡିତ କରେ ଭୟ ସେବକ । ଦୀନବାନ୍ଧବ ମାଧବର ତହିଁ ମାଧବ ମାସେ । ନୃପତି ନନ୍ଦନ ଚନ୍ଦନଯାତ୍ରା ଦେଖି ହରଷେ । ନରେନ୍ଦ୍ର ତଡ଼ାଗେ କର୍ଣ୍ଣେନ୍ଦ୍ର ସୁରେନ୍ଦ୍ର ପରି ହରି, ନାବରେ ସ୍ତବରେ ବିଜୟ କରି ସୁଖେ ବିହରି । ପଛେ ରହି ସ୍ୱଚ୍ଛେ ବରହିପୁଚ୍ଛେ ଦ୍ୱିଜେ ସେବନ୍ତି, ଲଞ୍ଛନ ବ୍ୟଜନ ପବନ କରେ ଧରି ବାସନ୍ତି ।" ଇତ୍ୟାଦି । ର: ହ୍ରା: ।

ଦେଶର ନଦ ନଦୀ, ବନ ପର୍ବତ, ଓଷା ଉପବାସ, ବିବାହ ବନ୍ଦାପନା, ଉତ୍ସବ ମହୋତ୍ସବ, ବଜାର ବାଣିଜ୍ୟ ପ୍ରଭୃତି ବର୍ଣ୍ଣନାରେ କବିଙ୍କ ଦେଶପ୍ରେମର ପ୍ରମାଣ ପୂର୍ଣ୍ଣମାତ୍ରାରେ ଗୁମ୍ଫା ହୋଇ ରହିଛି । ତାହା ବିଭିନ୍ନ ପରିଚ୍ଛେଦରେ ଆବଶ୍ୟକତା ଦୃଷ୍ଟିରେ ଉତ୍ଥାପନ କରାଯାଇଥିବାରୁ ଏଠାରେ ବାଦ୍ ଦିଆଗଲା ।

Digitized by srujanika@gmail.com

# ରସବିଚାର

## ଶୃଙ୍ଗାର ରସ

ଉପେନ୍ଦ୍ର ଭଞ୍ଜ ସ୍ୱୀୟ କାବ୍ୟ, ଜନ୍ଦରେ ଶୃଙ୍ଗାର, ବୀର, କରୁଣ, ଅଦ୍ଭୁତ, ହାସ୍ୟ, ଭୟାନକ, ବୀଭତ୍ସ, ରୌଦ୍ର ଏବଂ ଶାନ୍ତ ରସକୁ ସ୍ଥାନ ଦେଇଛନ୍ତି । ଶୃଙ୍ଗାର ରସ ଯୁଗୋଚିତ ଶ୍ରେଷ୍ଠ ରସସ୍ୱରୂପ ବିବେଚିତ ହେବାରୁ, ସେ ସେହି ରସ ପ୍ରୟୋଗରେ ନିଜର ଅଲୌକିକ ଶକ୍ତି ସାମର୍ଥ୍ୟ, ବୁଦ୍ଧିବୃତ୍ତି ଖର୍ଚ୍ଚ କରି ମୂଳିଭ ଗ୍ରନ୍ଥଗୁଡ଼ିକର ଅଧିକାଂଶ ଚରିତ ଚିତ୍ରଣ କରିଅଛନ୍ତି । "ବିଶ୍ୱରଞ୍ଜ କହିବେ ଉତ୍ତମ ଗୁଣ ଗୀତ । ରସସାର ଶୃଙ୍ଗାର ଚହିଁରେ ହେବ ବ୍ୟକ୍ତ ।" ର: ହା: । "ନବ ରସରେ ସାର, ଅଟେ ଯେ ଲେଖି ଶୃଙ୍ଗାର ।" ଲ: ବ: । "The book and writer both were love's purveyors." (Dante.) ଉପେନ୍ଦ୍ରଙ୍କ ସମର୍ଥନ କରି ବିଶ୍ୱବିଖ୍ୟାତ କବି ଦାନ୍ତେ କହନ୍ତି—ପ୍ରେମର ପ୍ରିୟ ସାମଗ୍ରୀ ହେଉଛି—'ଲେଖା ଓ ଲେଖକ, କବି ଓ କବିତା' । ଏହିପରି ଧାରଣା କବିଙ୍କ ହୃଦୟରେ ବରାବର ଜାଗରୁକ ଥିବା ପାଇଁ ଯଥେଷ୍ଟ କାରଣ ଥିଲା । ସେ ଶ୍ରେଷ୍ଠ ସଂସ୍କୃତ କବିମାନଙ୍କୁ ଆଦର୍ଶ କରି ଲେଖନୀ ଚାଳନା କରୁଥିଲେ । "ଶୃଙ୍ଗାର ଏବ ମଧୁରଃ ପରପ୍ରହ୍ଲାଦରସଃ ତନ୍ମୟଂ କାବ୍ୟମାଶ୍ରିତ୍ୟ ମାଧୁର୍ଯ୍ୟଂ ହି ପ୍ରଣୀୟତେ" ( ସମର୍ଥ-ମବଲମ୍ବ୍ୟେନ ମାଧୁର୍ଯ୍ୟଂ ପ୍ରତିତିଷ୍ଠତେ ) । ( ଧ୍ୱନ୍ୟାଲୋକଃ ) ଶୃଙ୍ଗାରୀ ଚେତ୍ କବିଃ କାବ୍ୟଜାତଂ ରସମୟଂ ଜଗତ୍ ସଏବ । ବୀତରାଗଶ୍ଚେନ୍ନୀରସ ସର୍ବମେବ ତତ୍ ( ଭୋଜରାଜା ) । ଶୃଙ୍ଗାରରସକୁ ଶ୍ରେଷ୍ଠ ରସ ତଥା ଆଦି ରସସ୍ୱରୂପ ମାଘ, ଶ୍ରୀହର୍ଷ, କାଳିଦାସ, ଭବଭୂତି, ଜୟଦେବ, ଭୋଜରାଜ ପ୍ରଭୃତି ଗ୍ରହଣ କରିଥିବାରୁ, ଉପେନ୍ଦ୍ର ଭଞ୍ଜ 'ମହାଜନୋ ଯେନ ଗତଃ ସ ପନ୍ଥାଃ' ନୀତି ଅନୁସରଣ କରିବା ହେଉଛି ପ୍ରଥମ କାରଣ । ୨ୟ କାରଣ—ଯୁଗରୁଚିକୁ ଧରି ଯେ କୌଣସି କବି ଲେଖନୀ ଚାଳନ କରିବାକୁ ବାଧ୍ୟ । ସେ ମଧ୍ୟ ତାହା କଲେ । ମିଲ୍‌ଟନ୍ ପ୍ରସିଦ୍ଧ କବି ହେଲେ ମଧ୍ୟ ସପ୍ତଦଶ ଶତାବ୍ଦୀର ଶେଷଭାଗରେ କମ୍ବେଲ୍ ଶାସନ ସମୟରେ ଅବାସ୍ତବିକ ସାହିତ୍ୟରେ ହାତ ଦେଇଥିଲେ; ଉପେନ୍ଦ୍ର ତାହା କରି ନାହାନ୍ତି । ଯାହା ଯୁଗୋଚିତ, ସୁବିଖ୍ୟାତ ସଂସ୍କୃତ କବିସମ୍ମତ, ତାହାହିଁ କରିଥିଲେ * । ଏହି ବିଂଶ ଶତାବ୍ଦୀରେ ପ୍ରସିଦ୍ଧ କବିମାନଙ୍କ ସାହିତ୍ୟ ପ୍ରଧାନତଃ ଦାର୍ଶନିକ ଭାବସମ୍ବଳିତ । ରବୀନ୍ଦ୍ର, ବାର୍ଣ୍ଣାର୍ଡସ ଇତ୍ୟାଦିଙ୍କ ଲେଖାରୁ ତାହା ପ୍ରମାଣିତ ହୁଏ । ଭାରତ ବର୍ତ୍ତମାନ ଖାଦ୍ୟ, ବାରିଦ୍ର, ଶିକ୍ଷା, ସ୍ୱାସ୍ଥ୍ୟର ଅପେକ୍ଷା ରଖିଛି । ଏଥିକି ଦୃଷ୍ଟି ଦେଇ କବି, ବକ୍ତା, ଲେଖକ, ବୈଜ୍ଞାନିକ, ଆବିଷ୍କାରକ, ଦେଶସେବକ, ଶାସକ ପ୍ରଭୃତି ଚଳିବାହିଁ ଶ୍ରେୟସ୍କର । ଯୁଗଧର୍ମକୁ ବାଦ୍ ଦେଇ କେହି ତିଷ୍ଠି ପାରିବ କି ?

ଶାସ୍ତ୍ରସମ୍ମତ ଧାରା—କବି ଶୃଙ୍ଗାର ରସର ଚିତ୍ର ଆଙ୍କିବାବେଳେ ଶାସ୍ତ୍ରସମ୍ମତ କେତେକ ଧାରା ସମ୍ମୁଖରେ ରଖି ଅଙ୍କନ କରିଛନ୍ତି । ତାହା ସେ ରସପଞ୍ଚକରେ ସ୍ପଷ୍ଟରେ ଏବଂ ଅନ୍ୟାନ୍ୟ ଗ୍ରନ୍ଥରେ ସୂଚନା ମାତ୍ର ଦେଇଛନ୍ତି । "ବାତ୍ସ୍ୟାୟନ ଋଷିଙ୍କି ଯେ ଏ ରସ ଗୋଚର । ଗୀତେ କହେ ଉପେନ୍ଦ୍ର ଭଞ୍ଜ ବୀରବର ।"

---

* The great poet in writing himself writes his time—T. S. Eliot.

Digitized by srujanika@gmail.com

ପୃ୧୬, ର: ଭ୍ରା: । "ଏ ଅଷ୍ଟ ବଂଶର ଅଶ୍ୟାମରେ । ପ୍ରମଦାଙ୍କର ଅଳଙ୍କାର ଏତେ । ପ୍ରତି ପ୍ରତି କରି ରଚଇ ସାହିତ୍ୟଦର୍ପଣ କବିସମ୍ମତେ ହେ ପଣ୍ଡିତେ ।" ବ୍ର: ପ: । "ରସତରଙ୍ଗିଣୀ ଗ୍ରନ୍ଥ, ସାହିତ୍ୟଦର୍ପଣ କବି-ସମ୍ମତକ ଏ ଅଟିବ । ରସାଇବ ଛନ୍ଦ ଗୀତ ନାୟିକା ନାୟକ ଲକ୍ଷଣରେ ପରିପୂର୍ଣ୍ଣ ହେବ । ଉଦ୍ଧବ ଦଶା ଦଶ ପୁଣି ନବ ରସ, ଅଷ୍ଟ ସାତ୍ତ୍ୱିକ କହି ବର୍ଣ୍ଣିଥିବ । ଉତ୍ତମାସ୍ୱ ଉଦ୍ଦୀପନ, ଆଲମ୍ବନ ସଞ୍ଚାରିକା ଭାବ ପୁଣି ମିଶିଥିବ ।" ର: ପ: ।

## ଦୃଷ୍ଟାନ୍ତ

"ଦେହ ଉପରେ ମନ ପ୍ରଭୁ ପ୍ରମାଣ ଧନ ମନର ପ୍ରଭୁ ପ୍ରୀତିରେ । ପ୍ରୀତିର ପ୍ରଭୁ ନାହିଁ ତାକୁ ପୁଣି ପାଶୋରି କେହୁ ଧରିବ ଧୃତି ରେ । ପ୍ରାଣବନ୍ଧୁ । ପୁଣି ଆରତି ମୁହିଁରେ । ମନକୁ ଅନୁରୂପେ ଯୁବତୀ ମିଳେ ତପେ । ଏଣୁ ଦୁର୍ଲ୍ଲଭ କହୁ ରେ ।" ଲା: ବ: । "ଲୋକ୍ତଲେ ନ ପାଇ ପ୍ରମାଣି ଏ ଭାଷା । କାହିଁଗଲୁ ପ୍ରିୟେ ଦେଇ କି ଦଶା ।" (ଭ: ଅ: ) ତେଣେ ଦେଖନ୍ତୁ—

"But of all delightful sounds
of evening or of morn,
The sweetest is the voice of love
That welcomes his return." —R. Southey.

ଶୃଙ୍ଗାରରସ ପ୍ରାୟଶଃ କି ପ୍ରାଚ୍ୟ, କି ପାଶ୍ଚାତ୍ୟ ପ୍ରତ୍ୟେକ ବିଖ୍ୟାତ କବିଙ୍କ ଲେଖାରେ, ଊଣା ଅଧିକ ଭାବ-ମାପରେ ଦେଖାଯାଏ । ଉପେନ୍ଦ୍ରଙ୍କ ଗ୍ରନ୍ଥରେ ଯୁଗସ୍ୱାଦ ଅନୁସାରେ ଷଡ଼ଋତୁ ବର୍ଣ୍ଣନା, ସମସ୍ତ ପ୍ରକାର ପ୍ରାକୃତିକ ଦୃଶ୍ୟ, ବିରହ, ମିଳନ, ବିଚ୍ଛେଦ, ମୃଗୟା, ଦେବଦର୍ଶନ, ତୀର୍ଥଯାତ୍ରା ପ୍ରଭୃତି ପ୍ରତ୍ୟେକ ପ୍ରସଙ୍ଗରେ କ୍ଷୀରରେ ନୀରତୁଲ୍ୟ ତାହା ମିଶି ରହିଛି । ସଙ୍ଗୀୟ ବ୍ୟତୀତ ପରକୀୟାରେ ସେ ହାତ ଦେଇ ନାହାନ୍ତି । ଏପରି କୌଶଳରେ କୃତିତ୍ୱର ସହିତ ସେ ତାହା ଚର୍ଚ୍ଚା କରି ପାରିଛନ୍ତି ଯେ, ଶାସ୍ତ୍ର, ପରମ୍ପରା ମତ ଓ ସାମାଜିକ ସ୍ୱାଦ ଦୃଷ୍ଟିରୁ ତାଙ୍କର ଗ୍ରନ୍ଥଗୁଡ଼ିକ ନିର୍ଦ୍ଦୋଷ ଏବଂ ନିଷ୍କଳୁଷ ବିବେଚିତ ହୁଏ । "ବାନ୍ଧବୀ ଏଥିରେ ଦେଖା-ଯାଉ ନାହିଁ ନାଚିବାର ନୃତ୍ୟକାରୀ । ବେଣୀ ନାସାମଣି ରମଣୀମଣିରେ କରୁ ଅନୁଗ୍ରହ କରି । ବହନ୍ତି ନର୍ତ୍ତିନ ନର୍ତ୍ତିକବରହିଁ ଅଛୁ ନର୍ତ୍ତିକ୍ଷ ବରସ୍ଥ । ବୋଲ ଚରୁଥି ନାସାପୁତ୍ତା ଫୁଲଇ ଶିରଷ୍ଟାଳ ଦେଇ କହ ।" ବୈ:ବି । "ବାଳା ଦୁଃଖେ ଦୁଃଖୀ ବାଳା ସୁଖେ ସୁଖୀ ସମସ୍ତ ପ୍ରକାରେ ମୁହିଁ । ମୋ ଆତ୍ମତ ପାଇଁ କାହିଁ ଥାଉ ପଛେ ଶରଦ ଅମ୍ବୁଜ ମୁଖ ।" ଲା: ବ: । "ନବାଧସ୍ତ ଦେହ ଇତର ନୁହଇ ଯୁବା ବଇକୁଣ୍ଠପୁର । ପରମ ପଦବୀ ଏମନ୍ତ ହୋଇଲେ ଭୋଗ ନୋହୁବ କି ମୋର ।" ଭ: ଅ: । ଏହି ମର୍ମରେ ଇଂରେଜ କବି କହନ୍ତି:—

(Sweet to the miser are his glittering heaps,
Sweet to the father is his first borns birth.)

But sweeter still than this,
than these, than all,
Is first and passionate love—it stands alone. —Byron

Digitized by srujanika@gmail.com

ଗୀତଗୋବିନ୍ଦର ଆଦରସାମ୍ନର ନିମ୍ନୋକ୍ତ ପଂକ୍ତିଗୁଡ଼ିକ ଦେଖନ୍ତୁ:—

"ଧୀର ସମୀରେ ଯମୁନାତୀରେ ବସତି ବନେ ବନମାଳୀ ।
ପୀନପୟୋଧରପରିସରମର୍ଦ୍ଦନଚଞ୍ଚଳକରଯୁଗଶାଳୀ ।
ହରସି ମୁଗ୍ଧରେଶୁପରିହତଦ୍ୱାରେ ଘନ ଇବ ତରଳବଳାକେ ।
ତନ୍ମୟବ ପୀନେ ରତିବପଥିକେ ଗଳସି ଯୁକୃତବିପାକେ ।
ବିଗଳିତବସନଂ ପରିହୃତରସନଂ ଘଟୟ ଜଘନମପିଧାନମ୍ ।
କିଶଳୟଶୟନେ ପଙ୍କଜନୟନେ ନିଧିମିବ ହର୍ଷନିଧାନଂ ।।"

କାଳିଦାସଙ୍କର:—

"ପାଣ୍ଡାଦାବାଂ ବିରହଗୁଣିତଂ ତଂ ତମାସ୍ବାଦ୍ଦୟନ୍ତୀଂ
ନିବେକ୍ଷ୍ୟାବଃ ପରିଣତଶରଚ୍ଚନ୍ଦ୍ରକାସୁ କ୍ଷପାସୁ ।।" (ଉତ୍ତର ମେଘ)

ଏଗୁଡ଼ିକ ମଜୁମଦାର ଗ୍ରହଣ କରନ୍ତି କପରି ! ଯଦି ଏଗୁଡ଼ିକ ଅଶ୍ଳୀଲ ନୁହେଁ, ତେବେ ଭଞ୍ଜଙ୍କର ନାୟିକ ଶୋଭାବର୍ଣ୍ଣନା ଦୋଷାବହ ହେବ କାହିଁକି ? କିନ୍ତୁ ମଜୁମଦାର କହନ୍ତି:—"I cannot resist the templation of saying that all the Upendra Bhanja has composed in the name of sentiment of love or 'Srungara' is 'Bivatsa'।" ଉପେନ୍ଦ୍ର ଭଞ୍ଜ ଶୃଙ୍ଗାର ନାମରେ ଯାହା ରଚନା କରିଛନ୍ତି, ତାହା (ପ୍ରେମ) ଶୃଙ୍ଗାର ନୁହେ, ବୀଭତ୍ସ ମାତ୍ର । ଜନୈକ ବଙ୍ଗ ସମାଲୋଚକ କହନ୍ତି :—"In strongest opposition we have marriage love and its permanent physical rights. Those who think of abestention from sexual intercourse in terms of purity and innocense are hypocrites or ranged with the devil." "ସ୍ୱକୀୟ ପ୍ରେମ ସର୍ବଦା ଦୃଢ଼ ଏବଂ ବାଞ୍ଛନୀୟ; ଏହା ବିରୁଦ୍ଧରେ ଯେଉଁମାନେ ପବିତ୍ରତାର ଦ୍ୱାହି ଦେଇ ସ୍ୱର ଉଠାନ୍ତି ସେହିମାନେହିଁ ଅପବିତ୍ର, ଅସାଧୁ ବା ସଇତାନ ତୁଲ୍ୟ ।" ବିରହି ବିରହିଣୀର ଆଶା, ଆକାଂକ୍ଷା, ଦୈନ୍ୟ, ଦ୍ୱିଧା, ଉଦ୍‌ବେଗ, ଉତ୍କଣ୍ଠା ଚିତ୍ରଣରେ କବି ପବିତ୍ରତା, ଅନାବିଳତା ପ୍ରତି ଦୃଷ୍ଟି ରଖିଛନ୍ତି । ଯେ କୌଣସି ପ୍ରକାର 'ଲମ୍ପଟ, ବଟଗାଡ଼,' ଆବିଳତା ତାଙ୍କର ଅସହ୍ୟ ହୋଇଉଠେ । "ଭେଟେ ଭେଟେ ମାର ଉଚାଟେ ସ୍ନେହେ ନାହିଁ ପୁରୁଷ । ଲକ୍ଷଣେ ଲକ୍ଷଣେ କଲେ ଯେ କ୍ଷଣେ କ୍ଷଣେ ବିଳାସ । କପଟ ଦର୍ଶନ ଲମ୍ପଟ ବଟଗାଡ଼ ଇ ବୃତ୍ତି । ଯେ ସୁଧୀ ସୁଧୀରେ ବୋଲନ୍ତି କ୍ଷେତ୍ରବରତି ଏହି ।" ର: ହା: । "O powerfull love ! that in some respects, makes a beast a man, in some other a man a beast." Shakespeare.

## କବିଙ୍କ ଅଭିପ୍ରାୟ

ପରିଶେଷରେ ଶୃଙ୍ଗାର ରସ ବିଷୟରେ କବି କହନ୍ତି :—

"ଏରସେ ମନ ନ ଦେଇ ଯାହାର ଦେହ ନରପଶୁ ଯେନ । ଯେଉଁ ରସରେ ବ୍ରହ୍ମା ବଶ ହୋଇଛନ୍ତି କାହିଁଛି ତାହା ସମାନ ।" ଲା: ବ: । ବାତ୍ସ୍ୟାୟନ, ଭୋଜରାଜାଙ୍କ ତୁଲ୍ୟ ଉପେନ୍ଦ୍ରଙ୍କ ଦୃଷ୍ଟିରେ ଶୃଙ୍ଗାରରସ ଏତେ ସରସ ଯେ, ସେ କହନ୍ତି, "ଜାଣି ନ ଥିଲେକୁ ଏ ରସ ଏମନ୍ତ ସ୍ମରିକୁ ଦହିଲେ ହର । ଜାଣିଲା ଦିନରୁ ଯୁବତୀଙ୍କ କଲେ ଅର୍ଦ୍ଧ ଅଙ୍ଗେ ଅଙ୍ଗୀକାର । ଆଜନ୍ମ ବ୍ରହ୍ମଚାରୀ ପରିଶେ କେ ବଡ଼ ତୁହି ଋଷ୍ୟଶୃଙ୍ଗ ଠାରୁ । ନିଜ ଯୋଷା ଛାଡ଼ି ଶିକ୍ଷା କଲେ ରସ ରୂପା ଯାଇ ଜୀବ ଗୁରୁ । ଲା: ବ: ।

Digitized by srujanika@gmail.com

## ବୀରରସ

ବୈଦେହୀଶବିଳାସରେ ବୀରରସର ଅଯଥା ଚଳ ସନ୍ନିବେଶିତ । ରାମ ଅବତାରର ଉଦ୍ଦେଶ୍ୟ—ଦୁଷ୍ଟଦଳନ ସନ୍ଥ ପାଳନ; ଦାନବଙ୍କୁ ଦମନ କରି ଦେବମାନଙ୍କୁ ରକ୍ଷା କରିବା । "ବାଡାସ୍ତେ ମାରିତ ଲକ୍ଷେ ଯୋଜନେ ପକାଇ । ବଜ୍ରବସୁ ଅସ୍ତ୍ରେ ଦେଲେ ସୁବାହୁ ଜଳାଇ । ବଚ୍ଛେଦଲେ ଲକ୍ଷ୍ମଣ ସମସ୍ତ ସୈନ୍ୟ-କରି । ବଣିକରୁଁ ତାକୁ ସେ କୁଠାର ପାଣି ପରି ।" ଛ ୭, ବୈ: ବି: । ସୁଭଦ୍ରା ପରିଣୟରେ ଅର୍ଜୁନଙ୍କର ଗୋଶୃଙ୍ଗ ଦାନବନ୍ଧନ, ବଳରାମ ତଥା ଯଦୁସୈନ୍ୟଙ୍କ ସହ ସଂଗ୍ରାମ ଇତ୍ୟାଦି ବୀରରସର ପ୍ରମାଣ ଦିଏ । "ସୈନିକ କୃତ ହୋଇ ଦ୍ରୁତେ, ଯେସ୍ତୁ ଗର୍ବିତ ପୃଥ୍ୱୀ କମ୍ପିତ, ଭୂମି ମଣ୍ଡଳ ଉତ୍ପାତ ଜାତ ମାନବେ ଥରେ ଯେ ।" ଛ ୭, ସୁ: ପ: । "ନୂତନ ନୂତନ ସାଧନ କରିଣ ବାଣଗଣ ବନ୍ଧ ଶିଖିଛୁ ।" ଛା: ଭୂ: ଲବଣୀବତୀ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାଳ୍ପନିକ କାବ୍ୟ ହେଲେ ମଧ୍ୟ ସେଥିରେ ବୀରରସ ପାଇଁ ଯଥାଯଥ ସ୍ଥାନ ରଖାଯାଇଛୁ । ଯଥା—

"ଖସି ଯାଇଛୁ କି ଯୋଦ୍ଧା ମସ୍ତକରୁ ଉଷ୍ଣୀଷ ଏମନ୍ତ ଦିଶେ ରେ ।" ଲ: ବ: ।
"କି ମନ୍ତ୍ର ସାଧନ ଚଳ ପ୍ରସ୍ତର ଘଟଣ ଗୋ ।" ଲ: ବ: । "ପୁଣି ଧନୁର୍ଦ୍ଧର ପଣ । ଲକ୍ଷ୍ୟେ ଛବିଲେ ଲକ୍ଷ୍ମଣ ।" କୋ: ବ୍ର: ସୁ: । "ନ ଚଳ ଚଳ ଶୃଙ୍ଗାର, ବୀରରସ ବିରୋଧୀ ବଳାତକାର ।" ଛ ୨୮, କୋ: ବ୍ର: ସୁ: ।

## କରୁଣ

ବିରହ, ବିଚ୍ଛେଦ, ମୃତ୍ୟୁ ବେଳେ କରୁଣରସର ଚଳ ସାଧାରଣତଃ ଦେଖାଯାଏ । ଯଥା:—'ଯାହା ହେଲା ତୋର ମୋର ବିଚ୍ଛେଦ । ନୋହିଲା କାହିଁପାଇଁ ଶିରଚ୍ଛେଦ । ଇତ୍ୟାଦି । ଲ: ବ: "। "ରାବଣ ଯେ ମାୟାସୀତା କରନ୍ତେ ଚ୍ଛେଦନ ସେ ଶବକୁ ଆଣିଲେକ ଧରି । ରୋଦ ଶିର ଉରେ କର ତାଡ଼ ନିରନ୍ତର ମୂର୍ଚ୍ଛି ମରିଲେ ଯୁଗ ପରି ।" ର: ପ: ।

## ଅଦ୍ଭୁତ

ବାସ୍ପାବତୀ ପିଣ୍ଡିଥିଲା ଅଗମ୍ୟ କାନନ । ଆପଣେ ଅମ୍ବିକା ଯାଇ କରି ସଞ୍ଜୀବନ...... ।" ଲ: ବ: । ସିଂହଳରେ ଐନ୍ଦ୍ରଜାଲିକର ବିଦ୍ୟା—"ଦେଖାଉଁ ଦେଖାଉଁ ଅଭିଷେକ ମହୋତ୍ସବ । ଚନ୍ଦ୍ରାନନୀକି ଦେଖାଇଲା ଆନ ଛବି । କର୍ଣ୍ଣାଟ ରାଜନନ୍ଦନ ଭ୍ରମ ଆଗେ ଉଭା । ବିଶ୍ୱମ୍ଭର ଅଗେ ବିଶ୍ୱକେଉ ଯଥା ଶୋଭା ଯେ ।" ଲ: ବ: । ଅହଲ୍ୟାଶାପବିମୋଚନ ପ୍ରସଙ୍ଗରେ—"ବାଟେ ସେ ବନରେ ପଡ଼ିଥିଲା ଦିବ୍ୟ ଶିଳା । ବରିଷେଁ ରାମଚରଣ ଲାଗି ସେ ଅବଳା । ବିସ୍ମୟ ହୋଇ ଅନାଇ ଛିବ ରଘୁପତି । ବନ୍ଦିତାର ବନ୍ଦିତାର ପ୍ରଭୁ ଏକାକୃତି ।" ବୈ: ବି: ।

## ହାସ୍ୟ

"ଯେଉଁ ଯୁବତି ଯେଉଁ ବୃଦ୍ଧାର ଚହିଁ ଯେ । ଥିଲେ ପରିହାସ ସେ ତାହାଙ୍କୁ କହି । ହେବ ଭ୍ରମରର ଯୋଗରେ ଯୋଗ, ଆମ୍ଭ ମଧ୍ୟସ୍ଥ ହୁଅ ଗୋ ବେଗ । ରାଧିକା ଦୂତୀ କୃଷ୍ଣରେ ଭ୍ରେଷ୍ଟ ତମସେ ହୋଇବ ଯେ..........." । କୋ: ବ୍ର: ସୁ: ।

Digitized by srujanika@gmail.com

"ବସୁସୀ ଏ ଷଷ୍ଠ ଗୁଳ ଗୁଳ, ପଣ୍ଡାସ କ ଜୀବନା କଲ ।
ଘନରସ କ ଗୃତକ ନ ମିଅନ୍ତା ଲକ୍ଷ୍ମଣେଶ୍ଚ କ ନୁହନ୍ତା ଫଳ ।"... କୋ: ବୃ: ସୁ:

ଭୟାନକ

"ରାକ୍ଷସୀ ତା ବେକ ପାଦେ ଲେଷି ଦେଖି ମୋଦେ ଦଶନଖେ କନ ମୁଖ ଘଷି ।
ରାବ-କଲେ ହେ ଲକ୍ଷ୍ମଣ ଧନୁଶର ଆଣ ପୁଣି ରେ ରାବଣ ଏଥି ଆସି ।" ର: ପ: ।

ବାତ୍ସଲ୍ୟ

"ବାତ୍ସଲ୍ୟରସ ବର୍ଣ୍ଣିନେ ରାମଭଦ୍ରର । ବଚନ ମନ ପବନ ହୋଇଲା ମୋର ।" ଇତ୍ୟାଦ,
ଛାନ୍ଦ, ବୈ: ବି: ।

"ଶୁକ ଶିଶୁଙ୍କ ପାଳନକୁ ହୃଦସ୍ଥ କରାଇ ଲୋକରେ...... ।" ଲ: ବ: ।

ରୌଦ୍ର

"ଋଷିଯାଗ ରକ୍ଷଣରେ ମାର୍ଗେ ମାର୍ଗଣରେ ତାଡ଼କା ରାକ୍ଷସୀ କଲେ ବଧ ।
ରାବଣର ନାଶ ଶେଷେ କାନ୍ତାକୁ ହରଷେ ପରବେଶ କଲେ ଅଗ୍ନିମଧ୍ୟ ।" ର: ପ: ।

ଶାନ୍ତ

"ବସୁଧାଲୁଙ୍ଗ କରଣ ଲବ କୁଶ ବେକ । ବୈକୁଣ୍ଠ ଗମିବା ରାମ ସ୍ୱଜନକୁ ଘେନ ଯେ ।" ବୈ:ବି:। "ନୃପତ୍ର ପଦବୀ ଦେଇଣ ପୁତ୍ରେ । ଚଳିଲେ ପୁରୁଷୋତ୍ତମ କ୍ଷେତ୍ରେ ।" ଲ: ବ: । "ରୁଭୁକ୍ଷାରୁ ବଳବାନ ଷଡ଼ିପୁ ଜନନ ନ ଘେନ ନିଜ ଅନୁଜ ଭୂଷ । ରାଜ୍ୟେ ହୁଅନ୍ତେ ନୃପତ୍ର ଶେଷ ହେଲେ ରାଡ ପିଧାଙ୍କରେ ତୋଷେ ମୁନିବେଶ ।" ର: ପ: ।

ଭଞ୍ଜଙ୍କ କାବ୍ୟ କବିତା ନବରସ ସମ୍ବଳିତ । ସେଥିରୁ ସାଧାରଣ କେତେକ ଦୃଷ୍ଟାନ୍ତ ଦିଆଗଲା । ତାହା କବି ନିମ୍ନମତେ ସ୍ପଷ୍ଟ କରିଛନ୍ତି :—"ଦେଖି ନୃପଜ ଚରିତ ଦେବକୁ ଦେବେ କଥିତ, ନବରସେ କବରନ୍ଧ ଏହି ହେ । ଶୃଙ୍ଗାରେ ଗୁରୁ ନିଷ୍ପସ୍ଥ, ବୀରରସେ କେରୁ ପ୍ରାପ୍ତ, କରୁଣରେ କଦ୍ରପଣ ବନ୍ଧ ହେ । ଅଦ୍ଭୁତେ ମଙ୍ଗଳ ସତ ହାସ୍ୟରେ ମନ୍ଦ ବଦ୍ଧତ ଭୟାନକେ ତମ ପର ଜାଣ ହେ । ରଦ୍ଧବର ବୀଭତ୍ସରେ ବୁଧ ଏ ରୌଦ୍ରରସରେ ଶାନ୍ତରେ ଚନ୍ଦ୍ରମା ପନ ଜାଣ ହେ ।" ଛାନ୍ଦ, ଲ: ବ: ।

---

Digitized by srujanika@gmail.com

୧୬

## ପ୍ରେମତତ୍ତ୍ୱ

ସଚରାଚର ବ୍ରହ୍ମାଣ୍ଡର ଲୀଳା ଖେଳା, ସୁଖ ଦୁଃଖ, ମହତ୍ତ୍ୱ ପବିତ୍ର ପ୍ରତ୍ୟେକ କାର୍ଯ୍ୟ ପ୍ରେମ-ପ୍ରୀତି ଭିତ୍ତି ଉପରେ ପ୍ରତିଷ୍ଠିତ । ତାହା ପୂର୍ଣ୍ଣରୂପେ ଅନୁଭବ କରି ହୁଏ ଦାମ୍ପତ୍ୟ ଜୀବନରେ । କବିଗୁରୁ ଉପେନ୍ଦ୍ର କହନ୍ତି—

"ପ୍ରୀତି ହୋଇ ଯେବେ ଏକେ ମଧୂର ।
କ୍ଷୁଧା ତୃଷା ପୁଣି ହୁଏ ବଧୂର ।
ପୁଣି ଉଭବେ ହୋଇଲେ ଦମ୍ପତି
ପଦତଳେ ମିଳେ ଇନ୍ଦ୍ର ସମ୍ପତ୍ତି ।" ର: ହା: ।

ଦମ୍ପତି ଅବସ୍ଥାକୁ ଆସିବା ପୂର୍ବରୁ ପାତ୍ର ପାତ୍ରୀ ମଧ୍ୟରୁ ଜଣେ ଅନ୍ୟର ପୂର୍ଣ୍ଣ ପରିଚୟ ଲାଭ କରିବା ନିତାନ୍ତ ଆବଶ୍ୟକ । ପ୍ରେମବନ୍ଧନ କେବଳ ସ୍ଥୂଳ ଚକ୍ଷୁ ମିଳନରେ ପର୍ଯ୍ୟବସିତ ହେବା ଉଚିତ ନୁହେଁ, ତାହା ହୃଦୟ ସହିତ ହୃଦୟର, ମନ ସହିତ ମନର, ଆତ୍ମା ସହିତ ଆତ୍ମାର ମିଳନରେ ପର୍ଯ୍ୟବସିତ ହେବା ଆବଶ୍ୟକ । ତାହାହେଲେ ବିବାହବନ୍ଧନରେ ଦୃଢ଼ତା ଜନ୍ମେ, ସୁଖ ସୌହାର୍ଦ୍ଦ୍ୟ ବଢ଼େ, ମାନସିକ ବଳ ବହୁଗୁଣିତ ହୁଏ ଓ ମହତ୍ତ୍ୱ କାର୍ଯ୍ୟ ପାଇଁ ପ୍ରେରଣା ଜାଗ୍ରତ ହୁଏ । ନାୟକ ନାୟିକାଙ୍କ ପୂର୍ଣ୍ଣ ପରିଚୟ ପାଇଁ କବି ସ୍ୱକାବ୍ୟରେ ସର୍ବଜନସମ୍ମତ କେତେକ ମତ ଅବଲମ୍ବନ କରିଛନ୍ତି । ସଖୀ ସହଚରୀ, ଦୂତ ଦୂତୀ, ନଟ ନଟୀ, ଐନ୍ଦ୍ରଜାଳିକ, ବିଦୂଷକ, ବୋଇତଆଳ, ବ୍ରହ୍ମଚାରୀ, ପୋଷା ଶୁକ ସାରୀ, ମାଳୀଣୀ, ସନ୍ନ୍ୟାସିନୀ, ପାଠପଠନୀ ପ୍ରଭୃତିଙ୍କ ସାହାଯ୍ୟରେ ସେ ପ୍ରେମିକ ପ୍ରେମିକାଙ୍କର ଚିତ୍ରପଟ ଦର୍ଶନ, କୁହୁକ ମନ୍ତ୍ରପ୍ରଭାବରେ ଦର୍ଶନ, କଥୋପକଥନ, ମିଳନ କରାଇଛନ୍ତି । ନାୟକ ନାୟିକାଙ୍କ ପୂର୍ଣ୍ଣ ପରିଚୟ ପାଇଁ ସେମାନଙ୍କ ସାକ୍ଷାତ୍ ଦର୍ଶନର ଦେବାଳୟ, ବନ, ଉପବନରେ ବ୍ୟବସ୍ଥା କରିଛନ୍ତି । ଏପରି ଭାବରେ ପାତ୍ର ପାତ୍ରୀ ହୃଦୟରେ ପ୍ରେମବୀଜ ଅଙ୍କୁରିତ କରି ପତ୍ର ଆଦାନ ପ୍ରଦାନଦ୍ୱାରା ତାହା ଦୃଢ଼ୀଭୂତ କରିଅଛନ୍ତି । ପରିଶେଷରେ କବି ଶାସ୍ତ୍ରସମ୍ମତ ରୀତିରେ ପାଣିଗ୍ରହଣବିଧାନ ନିର୍ବାହ କରି 'ବିଚ୍ଛେଦ' ବର୍ଣ୍ଣନାରେ ପ୍ରେମର ଶ୍ରେଷ୍ଠତା ପ୍ରତିପାଦନ କରିଅଛନ୍ତି ।

### ପ୍ରେମରସର ଶ୍ରେଷ୍ଠତା

ନର ନାରୀର ସହଯୋଗରେ ସଂସାର ବିଭବସମ୍ପନ୍ନ ହୁଏ, ସମୃଦ୍ଧ ହୁଏ ଓ ସୁନାର ସଂସାରରେ ପରିଣତ ହୁଏ । ପଶୁ, ପକ୍ଷୀ, ଦେବ, ଦାନବ, ମାନବ ସମସ୍ତେ ପ୍ରେମର ବିଶାଳ ଆବେଷ୍ଟନୀ ମଧ୍ୟରେ ଆବଦ୍ଧ । ତାହାହିଁ ସୃଷ୍ଟିର ନିୟମ । ତାହା କେହି ଲଙ୍ଘନ କରି ପାରେ ନାହିଁ । କବିସମ୍ରାଟ ପ୍ରେମ ଉପାଦାନର ଶ୍ରେଷ୍ଠତା ଉପଲକ୍ଷେ ରସଲେଖାରେ କହନ୍ତି—

"ପ୍ରୀତିରେ ପକ୍ଷୀ ମଲ୍ଲ, ପ୍ରୀତିରେ ଦ୍ରବେ ଶିଳା",

ଅନ୍ୟତ୍ର କହନ୍ତି—

"ମନ ଉପରେ ତ ରଜା ପୀରତି, କେହି ପାରିବ ମନୁଷ୍ୟ ବରତି ।
ପଶୁମାନେ ବଶ ହେଲେ ଏ ରସେ, ଯେହୁ ପାଷାଣ ସେ ଏଥି ନ ରସେ ।"

Digitized by srujanika@gmail.com

## ଚାନ୍ଦପାନ୍ଦୀ ପ୍ରସଙ୍ଗ ଶ୍ରବଣ

ଏହି କାବ୍ୟରେ କବି ନାୟକ ନାୟିକାର ହୃଦୟ-କ୍ଷେତ୍ରରେ ପ୍ରେମ-ବୀଜ ବୁଣିବା ପାଇଁ ସର୍ବପ୍ରଥମେ ଶ୍ରବଣେନ୍ଦ୍ରିୟର ସାହାଯ୍ୟ ଗ୍ରହଣ କରିଛନ୍ତି । ଲବଣ୍ୟବତୀରେ ନାୟକ ପ୍ରଥମେ ବୋଇତଆଳ ଓ ଶୁକମୁଖରୁ ନାୟିକାର ରୂପ ଗୁଣ ବର୍ଣ୍ଣନା ଶୁଣି ଆକୃଷ୍ଟ ହେଲା । "କେଉଁ ଦେଶରୁ ଆଗତ"—ପ୍ରଶ୍ନର ଉତ୍ତରସ୍ୱରୂପ ସେ କହିଲା—

"ଯେଉଁ ଲବଣ୍ୟବତୀର ସମ୍ଭବ ସ୍ଥାନ,
ତହିଁ ଅପୂରୁବ କେଉଁ ଦ୍ରବ୍ୟମାନ ।
ଲକ୍ଷ୍ମୀ ପରିପୂରିତ ସେ ସବୁ କାଳେ,
ଏବେ ଅଧିକ ରାଜକୁମାରୀ ବଳେ ।"

ରାଜକୁମାରୀ ଭୂମିଷ୍ଠ ହେଉଁ ହେଉଁ ସିଂହଳଦ୍ୱୀପ ଅଧିକତର ଶ୍ରୀସମ୍ପନ୍ନ ହେଲା । ଶୁଣି ମିତ୍ର, ସ୍ୱୟଂ ରାଜକୁମାର ତାହା ବୁଝିଗଲେ । ଲବଣ୍ୟବତୀ ବିଷୟରେ ଅଧିକ ତଥ୍ୟ ଜାଣିବା ପାଇଁ ସେମାନଙ୍କ ବ୍ୟାକୁଳତା ବଢ଼ିଲା । ସୁବିଧା ପାଇ ସେ କହିଲା—

"ଯେତେ କବି ବର୍ଣ୍ଣିଛନ୍ତି ଯେତେ ନାରୀ ।
ଠିକେ କହି ରମ୍ଭା ରତି ନୋହେ ସରି ।
ବଡ଼ କରି ବୋଲନ୍ତି ଲବଣ୍ୟବତୀ ।"

ଅଧିକରୁ ଅଧିକ ଶୁଣିବା ପାଇଁ ରାଜକୁମାରଙ୍କ ମନ ବଳକା ଦେଖି, ସେ କହିଲା—

"ଅଙ୍ଗେ ଅଛି ନବ ପୁଷ୍ପ ନବ ପକ୍ଷୀ, ଏକ ଏକ ଅଙ୍ଗେ ଲକ୍ଷି ରହେ ଆଖି ।
ଭିଆଇଛି ଗୁଣି ଆଣି ଶୋଭା ସାର, ଜଗତ୍ରୟ ଜଙ୍ଗମ ମୂରତି ମାର ।"

ଚତୁର୍ଦ୍ଦିଗର୍ଣ୍ଣକ ଗୀତରେ ନାୟିକାର ରୂପ ଗୁଣ ବର୍ଣ୍ଣନା କରି ସେ ଶେଷରେ କହିଲା—"ତାହା ଶୋଭା କହିଲେ ସରିବ ନାହିଁ । ପୂର୍ବେ ନ ଥିଲା, ନୋହିବ, ଏବେ ନାହିଁ ।" "କେମାକୁ କର ବର" ବୋଲି ରାଜାଙ୍କ ଆଦେଶ ଥିଲେ ମଧ୍ୟ "କନ୍ୟା ଅନୁରୂପେ ଆଉ ବର ନାହିଁ" କହି ବୋଇତଆଳ ନୀରବ ରହିଲା । ତାହା ଶୁଣି ମନ୍ତ୍ରିକ କହିଲା—"ଆମ୍ଭ ନୃପତିସୁତ ନୂତନ ମାର", "ହୋଇବ କି କାର୍ଯ୍ୟ ଉଦ୍‌ଯୋଗ କଲେ ।" ବୋଇତଆଳର ଶୁକ ତାହା ଶୁଣି ସ୍ୱୀକାର କଲା । "ଶୁଣି କୁମର ବର ଆଶ୍ଚର୍ଯ୍ୟ ଘେନ । ବୋଲେ ରୂହ ଦେଖିଛୁ କି ମେଧାବନୀ ।" "କୀର କହିଲା ସେ ରସାଭୂଷା ଯୋଷା । ଶିଶୁକାଳରୁ ମୁହିଁ ତାହାଙ୍କ ପୋଷା ।" ଏହିପରି ବୋଇତଆଳ ଓ ଶୁକ ରାଜକୁମାର ହୃଦୟରେ ପ୍ରେମବୀଜ ରୋପଣ କଲେ । କୋଟିବ୍ରହ୍ମାଣ୍ଡସୁନ୍ଦରୀରେ ମିତ୍ରମାନଙ୍କ ସହିତ ରାଜକୁମାର ବନବିହାର କରୁଥିବା ବେଳେ କୋଟିବ୍ରହ୍ମାଣ୍ଡସୁନ୍ଦରୀର ପ୍ରସଙ୍ଗ ଶୁଣି ପ୍ରେମାବିଷ୍ଟ ହେଲେ । "ସୁରଭି ପଣରେ ସୁରଭି ଗୁଣରେ ସୁରଭି ସୁରେଶ ନନ୍ଦନା" ପ୍ରଭୃତି ରୂପ ଗୁଣ କୀର୍ତ୍ତନ ଶୁଣି "ବୀର ବୋଲେ ହୃଦ କୁମୁଦକୁ ମୋହୁ ବଧୂକାନ୍ତି ବଧୂ-କରଣ ।" ପ୍ରେମିକ ପ୍ରେମିକା ହୃଦୟରେ ପ୍ରେମର ଉଦ୍ରେକ ପାଇଁ କବି କାବ୍ୟରେ ସାଧାରଣତଃ ଏହି ରୀତି ଅବଲମ୍ବନ କରିଛନ୍ତି ।

## ଚିତ୍ରପଟ ଦର୍ଶନ

ଚିତ୍ରପଟ ଦର୍ଶନରେ ନାୟକନାୟିକାର ପ୍ରେମପ୍ରବଣ ହୃଦୟ କପରି ବିଗଳିତ ହୋଇ ଉଠେ, ତାହା ନିମ୍ନୋକ୍ତ ପଂକ୍ତିରୁ ବୁଝାଯାଏ । ନାୟକ କହେ—"କି ସଙ୍ଗୀତ, ନୟନର କି ତପ । ଦେଖିଲିଟିକି ସେ ବାଳା ସ୍ୱରୂପ ।" ସେ ମନେ ମନେ ଅପୂର୍ବ ଆନନ୍ଦ ଅନୁଭବ କରି ପରିଶେଷରେ "କଲି ଏହି ଭରସା, ପ୍ରାପତ ମୋତେ ହୋଇବ ସୁଦୃଶା ।" ଲ: ବ: । ଚିତ୍ରପଟ ଦର୍ଶନରେ ନାୟିକାର ହୃଦୟ ପ୍ରେମାପ୍ଳୁତ ହେବା ପ୍ରସଙ୍ଗ କବି କୋଟିବ୍ରହ୍ମାଣ୍ଡସୁନ୍ଦରୀରେ କହନ୍ତି । ଯଥା:—

"ସଖୀ ସଙ୍ଗେ ସୁମୁଖୀ ସେ ଚିତ୍ର ଦେଖି ଦେଖି
ଗତ ଦର୍ଶନ ସୁରୁଷେ ରଖିଲି ସେ ଆଖି ।

ସେ ରଞ୍ଜନ ରଞ୍ଜନ ସେ ପ୍ରଥମା ପିଉଲା
ସାରଗାରଗୁଣା ଅଠାକାଠରେ ଲଗିଲା ।" । ଇତ୍ୟାଦି ।

ସେ ଚିତ୍ରପଟ କେମାର ଅତ୍ୟନ୍ତ ପ୍ରିୟସାମଗ୍ରୀ ହେବାରୁ ସେ "ବନ୍ଦୀ ଆବାସ କଣେ ପଟକୁ ଥୋଇଲା । କେବଳ ହସ୍ତରେ ଧରି ବାହାର ନ ହେଲା ।" ପୂର୍ବ ଦୃଷ୍ଟ ଛବୀ ପରି ପ୍ରତି ନାୟିକା କମେ କମେ ଏପରି ପ୍ରେମାବିଷ୍ଟ ହେଲା ଯେ, ତାକୁ 'ଦଶ କାମଦଶା'—ନୟନପ୍ରୀତି, ମନଃସଙ୍ଗ, ସଂକଳ୍ପ, ଜାଗର, କୃଶତା, ଅନବସ୍ଥିତତା, ଲଜ୍ଜାତ୍ୟାଗ, ଉନ୍ମାଦ, ମୂର୍ଚ୍ଛା, ମରଣ ( ମରଣାର୍ଥକ ଚେଷ୍ଟା ) ଭୋଗ କରିବାକୁ ପଡ଼ିଲା ।

## ମାୟାରେ ଦର୍ଶନ

ନାୟକ ନାୟିକାର ଦେଖା ସାକ୍ଷାତ କେତେବେଳେ ମାୟାରେ, କୁହୁକମନ୍ତ୍ର ବଳରେ, କେତେବେଳେ ସ୍ୱପ୍ନରେ ହୁଏ । ଲାବଣ୍ୟବତୀରେ ନାୟକ କହେ—

"ଯେବେ ଏ ଯୁବ ବୟସେ ବିବାହରାମା ନାହିଁ ପାଶେ କି ଲାଭ ତହୁଁ ନୃପତି ସମ୍ପତ୍ତି ଥାଇ । ଆଉ ତେ ସେ ଚନ୍ଦ୍ରଲି ଶିବ । ତାକୁ ଦେଖାଅ ନୋହିଲେ ଯାଉ ଏ ଜୀବ ।" ତେଣେ ନାୟିକା କହେ—

"ମୋହିସମ କରମହୀନ । କାହିଁ ପତି ସଙ୍ଗ ନାହିଁ ଲଭି ଯୌବନ ।"

ନାୟକ ଯେଉଁ ଉଦ୍ଦେଶ୍ୟରେ ଶିବଙ୍କୁ ମନକଥା ଜଣା କରନ୍ତି, ନାୟିକା ସେହି ଉଦ୍ଦେଶ୍ୟରେ ଶିବାଙ୍କୁ ପ୍ରାର୍ଥନା କରି କହନ୍ତି—"ଦୁର୍ଗା ମୋ ଦୁର୍ଗତି ହର" ଫଳତଃ "ହର ଉମା ଦୟା କଲେ ସେ ନାରୀ ପୁଂସେ ।"

"ନିଦ୍ରାବଶରେ ସ୍ୱପନ ଦେଖିଲେ ସତ ବିଧାନ
ଏକ ଯୋଗିନୀ ପ୍ରବେଶ କୁମାର ପାଶେ ।
କର ଧରି ନିଦ୍ରା ଭାଙ୍ଗିଲା,
ଗଗନମାର୍ଗେ କୁମାରୀ ପୁରକୁ ନେଲା ।

Digitized by srujanika@gmail.com

ବୋଇଲା ଲାବଣ୍ୟବତୀ ଅଟଇ ଏହି ଯୁବତୀ
ଚନ୍ଦ୍ରଭାନୁଙ୍କ ନନ୍ଦିନୀ ଏଥର ।
ସଖୀ ବେନି ଚରଣପାଶେ ଶ୍ରୀନନ୍ଦନ ନନ୍ଦ୍ରାବଶେ
ମନାଇ ପାଉଁଲେ ବେଗ କର ନାଗର ।
ଏତେ କହି ହେଲା ଅନ୍ତର ।
ଶୋଭା ଦେଖି ମୋହ ହୋଇ ରହେ କୁମର ।"

ଲାବଣ୍ୟ ପ୍ରତିମା ଦେଖି ଦେଖି କହୁ ସମସ୍ତ ଅଗୋଚର ହେଲା । ରାଜକୁମାର ସମସ୍ତ ନଷ୍ଟ ନ କରି ଲାବଣ୍ୟବତୀର "ଜାନୁ ଧରି ଦେଲେ ଝୁଲଇ, ସଂସାରର ଲାଗି ନିଦ୍ରା ବିନାଶ ହୋଇ ।" ରାଜନନ୍ଦିନୀ ସହସା ସମ୍ମୁଖରେ ଥିବା ରାଜକୁମାର ଦେଖି, ଦେଖି ପାରିଲା ନାହିଁ । ହୃଦୟରେ ନାନା ଭାବ ଖେଳି ଉଠିଲା । ସେ—

"ଭାବୁଛି ନୃହଇ ମାର ନାହିଁ ଫୁଲ ଧନୁଶର
ସୁଧାକର ନୋହେ ତହିଁ କଳଙ୍କ ଅଛି ।
ଆଉ ଦେବତାମାନଙ୍କୁ କପାଁ ଆଣିବା ମନକୁ
ମୋହର ସୁକୃତ ଏ ପୁରୁଷ ହୋଇଛି ।
ମୋର ପୁଣି ସୁକୃତ କେତେ,
ହେବାକୁ ଏମନ୍ତ ଶୋଭା ନାଥ ଜଗତେ ।

ନକଟେ ଗୋକୁଳେ ହରି ମୋହନ ରୂପକୁ ଧରି
ଥିଲେ ନାଶ କରିବାକୁ ଅବନୀଭାର ।
ଏତେ ବେଗେ ଅବତାର କପାଁ ହୋଇବ ତାଙ୍କର
କି ମୂର୍ତ୍ତିମନ୍ତ ଉପମାଦ୍ରବ୍ୟଙ୍କ ସାର ।
ଏରୂପେ ବିଚାରୁ ସୁକେଶୀ,
କ୍ଷୀର ନୀର ପ୍ରାୟ ମନ ପୁରୁଷେ ମିଶି ।"

ରାଜକୁମାର—

"ଏକାଳେ କରକୋରକ କରି ତରୁଣତିଳକ
ବୋଇଲା ହେ ଜୀବେଶ୍ୱରି ବିନସ୍ତି ଘେନ ।
ଚରଣେ ଅଳତା ପରି ପଛେ ପଛେ ଗୁଞ୍ଜ ସରି
ଅନୁସରି ଥିବାକୁ ମୋ ହେଉଛି ମନ ।
ମୋତେ ଦିଅ ବଚନ ଭାଗ୍ୟ,
ହେଲିଣି ମୁଁ ସବୁମତେ କୃତାର୍ଥ ଯୋଗ୍ୟ ।"

'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ମାୟାପ୍ରସ୍ତାବରେ ନାୟକ ନାୟିକା ମାନଙ୍କୁଁ ମଠ, ବନ, ଅଟ୍ଟାଳିକା ପରିଶୋଭିତ ପର୍ବତ ପୀଠରେ ମିତ୍ର ଓ ସଖୀ ସହଚରୀ ସହିତ ଏକତ୍ରିତ ହେଲେ । ଅତ୍ୟନ୍ତ ଚମତ୍କାର ଓ ଶିଷ୍ଟାଚାର ସମ୍ମତ ରୀତିରେ କେବଳ ଦର୍ଶନ ପାତ୍ରପାତ୍ରୀଙ୍କ ମଧ୍ୟରେ ଘଟିଛି । ମାୟାପ୍ରସ୍ତାବରେ କୋଟିବ୍ରହ୍ମାଣ୍ଡ-ସୁନ୍ଦରୀର ସଖୀ ଗହଣରେ ଆବିର୍ଭାବ:—

Digitized by srujanika@gmail.com

"ଏମନ୍ତ କହୁଁ କହୁଁ ସମସ୍ତେ ଘୂର୍ଣ୍ଣୁଁ ଗୃହ୍ଣୁଁ କେମନ୍ତେ କପଟ ସୁରଙ୍ଗେ ।
ମଠ, ବନ ନଗରୀ ମଧ୍ୟ ପୀଠ ଜଗତୀ-ଶୋଭନୀ ରତ୍ନ ସଖୀ ସଙ୍ଗେ ସେ ।
ପ୍ରବେଶିତ । ଅଧିକା ନନ୍ଦ୍ରାବଣ ପର । ମଣ୍ଡି ଅଛନ୍ତି ସେହି ପୁଷ୍ପ ।
ଉପାଧ୍ୟାୟୀ ତଦ୍ଧିରେ ଉପାୟ ପ୍ରସ୍ତାବରେ ବନ୍ଦରେ ଦେଖିଲେ ସେ ନାସ୍ତି ।"

ନୃପସୁତଙ୍କ ଆଗମନ—

"କିଂଭୂତ ଅଦଭୂତ ଧ୍ୱଂସ ନଳ ସମୂତ ମାୟା ଭୂତ-ଭବିଷ୍ୟ ଜ୍ଞାତା ।
ନୃପ-ସୁତ ସଦ୍ବୃତ ମନ୍ତ୍ରି ଜ ପୁରୋହିତ-ସୁତ ସମାନେ କରି ସ୍ଥିତା ସେ ।
ଚପଳରେ । ସେ ଦଳେ କଲ ପରବେଶ । ଜନ ଯଥା ମାଦଳବଶ ।
ସ୍ୱପ୍ନରେ ଥିଲି ପୋଥା ଗୋଟାଏ ଭେଟାଇଲି ବୋଇଲି ସେ ଏମନ୍ତ ଭାଷ ।"

ଅନୁପମ ଦୃଶ୍ୟ ମଧ୍ୟରେ ପ୍ରେମିକ ପ୍ରେମିକାର ଦେଖା ସାକ୍ଷାତ ଘଟିଲା ।

ପ୍ରେମିକା ବିଚାରିଲା—ସେ ସେହି ରାଜପୁତ୍ର କି ? କବିଙ୍କ ଭାଷାରେ—

"ଏ ନୋହୁଛି ନୋହିବ ଏ ଉତ୍ସବ ବନ୍ଧିବ ସଜୀବ ରାଜୀବ ଲୋଚନ ।
ଏହି ମୁନି ମନ୍ତ୍ରର ଜରିଅଛି ଅନ୍ତରଗତ ର ମାତର ଭାବନ ସେ ।
ଅନୁପମା । ହୃଦର ଆବର ଉଚ୍ଛନ୍ନ । କିଏ ସେ ଭୂପତି-ନନ୍ଦନ ।
ରାମା-ରତନ-ରମ୍ୟ ଲପନରେ ପତନ ସେ କାଳେ କୁମାର ନୟନ ସେ ।"

ପ୍ରେମିକ ଅନ୍ତରାଳରେ ପ୍ରେମିକାକୁ ଦେଖି—

"ସ୍ଥଳେ ଧନଦା-ଚଳେ ଚଳେ କିଛି ଚଞ୍ଚଳେ ସ୍ଥାନ କି ଶମ୍ଭା ସମ୍ଭାଳୁଛି ।
ଝଟକ ଉପୁଜାଇ ଝଟିତ ମିଶିଯାଇ ଆଖି ବୁଜି ହୋଇ ଯାଉଛି ସେ ।
ଅନୁପମା । ଚରପ୍ରସ୍ତ ପୁଣି ସହଜେ । ଅ ସିଦ୍ଧ ପୂର୍ବରୁ ସେ ଭଜେ ।
ଗଣ-ଈଶ୍ୱର ସ୍ୱର-ବଙ୍ଗ ହୋଇ ପାସୋର ଉପମା ହେବ ଏ ଆଶ୍ଚର୍ଯ୍ୟେ ସେ ।"

ଇତ୍ୟାଦି ।

କବି ଏପରି ଭାବରେ ପ୍ରେମିକ-ପ୍ରେମିକାର ହୃଦୟ-କ୍ଷେତ୍ରରେ ଅନାବିଳ ପ୍ରେମବୀଜ ଅଙ୍କୁରିତ କରି ବେଳକୁବେଳ ଦୃଢ଼ରୁ ଦୃଢ଼ତର କରନ୍ତି ।

ସାକ୍ଷାତ୍ ଦର୍ଶନ—

ବିବାହପୂର୍ବରୁ ପ୍ରେମିକ ପ୍ରେମିକା ମଧ୍ୟରେ ସାକ୍ଷାତ୍‌ଦର୍ଶନର ଯୋଗାଡ଼ କରିଯିବା ବାଞ୍ଛନୀୟ । ସେ କୌଣସି ପବିତ୍ର ପୀଠ ପ୍ରଶସ୍ତ । ଲବଣ୍ୟବତୀରେ କବି ତୀର୍ଥରାଜ ରାମେଶ୍ୱର ପସନ୍ଦ କରିଛନ୍ତି । ସେଠାରେ ନାୟକ ନାୟିକାର ସାକ୍ଷାତ୍ ଦର୍ଶନ ଘଟିଲା । ଚରିତ୍ରେତ କୁଳାଗ୍ରର ରୀତି ପ୍ରତି କବି ଏଠାରେ ଦୃଷ୍ଟି ଦେଇଛନ୍ତି । ସଖୀ ସହିତରି ଗହଣରେ ପ୍ରେମିକା ଦେବାଳୟରେ ଉପସ୍ଥିତ ଥିବାବେଳେ, ପୁରୁଷମାନଙ୍କୁ ସେତେବେଳେ ସେଠାରେ ପ୍ରବେଶ କରିବାକୁ ଅନୁମତି ଦିଆଯାଇ ନାହିଁ । ନାୟକ ତାହା ଲଙ୍ଘନ କରି ନ ଥିଲେ । ସେ ସ୍ତ୍ରୀବେଶରେ ଯିବାକୁ ବାଧ୍ୟ ହେଲେ । ପ୍ରେମିକ ପ୍ରେମିକା ଉଭୟଙ୍କର ସେଠାରେ "ଯାବତ ଭ୍ରତଫଳ ହେଲା ସଫଳ, ତୀର୍ଥଫଳାହିଁ ଯେ ମିଳିଲା" । "ବାହୁଡ଼ିଲା ବେଗେ ଶିବ

Digitized by srujanika@gmail.com

ଦେଖି ରମା ଜଣାଇ ଦୂତକଣ୍ଠରେ ।" କିନ୍ତୁ ପ୍ରେମିକର ହୃଦୟପଟରେ ପ୍ରେମିକାର ଚନ୍ଦ୍ର ଚର୍ଚ୍ଚିତ ହୋଇ ରହିଲା । ଯଥା—

"ମଧ୍ୟେ ଅବେଶ କୁମାର ପ୍ରବେଶ ହୋଇଲା କେଶର କାନନ ।
ଯେଣେ ଅନାଇଲେ ତେଣେ ଦଶୁଅଛି କେବଳ ସୁନ୍ଦରୀ ଆନନ ।"

ପତ୍ର ଆଦାନ ପ୍ରଦାନ—

ପ୍ରେମିକ ପ୍ରେମିକାର ପ୍ରସଙ୍ଗ ଶ୍ରବଣ, ଦର୍ଶନରେ ପ୍ରେମର ଉଦ୍ରେକ ହୁଏ, କ୍ରମେ କ୍ରମେ ଗାଢ଼ରୁ ଗାଢ଼ତର ହୁଏ । ଦୁହିଁଙ୍କ ମଧ୍ୟରେ କଥା ଭାଷା ଚଳିବା ଆବଶ୍ୟକ । ଯୁଗୋଚିତ ଭାବରେ ତାହା ସମ୍ପାଦିତ ହୁଏ ପତ୍ର ଆଦାନ ପ୍ରଦାନରେ । ପ୍ରଥମେ ପ୍ରେମିକା, ପରେ ପ୍ରେମିକ ପତ୍ର ଦେବା ପ୍ରଥା ଲଙ୍ଘନ କରି, ପ୍ରେମିକ ପ୍ରଥମରେ ପତ୍ର ଦେବା ରୀତି କବି ଅବଲମ୍ବନ କରିଛନ୍ତି ।

ପ୍ରେମିକ ପତ୍ରିକାରେ କହେ—

"ହୃଦ କେଦାରରେ ଅନୁରାଗବୀଜ ଅତି ଯତ୍ନ କରି ବୁଣିଛି । ଭଲକାଳ ହେଲା ସନ୍ଧି ଜାଣିଛି । କ୍ରମେ ସେ ଅଙ୍କୁର ଘନରସ ବୃଷ୍ଟି ବିହାନେ ଦୁଃଖୀ ହୋଇଛି ରେ । ସୁନ୍ଦରୀ ।" ଇତ୍ୟାଦି । ଗତ ମାଧ୍ୟ-ପ୍ରଭାବରେ ଦର୍ଶନ-ମିଳନ-ପ୍ରସଙ୍ଗ ସ୍ମରଣ କରି ନାୟକ ପ୍ରେମପତ୍ରିକାରେ କହେ—

"ଦେବା ଭେଟାଇଲା କଣାର୍କେ ପଲଙ୍କେ କରିଥିଲୁ ବାଳା ଶୟନ ।
ହା ହା କ ଶୋଭା ଦେଖିଲା ନୟନ ।
ଯେତ୍ତି ଧୂଳିକେ କୋଟି କୋଟି ମଘବା ସମ୍ପତ୍ତି କରିଛୁ ଦାନ ରେ । ସୁନ୍ଦରୀ ।
ଯେବେ ତର ହୁଅନ୍ତା ସେ ମୁହୂର୍ତ୍ତ । ଯୁବାବୃନ୍ଦେ ହୋଇଥାନ୍ତି ସାମନ୍ତ ।
ଆଉ ଉରୁ ଛୁଇଁ ଝୁଲାଇ ଦେବାର ନୋହେ ଇତର ସୁକୃତ ରେ । ସୁନ୍ଦରୀ ।"

ପତ୍ର ପଢ଼ୁ ପଢ଼ୁ ପ୍ରେମିକାର ଆନନ୍ଦାଶ୍ରୁ ବହିଗଲା ହେଲା, ଶରୀର ରୋମାଞ୍ଚିତ ହେଲା । "ପଢ଼ି ଏ ପତ୍ର ରୋମାଞ୍ଚିତ ଗାତ୍ର କି ହେଲା ଅନୁରାଗ ଅଙ୍କୁର । କିବା ମାଗିବ ଯୁବା ସଙ୍ଗ ବର" । ଏକାଳେ "କୃଷ୍ଣଭ୍ରମ ଆର କହେ"—"ପ୍ରତିଉତ୍ତର ପତର ଦେଇ ତାଙ୍କ କାତର-ସାଗରୁ ଉଦ୍ଧର ।" ପ୍ରେମିକା ତାହା କଲା ।

"ଅଣି କାଗଜକୁ ନବବାଳୀ, ଅନୁରାଗୁଁ ନ ଲେଖିଲା କାଳୀ
ଲୁକ୍ରମେ ଲଖିତ ବର୍ଣ୍ଣ ନଜ ବର୍ଣ୍ଣ ଭଳି ଆଳୀଙ୍କ ନାମରେ ଛଳ ସେ । ସୁନ୍ଦରୀ" । ପ୍ରେମିକାର ପତ୍ର କୃଷ୍ଣଭ୍ରମ ଆର ନେଇ ପ୍ରେମିକକୁ ଦେଲେ । ସେ—

"ଉଠି ବସି ଅନାଇଲା ଦୂତଙ୍କ ବଦନ । ନୂତନ ଅଙ୍କ ପ୍ରାପତ ହେଲା କି ନୟନ ।
ଅତି ଦରିଦ୍ର ରତନ ପାଇଲାର ପରି । ଶୁକ୍ଳଶୀର ଚୁମ୍ବି ଦିନେ ନମସ୍କାର କରି ।"

ସେ ଯେତେବେଳେ ମୁଦ ଫିଟାଇଲେ, ସେତେବେଳେ "ପ୍ରେମ ଅଙ୍କୁର ରୋମାଞ୍ଚ ପୂର୍ଣ୍ଣ ହେଲା ଗାତ୍ର" । ପ୍ରେମପ୍ରବଣ ହୃଦୟରେ ପ୍ରେମିକ ପୁନଃପୁନଃ ପତ୍ର ପଢ଼ିଲେ ।

Digitized by srujanika@gmail.com

"କୁମାର ପଢ଼ିଲ ପତ୍ର ପୁନଃ ପୁନଃ କରି ।
ପଦ ପଦକେ ଅଶେଷ ରସ ଅଛୁ ପୂରି ଯେ ।
ଏଥିଁ ଘେନିଲ ତାହାର ରସବତୀ ଗୁଣ
ବୃଷ୍ଟାନ୍ତରୁ ଜାଣିଲ ପଣ୍ଡିତା ଗୁଣ ପୁଣ ଯେ ।
ସଖୀ ନାମେ ଲେଖିବାରୁ ଜାଣିଲ ଚତୁରୀ
ସଙ୍କେତରୁ ଜାଣିଲ ସେ ବିରହେ ଆତୁରୀ ଯେ ।
ଶିରେ ଉରେ ଲଗାଇଲା ପୁନଃ ପୁନଃ ପତ୍ର
କିଛୁ କିଛୁ ସାନ୍ତ୍ୱନା ହୋଇଲ ତେଣେ ଗାତ୍ର ଯେ ।
ସମ୍ଭାବନା କଲା ଗାତ୍ରକୁହିଁ ଶାନ୍ତ କଲା
ଅଙ୍ଗେ ଅଙ୍ଗେ ଭାଗ ନେଲେ ଯେଝା ଭାଗ ଦେଲା ଯେ ।
ନେତ୍ର ଦେଖି କର୍ଣ୍ଣ ଶୁଣି ମନ ଘେନି ତୋଷ
କର ଫେଇ ମୁଖ ପିଇ ଜିବ ଉଚ୍ଚାରଣ ଯେ" । ଲା: ବ: ।

ପତ୍ର ଆଦାନ ପ୍ରଦାନରେ ପ୍ରେମିକ ପ୍ରେମିକା ମନୋଗତ ଭାବ ବ୍ୟକ୍ତ କରି ବିବାହ ପାଇଁ ପ୍ରସ୍ତୁତ ହୁଅନ୍ତି । ଶାସ୍ତ୍ରସମ୍ମତ ରୀତିରେ ପାଣିଗ୍ରହଣ ବିଧାନ ବଢ଼େ ।

**ବିଚ୍ଛେଦ**

କବି କାବ୍ୟରେ ମିଳନ ପରେ ବିଚ୍ଛେଦର ସୂତ୍ରପାତ କରି ବିମଳ ଦାମ୍ପତ୍ୟପ୍ରେମର ପରିପକ୍ୱତା ପ୍ରତିପାଦନ କରିଅଛନ୍ତି । 'କାରଯବଶେ ବିଦେଶ କରିବାକୁ ଅଜ୍ଞା' ନରେଶ୍ୱର ଦେବାରୁ ନାୟକ ହତାଶ ହେଲା, ତାହାଠାରେ ଅଷ୍ଟକାମବିକାର ଜାତ ହେଲା ।

"ସ୍ୱରଭଙ୍ଗ ସ୍ତମ୍ଭ ରୋମାଞ୍ଚ ବେପଥୁ ଦଣ୍ଡ ଦଣ୍ଡକେ ଜନ୍ମିତ ।
ଜଡତମ୍ୱିନୀ ପାଶେ ମିଳି ସେ ଏମନ୍ତ ବାଣୀକି କଲା ରଚିତ ।

ଚିତ୍ରମୋହନ ରେ ବନ୍ଧୁ କି ବିହିଲା କାଲ ମୁଁ ବିଦେଶ ଯିବି ।
ଜୀବିତେ ଥାଇଁ କେଉଁ ଦଣ୍ଡ ପଡ଼ିଲା କେଉଁ ଉପାୟ କରିବି । ପ୍ରେ: ସୁ: ।

ବିବାହର ଅବ୍ୟବହିତ ପରେ ଚନ୍ଦ୍ରଭାନୁ କାବେରୀକୂଳସ୍ଥ ରସୋଦୟ ବନରେ ବିହାରବେଳେ ନାୟିକା ଚଣ୍ଡୀଦ୍ୱାରା ଅପହୃତ ହେଲେ । ସେତେବେଳେ ଲାବଣ୍ୟବତୀର ଖେଦୋକ୍ତି—"ମୁଁ ଅଭାଗ୍ୟବନ୍ତ । ଖଣ୍ଡ ତପଫଳ କଲା ଏମନ୍ତ", "ଦାସୀ କରି ହେଲେ ରଖିଲ ନାହିଁ", "ଗୁନ୍ଥିଲ ପରି କରି ଛଡ଼ା ଫୁଲ" ଇତ୍ୟାଦ ଗାଢ଼ ପ୍ରେମପ୍ରବଣତାର ପରିଚୟ ଦିଏ ।

"ଏମନ୍ତ ଭାବି ଲୁଚି ଥିବେ ବୋଲି, ଖୋଜିଲେ ସେ କେଳି କାନନ ବୁଲି ।
କାହିଁ ନ ପାଇଲେ ତରୁଣ ଇଣ, ବେକୁଁ ବେକୁଁ ଉଡ଼ିଗଲା ସାହସ ।
ସେ ଜ୍ୟୋତ୍ସ୍ନା ବାଳୀ, ଫଳୁନୋ ଜାଣିଲ ବିଚ୍ଛେଦ ବୋଲି ।"

ଦୀର୍ଘ ବିଚ୍ଛେଦ ପରେ ମିଳନ ଅତ୍ୟନ୍ତ ମଧୁମୟ ହୋଇ ଉଠେ । ପ୍ରତ୍ୟାଗମନ ବେଳେ—

"କୁମର ଦେଖି ସ୍ୱଦେଶ ଗୃଢ଼ ପୁରୁଷକୁ ।
ପଚାରିଲେ ନିଜ ରାଜ୍ୟ ଶୁଭ ସନ୍ଦେଶକୁ ଯେ ।

Digitized by srujanika@gmail.com

ସେ କହିଲ ସର୍ବଶ୍ରୁତ ମନ୍ତ୍ର ଏତେ ମାତ୍ର ।
ସିଂହଳ ନୃପତି କେମା ଅତି କ୍ଷୀଣଗାତ୍ର ଯେ ।
ନ ରହୁଛି ଜଳ ନୟନରୁ ଆଉ ଆଉ ।
ନ ଉଠୁଛି ଅବକାଶସ୍ଥଳୁ ଶରୀରର ଯେ ।
ନବଦ୍ୱୀ ତାପ ଲଭୁଛି ନୃପତିକୁମାରୀ ।
ବିଳାପକଳାପ ତାର ଭୁଜାବେଶ ପରି ଯେ ।
ପଦ୍ମିନୀରେ ଉପଗ୍ରହ କରିବାକୁ ଯେନ ।
ସଖୀମାନେ ହେଲେଣି ପଦ୍ମିନୀ ବନ୍ଧନ ଯେ ।
କାଲି ପରି ପଗ୍ରଣ ତେଜିବା ପରି ସେହି ।
ଦେହଲି ବଳ ଚଳିବା ଭଳି ବଳ ନାହିଁ ଯେ ।
ହା ଗ୍ରବରେ ସଦନ ତ ଦଣ୍ଡେ ଶୂନ୍ୟ ନାହିଁ ।
ହା ଗ୍ରବରେ ଭୁଜଙ୍ଗମ ଭ୍ରମ ଉପୁଜାଇ ଯେ ।
ଚନ୍ଦ୍ରରେ ଦେଖାଇ ପୁଛିବାକୁ ତୁମ୍ଭ ବାର୍ତ୍ତା ।
ବଳଭୂକେ ବଳ ଦେଇ ଜିବଳଶୋଭିତା ଯେ ।
ଯେତକ ବିଳମ୍ବ ତୁମ୍ଭ ପ୍ରଳମ୍ବକୁନ୍ତଳା ।
ତେତକ ତେତକ କରୁଅଛି ଜୀବେ ହେଲା ଯେ ।
କେଉଁ ଗ୍ରଣ୍ୟେ କାଉଁ ଅଛି ନୁହଇ ଗୋଚର ।
ଦୂର କଲାଣି ସମସ୍ତ ଆହାର ବିହାର ଯେ ।
ବିହାର ଏତିକ ତୁମ୍ଭ ରୂପ ଦରଶେ ଦଣ୍ଡି ।
ଉଠି କୋଳ କରିବାକୁ ହୁଅଇ ଲାଳସୀ ଯେ" । ଇତ୍ୟାଦି । ଲ: ବ:

କ୍ଷଣେ ବିଳମ୍ବ ନ କରି ସିଦ୍ଧଜାତ ତୁରଙ୍ଗ ଆରୋହଣପୂର୍ବକ ଗ୍ରଜକୁମାର ତୀରବେଗରେ ପ୍ରତ୍ୟାବୃତ୍ତ ହେଲେ । ମାର୍ଗ ମଧ୍ୟରେ ନାନା ଚିନ୍ତା ଖେଳ ଉଠୁଥାଏ । ସେ କହି ଉଠିଲ—"ଆହେ ନବଗ୍ରହେ ବନ୍ଧୁ ଦରଶନବେଳେ । ମୋର ଗ୍ରଣି ଏକାଦଶେ ରହି ଏକ ମେଳେ ଯେ ।" ଯେତେବେଳେ ପ୍ରେମିକା ସହିତ ଭେଟ ହେଲ, ପ୍ରେମିକ କହେ—"ବିଚ୍ଛେଦ ହେଲଦନୁ କ ଦଣ୍ଡ ଫୁଲଧନୁ ଦେଲଟି ଘନ ଗ୍ରତରେ । ପ୍ରାଣବନ୍ଧୁ । କେମନ୍ତେ ବଞ୍ଚିଥିଲୁ ରେ । ସ୍ୱପନେ ଦୁଃଖ ଦେଖି ନାହୁଁ ଆଜନ୍ମସୁଖୀ, ମୋ ଲଗି ଦୁଃଖୀ ହେଲୁ ରେ ।"

"ଯେଣିକ ଗ୍ଭହେଁ ମୁହିଁ ସେ ଦିଗେ ଦଶୁ ତୁହି ଯେମନ୍ତେ ହସୁଥାଉ ରେ ।
ଆଉକାଇ ଅଙ୍କରେ ବସିବ ପଲଙ୍କରେ ନ ଥିଲ ମନେ ଆଉ ରେ । ପ୍ରାଣବନ୍ଧୁ ।"

ଏହିପରି ନାନା ଗ୍ଭଟୁ ଅନୁନୟ ବିନୟ ବାକ୍ୟସମ୍ଭାର ଶୁଣି ଶୁଣି ପ୍ରେମିକା କହିଲ:—

"ସେ ଦୁଃଖ ପୋଡ଼ିଯାଉ ଶରୀରୁଁ ତା ନ ପାଉ ଚରୁଅଛ ନାହିଁ ତାହା ହେ, ପ୍ରାଣବନ୍ଧୁ । ଚନ୍ଦ୍ରକୁ କୁନ୍ତ ପଗ୍ ସେ । ଏମନ୍ତ ବୋଲି ହସି ବକ୍ଷେ ଗ୍ଭହିଁଲ ରସି, ରମଣୀରତ୍ନ ହସ୍ ସେ ।"

Digitized by srujanika@gmail.com

କବିଙ୍କ ଅନାବିଳ ଓ ଅନାସକ୍ତ ପ୍ରେମର ଅଲୌକିକ ଆଲେଖ୍ୟ, ଶ୍ରବଣ, ଚିତ୍ରପଟ ଦର୍ଶନ, ସାକ୍ଷାତ୍ ଦର୍ଶନ, ପ୍ରେମପତ୍ର, ଅନୁଚିନ୍ତା, କଥୋପକଥନ ଓ ବିଚ୍ଛେଦରେ ବିକଶିତ ହୋଇ ଉଠିଛି । ଏଥିରେ ଅସ୍ୱାଭାବିକତାର ବିନ୍ଦୁ ବିସର୍ଗ ନାହିଁ । ପ୍ରେମିକ ପ୍ରେମିକା ମଧ୍ୟରେ ଏତାଦୃଶ ଅନବଚ୍ଛିନ୍ନ ପ୍ରେମ-ଉତ୍ସର ନିର୍ମଳ ବିକାଶ କବି ପସନ୍ଦ କରନ୍ତି । ତଦ୍ଦ୍ୱାରା ଗୃହର ଶାନ୍ତି ସନ୍ତୋଷ ବଢ଼େ, ସଂସାର ଦ୍ୱିତୀୟ ଅମରାବତୀରେ ପରିଣତ ହୁଏ ।

## କବିଙ୍କ ଉଦ୍ଦେଶ୍ୟ

ଜଗତ୍-ରଙ୍ଗାଳୟରେ ପ୍ରେମ-ପ୍ରୀତି-ପ୍ରହସନର ଅସରନ୍ତି ଚିତ୍ର ବିଧାତା ସୃଷ୍ଟି କରିଅଛନ୍ତି । ଜନ-ସଂସାରରପ୍ରସାର ପାଇଁ ତାହା ଅନିବାର୍ଯ୍ୟ । କବି ପଦ୍ମ ପତ୍ରରେ ଜଳବିନ୍ଦୁ ବତ୍ ଅନାସକ୍ତ ହୃଦୟରେ ଶୃଙ୍ଗାର-ରସକୁ ସାର ମନେ କରି ଉପର୍ଯ୍ୟୁକ୍ତ ଅନବଦ୍ୟ ପ୍ରେମଚିତ୍ର ଯେ ଅଙ୍କନ କରିଅଛନ୍ତି,ତାହା ଏହି ପ୍ରବନ୍ଧରେ ଯଥାଯଥ ପ୍ରତିପାଦିତ ହୁଏ ।



Digitized by srujanika@gmail.com

# ନାରୀଚରିତ୍ର

ଉପେନ୍ଦ୍ର ଭଞ୍ଜ ଓଡ଼ିଶାବାସୀଙ୍କର ଅତ୍ୟନ୍ତ ପ୍ରିୟ । ଭଞ୍ଜଙ୍କ ବିଷୟରେ ନାଟକ, ପ୍ରବନ୍ଧ ପ୍ରଭୃତି ଲେଖି ଲେଖକ ଆନନ୍ଦ ଅନୁଭବ କରେ, ବକ୍ତା ବକ୍ତୃତା ଦେଇ ଆତ୍ମପ୍ରସାଦ ଲାଭ କରେ, ସମାଲୋଚକ ସମାଲୋଚନା କରି ସର୍ବସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରେ । ଏହି ହିସାବରେ ୧ ୮୮ ଖ୍ରୀଷ୍ଟାବ୍ଦଠାରୁ ନାନାପ୍ରକାର ସମାଲୋଚନା ଚାଲିଛି । କଟକର "ଉତ୍କଳ ଦୀପିକା"ରେ ଓ ମୟୂରଭଞ୍ଜର "ଉତ୍କଳପ୍ରଭା"ରେ ଭଞ୍ଜ-ସାହିତ୍ୟ-ସମାଲୋଚନା ସର୍ବପ୍ରଥମେ ପ୍ରକାଶ ପାଇ କଟକରେ ପ୍ରକାଶିତ "ଇନ୍ଦ୍ରଧନୁ"ରେ ଓ ବାମଣ୍ଡା ଦେବଗଡ଼ରେ ପ୍ରକାଶିତ "ବିଜୁଳି"ରେ ରୂପରେଖ ଗ୍ରହଣ କଲା । ସେପରି ସାରସ୍ୱତ ନିନ୍ଦାବାଦବିହିତ ସମାଲୋଚନା କୌଣସି ଦେଶର ସାହିତ୍ୟକ୍ଷେତ୍ରରେ କ୍ୱଚିତ୍ ଦେଖାଯାଏ । ମନମୋହନ ଚକ୍ରବର୍ତ୍ତୀ ଓ ବିଜୟଚନ୍ଦ୍ର ମଜୁମଦାର ଶେଷୋକ୍ତ ପତ୍ରିକାଦ୍ୱୟ ସମ୍ପାଦକଦ୍ୱୟଙ୍କର ମତଭେଦ ଓ ଦଳାଦଳିର ସୁବିଧା ନେଇ ଭଞ୍ଜ ସାହିତ୍ୟ ପ୍ରତି ଆଶାତୀତ ଅନୁଦାର ମତ ବ୍ୟକ୍ତ କରିଅଛନ୍ତି । ୧୮୭୦ ଖ୍ରୀଷ୍ଟାବ୍ଦରେ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ "ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ" ନାମରେ ଖଣ୍ଡିଏ କ୍ଷୁଦ୍ର ବହି ଲେଖି (ବୀମସ୍‌ଙ୍କ ମତରେ ଯାହା ଯୁକ୍ତି ଓ ଭିତ୍ତିଶୂନ୍ୟ) (destitute of philological arguments etc.) ଓଡ଼ିଶାରେ ଯେଉଁ ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିଥିଲେ ବିଜୟଚନ୍ଦ୍ର ମଜୁମଦାର "ଟିପିକାଲ ସିଲେକ୍‌ସନସ୍ ଫ୍ରମ ଓଡ଼ିଆ ଲିଟରେଚର"ର ମୁଖବନ୍ଧରେ ଭଞ୍ଜ ସାହିତ୍ୟ ପ୍ରତି ଅନୁଦାର ମତ ପ୍ରକାଶ କରି ଓଡ଼ିଶାରେ ଠିକ୍ ସେହିପରି ଉତ୍ତପ୍ତ ବାୟୁମଣ୍ଡଳ ସୃଷ୍ଟି କରିଥିଲେ । ତାହା ଖଣ୍ଡନ କରିବାକୁ ଯାଇ ପରବର୍ତ୍ତୀ ସମାଲୋଚକମାନଙ୍କ ମଧ୍ୟରୁ ଅଧିକାଂଶ ସେଥିରୁ କିଛି କିଛି ବେଳେ ବେଳେ ଉଦ୍ଧାର କରି ପ୍ରକାରାନ୍ତରେ ତାହାର ପ୍ରସାର ବଢ଼ାନ୍ତି । ସମାଲୋଚକମାନଙ୍କ ମଧ୍ୟରୁ ଅଧିକାଂଶ ପାଶ୍ଚାତ୍ୟ ସାହିତ୍ୟମାନଦଣ୍ଡରେ ଆଲୋଚନା କରି ଭଞ୍ଜ-ସାହିତ୍ୟର ନାଶିଚକ୍ଷଣରେ ତୃପ୍ତ ହୁଅନ୍ତି ନାହିଁ । ଏହି ପ୍ରସଙ୍ଗର କେତେକାଂଶ ଅନ୍ୟାନ୍ୟ ପରିଚ୍ଛେଦମାନଙ୍କରେ ପ୍ରସଙ୍ଗାନୁକ୍ରମେ ଆଲୋଚନା କରାଯାଇଛି । ବର୍ତ୍ତମାନ କବିଙ୍କ କାବ୍ୟରେ ସନ୍ନିବେଶିତ ସ୍ୱଳ୍ପ କେତୋଟି ପ୍ରସଙ୍ଗମାତ୍ର ବିଶ୍ଳେଷଣାତ୍ମକ କରି ଓ ମନୀଷିବୃନ୍ଦଙ୍କ ମତାମତ ସହିତ ଆଲୋଚନା କରିବା ଏହି ପରିଚ୍ଛେଦର ଉଦ୍ଦେଶ୍ୟ ।

**ନାରୀର ଶ୍ରେଷ୍ଠତା:**— ଉପେନ୍ଦ୍ର ଭଞ୍ଜଙ୍କ ସମସ୍ତ ପ୍ରକାଶିତ କାବ୍ୟ ଭିତରେ ନାରୀ—ଜନନୀ, ଭଗିନୀ, ଜାୟା, କନ୍ୟା, ସହଚରୀ, ଅନୁଚରୀ, ମାଳିନୀ, ମାୟାବିନୀ, ସନ୍ନ୍ୟାସିନୀ, ପାଠପଠିନୀ, ବିଭ୍ରମବିଳାସିନୀ ପ୍ରଭୃତି ଭାବରେ, ଦୟାଶୀଳତା, ସରଳତା, କୋମଳତା, ଲଜ୍ଜାଶୀଳତା, ସହନଶୀଳତା; ସ୍ନେହ, ଶ୍ରଦ୍ଧା, ପ୍ରୀତି ଓ ପ୍ରେମର ପ୍ରତିମୂର୍ତ୍ତି ସ୍ୱରୂପ ଚିତ୍ରିତ ହୋଇଅଛି । କବିଙ୍କ ଦୃଷ୍ଟିରେ—ସମସ୍ତେ ଷୋଡ଼ଶୀ ରୂପସୀ, ଗଜଗାମିନୀ, ମଧୁରଭାଷିଣୀ; "ତରୁଲତାଶ୍ରେଣୀ, ତରୁଣ ତରୁଣୀ—ସମସ୍ତେ ସୁମନ ସୁବେଶ" । ସୌନ୍ଦର୍ଯ୍ୟହିଁ ଚିରନ୍ତନ ଆନନ୍ଦଦାୟକ, ଜଗତ୍ ମହାମହୋତ୍ସବମୟ, ନୃତ୍ୟଗୀତର ରସସ୍ଥଳୀ, ଯେପରିକି—"ମନକୁ ଉତ୍ପତ୍ତି ରତି କାମ ମୂର୍ତ୍ତିମନ୍ତେ କି ବିଶ୍ୱ ହେଉଛନ୍ତି", ରାୟ ରାଧାନାଥ ରାୟଙ୍କ ଅନୁସାରେ "ଚିର ହାହାମୟ ଏ ଘୋର ଜୀବନ, ଜୀବନ ନୁହଇ ଜୀବନ୍ତ ମରଣ ।" କିମ୍ବା ସେକ୍‌ସପିଅରଙ୍କ ଭାଷାରେ ("I know not why I am so sad") "କାହିଁକି ମୁଁ ଦୁଃଖ ସନ୍ତପ୍ତ" କହିବା ପାଇଁ କବିଙ୍କୁ ଅବକାଶ ନାହିଁ । ସେ ଗ୍ରୀକ୍ ଦାର୍ଶନିକ ଆରିଷ୍ଟୋଟଲପନ୍ଥୀ । ସେ ଆରିଷ୍ଟୋଟଲଙ୍କ ତୁଲ୍ୟ ସୌନ୍ଦର୍ଯ୍ୟ ଉପାସକ, ଓ୍ୱାର୍ଡ଼ସ୍‌ଓ୍ୱାର୍ଥଙ୍କ ତୁଲ୍ୟ ପ୍ରକୃତିପ୍ରେମିକ, ସ୍ପେନସରଙ୍କ ତୁଲ୍ୟ ଶବ୍ଦଯୋଜନା ଓ ବିଭିନ୍ନ ଅଳଙ୍କାରଗ୍ରାହକ ଏବଂ ରବୀନ୍ଦ୍ର ଓ ଓମାରଙ୍କ ତୁଲ୍ୟ ସଙ୍ଗୀତ-ରସିକ ଓ ଦାର୍ଶନିକ ମଧ୍ୟ । କାବ୍ୟକୁ ସରସ କରିବା କବିଙ୍କର ଲକ୍ଷ୍ୟ । ପ୍ରକୃତି ଚିତ୍ରଣରେ, ବିରହ

Digitized by srujanika@gmail.com

ବର୍ଣ୍ଣନାରେ, ବନ, ଉପବନ ବିହାର ଓ ଜଳକେଳି ବେଳେ ପଦ୍ମିନୀ, ଚିତ୍ରିଣୀ ଜାତୀୟା ନାୟିକାଙ୍କୁ ସହଚରୀମାନଙ୍କ ଗହଣରେ ଅଦ୍ଭୁତ ଶବ୍ଦଯୋଜନା ଅଳଙ୍କାର ଓ ବିଭିନ୍ନ ଶବ୍ଦାର୍ଥାଳଙ୍କାର ସମ୍ଭାରରେ ବିଭୂଷିତ ରଖି ପାଠକ ପାଠିକା ସମ୍ମୁଖରେ ପରିବେଷଣ କରିବାରେ କବି ସିଦ୍ଧହସ୍ତ । ସ୍ଥୂଳତଃ କବିଙ୍କ ଚକ୍ଷୁରେ ("Woman is a ray of god, not a mere mistress. The Creators self not a mere creature.") 'ରମଣୀ ସାଧାରଣ ସ୍ତ୍ରୀ ନୁହେ, ସେ ସ୍ରଷ୍ଟାଙ୍କର ଜ୍ୟୋତି, ସେ ସାଧାରଣ ପ୍ରାଣୀ ନୁହେ, ସ୍ରଷ୍ଟାଙ୍କର ବିଭୂତିବିଶେଷ ।'

ରମଣୀ—ଜନନୀ, ଭଗିନୀ, ଜାୟା, କନ୍ୟାରୂପରେ ପୁରୁଷ ସମ୍ମୁଖରେ ଦେଖାଦେଇ ପୁରୁଷର ସହାୟ ହୁଏ । ନାରୀ ପ୍ରତି ପୁରୁଷର କର୍ତ୍ତବ୍ୟ ଯାହା ହେବା ଉଚିତ, ତାହା ଆଶାନୁରୂପ ହୋଇ ପାରି ନ ଥିବାରୁ, ସେ ଏହି ବିଂଶ ଶତାବ୍ଦୀରେ ମଧ୍ୟ ଅଶିକ୍ଷିତା, ଅବରୁଦ୍ଧା, ଅବଗୁଣ୍ଠିତା ହୋଇ ରହିଛି । ନାରୀର ସତ୍ଶିକ୍ଷା ଓ ଆଦର୍ଶ ଭିତ୍ତି ଉପରେ ଦେଶର ସଂସ୍କୃତି-କୃଷ୍ଟି-ଉନ୍ନତି-ସୌଧ ପ୍ରତିଷ୍ଠିତ । ଉପେନ୍ଦ୍ର ଭଞ୍ଜ ଏଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖି ନାରୀକୁ ସତୀ, ରୂପବତୀ, ଶିକ୍ଷିତା, ଲଜ୍ଜାନମ୍ରା, ସଙ୍ଗୀତପ୍ରବୀଣା, କଳାକୁଶଳା ପ୍ରଭୃତି ଦୁର୍ଲଭ ଗୁଣସମନ୍ୱିତା କରି କବିସୁଲଭ ଚରିତ୍ରକର୍ଷଣ ରୀତିରେ ଚିତ୍ରଣ କରିଥିବାରୁ, ପାଠକ ପାଠିକା ସମ୍ମୁଖରେ ସେ ଆଦର୍ଶସ୍ଥାନୀୟା, ଲୋଭନୀୟା ଏବଂ ଅମରବାଞ୍ଛିତା ବିବେଚିତା ହୁଏ । କବିଙ୍କ ଭାଷାରେ ନାରୀ—"ଏ ସଂସାରରେ ସାର ।" ଛ ୩୫, ଲ: ବ: । "ତୋତେ ରୁ ପଦ୍ମାକ୍ଷିର ରେ, ମୋର ଅଶେଷ ତପ ପୁଣ୍ୟ ନାରୀସ୍ୱରୂପ, ହୋଇଛୁ ରମାବର ରେ ।" ଲ: ବ: ।

ବାଇବଲ୍‌ରେ ନାରୀବର୍ଣ୍ଣନା ମଧ୍ୟ * ଏହି ମର୍ମରେ ଅଛି । କବିଙ୍କ କାବ୍ୟସୃଷ୍ଟି ମଧ୍ୟରେ ଦୁଃଖ ଶୋକ, ବିରହ ବିଚ୍ଛେଦ ଥିଲେ ମଧ୍ୟ ସଙ୍ଗେ ସଙ୍ଗେ ମିଳନର ବ୍ୟବସ୍ଥା କରାଯାଇଛି । "କୁମୁଦଚନ୍ଦ୍ର ପୀରତି ତୋର ମୋର ଥିଲ । ଏ ପରାଣ ନ ଯାଇଣ କାହିଁକି ରହିଲ ।" ପୁଣି "କ୍ଷଣେ ନୋହେ ଭିନ୍ନ ଭିନ୍ନାଞ୍ଜନକେଶୀ ମନକୁ ମନ ମିଶାଇବ ।" ଇତ୍ୟାଦି । ଏହିପରି ଉକ୍ତି ଭଞ୍ଜ-କାବ୍ୟଗୁଡ଼ିକରେ ବହୁତ । ତାହା କେତେକ ସମାଲୋଚକ ପ୍ରଧାନତଃ ଲାଲ ରାମନାରାୟଣ ରାୟ, ରାଜେନ୍ଦ୍ରଲାଲ ମିତ୍ର, ମଜୁମଦାର ସୁହୃଦୟରେ ଗ୍ରହଣ କରି ନାହାନ୍ତି । ଏହା କବିଙ୍କ ପ୍ରେମ ନୁହେ, ରମଣୀର ଅଙ୍ଗୋପଭୋଗ ପିପାସା ମାତ୍ର । ରମଣୀକୁ ସେ ଆଦର୍ଶସ୍ଥାନୀୟା ନ କରି ଉପଭୋଗ୍ୟ ସାମଗ୍ରୀ ରୂପେ ବିରହ ବର୍ଣ୍ଣନାରେ, ରତିଚିତ୍ରଣରେ ପ୍ରାକୃତିକ ଆଲେଖ୍ୟାଦିରେ ପାଠକ ପାଠିକାଙ୍କ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି । ଏହି ମର୍ମରେ ସେମାନେ ବାରମ୍ବାର ମନ୍ତବ୍ୟ କରିଛନ୍ତି । ତାର ସଦୁତ୍ତର ବିଭିନ୍ନ ପ୍ରସଙ୍ଗରେ ଉତ୍ଥାପନ କରାଯାଇଛି । ନାରୀର ସମ୍ମାନ, ଆସନ, ଲକ୍ଷଣ ଶତାଧିକ ଚିତ୍ରରେ ଅକ୍ଷୁଣ୍ଣ ରକ୍ଷା କରିବା ପରେ କବି ଅଖଣ୍ଡ ଶାନ୍ତି ଲାଭ କରି ପ୍ରସନ୍ନ ମନରେ କହନ୍ତି—

"ସ୍ୱର୍ଣ୍ଣ ନୀଳା ମାଣିକ୍ୟ ମୁକୁତା ବଜ୍ରମର,
ମୂଲ୍ୟ ଅଛି, ମୂଲ୍ୟ ନାହିଁ ସ୍ତିରୀ ରତନର ଯେ ।"

ରବୀନ୍ଦ୍ରନାଥ କହନ୍ତି—"ଅର୍ଦ୍ଧେକ ମାନବୀ ତୁମି ଅର୍ଦ୍ଧେକ କଳ୍ପନା" ।
ବିଖ୍ୟାତ ଜର୍ମାନ କବି କହନ୍ତି—† ସ୍ତ୍ରୀ ପୁରୁଷର କର୍ତ୍ତବ୍ୟପଥର ପଥପ୍ରଦର୍ଶକ ।

---

* "Who is she that looketh forth as the morning fair as the moon, clear as the sun" etc. ( Bible and Apcroypha. )

† "The woman soul leadeth as upward and on."

Digitized by srujanika@gmail.com

ପୋପ କହନ୍ତି—" He moves a goddess and she looks a queen." ସେ ଦେବୀ ପ୍ରତିମା ଓ ଗୃହଲକ୍ଷ୍ମୀ ।

ମନୁ କହନ୍ତି—"ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ନନ୍ଦନ୍ତେ ତତ୍ର ଦେବତାଃ । ସ୍ତ୍ରୀ ସମ୍ମାନିତ ହେଲେ ଦେବଗଣ ତୃପ୍ତ ହୁଅନ୍ତି ।

"ବୈଦେହୀଶବିଳାସରେ ଶ୍ରୀରାମଚନ୍ଦ୍ର ବୈଦେହୀଙ୍କୁ କହନ୍ତି :—

"ବୀଣା-କଳକଣ୍ଠ-କଣା-କଣ୍ଠୀ ଗଣ୍ଡି ରହୁ ମନକୁ ପଣରେ ।
ବିଦେହ ନରେଶ ଜେମା ତୁ ମୋର ପରାଣ ସେ ପରାଣର ।" ଇତ୍ୟାଦି ।

× × ×

× × ×

"ବିଭୁ ତୁ, ମୁଁ ଦାସ ଏହିରୂପେ ଏକା ହୋଇଥିବୁ ଅନୁରାଗୀ ।

ରାମଚନ୍ଦ୍ରଙ୍କ "ବିଭୁ ତୁ ମୁଁ ଦାସ, ଏହିରୂପେ ଏକା ହୋଇଥିବୁ ଅନୁରାଗୀ" ଉତ୍ତରେ ସୀତାଦେବୀ ଏକମତ ହୋଇ ପାରିଲେ ନାହିଁ । ପ୍ରତିବାଦ କରି "ବୋଇଲେ ସୁମତି ଏ ସର୍ବସମ୍ମତ, ପୁଂସ ପ୍ରଭୁ ନାରୀ ଦାସୀ ।" ଏହି ବିଂଶ ଶତାବ୍ଦୀରେ ତଥା ବିଜ୍ଞାନ ଯୁଗରେ ମଧ୍ୟ ବହୁ ବିଜ୍ଞବ୍ୟକ୍ତି ସୀତାଦେବୀଙ୍କ ଉକ୍ତି ସମର୍ଥନ କରିବେ । ସ୍ୱନାମଧନ୍ୟ ବାର୍ଣ୍ଣାର୍ଡଶ ( Bernard shaw ) ତାଙ୍କର ମ୍ୟାନ୍ ଏଣ୍ଡ୍ ସୁପରମ୍ୟାନ୍ ( Man & Superman ) ଗ୍ରନ୍ଥରେ ନାରୀକୁ ଉଚ୍ଚସ୍ଥାନ ଦେଇ ନାହାନ୍ତି । ଦାନ୍ତେ 'କମିଡ଼ିଆ' ( Divinia Comedia ) ଗ୍ରନ୍ଥରେ ନାରୀକୁ ଉଚ୍ଚସ୍ଥାନ ଦେଇ ଆନନ୍ଦ ଉପଭୋଗ କରିଛନ୍ତି । ସେ ସେଥିରେ ନାରୀକୁ ସ୍ୱର୍ଗର ବିଭବ, ନରକର ଯନ୍ତ୍ରଣା ନିର୍ଦ୍ଦେଶ କରି କରି ସ୍ୱର୍ଗକୁ ବ୍ରହ୍ମଲୋକ ପର୍ଯ୍ୟନ୍ତ ନେଇଛନ୍ତି । ପାଲ୍ ( ଗ୍ରୀସ୍ ଦେଶୀୟ ), ଲୁଥର ଉଚ୍ଚସ୍ଥାନ ଦେଇ ନାହାନ୍ତି । ପ୍ରାଚୀ ମନୀଷିବୃନ୍ଦ ପରଂବ୍ରହ୍ମଙ୍କୁ ସ୍ତ୍ରୀରୂପରେ ଅର୍ଚ୍ଚନା କରନ୍ତି । ରାମକୃଷ୍ଣ ପରମହଂସ ଦକ୍ଷିଣେଶ୍ୱର କାଳୀଙ୍କ ଠାରେ ବ୍ରହ୍ମସତ୍ତା ଅନୁଭବ କରୁଥିଲେ । ଏହିପରି ଉଚ୍ଚ ନୀଚ ମତ ରହିଥିଲେ ମଧ୍ୟ ବହୁ ବିଶିଷ୍ଟ ବ୍ୟକ୍ତିଙ୍କର ନାରୀ ପ୍ରତି ଧାରଣା ଅତ୍ୟନ୍ତ ଉଚ୍ଚ । ଜଗତର ବ୍ରହ୍ମ ଆଦର୍ଶ ପୁରୁଷ ନାରୀ ବିଷୟରେ ଯେଉଁପରି ଉଚ୍ଚ ମତ ପୋଷଣ କରିଛନ୍ତି, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ସେହିପରି ମତପୋଷଣ କରି, ଯୁକ୍ତିଯୁକ୍ତ ଓ ଶାସ୍ତ୍ରସମ୍ମତ ଭାବରେ ଦୁର୍ଲ୍ଲଭ କବିସୁଲଭ ରୂପରେ ନାରୀମୂର୍ତ୍ତି ଦେବୀପ୍ରତିମା ରୂପେ ସର୍ଜ୍ଜିତ କରି, ତ୍ରିକାଳଜ୍ଞ ଜଗଦ୍‌ଗୁରୁ ଶ୍ରୀରାମଚନ୍ଦ୍ରଙ୍କ ମୁଖରେ "ଏ ସର୍ବସମ୍ମତ ପୁଂସ ପ୍ରଭୁ ନାରୀ ଦାସୀ"କୁ ଖଣ୍ଡନ କରି ସପକ୍ଷ, ବିପକ୍ଷ ଉଭୟ ମତବାଦର ସମାଧାନ ନିମ୍ନଲିଖିତମତେ କରି ଦେଇଛନ୍ତି:—

"ବେଦେ ଓଲଟି ସବୁରେ ଏତେକ କହି ଉପୁଜାଇ କେତେ ଭାବ ।
ବିବାହ ନିବାହେ ନେ ଚରଣ ଛୁଇଁ ଉତ୍ତର କଲେ ରାଘବ ।" ବୈ: ବି: ।

ଶ୍ରୀରାମଚନ୍ଦ୍ରଙ୍କ ଉକ୍ତି ନାରୀଶକ୍ତିର ଶ୍ରେଷ୍ଠତା ସମର୍ଥନ କରିବା ଉଦ୍ଦେଶ୍ୟରେ ମହାଦେବ ଉମାଙ୍କୁ କହନ୍ତି *—"ତୁ ସକଳ କଳାକୁଶଳୀ ଓ ତ୍ରିକାଳଜ୍ଞା ।"

*"Thou art skilled in every art, Thou,' Lady knowest both the Self and the Not—Self.")

ଅନ୍ୟତ୍ରା ନାୟିକାଙ୍କ ପ୍ରେମପତ୍ରିକା ଲେଖନଟିରେ ନାରୀସ୍ୱାଧୀନତା ତଥା ଶିକ୍ଷିତତାବୋଧର ଦ୍ୟୋତକ :—

କାମଶାସ୍ତ୍ରାନୁଯାୟୀ ନାରୀ ଚାରି ପ୍ରକାର—ପଦ୍ମିନୀ, ଚିତ୍ରିଣୀ, ଶଙ୍ଖିନୀ, ହସ୍ତିନୀ ଥିବା ସେ ଜମ୍ମତେ

କହିଛନ୍ତି :—"  ×  ×  ×

ବୃନ୍ଦ ବୃନ୍ଦ ପଦ୍ମିନୀଏ ତହିଁ । ବଦେ ମକରନ୍ଦ ଜଳ ନୟନ ଫୁଲ୍ଲ କମଳ ଲଗି ରହିଛନ୍ତି ଭ୍ରମର ତୋଳାହିଁ ଯହିଁ । ବାଳକା ହସ୍ତିନୀଗଣ ଅକୁଳ ହସ୍ତିବାରଣ ହାରମୋତି ବିଚରଣ ପ୍ରକଳ୍ପମୁଣ୍ଡରୁ । ବିଶେଷ ଥିଲେ ଶଙ୍ଖିନୀ କଣ୍ଠମାଳ ଶୋଭା ଯେହ୍ନ ପ୍ରକାଶିତ ଉଚ୍ଚଧ୍ୱନି ସେ ତା ଦନ୍ତରୁ । ବିନୋଦିନୀ ବର୍ଗ ବର୍ଗ ଚିତ୍ରିଣୀଏ ଥିଲେ । ବସୁଧାମଣ୍ଡିନୀ ଶେଷ ରଜନୀ କରଗରେ ଗାଢ ଚାରି ଜାତି ନାରୀ ସାର୍ଥ ଲକ୍ଷଣ ହେଲେ ।"

ଛ ୫୦, ବୈ: ବି: ।

ଭଞ୍ଜଙ୍କ ନାୟିକାଗଣ ସମ୍ଭ୍ରାନ୍ତ ବଂଶଜ ଏବଂ ପଦ୍ମିନୀ ଓ ଚିତ୍ରିଣୀଜାତୀୟ । ସେ ନାରୀକୁ ସ୍ୱାଧୀନତା ଦେବାରେ ପକ୍ଷପାତୀ ; କିନ୍ତୁ ସ୍ୱେଚ୍ଛାଚାରିତାକୁ ସେ ପ୍ରଶ୍ରୟ ଦେଇ ନାହାନ୍ତି । ପତ୍ର ଆଦାନ ପ୍ରଦାନ, ଦେବଦର୍ଶନ, ବନ ଉପବନ ଭ୍ରମଣ ପାଇଁ ସେ ସ୍ୱାଧୀନତା ଦେଇଛନ୍ତି । ପ୍ରେମିକ ପ୍ରେମିକା ତଥା ନାୟକ ନାୟିକାଙ୍କ ମଧ୍ୟରେ ପତ୍ରବିନିମୟ ପ୍ରଥାକୁ କବି ପସନ୍ଦ କରନ୍ତି । ଗୁହ୍ନ, ଅନୁନୟ, ବିନୟ—ଏହି ତିନି ରୀତରେ ପତ୍ର ଲେଖାଯାଏ । ଡାକଯୋଗେ ପତ୍ରପ୍ରେରଣ ପାଇଁ ସେକାଳରେ ସୁବିଧା ନ ଥିଲା । ମାତ୍ର ନିୟମ, ସାମାଜିକ ସମ୍ମାନ ଓ ଶିଷ୍ଟାଚାରର ସୀମା ମଧ୍ୟରେ ଆବଦ୍ଧ ରହି ଚଳିବା ପାଇଁ ନାୟିକା ଓ ପ୍ରେମିକାଗଣଙ୍କ ପ୍ରତି କବିଙ୍କ ନିର୍ଦ୍ଦେଶ ଅଛି ।

"କାଦମ୍ବିନୀ କାଦମ୍ବିନୀ-ଜିତ-କେଶୀ ପୁରତେ ଏକାଳେ ପ୍ରବେଶ ।
ଦେଖିଲା ଶତପତ୍ର-ପତ୍ର-ନୟନା ପ୍ରେମପତ୍ର ଯେହ୍ନ ଆବେଶ ।
ସେ ଗତ । ଆଗତ ତୁଳକ କାକତ ।
ମଞ୍ଜିଷ୍ଠାରସ ସହିତ ଛାଲି ଆଣି ବାଳୀ ଆଗରେ କଲା ସ୍ଥିତ ।

ଲେଖିଲା ଯାହା ପଦେ ପଦେ ସେ ଇନ୍ଦୁପଦେ ସ୍ଥାପିବ କୁମାରକୁ ।
ସଜନୀ ବେନି ବର୍ତ୍ତି ଯେହ୍ନ ବୋଇଲେ ମଧ୍ୟ ମଣି ହେବ ହାରକୁ ।
ଶୁଣି ତା । ଶଶିକଳା ପାଶ ହୋଇଲା ।
ଯାଇନାହିଁ କି ଗୋ ତରଳ ଭାବକୁ ତାହି ସିନା ହେବ ବୋଇଲା ।"

କୋ: ବ୍ର: ସୁ: ।

ପ୍ରେମପତ୍ର ଯେ କୌଣସି ଦୂତଦୂତୀ ହାତରେ ପଠାଯିବା ନିଷିଦ୍ଧ ; ବିଶ୍ୱାସଯୋଗ୍ୟା ସଙ୍ଗିନୀ ବା ପରିଚାରୁଣୀ ଦ୍ୱାରା ପ୍ରେରଣ କରାଯିବାହିଁ ଯଥାର୍ଥ ହେବ । ତାହା ହେଲା ।

"ଉପାସ୍ୟ-ଉପାଧିକା ଉପାଧ୍ୟାୟୀ ଯେ ମୁଦ ମୁଦାଇ ହସ୍ତେ ଧରେ ।
ଗୁପ୍ତି-ବିଦ୍ୟା ଅବଧୂତ ମିଳି ତହିଁ ଧଇଲେ ତାର କର କରେ ।
ସେଠାରୁ । କଥା ପରସ୍ପରେ ଗମନେ ।
ପୁଷ୍ପପୁର ରାଜକୁମାର ବିହାର ଉପବନେ ସ୍ଥିତ ଜବନେ ।" କୋ: ବ୍ର: ସୁ: ।

Digitized by srujanika@gmail.com

ଏଡ଼ପରେ ପ୍ରେମପତ୍ର ପ୍ରେମିକ ପ୍ରେମିକା ମଧ୍ୟରେ ଆଦାନ ପ୍ରଦାନ ବେଳେ କବି ଶିଷ୍ଟାଚାରର ପ୍ରତି ଦୃଷ୍ଟି ଦେଇଛନ୍ତି । ପ୍ରଥମେ ପ୍ରେମିକ ପରେ ପ୍ରେମିକା ପତ୍ର ଦେବାଟି ସମୀଚୀନ ।

"ଦେଇ ଲେଖ ତେବେ ରଖ ହୋଇଛୁ କରେଶ ।
ଶୁଣର ଏ ବାଣୀ ସବେ ଲଭ ସୁଖ
ସେ ବୋଇଲେ ଆମ୍ଭେ ନାରୀ ।
ପ୍ରଥମରେ ଲେଖିବୁଟି ପନ୍ତିକା କପଟ ।"

× × ×

ଘନ ଗରଜିଲେ ଯିନା ମୟୂର ଅନାଇ
ଆନନ୍ଦରେ ନୃତ୍ୟ କରି ବାଣୀ ପ୍ରକାଶଇ ।
ବୀର ବୋଇଲ ଏ ସତ ।
ତେବେ ପ୍ରେମପତ୍ର ଯାଇ ଆଗ୍ ଅମ୍ଭ ଦୂତ ।" ଲ: ବ: ।

ସତୀତ୍ୱ ନିଷ୍ଠା :—

ଓଡ଼ିଆର କାବ୍ୟ କବିତା, ପୁରାଣ ଶାସ୍ତ୍ର, ବିଶ୍ୱର ବ୍ୟବହାରରେ ଚରିତ୍ର ଓ ସତୀତ୍ୱର ଭୂୟୋଭୂୟଃ ନିଦର୍ଶନ ଦେଖି ହ୍ୟାଭଲ୍ କହନ୍ତି— * ଓଡ଼ିଆମାନଙ୍କର ଚରିତ୍ର ଏବଂ ସତୀତ୍ୱନିଷ୍ଠା ଜଗତରେ ଅତୁଳ୍ୟ । କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟାକାଶରେ ସତୀତ୍ୱନିଷ୍ଠାର ବନ୍ଧୁ-ବିଚିତ୍ର-ଦୃଷ୍ଟାନ୍ତ-ଚିତ୍ର ନାକ୍ଷତ୍ରମାନ ଉଦ୍ଭ କବିଗୁରୁଙ୍କ ଅମରତ୍ୱ ପ୍ରତିପାଦନ କରୁଅଛି । ବୈଦେହୀଶବିଳାସରେ ରାକ୍ଷସୀଗଣ ଧମକ ଚମକ ସ୍ୱରରେ, ବହୁ ପ୍ରଲୋଭନ ବାକ୍ୟରେ ସୀତାଦେବୀଙ୍କ ମନଧ୍ୟାନ ଲଙ୍କେଶ୍ୱର ପ୍ରତି ଆକୃଷ୍ଟ କରିବା ପାଇଁ ଆପ୍ରାଣ ଉଦ୍ୟମ କରି ସାରିବା ପରେ, ସୀତାଦେବୀଙ୍କ 'ସତୀତ୍ୱ' ସନ୍ତାନ ଭାଷଣ ଚମକପ୍ରଦ ଓ ସମୟୋଚିତ ବିବେଚିତ ହୁଏ ।

"ବକଶିଶୁ କି ଶିଖିବ ଶିଖେ । ବିନା ଜଳରେ ପଦ୍ମ କି ସୁଖେ ।
ବନ୍ଧନ ଆଶାବନ୍ଧରେ କି କୁଞ୍ଜର । ଶୁଣ ପ୍ରବନ୍ଧ କି ମୂର୍ଖ ମୁଖେ ଗୋ ବାମାଏ ।
ବନ୍ଧ୍ୟା ପଢ଼ିବା ଏମାନ ହେବ । ବଇଦେହୀ ଚିତ୍ତ ନ ଟଳିବ ।
ବିନା ଶ୍ରୀରାମରେ କୋଟିଏ କାମରେ । ଏ ତ ପାମରେ କି ସମ୍ଭବିବ ଗୋ ବାମାଏ ।" ଇତ୍ୟାଦି ।
ଗ୍ରନ୍ଥ, ବୈ: ବି: ।

ସେକ୍ସପିଅରଙ୍କ ପଞ୍ଚମ ହେନ୍‌ରିରେ ହେନ୍‌ରିଙ୍କ ଉଦ୍‌ବୋଧନ, ଅଷ୍ଟମ ହେନ୍‌ରିରେ ଉଲ୍‌ସେଙ୍କ ଭାଷଣ, ଜୁଲିୟସ୍ ସିଜର୍‌ରେ ଆଣ୍ଟୋନିଙ୍କ ଅଭିଭାଷଣ ପ୍ରଭୃତି ସାହିତ୍ୟ ଜଗତରେ ଯାବ ଭାଷାରେ ଉତ୍କୃଷ୍ଟ ।

---

*"Oriyas have a stand rd of morality as high as Europe has ever done."

Digitized by srujanika@gmail.com

ବୈ: କଳାସର ଗ୍ରନ୍ଥ, ବିଶେଷତଃ ସୀତାଦେବୀଙ୍କ ସତୀତ୍ୱ ସହାନ୍ତ ଭୂଷଣ ବିଶ୍ୱବିଖ୍ୟାତ ନାରୀମାନଙ୍କ ବିଖ୍ୟାତ ଆଲେଖ୍ୟ ତୁଲ୍ୟ ଉତ୍କୃଷ୍ଟ ବିବେଚିତ ହୁଏ । ଏଣୁ ପାଠକପାଠିକାଙ୍କର ତାହା ପ୍ରଣିଧାନର ବିଷୟ । ଉପେନ୍ଦ୍ର ଭଞ୍ଜ ଏଥିରେ ସତୀଶିରୋମଣି ସୀତାଦେବୀଙ୍କ ସତୀତ୍ୱନିଷ୍ଠା, ପାଣ୍ଡିତ୍ୟ ଓ ନିର୍ଭୀକତାର ଜ୍ୱଳନ୍ତ ଓ ଅନନୁକରଣୀୟ ଚିତ୍ର ଅଙ୍କନ କରି ସୀତାଦେବୀଙ୍କ ପଦାଙ୍କାନୁସରଣ କରିବା ପାଇଁ ନାରୀସମାଜକୁ ଇଙ୍ଗିତ ଦେଇଅଛନ୍ତି ।

କବି ନିଜର କାବ୍ୟସାମ୍ରାଜ୍ୟ ଭିତରେ ଦୁଃଖ ଶୋକ, ଅଭାବ ଅଭିଯୋଗ, ବିରହ ବିଚ୍ଛେଦକୁ ଚିରଦିନ ପାଇଁ ପ୍ରଶ୍ରୟ ଦେଇ ନ ଥିଲେ ମଧ୍ୟ ଚିରନ୍ତନ ପ୍ରଥାନୁଯାୟୀ ତାହା ସେଥିରେ ଅଛି । ଲାବଣ୍ୟବତୀର ଚନ୍ଦ୍ରଭାନୁ ସହିତ ମାୟା ପ୍ରଭାବରେ ଆକସ୍ମିକ ମିଳନ ପରେ ବିଚ୍ଛେଦ ଘଟିଲା । ଦିବ୍ୟ ତରୁଣକୁ ପଲକ ମଧ୍ୟରେ ଅଦୃଶ୍ୟ ହେବା ଦେଖି "ହୃଦେ ହାତ ମାରି ନାଥ ନାଥ ବୋଲି ଅତି ଉଚେ କଲା କାରୁଣ୍ୟ । ଶୋକେ ଅଧୀରେ । ଚେତନା ହତ ସେ ବାଧିରେ ।" ଚେତନାବସ୍ଥାରେ ବା ସ୍ୱପ୍ନରେ ମନେ ମନେ ହେଉ ମଧ୍ୟ ଯେଉଁ ସତୀ ଥରେ ଜଣକୁ ପତିସ୍ୱରୂପ ବରଣ କରିଥାଏ, ତାହା ଅନ୍ୟଥା କରିବୋ ନୀତିବିରୁଦ୍ଧ । ସାବିତ୍ରୀ ସତ୍ୟବାନଙ୍କୁ ପତିସ୍ୱରୂପ ନିର୍ବାଚନ କରି ସାରିବା ପରେ 'ସତ୍ୟବାନ ସ୍ୱଳ୍ପାୟୁ'—ଏହି କଥା ଶୁଣି ପାରି ମଧ୍ୟ ସେ ନାରୀଧର୍ମରୁ ସହଜଶ୍ଚିତ ବିଚ୍ୟୁତ ହେଲେ ନାହିଁ । ସେହିପରି ଲାବଣ୍ୟବତୀ ମନେ ମନେ ବରଣ କରିଥିବା ହେତୁ, ଆକସ୍ମିକ ବିଚ୍ଛେଦରେ ମର୍ମନ୍ତୁଦ ବେଦନା ଅନୁଭବ କରି କଲି ନୀରବ ରହିଲେ- ନାହିଁ, ଧୈର୍ଯ୍ୟର ସହିତ ଅସଙ୍କୁଚିତ ଚିତ୍ତରେ "ଶେଯ ଲେଉଟାଇ କବରୀ ଫିଟାଇ" ଶୋକିଲେ । ଏଥିରୁ ଲାବଣ୍ୟବତୀଙ୍କ କର୍ତ୍ତବ୍ୟନିଷ୍ଠା ପ୍ରକାଶ ପାଇବା ସଙ୍ଗେ ସଙ୍ଗେ କବିଙ୍କ ଚାତୁର୍ଯ୍ୟମୟୀ ଭାବବ୍ୟଞ୍ଜକ ବର୍ଣ୍ଣନା ପରିପାଟୀରେ ତାହା ଯୁଗ ଯୁଗ ପାଇଁ ଜୀବନ୍ତ ହୋଇ ରହିଅଛି ।

ପ୍ରାପ୍ତବୟସ୍କା ତରୁଣୀମାନଙ୍କ ରୀତି ନୀତି ତଥା ମନସ୍ତତ୍ତ୍ୱ —

ଋତୁ ବର୍ଣ୍ଣନାରେ, ବନ ଉପବନ ବିହାର ବେଳେ, ଜଳକ୍ରୀଡ଼ା ସମୟରେ ନାୟିକା ଓ ସଖୀ ସହଚରୀଙ୍କ ମଧ୍ୟରେ ଆଳାପ, ବ୍ୟଙ୍ଗୋକ୍ତି ଅତ୍ୟନ୍ତ ଚିତ୍ତାକର୍ଷକ । ସୁବର୍ଣ୍ଣରେଖାରେ ଯୁବତିସୁଲଭ ଲଜ୍ଜାର ପରିଚୟ ଦେଇ ନାୟକମୁଖରେ କବିସମ୍ରାଟ କହିଛନ୍ତି—

"ମୋର ନ ଚୁମ୍ବିଲୁ ବେଳେ ଅନାଇଁ । ଚୁମ୍ବିଦେଲେ ମହାଦୁଷ୍ଟ କରଇ ।
ମୋତେ ଚୁମ୍ବିବାକୁ ବଡ଼ ଶରଧା । ଲାଜ କୃପଣ କରୁଥାଇ ବାଧା ।"

ଲଜ୍ଜାଶୀଳତା ରମଣୀର ଏକ ପ୍ରଧାନ ଲକ୍ଷଣସ୍ୱରୂପ ପ୍ରାଚୀନ ପ୍ରାଚ୍ୟ ମନୀଷିବୃନ୍ଦ ଗ୍ରହଣ କରିଥାନ୍ତି । ତାହା ଆଧୁନିକ ଯୁଗରୁଚିର ଅନୁକୂଳ ନ ହେଲେ ମଧ୍ୟ, ଭାରତର ସୁଶିକ୍ଷିତା, ଇଂରାଜୀ ଭାଷାପ୍ରବୀଣା ତରୁଣୀଙ୍କ ଠାରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ହେଉ ମଧ୍ୟ ଅଦ୍ୟାବଧି ପରିଲକ୍ଷିତ ହୁଏ । ତଦ୍ଦ୍ୱାରା ତରୁଣୀଙ୍କ ସମ୍ମାନ, ସୌନ୍ଦର୍ଯ୍ୟ, ଗାମ୍ଭୀର୍ଯ୍ୟ ଅଳକ୍ଷିତ ଭାବରେ ବୃଦ୍ଧି ପାଏ ବୋଲି ବହୁ ବୈଶିଷ୍ଟ୍ୟବିଜ୍ଞବ୍ୟକ୍ତିଙ୍କର ଦୃଢ଼ମତ । କବି ତାହା ସମର୍ଥନ କରୁଥିବାରୁ ନିଜ ଗ୍ରନ୍ଥାଦିରେ ତାହାର ସୂଚନା ବାରମ୍ବାର ଦେଇ କହିଛନ୍ତି—

"ଲାଜ ପାଇଲି ପରି ହୋଇ ନୁଆଁଇ ବଦନକମଳ ।" ଇତ୍ୟାଦି । ଲା: ବ: /

Digitized by srujanika@gmail.com

ଲବଣ୍ୟବତୀ ପଞ୍ଚମ ଛାନ୍ଦରେ ମଧୁଋତୁ ଆଗମନ ସମ୍ବାଦ ପ୍ରସ୍ତମଞ୍ଜୁଳା ସୁନ୍ଦରୀ ଶ୍ରୀମୁଖରେ ଯେଉଁ ଭାବରେ ଜଣାଉଛନ୍ତି, ତାହା ଅତ୍ୟନ୍ତ ସ୍ୱାଭାବିକ ଓ ଭାବଗର୍ଭକ :—

"ଏହି ସମୟରେ ସୁନ୍ଦରୀ ଶ୍ରୀମୁଖରେ ପ୍ରସ୍ତମଞ୍ଜୁଳା ଜଣାଇଲା,
ଅତି ମଧୁର ମଧୁଋତୁ ପ୍ରବେଶ କଲୁ ଦିନ ହେଲା ହୋଇଲା,
ଶ୍ରବଣ । କର ନାହିଁ ନବ କାମିନୀ ।
ପିକବଚନେ ପୁନଃପୁନଃ ପ୍ରକାଶ କଲେକ ଅଛାର ଯାମିନୀ ।

ମଳୟ ଶିଖର ଶିଖ ସ୍ନେହ କର ବହୁଲେକ ମନ୍ଦ ସମୀର,
ସୁମନାଙ୍କ ବାସ ସ୍ନେହଇ ନେବଟି ବୋଲି କହୁଲେକ ଭ୍ରମର
କେଶର । କେଶରେ ହେଲେକ ମଞ୍ଜୁଳ ।
କେଶରେ ମଣ୍ଡନ କରିବା ଭଲରେ ଫୁଟିଲେକ କେତେ ବଞ୍ଜୁଳ ।" ଇତ୍ୟାଦି ।

ଏଥିରେ ରମଣୀଙ୍କ ରମଣୀସୁଲଭ ଲଳିତ ବାକ୍ୟାବଳୀ, ଆନ୍ତରିକ ସୌହାର୍ଦ୍ଦ୍ୟ, ଗାମ୍ଭୀର୍ଯ୍ୟ, ପ୍ରୀତିବର୍ଦ୍ଧନ ଓ ଭକ୍ତିବିବର୍ଦ୍ଧନରେ ଦକ୍ଷତା ପ୍ରଭୃତି ଧରାଯାଏ । ପ୍ରତ୍ୟେକ କାବ୍ୟର ନାୟିକାମାନ୍ତ ତଥ୍ୟ ତନ୍ନ ତନ୍ନ କରି ପର୍ଯ୍ୟବେକ୍ଷଣ କଲେ ଧରାଯିବ ଯେ କବିଙ୍କ ଅମର ଲେଖନୀରେ ନାରୀ 'ପୋପ'ଙ୍କ ଭାଷାରେ "She moves a goddess" etc. ଦେବୀମୂର୍ତ୍ତି, ଗୃହିଣୀ ଓ ଗୃହଲକ୍ଷ୍ମୀ ।

ଭଞ୍ଜ ସାହିତ୍ୟରେ ତରୁଣୀମାନଙ୍କ ଶିକ୍ଷା ଓ ଜ୍ଞାନଶୀଳତା :—

ଭଞ୍ଜ ସାହିତ୍ୟରେ ନରନାରୀମାନଙ୍କ କଥୋପକଥନ ପ୍ରସଙ୍ଗ ଅତ୍ୟନ୍ତ ରହସ୍ୟପୂର୍ଣ୍ଣ ଓ ଶିକ୍ଷଣୀୟ । ଶୁକ ଓ ଶାରୀ, ଉପାଧ୍ୟାୟୀ ଜଟିଳା, ସଖୀ ଏବଂ ସହଚରୀ, ରାକ୍ଷସୀ ଓ ସୀତାଦେବୀ, ଜରତୀ ସମେତ ଦ୍ୱାଦଶ ବେଶ୍ୟା ଓ ଋଷ୍ୟଶୃଙ୍ଗ ପ୍ରଭୃତିଙ୍କ ମଧ୍ୟରେ ଚାଲିଥିବା କଥୋପକଥନ ପ୍ରଣିଧାନର ଯୋଗ୍ୟ । ଚାତୁର୍ଯ୍ୟ ଓ ପରିହାସପୂର୍ଣ୍ଣ କଥୋପକଥନ ଭିତରେ ଶିକ୍ଷାର ଅବାଧ ସ୍ରୋତ ଧୀରେ ଧୀରେ ପ୍ରବାହିତ ହେଉଥିବା ଅନୁଭୂତ ହୁଏ । ସୀତାଦେବୀଙ୍କ ପ୍ରତି କଟୂକ୍ତି ପ୍ରୟୋଗରେ ରାକ୍ଷସୀମାନଙ୍କ ଜନ୍ମର୍ଗତ ଲକ୍ଷଣ ସଙ୍ଗେ ସଙ୍ଗେ ସାଧାରଣ ଶିକ୍ଷାର ପରିଚୟ ମିଳେ । କବି ନାୟିକା, ସହଚରୀ, ଅନୁଚରୀ ପ୍ରଭୃତିଙ୍କୁ ଏବଂ ରାକ୍ଷସୀମାନଙ୍କୁ ମଧ୍ୟ ଅଶିକ୍ଷିତା ରଖି ନାହାନ୍ତି ।

"ବୋଲୁଅଛୁ ଏକା ରାମ ରାମ । ବନ୍ଧମୋକ୍ଷଣେ ହେବ କି କ୍ଷମ ।
ବହୁବନ ପ୍ରଚାରୀ ପକ୍ଷୀ ବନଗୁଣ୍ଠା । ବାଇ ପଶୁ ଗୃହ ଏ ପୁଷମ ଗୋ । ବାନ୍ଧବ ।"

ପଶୁ, ପକ୍ଷୀ, ବାବାଜୀ, ବାୟୁ—ଏମାନେ ସମଦଶାପନ୍ନ ଓ ଜବୋଧ । ରାକ୍ଷସୀର ନିଷ୍ଠୁର ବଚନ ଭିତରେ ଏପରି ଏକାଧିକ ଉକ୍ତି ରହିଥିବାରୁ କବି ଉଚ୍ଚ ନୀଚ ସକଳ ଶ୍ରେଣୀୟ ନାରୀଙ୍କୁ ଶିକ୍ଷାରୁ ବଞ୍ଚିତ କରି ନ ଥିବା ଧରାଯାଏ । କବିଙ୍କ ସମୟରେ ବିଶେଷ ଭାବରେ ସ୍ତ୍ରୀଶିକ୍ଷା ପ୍ରଚଳିତ ଥିବା କଥା ତାଙ୍କ ଗ୍ରନ୍ଥରୁହିଁ ସ୍ପଷ୍ଟ ହୁଏ । ଯଥା—

"ସରସ୍ୱତୀ ଗୋଚରରେ ବିଦ୍ୟା ଥିଲେ ଯେତେ
ଦେଲେ କହି ସେ ଦ୍ୱିହ୍ନ ନ କରିବୁ ମୋତେ ।" ଲା: ବ: ।

Digitized by srujanika@gmail.com

କୋଟିବ୍ରହ୍ମାଣ୍ଡସୁନ୍ଦରୀରେ—

"ସୁପଦ୍ମେ ହାର ମୁଁ ପାରିବି । ଲକ୍ଷ କରି ଦେଉଛୁ ବିଦାୟ ।"

ଅନ୍ୟ ଏକ ଦୃଷ୍ଟାନ୍ତ— "ସଙ୍ଗୀତ ବିଦ୍ୟା ଆଦି ଦେଇ ସେବେଣୀ ସାରିବି ।" ସୁ: ପ: ।

ଭଞ୍ଜ କାବ୍ୟରେ ସହଚରୀଗଣ ସମ୍ପଦ ବିପଦ ଉଭୟ ସମୟରେ ସଙ୍ଗିନୀ ତଥା ନାୟିକାଙ୍କ ଉପଲବ୍ଧ ନାହିଁ । ବିପଦ ସମୟରେ ବନ୍ଧୁ, ଶ୍ରେଷ୍ଠ ବନ୍ଧୁରେ ଗଣ୍ୟ । ବିପଦ ସମୟରେ ନାୟିକାଙ୍କୁ ବିପଦଜାଲରୁ ଉଦ୍ଧାର କରିବା ପାଇଁ ସହଚରୀବର୍ଗ ଜୀବନ ପର୍ଯ୍ୟନ୍ତ ଉତ୍ସର୍ଗ କରି ନାନା ଉପାୟ ଉଦ୍ଭାବନରେ ତତ୍ପର ରହୁଥିବା ଦେଖାଯାଏ । ବର୍ଷା ଋତୁରେ ବିରହିଣୀଙ୍କ ଯନ୍ତ୍ରଣା ବଢ଼େ । ଲାବଣ୍ୟବତୀଙ୍କ ସହଚରୀବର୍ଗ ବର୍ଷା ଆଗମନରେ କହୁଛନ୍ତି—

"ରକ୍ଷା କେମନ୍ତେ କରି, କରିବା ମନ୍ତ୍ର କରି ଗଢ଼କ ଏମନ୍ତ ବିଚାରି ସେ ସହଚରୀ,
ଯିବେ ବର୍ଷିଲେ ଏ କାଳକୁ । କଥା ଥିବ କାଳ କାଳକୁ ।"

ଇତ୍ୟାଦିରୁ ଭଞ୍ଜ ସାହିତ୍ୟରେ ନାରୀ କିପରି ଦର୍ଶାଇଛି, ତାହା ସ୍ପଷ୍ଟ ହୁଏ । ଏପରି ଦୃଷ୍ଟାନ୍ତ ଭଞ୍ଜ ସାହିତ୍ୟରେ ଅପର୍ଯ୍ୟାପ୍ତ । କବିଙ୍କ ନାରୀଚରିତ୍ର ଅତ୍ୟନ୍ତ ନିର୍ଦ୍ଦୟ ବୋଲି କେହି କେହି ସମାଲୋଚକ ନିର୍ଦ୍ଦେଶ କରୁଥିବା ଏକାବେଳକେ ଭିତ୍ତିଶୂନ୍ୟ ବୋଧହୁଏ ।

ନାରୀ ପୁରୁଷର ସମ୍ବଳ ଓ ସମାଜର ନିୟନ୍ତ୍ରୀ :—

ନାରୀ ପୁରୁଷର ସମ୍ବଳ । ଏଥିକୁ ଦୃଷ୍ଟି ଦେଇ କବି କହନ୍ତି—"ଦେହ ଉପରେ ମନ ପ୍ରଭୁ ପ୍ରମାଣ ଧନ, ମନର ପ୍ରଭୁ ପ୍ରୀତିରେ । ପ୍ରୀତିର ପ୍ରଭୁ ନାରୀ ।" ଲ: ବ: ।

ତେବେ ପୁରୁଷ କ'ଣ ନାରୀର ସମ୍ବଳ ନୁହେଁ ? ଏଥିର ଉତ୍ତର ବାଦ୍ ଦିଆଯାଇ ନାହିଁ ।

"କ୍ଷୀର ନୀର ପରି ଅଭେଦ ପୀରତି ବେନି ତନୁ ଏକପ୍ରାଣ ।" ଲ: ବ: ।

( "Just unto the bow achord is, so unto the man is woman." )
ଅର୍ଥାତ୍ ଧନୁକୁ ଧନୁର ଗୁଣ ଯେପରି ନରକୁ ସହଧର୍ମିଣୀ ନାରୀ ମଧ୍ୟ ସେହିପରି । କବି ସ୍ତ୍ରୀଶକ୍ତି ସମ୍ପର୍କରେ କହନ୍ତି—

"ଦେହ ଉପରେ ମନ ପ୍ରଭୁ ପ୍ରମାଣ ଧନ, ମନର ପ୍ରଭୁ ପ୍ରୀତିରେ ।
ପ୍ରୀତିର ପ୍ରଭୁ ନାରୀ ।" ଲ: ବ: ।

ପୁଣି ଅନ୍ୟତ୍ର ସେ କହିଛନ୍ତି :—

"ଯୁବାକାଳ ରାଜା ସର୍ବ ଉପରେ
ମନରାଜା ଯୁବାକାଳ ଉପରେ ।
ମନ ଉପରେ ରାଜା ପୀରତି
କେହି ପାରିବ ମନୁଷ୍ୟ ବରତି ।
ପୁଣି ଦଇବେ ହୋଇଲେ ଦମ୍ପତି
ପାଦତଳେ ମିଳେ ଇନ୍ଦ୍ର, ସମ୍ପତ୍ତି ।" (ରସିକ ହାରାବଳୀ)

Digitized by srujanika@gmail.com

ଗୃହିଣୀଠାରୁ ଚିରଦିନ ପାଇଁ ବିଚ୍ଛିନ୍ନ ହୋଇ ଚିରଦାହାମୟ ଜୀବନସ୍ରୋତରେ ପଡ଼ି କବି ବାଇରନ୍ କହନ୍ତି—"Yet though I cannot be loved still let me love." "ପ୍ରୀତି ପଛେ ଉଣା କରୁ ସୁମତି । ତାରେ ନ ଛାଡ଼ିବି ନାହିଁ ମୋ ଗତି ।" ପ୍ରତ୍ୟାଖ୍ୟାତ ବାଇରନ ମଧ୍ୟ ପ୍ରେୟସୀଙ୍କୁ ଭୁଲି ନ ଥିଲେ ।

ଶିକ୍ଷିତ ଅଶିକ୍ଷିତ, ଧନୀ, ଦୀନ, ସମ୍ପନ୍ନ ଓ ଅବସ୍ଥାପନ୍ନ ସକଳ ପରିବାର ମଧ୍ୟରେ ସାଧାରଣତଃ ଗୃହିଣୀ ପରମ୍ପରାକ୍ରମେ ପରିଚାଳିକା ଓ ଉପଦେଷ୍ଟା ଭାବରେ ଦକ୍ଷତାର ସହିତ କାର୍ଯ୍ୟ ନିର୍ବାହ କରେ । କବି ନାରୀମୁଖରେ ଘନ ଘନ ବହୁ ସମୟୋଚିତ ଉପଦେଶ ଦେଇ ନିଜ ଗ୍ରନ୍ଥଗୁଡ଼ିକୁ ସ୍ୱାଭାବିକ ଓ ସାରଗର୍ଭକ କରିଅଛନ୍ତି । ନାରୀହରଣ ଦୋଷ ଅତ୍ୟନ୍ତ ଗର୍ହିତ । ତଦ୍ଦ୍ୱାରା ମନୁଷ୍ୟର ମାନବିକତା, ଦେଶର ଶ୍ରୀ ସମ୍ପଦ ଯେ ନଷ୍ଟ ହୁଏ, ତାହା ଯୁଗେ ଯୁଗେ ପ୍ରମାଣିତ ହୋଇ ଆସିଛି । ଆର୍ଯ୍ୟଭୂମି ଭାରତର ସତୀତ୍ୱନିଷ୍ଠା ଜଗତ୍ ପ୍ରସିଦ୍ଧ । ସତୀ, ସୀତା, ସାବିତ୍ରୀ, ଦ୍ରୌପଦୀ, ଦମୟନ୍ତୀ ପ୍ରଭୃତି ସତୀ ସୀମନ୍ତିନୀଗଣ ଚିରସ୍ମରଣୀୟା ହୋଇ ରହିଛନ୍ତି । ସେମାନଙ୍କ ଆଦର୍ଶ ଏବଂ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ବହିଃଶତ୍ରୁ ଓ ଅନ୍ତଃଶତ୍ରୁଙ୍କ ଶତ-ଅତ୍ୟାଚାର ଓ ଅନାଚାର ସତ୍ତ୍ୱେ ଭାରତରମଣୀ ତାହାର ସତୀତ୍ୱନିଷ୍ଠା ଅନବଚ୍ଛିନ୍ନ ଭାବେ ରକ୍ଷା କରି ଜଗଦ୍‌ବାସୀଙ୍କୁ ମୁଗ୍ଧ କରୁଛି । ବୈଦେହୀହରଣର ଅବ୍ୟବହିତ ପରେ ମନ୍ଦୋଦରୀ ବ୍ୟଥିତ ହୋଇ ନିଜ ସାମ୍ରାଜ୍ୟ ଓ ବଂଶର କଲ୍ୟାଣ କାମନାରେ ସୀତା ଦେବୀଙ୍କୁ ଯଥାଶୀଘ୍ର ଫେରାଇ ଦେବା ପାଇଁ ରାବଣଙ୍କୁ ସାନୁନୟ ନିବେଦନ କରି କହିଲେ, "ବ୍ୟାଧିବୁଦ୍ଧି ସୀତା ମଧୁରତା ରତା ମୁଞ୍ଚ ଯେ । ବିବେକ ବିଭୂତି ବିଭୂଷା, କନ୍ୟାଦାନ ରଚ ଯେ ।" ଛା ୮୮, ବୈ: ବି: । ଦୁର୍ଦ୍ଦାନ୍ତ ରାବଣ ଅହଂମଦରେ ବିଭୋର ହୋଇ ସହଧର୍ମିଣୀର ସମୟୋଚିତ ଉପଦେଶ ଉପେକ୍ଷା କଲା । ହେଲା—"ସନ୍ନିପାତ", ସବଂଶ ନିପାତ ହେଲା । କବିଙ୍କ ଭାଷାରେ—"ପରଦ୍ରବ୍ୟ ପରସ୍ତ୍ରୀ ହରଣକୁ । ଲେଖ ଶୁଭ କରି ତହୁଁ ମରଣକୁ ।" ଲ: ବି: । ସୁଭଦ୍ରା ଅର୍ଜ୍ଜୁନ ପ୍ରେମ ବିନିମୟ ସମ୍ବାଦରେ ବଳରାମ ମୂଷଳହସ୍ତ ହୋଇ ଯେତେବେଳେ ଉଠିଲେ, ରେବତୀ ତାହା ଘୋର ପ୍ରମାଦ ଗଣି ସ୍ୱାମୀଙ୍କ ସମ୍ମୁଖରେ ସହସା ପହଞ୍ଚି ଯାଇ—

"ସହିଷ୍ଣୁ ହୁଅ ହେ ଦେବ କହିଲେ ରେବତୀ ।
ସମଦରଶୀ ଜନଙ୍କ ହୃଦଇ ଏ ରୀତି ଯେ ।
ସବୁକାଳେ ବଡ଼ ହୋଇ କେ ନାହିଁ ମନକୁ ।
ସ୍ୱର୍ଗ ତେଜି ଗଙ୍ଗା ଲଭେ ଲବଣ ସିନ୍ଧୁକୁ ଯେ । ସୁ: ପ: ।

ସହଧର୍ମିଣୀଙ୍କ ଏହି ପଦକରେ ବଳରାମ ପ୍ରକୃତିସ୍ଥ ହେଲେ, ବିଶ୍ୱଗ୍ରାସୀ କ୍ରୋଧାଗ୍ନି ନିର୍ବାପିତ ହେଲା; ଅର୍ଜ୍ଜୁନ ସୁଭଦ୍ରା ସମେତ ବିଶ୍ୱବାସୀ ଜଳଚର ସ୍ଥଳଚର ସହିତ ସମସ୍ତେ ଆସନ୍ନ ଭୀଷଣ ବିପଦମୁଖରୁ ରକ୍ଷା ପାଇଲେ । ସେକ୍‌ସପିଅରଙ୍କ 'ପୋର୍ଶିଆ' ମୁହଁରେ ( Mercy ) ଦୟାସମ୍ବନ୍ଧୀୟ କ୍ଷୁଦ୍ର ଭାଷଣ ତୁଲ୍ୟ, ଉପେନ୍ଦ୍ର ଭଞ୍ଜ ରେବତୀ ମୁଖରେ 'ସହିଷ୍ଣୁତା' ସମ୍ବନ୍ଧୀୟ କ୍ଷୁଦ୍ର ଅଭିଭାଷଣ ଅତ୍ୟନ୍ତ ସମୀଚୀନ ଓ ଉପାଦେୟ ବୋଧହୁଏ । ସହିଷ୍ଣୁତାର ବଳ ଏତେ ଅଧିକ ଯେ, ସେହି ସହିଷ୍ଣୁତା-ଅସ୍ତ୍ର ପ୍ରୟୋଗରେ ଭାରତ ଚିରବାଞ୍ଛିତ-ସୁସ୍ୱାଦୁ ସ୍ୱାଧୀନତା-ଫଳ ପ୍ରବଳ ପରାକ୍ରମୀ ବ୍ରିଟିଶଦେଶର ମୁହଁରୁ ଉଦ୍ଧାର କରି ପାରିଲା । ୧୯୪୭ ଖ୍ରୀଷ୍ଟାବ୍ଦରେ ସହିଷ୍ଣୁତା-ଅସ୍ତ୍ରଯୋଗୁ ଭାରତ ସିନା ତାହା ପାଇଛି; ତାର ଇଙ୍ଗିତ କବି ଉପେନ୍ଦ୍ର ୩୦୦ ବର୍ଷ ତଳେ ଦେଇଥିଲେ । ଏଥିଯୋଗୁଁ ସେ କେବଳ ଓଡ଼ିଶାବାସୀଙ୍କର ନୁହନ୍ତି, କେବଳ ଭାରତୀୟଙ୍କର ମଧ୍ୟ ନୁହନ୍ତି, ସମସ୍ତ ବିଶ୍ୱବାସୀଙ୍କର ଯୁଗ ଯୁଗ ପାଇଁ ଧନ୍ୟବାଦାର୍ହ । ତାଙ୍କ ଉକ୍ତିର ପ୍ରତିଧ୍ୱନି ଇଂଲଣ୍ଡର ମନୀଷୀ

Digitized by srujanika@gmail.com

ଜନ୍ ରସ୍କିନ୍ଙ୍କଠାରୁ ଶୁଣାଯାଉଛି । ଯଥା:—"Patience is the finest and worthist part of fortitude." Ruskin—ଧୀରତାହିଁ ସହିଷ୍ଣୁତାର ଶ୍ରେଷ୍ଠ ଅଙ୍ଗ । ପୁଣି ଇଂଲଣ୍ଡର ପ୍ରସିଦ୍ଧ କବି ବାସ୍କରଙ୍କଠାରୁ ମଧ୍ୟ ଶୁଣାଯାଉଛି, ଯଥା:—* ଜଗତର ସମସ୍ତ ଶ୍ରେଷ୍ଠଶକ୍ତି ଅପେକ୍ଷା ସହିଷ୍ଣୁତାର ଶକ୍ତିହିଁ ଅଧିକ ।

—*—

* "The strength of endurance is better than all the talents in the world."

Digitized by srujanika@gmail.com

## ସମାଜଚିତ୍ର

ସାମାଜିକ ଚିତ୍ର ଉପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥାଦିରେ ଅତି ପ୍ରାଞ୍ଜଳ । ହିନ୍ଦୁ ତଥା ଓଡ଼ିଶାବାସୀଙ୍କ ଉତ୍ସବ, ଓଷା, ବ୍ରତ, ଉପବାସ, ନୌକା ବାଣିଜ୍ୟ, ଜନ୍ମୋତ୍ସବ—ତତ୍ ସଂକ୍ରାନ୍ତ ବିଧିବିଧାନ, ବିବାହ, ତତ୍ସଂକ୍ରାନ୍ତ ବୈଦିକ ବିଧାନ, ଶାଶୁ ନଣନ୍ଦ ପ୍ରତି ନବବଧୂଙ୍କ ସମ୍ମାନ, ନବବଧୂଯାତ୍ରା ପୁରୋହିତଙ୍କ ସାମୟିକ ଉପଦେଶ ଓ ବେଦପାଠ, ନାପିତ ନାପିତାଣୀଙ୍କ କାର୍ଯ୍ୟ, ଦେବ ଦେବୀ ଉତ୍ସବ—ପୂଜା-ଅର୍ଚ୍ଚନା, ବେଶଭୂଷା, ବସନ ଭୂଷଣ, ପ୍ରାଚୀନ ସତୀପ୍ରଥା ଇତ୍ୟାଦିରେ ଭଞ୍ଜ ସାହିତ୍ୟ ଭରପୂର ।

### ଜନ୍ମୋତ୍ସବ

ପାରିବାରିକ ଜୀବନରେ ଗୃହକୁ ଦ୍ୱିତୀୟ ସ୍ୱର୍ଗରେ ପରିଣତ କରିବାକୁ ଯାଇ, ପୂର୍ବପୁରୁଷମାନେ ବିବିଧ ଉତ୍ସବ, ଜନ୍ମୋତ୍ସବ, ପଞ୍ଚୁଆତି, ଏକୋଇଶିଆ ବିଧାନ ଇତ୍ୟାଦି କରିଛନ୍ତି । ତରୁଣ ତରୁଣୀ, ବାଳକ ବାଳିକା, ବିଶେଷତଃ ଶିଶୁଗଣ ଉତ୍ସବଗୁଡ଼ିକୁ ହୃଷ୍ଟପ୍ରାଣରେ ଅନୁଭବ କରନ୍ତି । ପିଲାଙ୍କ ତାଳି ଶିଶୁଙ୍କ ନୃତ୍ୟ, ତରୁଣଙ୍କ ଘଣ୍ଟ ଘଣ୍ଟା ତାଳ ଖୋଳ ବାଦନ, ତରୁଣୀଙ୍କ ଗାନ, କାମିନୀଗଣଙ୍କ ହୁଳହୁଳି ଧ୍ୱନିରେ ଗୃହ ମହାମହୋତ୍ସବମୟ ହୋଇ ଉଠେ । ଏହି ସମସ୍ତ ଗହଳ ଚହଳ ମାଙ୍ଗଳିକ ଉତ୍ସବ ଶିଶୁ-ମାନଙ୍କ ଭାବୀ ଜୀବନରେ ଏକପ୍ରକାର ଅନିର୍ବଚନୀୟ ଶାନ୍ତି ସନ୍ତୋଷ ଆନୟନ କରିଥାଏ । ସେହି ହେତୁ କବି ସେ ସମସ୍ତ ବାଦ ନ ଦେଇ ପାଠକମାନଙ୍କୁ ଉପହାର ଦେଇଛନ୍ତି । ଶ୍ରୀରାମଚନ୍ଦ୍ରଙ୍କ ପଞ୍ଚୁଆତି ଠାରୁ ଏକୋଇଶିଆ ବିଧାନ ପର୍ଯ୍ୟନ୍ତ ବର୍ଣ୍ଣନା ଦେଖନ୍ତୁ—"ବ୍ରୀହି ଆଦି ପଞ୍ଚବୀଜ ପଞ୍ଚୁଆତି ଯେ । ବ୍ୟାଜପଦ୍ମ ପଞ୍ଚବାନ୍ଧୁ ତୋଷକ ସେ ଯେ । ବନଜନୀ ଲକ୍ଷନାସ୍ତ ଷଷ୍ଠୀ ଘରକୁ । ବସ୍ତ୍ରଟକେ ମଣ୍ଡି କଲେ ମନୋହରକୁ । ବିଯୋଗ ନିଦ୍ରାରେ କାମ ମଧୁରେ ବାଦ, ବିରଚି ଏ ପାଞ୍ଚ ଉଠିଆରୁ ସମ୍ବାଦ । ବିଂଶ ଏକ ଦିନେ ଦୋଳି ଶୟନ କରି, ବଟପତ୍ର ପୁଟେ ବାଳମୁକୁନ୍ଦ ପରି ।" ଛା ୫, ବୈ: ବି: ।

ଲାବଣ୍ୟବତୀରେ—

ଧାତ୍ରୀ ଧନେମିଭୂଷାକୁ ନାଡ଼ିଚ୍ଛେଦ କରି
ଗଣକଗଣେ ବସିଣ ଜାତକ ବିଗ୍ରହ ଯେ ।
ସୂତିକା ଗୃହରେ ଯେତେ ବିଧି ଶେଷ କଲେ
ଦଶବିଂଶଦିନେ ଦୋଳି ଶୟନ ବିହିଲେ ଯେ । ଛା ୨, ଲା: ବ: ।

### ପୁଷ୍ପ ସମୟ

ଯଥା ସମୟରେ ଲାବଣ୍ୟବତୀଙ୍କର ପୁଷ୍ପ ସମୟ ହେଲା । ସଖୀ ସହଚରୀଙ୍କ ମଧ୍ୟରେ ଆନନ୍ଦ ଚହଳ ପଡ଼ିଲା । ସେମାନେ ଅନ୍ତଃ ପରିହାସ କରିବା ସଙ୍ଗେ ସଙ୍ଗେ ଆବଶ୍ୟକୀୟ ସମ୍ଭାର ଆରମ୍ଭ କଲେ—

"ପ୍ରେମଶୀଳା ମାତା ପାଶେ ଜଣାଇ । ଶିରମନ୍ଦିର ସମ୍ଭାର ଅଣାଇ ।
ମାସ ଉଣ୍ଡୁଳରେ ଗୃହ ଗଢ଼ାଇ । ବାସ ପ୍ରାକାର ପ୍ରକାରେ ବେଢ଼ାଇ ।
ଗୃହ ପାଶେ ଗୃହଗୋଟି ମାର୍ଜ୍ଜିଣ । ଅବଲମ୍ବେ ପୋତିଲେ ସଖୀଗଣ ।
ନାରିକେଳ ତେଲ ଦୂର୍ବାଗ୍ରପକୁ । ଭିତ ସମୀପେ ଥୋଇଲେ ସୂର୍ପକୁ ।
ମଧ୍ୟେ ବସାଇଲେ ଯେ ନବବାଳୀ । ଶୁଭ ଅର୍ଘ୍ୟରେ ଦେଲେ ହୁଳହୁଳି ।
ତାପରେ—ଉଚ୍ଛୁଳିଲ ପୁରଦ୍ୱାର ବାଦ୍ୟରେ ।" ଲା: ବ: ।



Digitized by srujanika@gmail.com

## ବିବାହ ବୟସ

ଉପେନ୍ଦ୍ର ଭଞ୍ଜଙ୍କ ସମୟରେ କ୍ଷତ୍ରିୟ ସମାଜରେ ଯୁବତୀ ବିବାହପ୍ରଥା ପ୍ରଚଳିତ ଥିବା ତାଙ୍କ ଗ୍ରନ୍ଥରୁ ଧରାଯାଏ । କନ୍ୟାର ଯୌବନପ୍ରାପ୍ତି ପରେ କନ୍ୟାପିତା କନ୍ୟାର ବିବାହ ପାଇଁ ବ୍ୟବସ୍ଥା କରୁଥିଲେ । ଏହାର ବ୍ୟତିକ୍ରମ ଘଟିଛି କେବଳ 'ପ୍ରେମସୁଧାନିଧି'ରେ । (ଏଥିକି ଦୃଷ୍ଟି ରଖି ବିଜୟଚନ୍ଦ୍ର ମଜୁମଦାର, କ୍ଷତ୍ରିୟ ସମାଜରେ ବାଲ୍ୟବିବାହ ପ୍ରଚଳିତ ଥିବା କଥା ତାଙ୍କ 'ଓଡ଼ିଆ ସାହିତ୍ୟ ପରିଚୟ' ବହିର ମୁଖବନ୍ଧରେ ଉଲ୍ଲେଖ କରିଅଛନ୍ତି । ସେତେବେଳେ ସେ ସମ୍ଭବତଃ ଭଞ୍ଜଙ୍କ ଅନ୍ୟାନ୍ୟ କାବ୍ୟ ପଢ଼ି ନ-ଥିଲେ ।

## କନ୍ୟା ନିର୍ବାଚନ

ବିବାହବିଧାନ ଅତ୍ୟନ୍ତ ପବିତ୍ର । ହିନ୍ଦୁମାନଙ୍କର ବିବାହ ଧର୍ମଶାସ୍ତ୍ର ଓ କର୍ମକାଣ୍ଡ ପଦ୍ଧତି ଅନୁଯାୟୀ ସମାହିତ ହୁଏ । ବର କନ୍ୟା ଉଭୟଙ୍କ ହୃଦୟରେ ବିବାହବନ୍ଧନର ପବିତ୍ରତା ସତତ ଜାଗରୂକ ରହିବା ପାଇଁ ଶାସ୍ତ୍ରବିତ୍‌ମାନେ ସର୍ବଦା ବ୍ୟାକୁଳ । କବି ତାହା ନିଜର ପ୍ରାୟଶଃ ପ୍ରତ୍ୟେକ ଗ୍ରନ୍ଥରେ ବାରମ୍ବାର ଉତ୍ଥାପନ କରି ଅଛନ୍ତି । ପ୍ରଥମେ କନ୍ୟା ନିର୍ବାଚନ ପ୍ରସଙ୍ଗରେ ସେ କହନ୍ତି—"ସମେ କନ୍ୟା ନ ମିଳିଲା ଅବନୀମଣ୍ଡଳେ । ଊଣା ଅଧିକ ଦ୍ରବ୍ୟ କି ପାଣେ ରହିବ ଭୂଲେ ଯେ ।" ହେଲେ ହେଲା କି ହେଲା କି ହୁଏଁ ବଡ଼ ରଜା । ରାଜପୁତ୍ରୀ ବିନା ଯିବା ରାଜାର ତନୁଜା କେହି," ଲା: ବ: । "ପରମେଶ୍ୱର ବନ୍ଧୁ ହେଲା । ପରମ ସନ୍ତୋଷେ ମଣ୍ଡିଲେ ଯେ ।" ଛା ୬୨, କୋ: ବ୍ର: ସୁ: । କନ୍ୟା ନିର୍ବାଚନ ପରେ ଅନ୍ୟାନ୍ୟ ଆନୁଷଙ୍ଗିକ ବିଷୟ ପ୍ରତି ଦୃଷ୍ଟି ଦିଆଯାଇଥାଏ । କନ୍ୟାଦର୍ଶନ, ଲଗ୍ନନିର୍ଣ୍ଣୟ, ସପ୍ତ ସଧବା ସ୍ତ୍ରୀଙ୍କ ମଙ୍ଗଳନ ବିଧାନ ଓଡ଼ିଆ ଘରର ପାରମ୍ପରିକ ପ୍ରଚଳିତ ପ୍ରଥାର ଅନ୍ତର୍ଗତ । ଯଥା—

"ବେହରଣ ସ୍ତ୍ରୀଙ୍କ ବିଶୋଧନ ମୂଳ କରି
ବିଣ୍ଡିକ ତାର ଲଗ୍ନକୁ ଜ୍ୟୋତିଷେ ବିଗ୍ରହ ଯେ ।
× × ×
ବ୍ରାହ୍ମଣୀ ଯାତ ସଅଳଙ୍କାର କରି ତହିଁ
ବସ୍ତ୍ରପାଟେ ଲଲାଟେ ସିନ୍ଦୂର ଟିକା ଦେଇ ଯେ ।
ବିଯୋଗିଲେ ଚନ୍ଦ୍ର ଦୀପ୍ୟମାନ କୁମ୍ଭସଣି
ବନ୍ଧୁରତାରେ ଧନିଷ୍ଠା ହୋଇ ପରଶଂସି ଯେ ।
ଛିଦ୍ରମେଷୁ ସୁପ୍ରଯୁକ୍ତ ନାସ୍ତି କେଳିନରେ
ବିରହିଣୀ ପ୍ରାପ୍ୟ ଦିବାକାନ୍ତି ନାସ୍ତି ଧରେ ଯେ ।" ବୈ: ବି: ।

## କୋକିଳ ସ୍ନାନ

ଗନ୍ଧଷଣ, ବିବାହପୂର୍ବକୁ 'କୋଇଲିବୁଡ଼' ହୁଏ । ତାହା କବିଙ୍କ ଭାଷାରେ—

"ଏମନ୍ତେ ରଜନୀ ଶେଷ ସମୟରେ ତହିଁ
କୋକିଳସ୍ନାନ ସେ ବରକନ୍ୟାକୁ କରାଇ ଯେ ।
ଦଧିଗୁଡ଼ ଭକ୍ତ ଭୁକ୍ତ ଅନୁରକ୍ତବଶେ ।
କନ୍ୟା ଲବଣଚଉଁରୀ ପୁଞ୍ଜିଲା ହରଷେ ଯେ ।" ଲା: ବ: ।

Digitized by srujanika@gmail.com

## ଗନ୍ଧଷଣୀ ବିଧାନ

ଏହି ସମ୍ପର୍କରେ କବି ବିଶଦ ବିବରଣୀ ଏକାଧିକ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ଯଥା—

"ନାପିତି ନୂତନ ସ୍ୱର୍ଣ୍ଣେ ଶ୍ରେଣି ନାଣ୍ଟେଲେ ।
ନବ ତେଲ ପ୍ରଦୀପ ବଦଣ୍ଡି ଦୁର୍ବାଦଳ ।
ଧେନ ବାଦ୍ୟଗଲେ ଉଚ୍ଚେ ହୁଳହୁଳି ଦେଇ ।
ଗୀତ ଇଚ୍ଛାସୁଖେ ବୀଣା କ ଅବା ବଜାଇ ଯେ ।
ବଜାଇ ବିବିଧ ବାଦ୍ୟ ଦେବୀ ଗନ୍ଧଷିଲେ ।
ସପତ ଶୁଦ୍ଧ ଭୂଷଣ ସକଳ ତୋଳିଲେ ଯେ ।" ଗ୍ର ୩୦, ଲ: ବ: ।
"ନାପିତ୍ତା ବନ୍ଧୁବା ସ୍ୱର୍ଣ୍ଣ ଦ୍ୱାଦଶା ପଣରେ,
ରାଜିତ କାଞ୍ଚଳୀ ପୀତାମ୍ବର ପରିବରେ ଯେ ।" କୋ: ବ: ସ୍ତୁ: ।
"ବରକନ୍ୟା ଗନ୍ଧଷଣ କଲେ ପରସ୍ପର ।
ଗନ୍ଧବତୀ ନାମ ସାର୍ଥ କର ଅବନୀର ଯେ ।" ଗ୍ର ୩୩, କୋ: ବ୍ର: ସ୍ତୁ: ।

## ବିବାହ ଶୋଭାଯାତ୍ରା

ବର ବରଯାତ୍ରୀ ଦଳବଳସହ ଶୋଭାଯାତ୍ରାରେ ଯିବା ପ୍ରଥା ଓଡ଼ିଶାର ସର୍ବତ୍ର ପ୍ରଚଳିତ । ଧନୀ ଦରିଦ୍ର, ରାଜା ରାଜୁଡ଼ା ସମସ୍ତେ କର୍ତ୍ତବ୍ୟ ଅନୁସାରେ ଶୋଭାଯାତ୍ରାର ଯୋଗାଡ଼ କରନ୍ତି । ରାଜପୁତ୍ର ପୁଷ୍ପକେତୁଙ୍କ ବିବାହ ଶୋଭାଯାତ୍ରାର ଚିତ୍ର, କବି ନିମ୍ନମତେ ଦେଇଛନ୍ତି—

"ଛନ୍ଦ ହେଲେ ଲକ୍ଷ୍ୟମାନେ ବସନ୍ତ ଅଳ୍ପଣ
ଚମ୍ପା ଫୁଟାଇ ରଚିଲ ହଂସ ଚନ୍ଦ୍ରଗଡ଼ ।

... ... ... ...

ହାବେଳେ ଧ୍ରୁବ ମଣ୍ଡଳ ବଳିଯିବା ତ୍ୱର ।" କୋ: ବ୍ର: ସ୍ତୁ: ।

ବର ଦୂରଦେଶରେ ପହଞ୍ଚିବା ପୂର୍ବରୁ ବାଟବରଣ ପ୍ରଥା ଅଛି ।

ଯଥା—"ବେଳ ଦୁଇଦଣ୍ଡ ଥାଉ ବର ଆସି ଗଲେ,
ପଥେ ଆସି ପୁଷ୍ପମାଳେ ଶାଳକ ବନ୍ଦିଲେ ।"

## ବିବାହ ବିଧାନ

ନାନାବିଧ ବେଦୀବିଧାନ, କନ୍ୟାପିତାଙ୍କର କମ୍ବୁରେ ଅମ୍ବୁଦାନ, ଲାଜାହୋମ, କଣ୍ଠଦେଶରେ ଗଣ୍ଠି ଆଳ ବସନ ଧାରଣ, କନ୍ୟାବରଙ୍କ ଦ୍ୟୂତକ୍ରୀଡ଼ା କୌତୁକ, ପଞ୍ଚଗାଣ୍ଠି ବିଧାନ, ଲବଣ ଚଉଁରି ବିଧାନ ପ୍ରଭୃତିର ଚିତ୍ର କବି ନିମ୍ନମତେ ଦେଇଛନ୍ତି—

ପୂର୍ଣ୍ଣକୁମ୍ଭ ଛକତ ପଲ୍ଲବ ଶିରେ ଦେଇ ।
ପଦ୍ମନାଭ ଫଳିତ ବସନରେ ଆଗେ ରହି ॥

Digitized by srujanika@gmail.com

କନ୍ୟାଗାତ୍ର ଅମ୍ବୁଦାନେ କମ୍ବୁହସ୍ତ ଜଳ ।
ଗଳେ କି ମୁଖ ପୋଛିବା ବ୍ୟାଜେ ଶ୍ରମଝାଳ ॥
ଲଜ୍ଜାବଦନକୁ ଗୁହି ଲଜ୍ଜା ଲଭି ଜାସ ।
ଚିଗ୍ଗୁଣଲ ପଳାଇବ କଁାଁ ଯିବ ନାଶ ଯେ ॥
ବାମା ସ୍ୱାଧୀନଭର୍ତ୍ତୃକା ଅନୁକୂଳ ପୁଂସ ।
ହୋଇ ମନ୍ତ୍ର ସ୍ୱାନୁରାଗ କରବେ ପ୍ରକାଶ ॥
ଦୃଢ଼େ ଗଣ୍ଠି ଦଆଇ ବସନେ ଏ ସମସ୍ତେ ।
କଣ୍ଠେ ପକାଇ ଗମନ କଲେ ଏ ଶୃଙ୍ଖଳେ ॥
ଯୁତଶାଳାରେ ବସିଲେ ସେ ଯୁବତି ଯୁବା ।
ଯୁତଶାଳା କଉତୁକ ଆଦ୍ୟାରମ୍ଭ କବା ॥
ସେ ଯୋଗୀନ୍ଦ୍ରମୋହନୀ ସମ୍ବାଦ ବଢ଼ାଇ କି ।
କରମୁଠା ଭିତରେ ରଖିଲ କପର୍ଦ୍ଦକ ॥
ସ୍ନିଗ୍ଧ ଘନ କୋମଳ ଅଙ୍ଗୀ ପଦ୍ମ ତାର ।
କରାଇ ନ ଦେଲେ ସେ ରସିକେ ବଳାତ୍କାର ॥
ପଞ୍ଚଶାଖୀ ବିନାଶନ ବ୍ରତ ପୂର୍ଣ୍ଣକାଳ ।
ବିନାଶ ନ କର ଓଷ୍ଠାମୃତ ଦୋଷ ଗୋଳ ॥”
ଲାବଣ୍ୟ, ନୋ: ବ୍ର: ଘୁ: ।

“ଏ ସମୟେ ପଣବାଣ ବାଣେଜର୍ଜରାକୁ ।
ଲବଣଚର୍ବିବା ଅର୍ଥେ ଆଣିଲେ ସେଠାକୁ ଯେ ॥
ଅନ୍ତରପାଟ ଅନ୍ତରେ ତରଳାକ୍ଷୀ ରହି ।
ତରଳ ନୟନ ଅନ୍ତେ ବଲ୍ଲଭକୁ ଗୁହିଁ ଯେ ॥
ଲବଣ ତଣ୍ଡୁଳ ସହ ପୁରୁଷକୁ ମାର ।
ବିନ୍ଦୁ ପ୍ରାୟ ବାହୁତଳ ଚଞ୍ଚଳ ତରୁଣୀ ଯେ ॥

× × × ×
× × × ×
× × × ×
× × ×

ବରଜଙ୍କ ଯଜ୍ଞୋପବୀତକୁ ଏହିକାଳେ ।
କନ୍ୟାପାଣେ ଲଗ୍ନେପଣ ଦ୍ୱିଜବର କଲେ ॥

× × ×

ଧୀରେ ବିଭାମଣ୍ଡପେ ପ୍ରବେଶ ଆସି ହେଲା ।
ବାମ ଦକ୍ଷିଣ ବିଗ୍ରହ ନ ବସଇ ବାଳା ଯେ ॥

× × ×

ଏ ବିଗ୍ରହ କଲ ଶିବ ପୁରୋହିତ ସୂତ ।
ବିଧାତା ବିଧାନ ଶ୍ଳୋକ ପଢ଼ିଲ ତ୍ୱରିତ ଯେ ॥

Digitized by srujanika@gmail.com

ଶ୍ରବଣେ, ଯେଜନ ବର ସମୀପେ ବଜନ୍ତା ।
ସ୍ମରୁଣ ଯେଜନ ଏତେ ପରମ ପଣ୍ଡିତା ଯେ ॥
ବେଦାନ୍ତ ମନ୍ତ୍ରବିଧିରେ ଆରମ୍ଭେଣ କର୍ମ ।
କ୍ରମରେ ଉଚ୍ଚାରିତ କଲେ କାନ୍ତା କାନ୍ତ ନାମ ଯେ ॥
ବଶିଷ୍ଠ ଅରୁନ୍ଧତୀ ଶ୍ରୀରାମ ସୀତା ପରି ।
ଶିବ ପାର୍ବତୀ ଏ ଆଦି ଲକ୍ଷ୍ୟମାନ କରି ଯେ ॥
ଦ୍ୱିଜେ ବନ୍ଧେ ନାଗବେଲ ବାଦ୍ୟ ଯେଣୁ ସ୍ୱନେ ।
ବିପ୍ରଗଣ ନବେଷ୍ଟିଲେ ତାହାଙ୍କୁ ଦହନେ ଯେ ॥
ମଧୁଶଯ୍ୟା କାଳରେ ଯେ ଚେଷ୍ଟା କରିବାକୁ ।
ଲଜାଦ୍ୱୋମ ନ କଲେଟି ଦମ୍ପତ୍ତିଲେ ଲଜ୍ଜାକୁ ଯେ ॥
କାନ୍ତା କାନ୍ତ କରପଦ୍ମ କୋକନଦ ଶିଖ ।
ସ୍ନେହ ଜଡ଼ିଥିଲେ ବୋଲି କୁଶବନ୍ଧ କରି ଯେ ॥
ପରିଭବ ଅନ୍ତେ ଦ୍ୱିଜସୁତା ଫେଡ଼ି ଦେଲ ।
ମନୋଭବ ପରିଭବ ଯେଣୁ ହେଉଥିଲ ଯେ ॥
ଛୁଆଁଇଲେ କୁମାରକୁ କୁମାରୀ ଚରଣ ।
ମନ୍ମଥଭୟରୁ ନିଶ୍ଚେ ପଶିଲା ଶରଣ ଯେ ॥
କମ୍ବୁରେ ଅମ୍ବୁ ତୋଳଣ ଦେଲ କନ୍ୟାତାତ ।
କଣ୍ଠକୁ ସମାନ ନୋହୁ କି ଅବା ଗ୍ରେଦିତ ଯେ ॥
ବିଭବିଧି ଶେଷ ଯହୁଁ ହେଲ ଏ ବିଧିରେ ।
ବରକନ୍ୟା ଯେକ ଗଲେ ଅବରୋଧ ପୁରେ ଯେ ॥"
ଗୀ ୩୦, ଲ: ବ: ।

## କନ୍ୟାଗ୍ରୁଡ଼

କନ୍ୟା ଶାଶୁଘରକୁ ଯିବାବେଳେ, ଝିଅ ଗ୍ରୁଡ଼ିଯିବା ପ୍ରଥା ସର୍ବତ୍ର ପ୍ରଚଳିତ । "କେମା ଭ୍ରାତ ମନ୍ତ୍ରୀଆଦି ଗ୍ରୁଡ଼ି ବାହାରିଲେ ।" କନ୍ୟାଗ୍ରୁଡ଼ ପୂର୍ବରୁ ମା, ଝିଅକୁ ଆଲିଙ୍ଗନ କରି ଦୁଃଖଦ୍ରବୀଭୂତ ହୃଦୟରେ ସମୟୋଚିତ ଉପଦେଶ ଦିଏ । ଯଥା—

"ମାତା କୋଳ କରି ପ୍ରିୟ ସୁତାକୁ ଉଆରି,
ତଦୁତ୍ତରେ ରହି ଦ୍ୱାନ୍ଦୋଳାରେ ବଜେ ଜଡ଼ି ଯେ ।" ଲ: ବ: ।

ଶ୍ୱଶୁରାଳୟରେ ପ୍ରବେଶ ପରେ ନବବଧୂ ବୟସ୍କ ଓ ନମସ୍ୟଙ୍କୁ, ବିଶେଷତଃ ପ୍ରଥମେ ଶାଶୁଙ୍କୁ ସସମ୍ମାନ ପ୍ରଣିପାତ କରିବା ପାରମ୍ପରିକ ରୀତି ଅଛି ।

"ଶାଶୁଙ୍କୁ ଓଳଗି ବାସ କଉଗ୍ରାଳ କଲ ।
ପୁରସ୍ତ୍ରୀ ହୁଲହୁଲନାଦେ ଉଚ୍ଛୁଳିଲ ଯେ ।" ଲ: ବ: । ଉ: ପ: ୧୫

Digitized by srujanika@gmail.com

ନବବଧୂମାନଙ୍କର ଶାଶୁ ନଣନ୍ଦ ପ୍ରତି ଭୟଭକ୍ତି ବେଶି । ବୋହୂଙ୍କ ମଧ୍ୟରୁ ଅଧିକାଂଶ ଜନେ ନଣନ୍ଦ ଥିଲେ । ଭବିଷ୍ୟତରେ ଶାଶୁ ପାଲଟିବା ସମ୍ଭାବନା ଥିଲେ ମଧ୍ୟ ନଣନ୍ଦ 'ଖେଣ୍ଡାଖେଣ୍ଡି' କରେ, ଶାଶୁ 'ଶାସନ କରେ'—ଏହି କଥା ଲୋକଙ୍କ ମଧ୍ୟରେ, ବିଶେଷତଃ ସ୍ତ୍ରୀ ମହଲରେ କୁହାବୋଲା ଯୁଗ ଯୁଗ ଧରି ଚାଲିଛି । ବୋହୂ ଉପରେ ଦୁର୍ନାମ-ଶଙ୍କା ଛୁଟେ ନାହିଁ, ସେ ଯେଥିରୁ ମୁକ୍ତ । "କେ ଶାଶୁ ନଣନ୍ଦ ଉପୁରେ ପ୍ରିୟଙ୍କୁ କହୁ ନ କହୁ ତକ୍ଷଣେ......"ଲ: ବ: ।

## ଯୌତୁକପ୍ରଥା

ଏଥିରୁ କେହି ରକ୍ଷାପାଏ ନାହିଁ । ରାଜାଘରମାନଙ୍କରେ ତାହା ପ୍ରଥମେ ରାଜ ଆଡ଼ମ୍ବରରେ ଆରମ୍ଭ ହୋଇ ସର୍ବତ୍ର ବ୍ୟାପି ଯାଇଛି । କବିଙ୍କ ଭାଷାରେ—

"ଯଉତୁକ ସମ୍ଭାର ଘେନାଇ ସଚିବଙ୍କୁ
ପ୍ରେରିତ କଲେ ତ୍ୱରିତ କୁମାରପାଶକୁ ଯେ ।
ଯାହିଁ ସେ ସମ୍ଭାର ଯୁବରାଜ ହୋଇ ତୋଷ
ଦେଇଛି ଧନଦ-କୋଷ ପରି ରତ୍ନକୋଷ ଯେ ।
କରୀ ହୟ ନରହୟ ଯାନ ସମାନରେ
ଲକ୍ଷ ସଂଖ୍ୟକ ଦେଇଛି ସହକ ଚଉଦରେ ଯେ ।
କାମଧେନୁ ପରି ଧେନୁ ସବତ୍ସା କରିଣ
କୋଟି ପରିମିତ ଘେନିଛନ୍ତି ବ୍ରଜଗଣ ଯେ ।
କଥାକୁହା ପିକ ଶୁକ ସାରୀକା ଅନେକ
ଅଶେଷ ମଞ୍ଜୁଷ ଚର୍ମ ଅଢ଼େଣୀ ଶାୟକ ଯେ ।
ବସନପେଡ଼ା ମାନଙ୍କ ସଂଖ୍ୟା ହେବ କାହିଁ
ହାଣ୍ଡୋଲା ସ୍ୟନ୍ଦନ ଯହିଁ ଗଣନାହିଁ ନାହିଁ ଯେ ।
ଏ ବିଧିରେ ପଦାର୍ଥ ସମର୍ପି କଣାଇଲ
ସଭୂଷଣ କରି ଦାସୀ ସହସେକ ଦେଲ ଯେ ।" ଲ: ବ: ।

## ପର୍ବପର୍ବାଣି

ଓଡ଼ିଶାର ପୁରପଲ୍ଲୀ, ରାଜଧାନୀ, ତୀର୍ଥ ପୀଠମାନଙ୍କରେ ବିବିଧ ପର୍ବପର୍ବାଣିର ବ୍ୟବସ୍ଥା ଅଛି । ପୁରୀକ୍ଷେତ୍ରରେ ବୈଶାଖ ମାସରେ ହେଉଥିବା ଚନ୍ଦନଯାତ୍ରାର ଚିତ୍ର କବି ନିମ୍ନମତେ ଦେଇଛନ୍ତି—

"ନରେନ୍ଦ୍ର ଚଢ଼ାଗେ କଣ୍ଠାନ୍ଦ୍ର ସୁରେନ୍ଦ୍ର ପରିହରି
ନାବରେ ଭବରେ ବିଜୟ କରି ସୁଖେ ବିହରି ।"

× ×

"ଜଯାର ସାର ଘନସାର ପିଚକା ନେ ମାରଇ
କ୍ଷୀର ଦଧି ଧୀର ଲହରୀ ପରି ଭ୍ରମର ଶୋଭି ।"

Digitized by srujanika@gmail.com

ଶିଶୁପାଳନ ଚିତ୍ର

ଶୈଶବ ଅବସ୍ଥାରେ 'ମା' ମାନେ ଶିଶୁକୁ କୋଳରେ ଧରି ଗୀତ ଗାଇ କ୍ଷୀର ଦିଅନ୍ତି । ଜହ୍ନମାମୁଁ ଗୀତ, କୋଇଲି ଗୀତ ପ୍ରଭୃତି ଗାନ କରନ୍ତି । ବର୍ତ୍ତମାନ ମଧ୍ୟ ତାହା ଘରେ ଘରେ ଦେଖାଯାଏ । କବି ତାର ଚିତ୍ର ନିମ୍ନମତେ ଦେଇଛନ୍ତି—

''ଘୋଷା କରି ଗୀତ କୋକିଳ ପ୍ରାକୃତ . ନାମକୁ ଗାଇ ତୋଷମନ
ଘେନି ସୁବର୍ଣ୍ଣ ଶାମୁକେ କ୍ଷୀର ମାତା ଜାନୁରେ କରାଇ ଶୟନ
ଘନଶ୍ୟାମକୁ । ଘନ ଘନ ପାନ କରାଇ ।'' ଗ୍ର: ଭୂ: ।

ସାଧାରଣ ସ୍ତ୍ରୀଙ୍କ ବେଶବିନ୍ୟାସ

ସାଧାରଣ ପରିବାରର ସ୍ତ୍ରୀ ସ୍ୱର୍ଣ୍ଣଭୂଷଣ ପାଇଁ ବିଶେଷଭାବରେ ଲାଳାୟିତ । ମୂଲ୍ୟବାନ ପରିଚ୍ଛେଦ, ସ୍ୱର୍ଣ୍ଣଭୂଷଣାଦି ବିଭବ, ଗୌରବର ପରିମାପକ ବୋଲି ବହୁବ୍ୟକ୍ତିଙ୍କର ଧାରଣା । ଏହି ଧାରଣା ରମଣୀଗଣଙ୍କ ହୃଦୟରେ ବସା ବାନ୍ଧି ରହିଛି । ଶିକ୍ଷିତା ମହିଳା ଲାଜ, ନାକ ଫୋଡ଼ାଫୋଡ଼ି ନ କଲେ ମଧ୍ୟ, ମୂଲ୍ୟବାନ୍ ପରିଚ୍ଛଦ ଓ ଭୂଷଣର ଲୋଭ ସମ୍ବରଣ କରି ପାରେ ନାହିଁ । ଭଞ୍ଜଯୁଗର ବେଶଭୂଷା କଥା ଏକାବେଳକେ ଭିନ୍ନ । ସେ ଯୁଗର ସ୍ଥୂଳ ରମଣୀ, ବେଶଭୂଷା ଏଯୁଗ ଯୁବକ ଯୁବତୀଙ୍କ ରୁଚିର ପ୍ରତିକୂଳ ହୋଇ ପାରେ, ତାହା କିନ୍ତୁ ଯୁଗୋଚିତ ଥିଲା । କବି ଉପେନ୍ଦ୍ର ମାଳିନୀର ବେଶବିନ୍ୟାସ କିପରି ବର୍ଣ୍ଣନା କରିଛନ୍ତି ଦେଖନ୍ତୁ :—

''ଫୁଲଗୁଣା ମାଠଗୁଣା କରାଇ ବିଚିତ୍ର ବେଣୀ, ନାସା ପୁଟରେ ପୁଟକେ ଥାଇ ଝଟକେ । ଲଜ୍ଜା ବସାନେ କଜ୍ଜଳ ନୟନେ ଦିଶେ ଉଜ୍ଜ୍ୱଳ ପଦ୍ମେ କି ଭ୍ରମର ଖେଳା ଯେମନ୍ତ ତୋଳା ଏ । କର୍ଣ୍ଣେ ସୁନାକର୍ଣ୍ଣି ମାଳୀ ପ୍ରବାଳେ ହୋଇଛି ଝଲି ପଛକୁ ରୁଚିର ଫୁଲ ମାନସ ଭୁଲି । × ×
ବଦମାଳୀ ପାଟବ୍ରତ ତାଡ଼ରେ ଭୁଜ ପୀଡିତ କମଆଦି ଖଡ଼୍‌ବାସ୍ତ ହସ୍ତରେ ଶୋହି ଏ । ବାମକରର ଅଙ୍ଗୁଳି କି ସରି ମୁଦିରେ ଝଳି ଚରଣକେ ବଳାପଟେ ନାଦପ୍ରକଟେ ସ୍ୱେ । ପ୍ରପଦର କଂସା ମୁଦି ଶବଦେ ଧଇର୍ଯ୍ୟ ଖେଦି ବେଢ଼ରେ ଅଳତା ଚିତ୍ର ଅତି ବିଚିତ୍ର ସ୍ୱେ ।'' ଇତ୍ୟାଦି ଲ: ବ: ।

ସାଧାରଣ ପରିବାର ମଧ୍ୟରେ ପ୍ରଚଳିତ ବେଶବିନ୍ୟାସ ଓ ବ୍ୟବହାର୍ଯ୍ୟ ପରିଚ୍ଛଦ ଭୂଷଣର ଅନ୍ୟତମ ଦୃଷ୍ଟାନ୍ତ ସ୍ୱରୂପ । ଲବଣ୍ୟବତୀ ଗ୍ର ୧୧, ପ:—୧୫ ଦ୍ରଷ୍ଟବ୍ୟ ।

ରାଜଜେମାଙ୍କ ବେଶବିନ୍ୟାସ

''ପୁଣି ମୁଖ ଗୃହିଁଲ, ଗୁଣି ସୁଖ ପାଇଲି, ପାଞ୍ଚିଲି ଚନ୍ଦ୍ର ଉଅ ଏହି । ଭାଟକ ଜିଣ ବେଣୀ, ବଙ୍କୁଡ଼ି ଗୃରି ଘେନି, କପୋଳ କମ୍ରେ ବମ୍ବ ଗୃହିଁ ସେ । ରୂପସରି । ଘାଏ ଠେକରି ଏଣ୍ଡି ବାଳୀ । ଝଲିକା ସୁମଣ୍ଡଣି ହେଜ । ଉର୍ବଂଶ ଝିଲିମିଲି ମାଳୀ ଏମନ୍ତ ଝଳି ଯେମନ୍ତ ଦୋଣା ଦ୍ୱାରି ସାଜ ମେ । ମୋଡ଼-ସୀମନ୍ତ ବଇଜୟନ୍ତୀ ବସାଜନ୍ତି ସିନ୍ଦୂର ଚନ୍ଦନ କସ୍ତୁରୀ । ଏ ବଳକେ ଚର୍ଚ୍ଚିତ ଚାପକେ କ ବଚନ ସ୍ୱଭାବେ ଦଶେ ଚନ୍ଦପରି ସେ । ମଲ୍ଲୀକଢ଼ୀ । ଶିଖର ଜଳସ ସୁଢ଼ଳେ । ନାସା ମୋତି ରୋହିଣୀ କୋଳେ । ନୀଳ ଶୈଳ ତମାଳ ବନ ଗହଳ ସ୍ଥଳ କୁଚ-ପ୍ରବାଦ ତୂଳେ ମିଳେ ସେ ।'' ଇତ୍ୟାଦି । ଗ୍ର ୧୩, କୋ: ବ୍ର: ସୁ: ।

Digitized by srujanika@gmail.com

## ଓଷା, ପୂଜା ଉପାସ୍ଥ

ଓଡ଼ିଶାବାସୀଙ୍କ ଦେବଦେବୀ ବିଶ୍ୱାସ ପୁରାଣ ଓ ଇତିହାସ ପ୍ରସିଦ୍ଧ । କେତେକ କଥା ଶାସ୍ତ୍ରସମ୍ମତ ହୋଇ ପାରେ, କେତେକ ହୋଇ ନ ପାରେ; ତନ୍ମଧ୍ୟରେ ଆଧ୍ୟାତ୍ମିକ ଧାରଣାଯୋଗ୍ୟ ପ୍ରଚ୍ଛନ୍ନ ଭାବରେ ଧୀରେ ଧୀରେ ମେଳି ରହିଥିବାରୁ, ସେଥିରୁ ବୈଜ୍ଞାନିକ କାରଣ ଖୋଜି ବସିବା ଅନାବଶ୍ୟକ । ପୁରୁଷ ଅପେକ୍ଷା ସ୍ତ୍ରୀର ଦେବୀ ବିଶ୍ୱାସ, ଭୟ, ଭକ୍ତି, ଦୃଢ଼ତର । ସମ୍ପଦ, ବିପଦ, ଅଭାବ, ଅଭିଯୋଗ, ବିବାହ, ବ୍ରତ, ଅନାବୃଷ୍ଟି, ଅତିବୃଷ୍ଟି, ଜନ୍ମ, ମୃତ୍ୟୁ ପ୍ରତ୍ୟେକ ସମୟରେ କଷ୍ଟ ଖଣ୍ଡନ ପାଇଁ ସେମାନେ ଦେବ-ଦେବୀଙ୍କଠାରେ କିଛି ମାନସିକ କରି, ଦୃଢ଼ ବିଶ୍ୱାସ ରଖି ଯୋଡ଼ ହସ୍ତରେ, ନତମସ୍ତକରେ ସ୍ୱଚ୍ଛ ଓ ପବିତ୍ର ହୃଦୟରେ ଯାବଜ୍ଜୀବନ ପୂଜା ଆରାଧନା କରି କରି କର୍ତ୍ତବ୍ୟ ପଥରେ ଅଗ୍ରସର ହୁଅନ୍ତି । ଲାବଣ୍ୟବତୀଙ୍କ ସହଚରୀବୃନ୍ଦ ସେହିପରି ଲାବଣ୍ୟବତୀଙ୍କ ହିତ କାମନାରେ—

"ଚଣ୍ଡୀ କଷ୍ଟ ଖଣ୍ଡନେ ଚଣ୍ଡୀ ମନାସି ମନେ
ଗ୍ରହଶାନ୍ତି କି ବିପ୍ରମେଲେ ।"

ଦେବଦେବୀଙ୍କଠାରେ ରମଣୀମାନଙ୍କ ବିଶ୍ୱାସ ଯେ ଅଟଳ, ତାହା କବି ନିଜ ଗ୍ରନ୍ଥରେ ଏକାଧିକ ବାର ପ୍ରକାଶ କରିଛନ୍ତି । ଋଷିମାନଙ୍କ ଅନୁରୋଧରେ କଣ୍ୱାସିକା ଚଣ୍ଡୀ ଚନ୍ଦ୍ରଭାନୁଙ୍କୁ କାବେରୀକୂଳରେ କ୍ରୀଡ଼ାରତ ଥିବାବେଳେ ମାୟାରେ ହରଣ କରି ନେଇଯିବାରୁ, ସେ ଲାବଣ୍ୟବତୀଙ୍କଠାରୁ ସହସା ବିଚ୍ଛିନ୍ନ ହେଲେ । ଲାବଣ୍ୟବତୀଙ୍କ ବିଚ୍ଛେଦଦୁଃଖ ସୀମାତୀତ ହେବାରୁ, ସହଚରୀମାନେ "ଇଷ୍ଟ-ଦେବୀଙ୍କି ଉଚ୍ଚ କରାଇଲେ । "ବିବୁଧ ଶାପୁଁ ବିଚ୍ଛେଦ ଜାଣିଲେ ।" ଲା: ବ: । କୋଟିବ୍ରହ୍ମାଣ୍ଡସୁନ୍ଦରୀରେ, 'ଜଗନ୍ନାଥ ମହିମା' କୀର୍ତ୍ତନ କରୁ କରୁ କବି କହନ୍ତି—

"ଶ୍ରୀମହାପ୍ରସାଦ ଗଦ ପଦ ଘଣ୍ଟା ଘୋଷ,
ଭକ୍ଷଣେ ଶ୍ରବଣେ ଯେ କଲ୍ମିଷ ବିଷ ନାଶ ହେ ।।"

ଏପରି ବିଶ୍ୱାସ ଉତ୍କଳବାସୀଙ୍କ ହୃଦୟରେ ସେ ସମୟରେ ଥିଲା । ବର୍ତ୍ତମାନ ମଧ୍ୟ ଅଛି । ତନ୍ତ୍ର, ମନ୍ତ୍ର, ଉପାୟ, ବଶୀକରଣ ଉପାୟ ଭଞ୍ଜଙ୍କ ସମୟରେ ବହୁତ ଥିଲା । ତଦୁପଲକ୍ଷେ କବି କହନ୍ତି—"କେତେ ବିଶ୍ୱକର୍ମୀ ନିର୍ମାଣେ ମୋହନ ପ୍ରତିମା ସେ ବଶ ହେବାର । ଗୁପତ ମନ୍ତ୍ରର ଆମ୍ଭଠାରେ ଅଛି ଦେବା ଜପ କରୁ କୁମାର । ଫଳଦ । ଏମନ୍ତ ପ୍ରକାରେ ହୋଇବ ।" କୋ: ବ୍ର: ସୁ: । ଅର୍ଜ୍ଜୁନଙ୍କୁ ଆୟତ୍ତ କରିବା ପାଇଁ ସତ୍ୟଭାମା ସୁଭଦ୍ରାଙ୍କୁ "ଶିଖାଇଲେ ମନ୍ତ୍ର କବାଟ ଫେଡ଼ନେ କରିବାକୁ ପୁଂସ ରଞ୍ଜନ । ସ୍ୱହସ୍ତେ ଦେଲେ ସେ ଧୂଳି କ୍ଷେପଣକୁ ଯେଉଁବାକୁ ଦେଲେ ଅଞ୍ଜନ । ଛା ୧୦, ସୁ: ପ: । ଦେବଦେବୀ ଦର୍ଶନ ସମୟରେ କେତେକ ସାମାଜିକ ବିଧି ପାଳନ କରାଯାଏ । ସେଥିପ୍ରତି ଦୃଷ୍ଟି ରଖି ଲାବଣ୍ୟବତୀଙ୍କ ରାମେଶ୍ୱର ମନ୍ଦିରରେ ଶିବଦର୍ଶନ ସମୟରେ ମା ମୁହିଁରେ ଦୁହିତାକୁ ଉପଦେଶ ଛଳରେ କବି କହନ୍ତି—"ପିତା ପୁତ୍ର ପରି ମାତା ଦୁହିତାର ଏକ ସଙ୍ଗେ ଶିବ ଦର୍ଶନ । ଦୋଷ ବୋଲି ଅଛି ଅଶେଷ ପୁସ୍ତକେ ଏ ବଚନ ରହୁ ଯେସନ ଛା ୭, ଲା: ବ: । ଓଷା, ବ୍ରତ, ସାମାଜିକ ବିଧି ହିସାବରେ ଥିଲା, ଆଜିପର୍ଯ୍ୟନ୍ତ ଚାଲିଛି । ଷଷ୍ଠୀଓଷା, ଦୁତିବାହନ ଓଷା, ଅନନ୍ତବ୍ରତ, ସୁଦଶାବ୍ରତ, ଗଣେଶପୂଜା, ସରସ୍ୱତୀପୂଜା ଇତ୍ୟାଦି । ଫାଲ୍ଗୁନର

Digitized by srujanika@gmail.com

ପଞ୍ଚମହୃଣୀ ଦବ୍ୟକୁମାସ୍ଥି ନାମକାରେ ଜନ୍ମାର ସମ୍ବନ୍ଧ ନାନା ଓଷା, ବ୍ରତ, ପୂଜା ଇଲେ। ଯଥା ସମୟରେ ତାଙ୍କର ମନସ୍କାମନା ପୂର୍ଣ୍ଣ ହେଲ। "ବଦ୍ୟୁଗ୍ଧତା ନାମେ ପଞ୍ଚମହୃଣୀ........

ପଞ୍ଚଶରସମେ ପଞ୍ଚ ସୁତ କଲେ ଜାତ।
ଦବ୍ୟକୁମାସ୍ଥି ପ୍ରାପତେ କଲେ ନାନାବ୍ରତ ଯେ।
ଚୈତ୍ର ମଙ୍ଗଳ ବାରରେ ଆରମ୍ଭି ପୂଜାକୁ
ପଞ୍ଚମ ପାଳିରେ ତୋଷ କଲେ ଗିରିଜାଙ୍କୁ।" ଲ: ବ:।

ଏକାଧିକ ବାର ଓଷା, ବ୍ରତ ପ୍ରଭୃତିର ଉଲ୍ଲେଖ ଅଛି। "ଓଷା ପାଳି ମୋ ଭେଟକୁ ପୁଜୁଥିବ ଗଉଣ।" ଚ: ଚନ୍ଦ୍ର:। ଲୋକ ସମାଜର ବିଶ୍ୱାସ, ପୂଜା ପ୍ରଭୃତିକୁ ପାଶ୍ଚାତ୍ୟ ଲେଖକ ଆଡ଼ସନ୍ ବିଶେଷ ଭାବରେ ସମର୍ଥନ କରନ୍ତି (ସ୍ପେକ୍‌ଟେଟର୍)

ସତୀପ୍ରଥା

ସାମାଜିକ ଚଳଣୀ ଭାବରେ ଭାରତରେ ସତୀପ୍ରଥା ବହୁଦିନରୁ ପ୍ରଚଳିତ ଥିଲା। ପତ୍ନୀ ପତିକୁ ଦେବତାଜ୍ଞାନରେ ସେବା କରେ, ପତି ପତ୍ନୀ—କାଯ୍ୟା ଛାୟା ରୂପେ ଚଳନ୍ତି। ଦୁହେଁ ଅଭିନ୍ନ, ଜଣେ ଅନ୍ୟର ଅର୍ଦ୍ଧାଙ୍ଗ ଅର୍ଦ୍ଧାଙ୍ଗିନୀ—ଏହି ବିଶ୍ୱାସ ଦୃଢ଼ଭାବରେ ଦୁହିଁଙ୍କ ହୃଦୟରେ ସତତ ଜାଗରୂକ ଥିଲା। ପତିର ସେବାରେ ପତ୍ନୀର କେବଳ ଗତି ମୁକ୍ତି ବୋଲି ବିଶ୍ୱାସ ଥିବାରୁ ସେ ତାହା କରି ଅଖଣ୍ଡ ଶାନ୍ତି, ତୃପ୍ତି ପାଇଥାଏ। ଏହି ଦୃଢ଼ ବିଶ୍ୱାସ ଯୋଗୁଁ ପତିର ମୃତ୍ୟୁ ପରେ ପତ୍ନୀ ବଞ୍ଚିରହିବା ବୃଥା, ଅକାରଣ ବୋଲି ସେ ମନେ କରେ। ସେହି ଦୃଢ଼ ବିଶ୍ୱାସ ଯୋଗୁଁ ସେ ସ୍ୱଇଚ୍ଛାରେ ଅଗ୍ନିରେ ନିଜକୁ ବିସର୍ଜ୍ଜନ ଦିଏ। ଏହି ସତୀପ୍ରଥା ବହୁଦିନରୁ ଥିଲା, ବହୁ ଦିନରୁ କବିମାନେ ନିଜ ଗ୍ରନ୍ଥରେ ତାହା ଚିତ୍ରିତ କରି ଆସିଛନ୍ତି। "ଜଳ ଜଳ ଅଗ୍ନି ଦ୍ୱିଗୁଣ ଜଳରେ ପାଉ ଅଦ୍ଧାଙ୍ଗିନୀ ସ୍ଥାନ ତୋ ଅଙ୍କେ।" ଏହି ମର୍ମରେ ବଙ୍ଗଳାର ବିଖ୍ୟାତ କବିମାନେ ଗାନ କରନ୍ତି। ଉପେନ୍ଦ୍ର ତାହା ଚରିତ୍ରବର୍ଣ୍ଣନା କରିବାକୁ ଯାଇ କହନ୍ତି—"ବିହ୍ୱଳନ୍ତି ସେ ତୁଲତୁଲ କି ଅବା ସେ ଆଳୀ ଅଳି ପତ୍ନୀ ସଙ୍ଗେ ପତି ସନ୍ତୁଳିଲ" ଛ ୪୫, ବୈ. ବି.। ଅନ୍ୟତ୍ର— "ବହ୍ନିରେ ପଶିବା ଯେଣି ସ୍ୱାମୀର ସଙ୍କେତ ଯେ।" ବୈ: ବି:।

ସତୀପ୍ରଥା ଲର୍ଡ ବେଣ୍ଟିଙ୍କଙ୍କ ସମୟରେ ରହିତ ହେଲା। ସେ ୧୮୨୯ ଖ୍ରୀଷ୍ଟାବ୍ଦରେ ସତୀପ୍ରଥା ଲୋପ ପାଇଁ କଡ଼ା ଆଇନ କଲେ। ୧୮୩୩ ଖ୍ରୀଷ୍ଟାବ୍ଦ ଭିତରେ ତାହା ବନ୍ଦ ହେଲା। ରାଜା ରାମମୋହନ ରାୟ ସତୀପ୍ରଥା ଲୋପ ପାଇଁ ଯଥାଯଥ ସାହାଯ୍ୟ ଦେଇଥିଲେ।

ବାଣିଜ୍ୟ

ଓଡ଼ିଶାବାସୀଙ୍କର ଦୂରଦେଶ ସହିତ ବୋଇତ ବାଣିଜ୍ୟ ଥିଲା। ଏହି ବୋଇତଅଳମାନେ ଦୂରଦେଶ ସହିତ ବନ୍ଧୁତ୍ୱ ସ୍ଥାପନ କରୁଥିଲେ, ଓଡ଼ିଶାର ପଣ୍ୟଦ୍ରବ୍ୟ ସେଠାରେ ବିକ୍ରୟ କରି, ମଣି, ମୁକ୍ତା ନାଡ଼ିକେଳ, ମସଲା ପ୍ରଭୃତି ଆଣୁଥିଲେ। ବାଣିଜ୍ୟଦ୍ୱାରା ଯେଉଁମାନେ ପ୍ରଚୁର ଅର୍ଥ ଅର୍ଜ୍ଜନ କରି ସମ୍ପତ୍ତିଶାଳୀ ଥିଲେ, ସେମାନଙ୍କୁ ସାଧବ କୁହାଯାଉଥିଲା। ଏହି ସାଧବ, ସାଧବବୋହୂ କଥା ଓଡ଼ିଶାର ଘରେ ଘରେ ଯୁଗ ଯୁଗ ଧରି ପଢ଼ାଶୁଣା ହେଉଛି। ପ୍ରଧାନତଃ ଓଷା କଥା ସାହା ଅଛି, ସେଥିରେ ସାଧବ, ସାଧବବୋହୂଙ୍କ ନାମ ଧାମ, ଚରିତ ଗୁନ୍ଥା ହୋଇ ରହିଛି। 'ଖୁଦୁରୁକୁଣୀ' ଓଷା କଥାରେ 'ତଅପୋଇ' ଚରିତ୍ର ଅତ୍ୟନ୍ତ ହୃଦୟହାରକ ବୋଧହୁଏ। ଓଡ଼ିଶାର ବିଭବ, ଦୂରଦେଶ ଭ୍ରମଣ, ସମୃଦ୍ଧି ପ୍ରଭୃତି

Digitized by srujanika@gmail.com

ସାଧବମାନଙ୍କ ବାଣିଜ୍ୟଯାତ୍ରାକୁ ଧରାଯାଏ । କବି ପ୍ରଚଳିତ ବାଣିଜ୍ୟଚର୍ଚ୍ଚା ନିଜ ଗ୍ରନ୍ଥରେ ଅଙ୍କନ କରି ସେ କାଳର ବାଣିଜ୍ୟଯାତ୍ରା ଓ ସ୍ୱୀୟ କବିତାକୁ ସାବ୍ଯସ୍ତ କରି ଅଛନ୍ତି । ବୋଇତ କୂଳରେ ଲାଗିଲେ ତତ୍‌କାଳୀନ ସାମାଜିକ ପ୍ରଥା ଅନୁସାରେ ସାଧବବୋହୂ ଓ ସାଧବ କନ୍ୟାମାନେ ବିଦେଶାଗତ ପିତା, ଭର୍ତ୍ତା ଓ ଭ୍ରାତା-ମାନଙ୍କୁ ବନ୍ଦାପନା କରି ଘରକୁ ନେଉଥିଲେ ।

"ବହିତ ଲାଗିଲା ଯାଇ ସିଂହଳ ଦ୍ୱୀପରେ
ସାଧବ ଯୁବତୀଗଣ ଅତି ପ୍ରମୋଦରେ
ଗଲେ ବହିତ ବନ୍ଦାଇ
ଅର୍ଘ୍ୟଥାଳୀମାନ କରେ ଝୁକଝୁକ ଦେଇ ।" ଲା. ବ. ।

ବୋଇତଥାଳ ରତ୍ନାକରର ବୋଇତ କୂଳରେ ପହଞ୍ଚିବା କ୍ଷଣି, ତାର ଜାୟା, ଭଗିନୀ ମେଘମାଳା ପ୍ରଭୃତି ରତ୍ନାକରଙ୍କୁ ବନ୍ଦାପନା କରି ପାଛୋଟି ନେଇଥିଲେ । ବୋଇତ ବ୍ୟବସାୟ ଅତ୍ୟନ୍ତ ପ୍ରମାଦର କଥା ଥିଲା । ଝଡ଼, ତୋଫାନ, ଜଳାସୂତ, ଶତ୍ରୁ, ଆକସ୍ମିକ ବିପଦ ପ୍ରଭୃତିର ସମ୍ମୁଖୀନ ବେଳେ ବେଳେ ହୋଇ ପାରେ । ସେଥିଯୋଗୁଁ ସାଧବ ଓ ସାଧବ ପରିବାରର ସମସ୍ତେ ନିରାପଦରେ ବୋଇତର ଗତାଗତ ପାଇଁ ପରମେଶ୍ୱରଙ୍କ ଠାରେ ପ୍ରାର୍ଥନା କରନ୍ତି ।

"ଅତି ଦାରିଦ୍ର୍ୟ ମୁଁ ବହିତ ବଣିଜ କରିଛି ଉପାୟ ବଳରେ
ଭଲ ମନ୍ଦ ଅଛି କି କପାଳରେ
ଦଇବ ଯେ ଦୂର ସେ ତୋତେ ଗୋଚର ଦୟାରେ ଲଗା କୂଳରେ ।" ଲା: ବ: ।

ଅନ୍ୟତ୍ର—"ବାର ବୃତ୍ତି ମଧ୍ୟେ ମୋର,
ବହିତ ଫଟାଇ ଧନ କରି ନେଲି କୂର,
ବାଣିଜ୍ୟ ବିଘ୍ନେ କେହ୍ନେ ଜୀବନ ପୋଷିବି ।" ବୈ: ବି: ।

ସାଧାରଣତଃ ବଣିକାରମାନେ ଐଶ୍ୱର୍ଯ୍ୟଶାଳୀ । "ବଣିକାର ହସ୍ତ ସ୍ୱର୍ଗ ପ୍ରତୀତ ।" ଇତ୍ୟାଦି,
ବୈ: ବି: ।

— —‒‒

Digitized by srujanika@gmail.com

# ପ୍ରକୃତିଚିତ୍ର

"Nature with equal mind,
Sees all her sons at play,
Sees man control the wind,
The wind sweep man away."

—Mathew Arnold.

## ମନୁଷ୍ୟ ଓ ପ୍ରକୃତି

ମନୁଷ୍ୟସମାଜ ପ୍ରାକୃତିକ ଉପାଦାନରେ ଗଠିତ । ପ୍ରାକୃତିକ ଦୃଶ୍ୟ—ବନ, ପର୍ବତ, ନଦୀ, ସମୁଦ୍ର, ସରୋବର, ପ୍ରଭାତ, ସନ୍ଧ୍ୟା, ରାତ୍ରି, ମୃଗୟା, ଷଡ଼ଋତୁ, ପଶୁ ପକ୍ଷୀ ଇତ୍ୟାଦି ସହିତ ମନୁଷ୍ୟର ଭ୍ରାତୃ-ପ୍ରେମ ସମ୍ପର୍କ ରହିବା ସ୍ୱାଭାବିକ । ନିରକ୍ଷର ଏହି ଦୃଶ୍ୟାବଳୀ ଦର୍ଶନ କରି କ୍ଷଣିକ ଆନନ୍ଦ ଅନୁଭବ କରେ; ଦରିଦ୍ର ସେଥିରୁ ଆହାର୍ଯ୍ୟବସ୍ତୁ ସଂଗ୍ରହ କରିଥାଏ; ବଣିକ୍ ସେଥିରୁ ପଣ୍ୟ ଦ୍ରବ୍ୟ ନିର୍ବାଚନରେ ନିଜକୁ ନିୟୋଜିତ ରଖେ; ଦାର୍ଶନିକ ତତ୍ତ୍ୱ ସନ୍ଧାନରେ ସମୟ ଅତିବାହିତ କରେ; ବୈଜ୍ଞାନିକ ସେଥିରୁ ନୂତନ ତଥ୍ୟ ଆବିଷ୍କାର କରି ସମାଜକୁ ଉପହାର ଦିଏ; କବି ନିଜର ଅସୀମ ଜ୍ଞାନ, ଧୀଶକ୍ତି ଅନୁଭୂତି ଓ ବସ୍ତୁ-ସମୂହକୁ ଦୁର୍ଲଭ-କବିତା-ଛନ୍ଦୋବନ୍ଧରେ ପ୍ରାଣବନ୍ତ କରି ମନୁଷ୍ୟ ସମାଜ ସମ୍ମୁଖରେ ପଞ୍ଚମ ତାନରେ ଦିଗନ୍ତ ମୁଖରିତ ଓ ମଧୁମୟ କରି ଗାନ କରିଥାଏ । କବିର ଗାନ, ମୂର୍ଖ ପଣ୍ଡିତ, ତରୁଣ ତରୁଣୀ, ବୃଦ୍ଧ, ଶିଶୁ, ତ୍ୟାଗୀ ଯୋଗୀ ସମସ୍ତଙ୍କର ହୃଦୟ ସ୍ପର୍ଶ କରି ଅବଚେତନା ଆନୟନ କରେ; ସେତେବେଳେ ସମସ୍ତେ ବୁଝନ୍ତି— ପ୍ରକୃତି ଯଥାର୍ଥରେ ରହସ୍ୟମୟ ! ସେହି ରହସ୍ୟଭେଦ କରିବା ପାଇଁ ଦାର୍ଶନିକ, ବୈଜ୍ଞାନିକ, କବି ପ୍ରଭୃତିଙ୍କର ଯୁଗ ଯୁଗ ଧରି ପ୍ରଗାଢ଼ ପ୍ରୟାସ ଚାଲିଛି ଚାଲିଥିବ । କବି ଉପେନ୍ଦ୍ର ଭଞ୍ଜ ପ୍ରକୃତିର ଲୀଳାଭୂମି ଘୁମୁସରର ବନ, ପର୍ବତ, ନଦୀ, ନିର୍ଝରିଣୀ ପରିବେଷ୍ଟିତ ନିଭୃତ ପ୍ରାଙ୍ଗଣରେ ବସି ଯେଉଁପରି ପ୍ରକୃତିଚିତ୍ରଣ କରିଛନ୍ତି ତାହାର ବିଶଦ ଦୃଷ୍ଟାନ୍ତ ଦେବା ବର୍ତ୍ତମାନ ଅନାବଶ୍ୟକ । ନମୁନା ସ୍ୱରୂପ କେତୋଟି ମାତ୍ର ନିମ୍ନରେ ପ୍ରଦତ୍ତ ହେଲା:—

( ମାନବ ଓ ପ୍ରକୃତି ଯେପରି ଏକ ପର୍ଯ୍ୟାୟଭୁକ୍ତ )

ଦୃଷ୍ଟାନ୍ତ—ନାୟିକାକୁ ପ୍ରଭାତରୂପେ କଳ୍ପନା କରି କବି ନିମ୍ନମତେ କହନ୍ତି—

"ଏକାଳେ ପୂର୍ବୀ କୁମରୀ କରି
ପ୍ରାତଃ ସ୍ମରଣ ବାଳକୁ ଭାବି
ପାଇ ଓଷ୍ଠେ ବାଳ-ଅରୁଣ ଲକ୍ଷ୍ୟକୁ
ନେଦେ ସ୍ଫୁଟେ କଣ୍ଟଛବି
ଅମ୍ବର ମଣ୍ଡଳକାନ୍ତି । ଅଲେକେ ସୁଖ ବିସ୍ତାରି ।" କୋ: ବ୍ର: ସୁ: ।

Digitized by srujanika@gmail.com

ବସନ୍ତକାଳର ପ୍ରଭାତରୂପେ ସୀତାଙ୍କୁ ବର୍ଣ୍ଣନା କରି କବି କହନ୍ତି—

"ବଞ୍ଜୁଳ ବନେ ମଞ୍ଜୁଳବତୀ ସୀତା ଏକାଳ ଅବସ୍ଥା ଧରି
ବିକଶିଲେ ମଲ୍ଲୀ, ଫୁଟେ ଚନ୍ଦ୍ରଚମ୍ପା ମଦନ ରସରେ ପୂରି ଯେ,
ବିଧୁତ । ବିଧୁମୁଖ ଧୂଳି ମ୍ଳାନ ଯେ,
ବୃଦ୍ଧି ହେଲା ଦୀନଭାବ ଅନ୍ତରସ୍ଥ ସଯୋଗ ପାଣି ନଳିନ ଯେ ।"
ବୈ: ବି: ।

ନାୟିକାକୁ ସରୋବରରୂପେ ଚିତ୍ରଣ କରି କବି କହନ୍ତି—

"ଲାବଣ୍ୟ ସରସୀ ଶୋଭା ବଢ଼ାଇଲାଣି ସମ୍ପୂର୍ଣ୍ଣ ଗୁଣ ଗଣ୍ଡରେ
ଲପନ ନଳିନ ସୁଉରୁ ପୁଳିନ ସମ୍ପୋଳ ଭଉଁରୀ ନାଭିରେ ।" ର: ହ୍ବା:

ନାୟିକାକୁ ଏକ ପୁଷ୍ପିତା ଲତା ସ୍ୱରୂପ କଳ୍ପନା କରି କବି ନିମ୍ନମତେ ବର୍ଣ୍ଣନା କରିଅଛନ୍ତି—

"ନବ ବନିତା ଅପୂର୍ବ ପୁଷ୍ପଲତା ପ୍ରକାଶ ଷୋଳକାରି ଫୁଲ ।" ଲା: ବ: ।

ମନୁଷ୍ୟର ହର୍ଷ ବିଷାଦ ସହିତ ପ୍ରକୃତିର ସହାନୁଭୂତି ଯଥା—

"କୁମୁଦ ବିକାଶ ତୁଟି ତୁଟି ଯାଇ ପଦ୍ମ ଫୁଟି ଫୁଟି ଆସେ
ହରସ ବିରସ ପାଳଟା ପାଳଟି ମଧୁଲିଟ, ବିଟ କି ସେ ? କୋ: କ୍ର: ସୁ: ।

ନାରୀ ଓ ପ୍ରକୃତି

ରସଲେଖାରେ ନାୟିକାର ଅଙ୍ଗପ୍ରତଙ୍ଗ ବର୍ଣ୍ଣନା ଅତ୍ୟନ୍ତ ବିଚିତ୍ର । ସେଥିରୁ କେତେ ବର୍ଣ୍ଣନା ନମୁନା ସ୍ୱରୂପ ଦେଖନ୍ତୁ—

କିଏ କୁରଙ୍ଗ କି ଅବା ତୁରଙ୍ଗ, ଏଣିକି ତେଣିକି କରଇ ସୁରଙ୍ଗ ।
କିଏ ନବ ବିକଚ ପଦ୍ମଦଳ, ପଡ଼ି କାଳିନ୍ଦୀ ଜଳେ ଟଳ ଟଳ ।
କିଏ ସୁଧାସିନ୍ଧୁରୁ ଅବତରି, ହୋଏ ତରଳ ଗରଳ ଲହରୀ ।
କିଏ ଗଙ୍ଗା କଲ୍ଲୋଳେ ବାତଯୋଗେ, ନୀଳ ଉତ୍ପଳ ଦଳେ ଦୁଇ ଦିଗେ ।
କିଏ ସୁଧାମନ୍ଦିରେ କରେ ନାଟ, ବାଦ ଆରମ୍ଭି କେଳି-ଖଞ୍ଜରୀଟ ।
କିଏ ପଦ୍ମେ ଉକ୍ତି ବସେ ଭ୍ରମର, ଗୃଧ୍ନି ମୋହିତ ହୋଇବେ ଅମର ।
ର: ଲେ: ।

ଛଅଋତୁ

ଗ୍ରୀଷ୍ମ "ଏହି ସମୟରେ ସୁନ୍ଦରୀ ଗ୍ରୀଷ୍ମରେ ପ୍ରଭାମଞ୍ଜୁଳା ଜଣାଇଲା ।
ଅତି ମଧୁର ମଧୁଋତୁ ପ୍ରବେଶ କିଛି ଦିନ ହେଲା ହୋଇଲା ।
ଶ୍ରବଣ । କରି ନାହୁଁ ନବ କାମିନୀ ।
ପିକ ବଚନ ପୁନଃ ପୁନଃ ପ୍ରକାଶ କଳିନ୍ଦ ଅନ୍ଧାର ଯାମିନୀ ।"

Digitized by srujanika@gmail.com

"ମଳୟ ଶିଖରୀ ଶିରୀ ଶ୍ରେଣୀ କରି ବହୁଲାକ ମନ୍ଦ ସମୀର ।
ସୁମନାଙ୍କ ବାସ ଶ୍ରେଣୀ ନେବଟି ବୋଲି କହୁଲାକ ଭ୍ରମର ।
କେଶର । କେଶରେ ହେଲେକ ମଞ୍ଜୁଳ ।
କେଶରେ ମଣ୍ଡନ କରିବା ଭଳରେ ଫୁଟିଲେକ କେତେ ବଞ୍ଜୁଳ ।"

"ମଲ୍ଲୀ ମାଧବୀ ମକରନ୍ଦ ମାଧବୀ ହେଲେକ ବାନ୍ଧବୀ କାନନେ ।
ତୁଷାର ନାଶ ବୃଦ୍ଧି ହାସ ପ୍ରକାଶ କଲେକ ପଙ୍କଜ ଆନନେ ।
ହେଲାକ । ଚର୍ଚ୍ଚରୀ ପ୍ରକଟ କଟକେ,
ଅତନୁ ଫୁଲର ବଶିଖ କାର୍ମୁକେ ଯେକ ତର୍ଜିଲାକ କାମୁକେ ।"
ଇତ୍ୟାଦି । ଛାଂ, ଲାଃ ବଃ ।

ପୁଷ୍ପପୁର ରାଜକୁମାର କନକଙ୍କୁ କୋଟିବ୍ରହ୍ମାଣ୍ଡସୁନ୍ଦରୀ 'ଉପାସ୍ୟ-ଉପାଧ୍ୟକା-ଉପାଧ୍ୟାୟୀ' ଦ୍ୱାରା ପ୍ରେମପତ୍ର ପ୍ରେରଣ କଲା । ଗ୍ରୀଷ୍ମକାଳ ହେବା ହେତୁ ସେ ଉପବନରେ ବସିଥିବାବେଳେ କବିଙ୍କ ଶାବଳ୍ୟ ବର୍ଣ୍ଣନା:—

"ଦେଖିଲେ ଆରାମ ଅତି ଅଭିରାମ ଯେ ଦେଖିବ ଏହୁ ପ୍ରଶାନ୍ତ ।
ମନରୁ ଉତ୍ପତ୍ତି ରତିକାମ ମୂର୍ତ୍ତିମନ୍ତେ କି ବାସ ହେଉଛନ୍ତି ।
କୋକିଳ । ଗାୟକ ହୋଇ ଗାଏ ଗୀତ ।
ଝିଙ୍କାରୀ ଝଙ୍କାର ଖଞ୍ଜରୀଟ ପ୍ରାନ୍ତହତ ସୁବାଦ୍ୟରେ ବଦିତ ॥

ଶୁକ ଭରଦ୍ୱାଜ ବେଣକୁଳ ଦ୍ୱିଜ ଶ୍ରୁତି ମଞ୍ଜୁବାକ୍ୟ ଉଚ୍ଚାର ।
ମଲ୍ଲୀକଢ଼ୀ ଶଙ୍ଖ ଅସଂଖ୍ୟ ଅନେକ କନକ ମଧୁର ମାଧୁରୀ ।
ମଧୁପ । ଚୁମ୍ବନେ ଧ୍ୱନି କରେ ଜାତ ।
ମରୁତ ଅଧିକାରୀ ଯେକ ସୁବାସ ରଙ୍ଗିଣୀଠାରୁ ଗତାଗତ ।"
କୋଃ ବ୍ରଃ ସୁଃ ।

ବସନ୍ତ

"ବର୍ଣ୍ଣ ଅବ୍ୟକ୍ତରୁ ହ୍ରାନିତ କନକ-କଙ୍କଣ ନିଃସ୍ୱନେ ଦର୍ଶିଲେ ।
ମତ୍ତ ଭୃଙ୍ଗଶ୍ରେଣୀ ବାଜଣୀ କଙ୍କଣୀ ରଣରଣ ପଦ ଘୋଷିଲେ ।
ଏତିକ । ମାତି ରହିଲା ବିବେଚନା,
ପିକ କୁହୁ କୁହୁ ଲୋକ ହୁଁ ହୁଁ କଲେ ଉଚ୍ଚବାଚ ବାକ୍ୟ ରଚନା ।

"ବିକାଶ ହୋଇଲେ କିଂଶୁକ ସାଧୁ ଯେ ପୂର୍ବ ବଭୁତିକ ତେଜିଲେ
କୁରବକ କରାତ କାଷ୍ଠ କଣ୍ଟୋଗଣ ଉତ୍ଫୁଲ୍ଲ ପୁଲକ ଭଜିଲେ
ତା ଦେଖି । ଦୀନ ହୃଷ୍ଟ ପୁଷ୍ଟ ଲଭିଲେ ।
ଉଡ଼ି ପଡ଼ିଲା ବଗଜମାନ ରଜ ବର୍ଣ୍ଣେ କେତେ ଅଙ୍ଗ ଶୋଭିଲେ ।"
ଇତ୍ୟାଦି । ଛାଂ, କୋଃ ବ୍ରଃ ସୁଃ ।

Digitized by srujanika@gmail.com

## କାଳିଦାସଙ୍କ ବସନ୍ତ ବର୍ଣ୍ଣନା

"ଦ୍ରୁମାଃ ସପୁଷ୍ପାଃ ସଲିଳଂ ସପଦ୍ମଂ
ସ୍ତ୍ରିୟଃ ସକାମାଃ ପବନଃ ସୁଗନ୍ଧିଃ ।
ସୁଖାଃ ପ୍ରଦୋଷାଃ ଦିବସାଶ୍ଚ ରମ୍ୟାଃ
ସର୍ବଂ ପ୍ରିୟେ ଚାରୁତରଂ ବସନ୍ତେ ।"

ଋତୁମାନଙ୍କ ମଧ୍ୟରେ ବସନ୍ତଋତୁ ସର୍ବାପେକ୍ଷା ମନୋରମ । ବୃକ୍ଷ ପୁଷ୍ପବାନ୍ ହୁଏ, ବାୟୁ ସୌରଭ-ପୂର୍ଣ୍ଣ, ସରୋବର ପଦ୍ମପୂର୍ଣ୍ଣ ହୁଏ । କାମିନୀମାନେ କାମାତୁରା ହୁଅନ୍ତି । ସନ୍ଧ୍ୟା, ପ୍ରଭାତ, ଦିବସ ସବୁ ଅତ୍ୟନ୍ତ ସୁଖଦ ବୋଧହୁଏ । ଉପେନ୍ଦ୍ର ଭଞ୍ଜଙ୍କ ନିମ୍ନୋକ୍ତ ବସନ୍ତ ବର୍ଣ୍ଣନା ତୁଳନୀୟ—

"ଅତି ରସମୟ ବସନ୍ତ ସମୟ ବିଚିତ୍ର ପ୍ରମେୟ ତାହାର
ମିତ୍ର ଅନଙ୍ଗଙ୍କୁ ପ୍ରବଳ କରାଇ ଆଚରି ଚର୍ଚ୍ଚରୀ ବିହାର
ଆଗତେ । ଆରୋହିଲା ନାଗେଶ୍ୱରକୁ ।
ଋତୁରାଜପଦୁଁ ସେ ରଜ ଯେଜିଲା ବୃଦ୍ଧି ପ୍ରଫୁଲ୍ଲ କେଶରକୁ ॥

ରଚିପତ୍ର ସୂଚି-ଆବରଣ ମଧ୍ୟେ ସାଧ୍ୱୀଗୁଣ ଯେଜି ପଶିଲା
ନବପୁଷ୍ପବତୀ ସେବତୀ ସଙ୍ଗତେ ରସି କ୍ରୀଡ଼ାକୁ ପ୍ରକାଶିଲା
ମନୋଜ । ଚିତ୍ତପୁର ମଧ୍ୟ ଚତ୍ୱରେ ।
ଉତ୍ପତ୍ତି କରାଇ ରତି ଅନୁରାଗ ଅବିର ସେ ଖେଳେ ଚତ୍ୱରେ ।" କୋ: ବ୍ର: ସୁ: ।

ଏଥିରେ କବି ବହିଃସୌନ୍ଦର୍ଯ୍ୟ ଓ ଅନ୍ତଃସୌନ୍ଦର୍ଯ୍ୟ ଯୋଗ କରି ବସନ୍ତକୁ ଋତୁରାଜ ଆଖ୍ୟା ଦେଇଛନ୍ତି ।

## ବର୍ଷା

ଲାବଣ୍ୟବତୀର ଦୀର୍ଘ ଦ୍ୱାବିଂଶ ଛାନ୍ଦରେ ବର୍ଷାଋତୁ ବର୍ଣ୍ଣନା ଅତି ଚମତ୍କାର ଭାବରେ ଦିଆଯାଇଛି । ବୃଦ୍ଧ ଅନଭିଜ୍ଞ, ଯୁବକ ଯୁବତୀ, ଭିକ୍ଷୁକ ପଥିକ ପ୍ରାୟ ସମସ୍ତଙ୍କ ମୁହଁରେ ଏହି ଛାନ୍ଦରୁ ପଦେ ଅଧେ ବେଳେ ବେଳେ ବାହାରି ପଡ଼ିବା ଶୁଣାଯାଏ । ସେଥିରୁ ପଦେ ଅଧେ ଏଠାରେ ନମୁନା ସ୍ୱରୂପ ଦିଆଗଲା—

"ଦେଖି ନବ କାଳିକା ବକାଳିକା ମାଳିକା ଆଳୀ କାଳିକାକାନ୍ତ ସ୍ମରି ।
ରକ୍ଷା କେମନ୍ତେ କରି କରିବା ମଣ୍ଡିକରି ଗଡିକ ଏମନ୍ତ ବିଚାରି ସେ ।
ସହଚରୀ । ଭାବେ ବର୍ଷିଲେ ଏକାଳକୁ, କଥା ଥିବ କାଳ କାଳକୁ ।
ଏକେ ତ କ୍ଷୀଣ ଦିନ ହେଲା ଦୁର୍ଦ୍ଦିନ ଦିନ ନ ଲଭି ବଲ୍ଲଭମେଳକୁ ରେ ।
"ହିତ ଆନମାନଙ୍କୁ ସତ କାମିଜନଙ୍କୁ ଅହିପରି ଅହିତ ଏହି ।
ହିତ କୃଶାନୁସାନୁମାନରୁ ଭାନୁଭାନୁ-ତାପରୁ କିସ୍ତରିଲା ମହୀରେ । ସହଚରି ।"
ଇତ୍ୟାଦି । ଲା: ବ: ।

× × ×

Digitized by srujanika@gmail.com

"ଏକାଳ ଏକା ଏକା ଘରେ ପକାଇ ତନ୍ଦ୍ରା ବିଦ୍ୟୁତ୍‌ଛଟା ଅଛି ବନ୍ଧି ।
କି କଲେ ଚିତ୍ରରେଖା ଚନ୍ଦ୍ର ଚମକ ରେଖା କରିବା ମାରୁଛି ଗୁହାଇ ରେ ସହଚରି ।
ଇତ୍ୟାଦି, ଲ: ବ: ।

## ଷଡ଼୍‌ଋତୁ ବର୍ଣ୍ଣନା

"ଛିଡ଼ି ହେଲେ ଲକ୍ଷ୍ୟମାନେ ବସନ୍ତ ଆକୃତି । ଚମ୍ପା ଫୁଟାଇ ରଖିଛି ହୁତାଶ ଗତି । ଗ୍ରୀଷମ କି ବୃକ୍ଷ ଦୀପ ନଗରେ ଯେ ଯେତେ । ଅଗ୍ନିଶିଖା ବଂଶେ ବିରାଜିତ ସ୍ଥାନେ ସ୍ଥାନେ ॥ ବରଷା କି କାଳି ସୃଜି ବିକଶାଇ ଦେଇ । ଘନ ଘନ ଘନାଘନ ଲୀଳା ପ୍ରକାଶଇ । ଶରଦ କି ଚନ୍ଦ୍ର ଉଦୟରେ ମନୋହର । ହିମ ଶିଶିର କି ଧୂମ କୁହୁଡ଼ି ଆକାର ଯେ ।" ପ୪୬—୪୮, କୋ: ବ୍ର: ସୁ: । ଲ: ବ: ଷଟ୍‌ତ୍ରିଂଶ ଛାନ୍ଦ, ପ୧—୫ଯାଏ, ବର୍ଷା, ଶୀତ, ବସନ୍ତ, ଗ୍ରୀଷ୍ମ ଋତୁ ବର୍ଣ୍ଣନା ଉତ୍କର୍ଷ ଭାବରେ ଦିଆଯାଇଛି :—"ପ୍ରବେଶ ସୁରଭି ଘନରସମସ୍ତ ଜଡ଼ବର ସୁରଞ୍ଜନ । ସୁଖଦାତ ଘନସାର ପ୍ରକାଶରେ ହୃତତାପ ପ୍ରଭଞ୍ଜନ ହେ ସାଧୁ ।" ଇତ୍ୟାଦି, ଛା୩୭, ଲ: ବ: । (ଏଥିରେ ୪ ଅର୍ଥ ଅଛି) କବିଙ୍କ ସମସ୍ତ ପ୍ରଧାନ କାଳ୍ପନିକ କାବ୍ୟରେ ଷଡ଼୍‌ଋତୁ ବର୍ଣ୍ଣନା ବିଶଦ ଭାବରେ ଦିଆଯାଇଛି । ବିଶେଷତଃ ଗ୍ରୀଷ୍ମ, ବର୍ଷା, ବସନ୍ତଋତୁ ପାଇଁ ଗୋଟିଏ ଗୋଟିଏ ପୃଥକ୍ ଛାନ୍ଦ ରଖାଯାଇଛି । ପୌରାଣିକ କାବ୍ୟଗୁଡ଼ିକରେ ଷଡ଼୍‌ଋତୁ ବର୍ଣ୍ଣନା ଥିଲେ ମଧ୍ୟ, ଦୁର୍ଲଭ ପୌରାଣିକ ଚରିତ୍ରକୁ ଅନୁସରଣ କରାଯାଇଥିବାରୁ, ସେଥିରେ ବିଶଦ ଋତୁବର୍ଣ୍ଣନା ପାଇଁ କବିଙ୍କୁ ଅବସର ନାହିଁ । ଅବନା ରସତରଙ୍ଗ, ୩୨ ପୃଷ୍ଠାରେ ବର୍ଷାକାଳ ବର୍ଣ୍ଣନା :—"ପ୍ରକଟ ଘନ ସମସ୍ତ, ଘନ ପଟଳ ଉଦୟସ୍ତ, ଧନ୍ୟରସ ଜନ୍ୟସ୍ଥଳ ଦରଶନର, ରତ ଷଣ୍ଡମଣ୍ଡଳର, ନଟନ ଅତଳପର, ତପ ଅନ୍ତକ ଅନଙ୍ଗ ମଙ୍ଗଳକର, ଏଡ଼ର ସମ୍ଭବ ସଉଧ, ନଗଧର ତଳତ୍ୟକ୍ତ ଗମନ ଊର୍ଦ୍ଧ୍ୱ ।" ଛା୪, ପ୧, ଅ: ର: । "ଏ ସମସ୍ତ ଝର ଝର ବରଷଣ ଚରତର ପ୍ରବଳ ପ୍ରକଟ ଘଟ ଘଟ ଶବଦ, ପ୍ଲବଗଣ ଭକ ଭକ ସମଦ, ଉବକ ବକ, ଖର ଖର ଅନ୍ତକର ପ୍ରଳୟପ୍ରଦ ।" ଇତ୍ୟାଦି ଛା୪, ପ ୩୦, ଅ: ର: । ଏଥିରେ ଶରତକାଳ ବର୍ଣ୍ଣନା ଛା୮, ପ୧—୭ ଯାଏ, ଶୀତକାଳ ବର୍ଣ୍ଣନା ଛା୧୧, ୧୭ ପୃଷ୍ଠାରେ, ବସନ୍ତ ଚରିଣ ଛା୧୨, ପୃ୧୦୪ରେ ଦିଆଯାଇଛି । ବୈଦେହୀଶ-ବିଳାସରେ ଷଡ଼୍‌ଋତୁ ବର୍ଣ୍ଣନାର ଅଭାବ ନାହିଁ । ବୈ: ବି: ପୃ୫୭୨, ଛା୫୨ରେ ଶରତ୍‌କାଳ ବର୍ଣ୍ଣନା, ଚତୁର୍ଦ୍ଦଶ ଛାନ୍ଦରେ ବର୍ଷାକାଳ ବର୍ଣ୍ଣନା "ବଡ଼ ତୃଷାର୍ତ୍ତି ଚାତକ ଯେମନ୍ତ, ବାରିବାହଧ୍ୱନି ଶୁଣି ତେମନ୍ତ, ବିଦ୍ୟୁତ୍‌କାନ୍ତ ଝଟକ ଦଶିଗଲା," ଇତ୍ୟାଦି ଯେପରି ଭାବରେ ପଦେ ଅଧେ ଭାବସ୍ରୋତ ମଧ୍ୟେ ମଧ୍ୟେ ମିଶି ରହିଛି, ସେହିପରି ଅନ୍ୟାନ୍ୟ ପୌରାଣିକ ଗ୍ରନ୍ଥାଦିରେ ଷଡ଼ଋତୁ ବର୍ଣ୍ଣନା ବିକ୍ଷିପ୍ତ ଭାବରେ ଚମତ୍କାର ରୀତିରେ ଦେଖାଯାଏ । ଷଡ଼ଋତୁ ବର୍ଣ୍ଣନା ମଧ୍ୟରେ ବିହଙ୍ଗମ କୁଳର ବିଚିତ୍ର ରବ, ପଶୁକୁଳର ଶାନ୍ତସ୍ୱଭାବ ସଙ୍ଗେ ସଙ୍ଗେ ତର୍ଜ୍ଜନ ଗର୍ଜ୍ଜନ, ବ୍ୟୋମବିହାରୀଙ୍କ ସଙ୍ଗୀତ ସ୍ୱରଲହରୀରେ ବିବିଧ ରଙ୍ଗରସର ବାଦ୍ୟ, ତାଳକାଳର ଲକ୍ଷଣ ଅନୁଭୂତ ହୁଏ; ତା ପରେ ବିଭିନ୍ନ ଋତୁରେ ବନ ଉପବନର ପ୍ରସ୍ଫୁଟିତ ପୁଷ୍ପନିଚୟ ଯେଉଁପରି ଭକ୍ତ ସାହିତ୍ୟକୁ ଆମୋଦିତ କରି ରଖିବା ତୁଲ୍ୟ ଅନୁଭୂତିକୁ ଆପେ ଆପେ ଆସିଯାଏ, ସେହିପରି ସେହି ବନ ଉପବନର ବିଭିନ୍ନ ପରିପକ୍ୱ ଓ ଅର୍ଦ୍ଧ-ପକ୍ୱ ଫଳ ପାଠକପାଠିକାଙ୍କ ମନ ଧ୍ୟାନ ସେହି ଦିଗକୁ ଆବାହନ କରିବାରେ ଅନବରତ ବ୍ୟସ୍ତ ଥିବା ପ୍ରତୀତ ହୁଏ ।

ପାଶ୍ଚାତ୍ୟ କବିମାନେ ଆମ୍ଭମାନଙ୍କୁ ବାରମ୍ବାର ଲର୍କ, (lark) ରବିନ (rabin) ର ସଙ୍ଗୀତରୁ ପଦେ ଅଧେ ଶୁଣାଇ ମୁଗ୍ଧ କରନ୍ତି । ("And hear the sound of music sweet from birds among bowers :—Michael) ସେହିପରି ବର୍ଣ୍ଣନାରେ ଉପେନ୍ଦ୍ର କ'ଣ କହିବା ଅନାବଶ୍ୟକ । ଶୀତ ଋତୁ ଉପଲକ୍ଷରେ ସେକ୍ସପିଅର କହନ୍ତି—ଶୀତରେ ରକ୍ତ ଶୁଖିଯାଏ, ବରଫପାତରେ

Digitized by srujanika@gmail.com

ପଥ ଦୁର୍ଗମ ହୁଏ, ବହ୍ନିଜମଣ୍ଡଳ ତନ୍ଦ୍ରାରେ ସଢ଼ନ୍ତି । ("When blood is nipt and ways be foul,.........nightly sings the staring owl ..birds sit brooding in the snow," Shakeshpear । ଉପେନ୍ଦ୍ର କହନ୍ତି—"ନିରତ ମନୁଷ୍ୟ ଯେ ହିଳିକା ବଟେ" କୋ: ବ୍ରୁ: ପୁ: । ଶୀତ ଦିନରେ କାକ ଚକ୍‌କଣ ଦେଖାଯାଏ, ଝିଙ୍କାରି ସଙ୍ଗୀତ ମଧୁମୟ ହୋଇଉଠେ, ପ୍ରେମିକ ପ୍ରେମିକା ଓ ଧନିକମାନଙ୍କ ଦିନ ସୁଖରେ କଟେ, ଦୀନ ଦୁଃଖୀଙ୍କ ଦିନ ଅସହ୍ୟ ହୁଏ, "ଲିବ କଳପ କରଇ ଅଧନର ।" ରସିକହରଙ୍କ । ଏହିପରି ବର୍ଣ୍ଣନା ସଂକ୍ରାନ୍ତରେ ପାଶ୍ଚାତ୍ୟ କବିମାନେ ଶୁଣି, ଛଅ ପଦ ଲେଖିବା ବେଳେ, ଉପେନ୍ଦ୍ର ୪ । ୬ ପୃଷ୍ଠା ଚତୁଷ କରି ସ୍ୱରର ଗାମ୍ଭୀର୍ଯ୍ୟ, ଶବ୍ଦଯୋଜନାର ମାଧୁର୍ଯ୍ୟ ପ୍ରଦର୍ଶନ କରିଛନ୍ତି ।

ଚନ୍ଦ୍ରମା ନିଶା

ଲାବଣ୍ୟବତୀ ୩୨ ଛାନ୍ଦରେ ବସନ୍ତକାଳୀନ ଚନ୍ଦ୍ରମା ରାତ୍ରି ବର୍ଣ୍ଣନା, ଭାବ, ଭାଷା, ଚାତୁର୍ଯ୍ୟ ମାଧୁର୍ଯ୍ୟରେ ପୃଥିବୀ ସାହିତ୍ୟରେ ବିରଳ:—

"ଏ ସମସ୍ତେ ଉଦସ୍ତ ହୋଇଲେ ସୁଧାକର
କିରଣରେ ପ୍ରଭ ଦଶ ଦିଶିଲେ ସୁନ୍ଦର ଯେ ।
ତ୍ରିଯାମା ଆଲିଙ୍ଗନରୁ ଏହି ଅନୁମାନ
କଲାଦେହେଁ ଯେମନ୍ତ ଚନ୍ଦନ ବିଲେପନ ଯେ ।
କାଚଭିତ୍ତି ସ୍ଫଟିକ ସୋପାନ ବସୁଧରେ
କ୍ଷୀରାର୍ଣ୍ଣବ ମିଶିଲ କି ଜାନୁସୁତାନୀରେ ଯେ
ରବିତାପ ଶାନ୍ତିଅର୍ଥେ କିବା ପରମେଷ୍ଠୀ
ଘନସାର ଚୂର୍ଣ୍ଣରେ ପୂରିତ କଲ ସୃଷ୍ଟି ।
ଖଣ୍ଡପରଶୁଭୂଷଣ ଖଣ୍ଡପର୍ଶୁଧର
ସୁଧାରେ ଧବଳ ଦେଲ କି ବସୁଧାପୁର ଯେ ।
ପ୍ରଦୋଷ ସଙ୍ଗ ଯେ କ୍ଷଣଦାର ହୋଇଥିଲ
ଏଣୁ କି ତ୍ରିପଥଗା ଜଳରେ ସ୍ନାନ କଲ ଯେ ।" ଇତ୍ୟାଦି ।

ଛା ୩୨, ଲା: ବ: ।

"ବଧୂ, ଗୁରୁ, ଗର୍ବ, ଅଙ୍ଗିରା ଉଦିତ ।
ବନଶ୍ୟାମ ଧାତ୍ରୀ ଗ୍ରହି ନିବିଡ଼ ଧ୍ୱାନ୍ତ ।" ବୈ: ବି: ।
"ବୋଲଇ ତାମସୀ ଯେ ସେ ବାହାର ।
ବଢ଼ାଇଦେଇ ସନ୍ଧ୍ୟାଛଳେ କର ।" ଇତ୍ୟାଦି

ପ ୧୬-୧୯; ଛା ୬, ବୈ: ବି: ।

"ସନ୍ଧ୍ୟା ପ୍ରକାଶି ରବିକି ନାଶି ତା ଦେଖି ପଦ୍ମିନୀ ଛନ୍ନ
ସମସ୍ତ ଭୃଙ୍ଗ ଛଳରେ ବେଗ ବିଷଗୁଳା କଲ ପାନ ।
ସେନେହ ଭଲ ଏ ନାଦ କଲ ଦେବାଳୟେ ଯାହା ଶଙ୍ଖ ।
ସଖି ଏ ନୋହେ କି ସ୍ୱବ କେହ୍ନ କୁମୁଦିନୀ ହାସ୍ୟ ମୁଖ ।"

ଇତ୍ୟାଦି, ର: ପ: ।

Digitized by srujanika@gmail.com

ପ୍ରଭାତ

"ଅରୁଣ ମଣ୍ଡଳେ ହୃଦେ ଦୃଷ୍ଟି ନାହିଁ ଭଲ ।
ଭାଲ ବାରୁଣୀ ସେବିବା ରଙ୍ଗ ଆଳ ଅଛି ଯେ ।
କଳୁଷ ପ୍ରାଙ୍ଗଣେ ନଳପଣ୍ଡ ଥକେ ପୁଷ୍ପି ।
ପଦ୍ମିନୀ ବ୍ୟସନ ଦରମୁକୁଳିତ ହୋଇ ଯେ ।
ରଙ୍ଗ ଭୃଙ୍ଗରାଜ କୁମୁଦିନୀ ପାଶେଁ ଗଲେ ।" ଇତ୍ୟାଦି ।

ଛ ୨୮, ଲ: ବ: ।

ବିଶ୍ୱାମିତ୍ରଙ୍କ ସହିତ ରାମ, ଲକ୍ଷ୍ମଣ ଜଙ୍ଗଲରେ ରାତି ଅତିବାହିତ କଲେ । ପ୍ରଭାତ ହେଲା :—

"ବାସକ ପଦ ଅନ୍ତମୁ ଜାଣୀ । ଚକୋର କଲ ରକ୍ତପିଣ୍ଡ ଜାଣି ।
ବମ୍ଭ ସନ୍ତାର ଦଣ୍ଡି ଆସିଲ । ଦ୍ୱେଷ କଷ୍ଟେ ଶୀତବାତ ସେ ହେଲ ।"

ଇତ୍ୟାଦି, ଛ ୬, ବୈ: ବ: ।

ଅନ୍ୟ ଏକ ଦୃଷ୍ଟାନ୍ତ—

"ପ୍ରାନ୍ତ ହୋଇବାରୁ କଣ ବଲ୍ଲଭଶ୍ରୀ
ପରକାଶ ଗ୍ରହଚନ୍ଦ୍ର ଆଶାକାଶ୍ରୀ ।
ପ୍ରଭୁ ମଦନ ଲାଜ ଭାରନାରଙ୍କ
ପୂର୍ଣ୍ଣମୋଦେ ଦ୍ୱିକେ ବନ୍ଧୁପଦ ଭଙ୍କ ।"

ପୃ ୩୮-୪୧, ର: ପ: ।

ବୈଦେହୀଶବିଳାସରେ ସନ୍ଧ୍ୟା ବର୍ଣ୍ଣନା—

"ବାରୁଣୀ କୁଣ୍ଡେ ବୁଡ଼ାଇ ଧନକୁ, ବନାଶ କରିବା ଇଚ୍ଛି ଧନକୁ ।
ବାଳ ଧରି କବା ନେଇ ଆକର୍ଷି, ବାସ୍ତୁସରସ୍ଥ ଗିବା ତଥା ଦର୍ଶି ।
ବୋଲିଦେଲ ପକ୍ଷୀ ନାଦଛଳର, ବଦନେ କାଳିମ ପଙ୍କଳ ଦଗର ।
ଚକ୍ରବାଳକୁ ଯନ୍ତ୍ରେ ଦରଶନ, ବୁଜିଲ ପଦ୍ମିନୀ ପଦ୍ମନୟନ ।"

ବୈ: ବ: ।

ସମୁଦ୍ର

ସମୁଦ୍ର ବର୍ଣ୍ଣନା କବିଙ୍କ ଗ୍ରନ୍ଥାଦିରେ ବିରଳ ବୋଲି କେହି କେହି ମତ ପ୍ରକାଶ କରନ୍ତି । ସିଂହଳ ସହିତ କର୍ଣ୍ଣାଟରେ ସମ୍ବନ୍ଧ ଥିବା ବେଳେ କବି ସମୁଦ୍ରବର୍ଣ୍ଣନା ପରିଷ୍କାରରୂପେ 'ଲବଣାବତୀ'ରେ ଦେଇ ନାହାନ୍ତି । ଯେଉଁ ବିଷୟ ବର୍ଣ୍ଣନା ନେଇ କବି ତତ୍ପର ଥିଲେ, ସେଥି ଭିତରେ ବ୍ୟାପକ ସମୁଦ୍ରବର୍ଣ୍ଣନା ଖଞ୍ଜି ଥିଲେ ରସଭଙ୍ଗ ହୁଅନ୍ତା । ସେଥିପାଇଁ ବୋଧହୁଏ, ସେ ସେଠାରେ ତାହା କରି ନାହାନ୍ତି । କିନ୍ତୁ ଭଞ୍ଜଙ୍କ ଗ୍ରନ୍ଥାଦିରେ ସମୁଦ୍ରବର୍ଣ୍ଣନାର ଅଭାବ ନାହିଁ ।

ପାଞ୍ଚ ପ୍ରକାର ସମୁଦ୍ର—'ଇକ୍ଷୁ, ସୁରା, ସର୍ପି, ଦଧି, ଦୁଗ୍ଧ' ଉପଲକ୍ଷେ ସେ କହନ୍ତି—

"ବାଣେଶ୍ୱରି ଏ ତରଳତର, ଅଧୀର ଥିଲ ଅତି ମାତର
ଯାହା ପ୍ରତାପେ ହୋଇ ନାତର ସେ ତରତର ଯେ ।
ବ୍ୟାକୁଳ ଜାତ ପାଞ୍ଚ ପାଥର," ଇତ୍ୟାଦି । ବୈ: ବ:, ଛ ୧ ।

"ଯେ ଦୁର୍ଭ ପଣେ ଗର୍ଭରାଜ ଗର୍ଜ୍ଜନରେ
କହେ ଅବଗାହେ ପାପକ୍ଷୀହ ବନ୍ଧନରେ ହେ ।"

କୋ: କୁ: ଚୁ: ।

Digitized by srujanika@gmail.com

ସାଗର ସହିତ ଜଗନ୍ନାଥଙ୍କର ତୁଳନା :—

"ଶିରେ ହେମ-ରତନ-ମୁକୁଟ ମତ୍ସ୍ୟଶାଖା, କରୁଣା-ସିନ୍ଧୁରେ କି ବଡ଼ବାନଳ ଶିଖା ହେ ।"

କୋ: ବ୍ର: ସୂ: ।

"ସୁମନା ମାନେ ମାନସେ ବସନ୍ତ । ଲାବଣ୍ୟ-ସିନ୍ଧୁ ଜଳେଁ ଏ ତାରନ୍ତି ।
କରି ମକର ରୂପେ ରାଜନ୍ତି । ବିଭ୍ରମ-କଟକେ ନରେ ସଂଯୁକ୍ତ ।"

ଇତ୍ୟାଦି । କୋ: ବ୍ର: ସୂ: ପ ୧୮-୧୯ରେ ସମୁଦ୍ରର ଅଧିକାଂଶ ଲକ୍ଷଣ ସନ୍ନିବେଶିତ ।

"ମୀନ ମକର ଲକ୍ଷଣ ଜଳର ଦେଖିଲ ।
ଅନନ୍ତ ସମୁଦ୍ର କରି ପୁଣି ସେ ଯୋଖିଲ ଯେ ॥
ସରିତ ସରିତରେ ଯେ ଶରୀରେ ମନ ମିଶି ।
ଅଙ୍ଗ ସଙ୍ଗ ଏ ରୂପେ ତୁଅନ୍ତା ହେଲ ଘୋଷି ଯେ ॥"

ଛା ୧୪, କୋ: ବ୍ର: ସୂ: ।

"ଏକାଳେ ମନ୍ତ୍ରି ଏ ନୃପ ସନମନ୍ତ ପାଇ ।
ନଗରଦ୍ୱାରକୁ ବେଗ ସାଗର କରାଇ ଯେ ।
ଶଙ୍ଖ ମଧ୍ୟସ୍ଥ ଧ୍ୱନିରେ ହୋଇଛୁ ପ୍ରଧାନ ।
ବିବିଧ ବାଦ୍ୟ ଶବଦ ସ୍ୱକୀୟ ଗର୍ଜନ ଯେ ।
ତହିଁ ଲଗୁଡ଼ ପ୍ରହାର ଝଂସଜୀଡ଼ା ଝଳ ।
ତମୋନୁଦ ରୁଣ୍ଡ କି ବଡ଼ବାନଳ ଜଳ ଯେ ।"

ଛା ୩୩, ପ ୭-୮, କୋ: ବ୍ର: ସୂ: ।

ବୈ: ବି:, ଛା ୧୨, ପ ୧୧—୧୨ରେ ସମୁଦ୍ର ସହିତ ଦଶରଥଙ୍କ ଦଳବଳର ତୁଳନା କରାଯାଇଛି । "ବାର୍ଦ୍ଧି ଏ ଏମନ୍ତ ବୃଦ୍ଧି ପ୍ରକଟିତ" ........ଇତ୍ୟାଦି, ପ ୧୨—୧୩, ଛା ୪୮, ବୈ: ବି: । "ବାନରସୈନ୍ୟ ତହିଁ ସିନ୍ଧୁ ମନ୍ଦର ମେରୁ" ଇତ୍ୟାଦି । ବୈ: ବି: । "ବାହାର ବାରିଧି ଲହରୀ ଯେମନ୍ତ" ଇତ୍ୟାଦି, ଛା ୫୧, ବୈ: ବି: । "ଶୂନ୍ୟେ ରଥ ଗମନ ସମୁଦ୍ରେ ପୋତ ପରି......" ପ ୪୮, ଛା ୧୬, ସୁ: ପ: । "ସରିତ ପନ୍ଥ ମନୋ ମଧ୍ୟେ ସ୍ଥିତ । ସୁଖେ ହୋଇଥିଲି ଆଶା ବୋଇତ, ସୁପୁରୁଷ ଗୁଣ ନାବିକ ବଡ଼ାଇ ବଶେ ରାଜନ୍ତି ତୁରିତ ହେ । ସୁଜନେ ।" ପ ୨୫, ଛା ୯, ସୁ: ପ: ।

ସମୁଦ୍ର ବର୍ଣ୍ଣନରେ ଅନ୍ୟ ଏକ ଦୃଷ୍ଟାନ୍ତ—

ରାମଚନ୍ଦ୍ର ମର୍କଟବାହିନୀ ସହିତ ସମୁଦ୍ରତଟରେ ପହଞ୍ଚିବା ପରେ, ସେଠାର ଜଳ, ଲହରୀ, କଚ୍ଛପ, କୁମ୍ଭୀର, ପ୍ରବାଳ, ବାଡ଼ବାଗ୍ନି ପ୍ରଭୃତି ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସମୁଦ୍ରଜଳ ଦଧି, ଦୁଗ୍ଧ, ସୁରା ଓ ସର୍ପି ଗୁଣଯୁକ୍ତ ଓ ସମୁଦ୍ର ତୀର୍ଥରାଜ ଥିବା ହେତୁ ସୁକୃତ ଫଳଦାୟକ ବୋଲି କବି ନିମ୍ନ ଭଙ୍ଗୀରେ ବ୍ୟକ୍ତ କରିଛନ୍ତି—

"ବାରିନିଧିକି କେତେ ଜନେ ଭେଟି । ଯୀତ ତ ଅଧିକାରେ ପ୍ରକଟି ।
ବୀଣାକୁମ୍ଭ ପ୍ରାୟେ ବନ୍ଧୁ ପ୍ରବାଳେ । ବରାଳ ଖ୍ୟାତ ଇକ୍ଷ୍ୱାକୁକୁଳେ ।
ବୃନ୍ଦ ବୃନ୍ଦ ସହିଁ କଚ୍ଛପ ଯୁକ୍ତ । ବର୍ଣ୍ଣିଷ୍ଟ ସାରଗୁଣାହି ବ୍ୟକ୍ତ ।

Digitized by srujanika@gmail.com

ବିପିନ ପ୍ରାନ୍ତେ ପଲ୍ଲୀରେ ମେଳ । ବିହାରି ଜନେ ଲଭି ସୁଫଳ ।
ବିଲସନ୍ତ ସରସିଜ ଭ୍ରମରେ । ବରଣ୍ଟ ସ୍ଥିତ ସନ୍ଧି ମଧ୍ୟରେ ।
ବିକୁଞ୍ଚିତବେଣୀ ସିନ୍ଧୁକୂଳେ ସ୍ଥିତ ।" ଇତ୍ୟାଦି । ବୈ ବ ।

## ନଦୀ ବର୍ଣ୍ଣନା

ଯେ କୌଣସି ଦେଶର ନଦୀ ହେଉଛି ପ୍ରଧାନ ସମ୍ପଦ । ବୈଦେଶିକ ବଣିକ ଶତ୍ରୁମାନେ ଯେତେ ଲୁଣ୍ଠନ କରି ଦେଶକୁ ଶ୍ରୀଶୂନ୍ୟ କରି ପକାଇଥିଲେ ମଧ୍ୟ, ନଦୀ ଓ ଖଣିଜ ସମ୍ପଦକୁଶଳ ଦେଶ ପୁଣି ଶ୍ରୀସମ୍ପନ୍ନ ହୋଇ ଉଠିବା ସୁନିଶ୍ଚିତ । ଉତ୍କଳର ବ୍ରାହ୍ମଣୀ, ବୈତରଣୀ, ସୁବର୍ଣ୍ଣରେଖା, ମହାନଦୀ ଇତ୍ୟାଦିର ବନ୍ୟା ବ୍ୟାପାତ ଯୋଗୁଁ ଦେଶର ଶସ୍ୟହାନି, ମନୁଷ୍ୟ-ପଶୁ-କ୍ଷୟ ବାରମ୍ବାର ଘଟୁଥିଲେ ମଧ୍ୟ, ନଦୀହିଁ ଦେଶର ସାରସ୍ୱତ ସମ୍ପଦ ଭାବି, ଗୋପବନ୍ଧୁ କହନ୍ତି—"ଆହା ଗୋ ବ୍ରାହ୍ମଣୀ ପୀନପୟୋଧରି, ତୋହରିଲାଗି ହେଉ ଉତ୍କଳ ଉର୍ବର ।" "ରାଧାନାଥ ରାୟ ଉତ୍କଳର ନଦୀ-ସମ୍ପଦରେ ଗର୍ବ ଅନୁଭବ କରି କହନ୍ତି—"ଉତ୍କଳର ହେମ ସୀମନ୍ତ ରୂପିଣୀ, ଦେଖ ବନ୍ଧୁ ! ଏହି ସୁବର୍ଣ୍ଣ-ତଟିନୀ ।" "ନଦୀ ମନ୍ଦାକିନୀ ଅମନ୍ଦ ଗାମିନୀ, ରଣପୁର ରାଜ୍ୟ ବନ-ବିହାରିଣୀ ।" "ଋଷିକୁଲ୍ୟା ତଟ୍ ସୁବର୍ଣ୍ଣତଟିନୀ, ଯାଏ ଗ୍ରୀଷ୍ମା ଯାର ବ୍ୟାପିଲ ମେଦିନୀ ।"

ଉପେନ୍ଦ୍ର କହନ୍ତି—

"କାଳିନ୍ଦୀ କୂଳର କୃଷ୍ଣବେଣୀ ପୁଣି ଲକ୍ଷି । ଚନ୍ଦ୍ରଭାଗାଳଙ୍କାଶୋଭି ଚାରୁ ଉତ୍ପଳାକ୍ଷୀ ଯେ । ହୋଇଥିବ ଯୁକ୍ତରସ ସରସ୍ୱତୀ ସଦା । କରତ ପର୍ବତ ହୋଇ ରେବାରେ ବାହୁଦା ଯେ ।।" କୋ: ବ୍ର: ପୁ: ।

"ରସୋଦସ୍ୱବନ ନାବେଶ୍ୱ କୂଳେ" ଇତ୍ୟାଦି । ଲା: ବ: ।

"ବିଲୋକ ନଦୀ ଗୋଦାବରୀ । ବାମା କି ଶୁକ୍ଳ ଅଭିସାରି ।" ବୈ: ବ: ।

କବିଙ୍କ ଭୌଗୋଳିକ ଜ୍ଞାନର ପରିଚୟ ଦେବା ବେଳେ, ନଦୀ ସମ୍ପର୍କରେ କିଛି ଚର୍ଚ୍ଚା କରାଯାଇଛି । ଅଧିକ ଦୃଷ୍ଟାନ୍ତ ବର୍ତ୍ତମାନ ଅନାବଶ୍ୟକ ।

## ପର୍ବତ ବର୍ଣ୍ଣନା

"ସହ୍ୟମଳୟ ପାରପାର୍ଶ୍ୱିକ ବିନ୍ଧ୍ୟ ହେମାଦ୍ରି ମେରୁ ମୈନାକ ଗନ୍ଧମାଦନ କୈଳାସ ଲୋକାଲୋକ ସହିତ ସେ ।" ସୁ: ପ: ।

"ବିସ୍ତାନପକ୍ଷ ହୋଇଲ ଅଚଳ ପଦକୀ ନେଲ," ଇତ୍ୟାଦି । ଗ୍ରୀ ୪୭, ବୈ: ବ: ।
"ବରଷାର ପର ଭୂଷିତ ଶିର ମଣ୍ଡନ .. ..." ଇତ୍ୟାଦି ବୈ: ବ: ।
"ଘନ ପ୍ରଚବନ୍ଧେ ଗିରିଙ୍କି ଯୋଡ଼ାଇ କୂଜନ୍ତି ପ୍ରକାଶେ ।" ଲା: ବ: ।
"ବୃଷରାଶି ତେଜି ମଳୟ ପର୍ବତେ ବସନ୍ତେ ଅସେ ବାସବ ।
ବ୍ରହ୍ମଲୋକ ଗ୍ଲାନି ସେହି ପୁଣି ଲେଉ ଗନ୍ଧମାଦନ ଶିଖରୀ," ଇତ୍ୟାଦି । ଗ୍ରୀ ୧୦, ବୈ: ବ: ।

Digitized by srujanika@gmail.com

## ମାଲ୍ୟବନ୍ତ ପର୍ବତବର୍ଣ୍ଣନା

"ପ୍ରସ୍ରବଣଧର ପର ଯବେଂ ଗମନ । ତବ ରଞ୍ଜନ ରଞ୍ଜଇ ସମସ୍ତ ମନ । ଲଙ୍ଘଇ ମତ୍ତତ ମତ୍ତଇ ଭର ଶ୍ରମ । ଅନନ୍ତ ଉନ୍ନତ ଦନ୍ତ କଣ୍ଟକ ରମ୍ୟ ।" ଇତ୍ୟାଦି । ପୃ ୨୧—୨୨, ଗ୍ରାମ, ଅ: ର: । ପର୍ବତବର୍ଣ୍ଣନାରେ ସ୍ଥାନେ ସ୍ଥାନେ ସୁନ୍ଦର ସାତ୍ତ୍ୱିକ ଚିତ୍ର ଦିଆଯାଇଛି । ମନୁଷ୍ୟ ସହିତ ପଶୁ ପକ୍ଷୀ, ହିଂସ୍ରଜନ୍ତୁଙ୍କ ଅମାୟିକ ବ୍ୟବହାର ଚମତ୍କାର୍ଷକ ରୀତିରେ ଦେଖିବାକୁ ମିଳେ । ମାଲ୍ୟବନ୍ତରେ ରାମ, ଲକ୍ଷ୍ମଣ ଆଶ୍ରୟ ନେଲାବେଳେ ମୃଗିଣୀ ଓ ହିଂସ୍ରଜନ୍ତୁ ଇତ୍ୟାଦିଙ୍କ ବ୍ୟବହାର, ଗୃହିଣୀଭଙ୍ଗୀ ହୃଦୟସ୍ପର୍ଶୀ ଓ ଶିକ୍ଷଣୀୟ ।

## ବନବର୍ଣ୍ଣନା

ବୈଦେହୀଶବିଳାସ ଓ ଲାବଣ୍ୟବତୀରେ ବନବର୍ଣ୍ଣନାର ମାଧୁର୍ଯ୍ୟ ଅବର୍ଣ୍ଣନୀୟ । ଲାବଣ୍ୟବତୀର ଚତୁର୍ବିଂଶ ଛାନ୍ଦ, ନମୁନାସ୍ୱରୂପ ଗ୍ରହଣ କରାଯାଇ ପାରେ ।

ବନବର୍ଣ୍ଣନାରେ ସେ ପ୍ରଥମେ କହନ୍ତି—"ନ ଥିଲା ହୋଇ ପାଦପ ନାହିଁ ଆଉ ଚଉଦ ଭୁବନେ ନାହିଁ, ମନେ ଚ ଅଳାଇ ଚ କଳ୍‌କୋଲ ସଘନ ଯହିଁ ଯେ ।" ଲା: ବ: । "ସଫଳ ଆମ୍ବ ଡାଳିମ୍ବ କମ୍ବା ଦ୍ରାକ୍ଷା ତୁମ୍ବୀ ନାରଙ୍ଗ ମାତୁଳୁଙ୍ଗ ଇତ୍ୟାଦି ସୁ: ପ: । ସଫଳ ତହିଁ ପୂଗ ନାରଙ୍ଗ ଶ୍ରୀଫଳ ତାଳ ସୁମାରୁଲୁଙ୍ଗ, ନାଗଲୀ କରମଙ୍ଗାହିଁ ସଙ୍ଗ ବିପୁଳ ଖଦ ଯେ... ।" ଲା:ବ: । ଅସଂଖ୍ୟ ତରୁଲତା, ପରିପକ୍ୱ ଓ ଅପରିପକ୍ୱ ଫଳ ବର୍ଣ୍ଣନା ପରେ କବି ବିହଙ୍ଗମକୁଳର ମଧୁର ସଙ୍ଗୀତଧ୍ୱନି ଶୁଣାନ୍ତି, ଯଥା—"ଖେଳନ୍ତି ଖେଳ ପାରା କପୋତ......"; "ଚନ୍ଦ୍ରକ ଟେକି ନାଚନ୍ତି କେକୀ ଉର୍ଦ୍ଧ୍ୱରୁ ଖସୁଛନ୍ତି ଗୃଡକୀ ଯହିଁ ତମାଳ ତରୁକୁ ତର୍କି... " ଇତ୍ୟାଦି । ଲା: ବ: କବି ପ୍ରାକୃତିକ ଦୃଶ୍ୟାବଳୀରେ, ବିହଙ୍ଗମକୁଳର ସଙ୍ଗୀତଧ୍ୱନିରେ ବିହ୍ୱଳିତ ହୋଇ କୋକିଳ ମୁଖରେ ନିଜ ମନକଥା କହନ୍ତି :—" ଆଷାଢ଼େ କରି ଏ ରସ ପାନ କରଇ ମୁଁ ଯେ ପଞ୍ଚମ ଗାନ ଏହା ଯା ଯାଣୁ ନାହାନ୍ତି ଆନ ମୋ ସ୍ୱଭାବେ ଏହି ଯେ ।" ଗ୍ରୁ ୨୪, ଲା: ବ: ।

ପୁଷ୍ପିତ କାନନ ସୌନ୍ଦର୍ଯ୍ୟ ଉପଲକ୍ଷେ କବି କହନ୍ତି :—"ଯେଣେ ଗୃହିଁଲେ ନବ ପାଟଳ ଜମ୍ବୁନ୍ତ କୁରୁବକ ଶାଳ୍ମଳୀ ପୁଷ୍ପିତ କେନ୍ଦୁ ପଲ୍ଲବେଷ୍ଟିଳ......" । ସରୋରୁହ ଚମ୍ପା କୁମୁଦ ପାଟଳୀ କଦଳୀ ଶିରୀଷ ଅଶୋକ......" । ସୁ: ପ: ।

## ମୃଗୟା

ମୃଗୟାଚିତ୍ର ଭଞ୍ଜ-ସାହିତ୍ୟରେ ଅପର୍ଯ୍ୟାପ୍ତ । ଚନ୍ଦ୍ରଭାନୁଙ୍କ ସଚିବସୁତ କଷ୍ଟିଦା ବନରେ ମୃଗୟା ପାଇଁ ଅନୁରୋଧ କରିବାରୁ ସେ ଦଳ ବଳ ସହିତ ଅଶ୍ୱାରୋହଣପୂର୍ବକ ବାହାରିଲେ । ଶବରମାନେ କାଣ୍ଡ ଟାଙ୍ଗି ଧରି ଆଗ ପଛ ହୋଇଗଲେ । ବ୍ୟାଧମାନେ "ବନ୍ଧୁଣ ନଳ ତାଳଚାଟୀ" "ନଳୀ ଆଳରେ ଯେଉଁ ଅଠାକାଠି" ବନ୍ଧି "ବାଗୁରା ସଙ୍ଗେ ସଙ୍ଗେ ବାହାରିଲେ, ଦଳ ଦଳ ମାହୁନ୍ତ ଚାଲିତ ଗଲେ । ଶିକାରୀମାନେ 'ମନ୍ତ୍ରର ପଢ଼ି ଧୂଳି ଉଡ଼ାଇ' 'ପଶୁ ପଦ ଗୋଡ଼ାଇ' ଯିବାରୁ ବନ୍ୟ ଜୀବଜନ୍ତୁ ଦୂରରେ, ସମୀପରେ, ସମ୍ମୁଖରେ ଦେଖାଗଲେ । କବିଙ୍କ ଭାଷାରେ—"ସେ ଗ୍ରାବୁଁ ଜୀବ ସନ୍ଧରେ କାଲୀ ଦେଇ କୁହାଟ ଟମକ ତାଳ ଫିଙ୍ଗିଲେ ସାଜ କୁନ୍ତ ସାବଳୀ ବନ୍ଧନେ ଶର ଯେ । ପ୍ରତି ନଳାଧୁ ଗୁଳି ବାହାରି ଗୁଡ଼ି ଦେବାରେ ବାଟ ବଗଛି ମାଡ଼ିବସିଲେ ପକ୍ଷୀଙ୍କ ଧରି କି ମନୋହର ଯେ । ଜାଲେ ପଡ଼ିଲେ ଆଉଁ ପଶୁନିକର । ଗର୍ତ୍ତେ ପଡ଼ିଲେ କେତେ କେତେ କୁଞ୍ଜର । ମାର ରେ ମାର ଏ ବୀରଗର, ପୂତେ ହେଲା ଅମରପୁର ସାଜିଲ ଅବା

Digitized by srujanika@gmail.com

କେଉଁ ଅସୁର ସ୍ତବକେ ସୁର ଯେ । ଭଲ୍ଲରେ ଭଲ୍ଲ ଭଲ୍ଲ ଭୁଷିଲେ ମଲ୍ଲ ଯୁଝିଲେ ଶାର୍ଦ୍ଦୂଳ ଗୁଳେ ଖଡ଼୍ଗ ଶ୍ରେଷ୍ଠ ପରୀକ୍ଷା କଲେ ଖଡ଼୍ଗ ପରେ ଯେ । ଶରଭ ଶରଭରେ ବିନାଶି ଧାରଣ କଲେ ଉଦାର ମିଶି ସୁଗାଢ଼ ଯମଦାଢ଼ ପ୍ରକାଶି ଅତି କୋପରେ ଯେ । ଗୁଳି ସଲ୍ଲକ ପଲ ଶ୍ୱାନହିଁ ହିଂସେ । ମସ୍ତକ ଲଲ ଦଶେ କାଲଲ ବଣେ ଯେ । ସବାଙ୍ଗ ରଙ୍ଗ କଲେ ନନାଲି ଗଜ ବରସ୍ଥ ଭୁରଙ୍ଗ ନଳୀ ଯୋଗରେ ଫଗୁ ପିଚକା ଚଳି ଅତି ରହସ୍ୟ ଯେ ।" ଇତ୍ୟାଦି । ଲ: ବ: ।

ମୃଗୟା ଶେଷରେ ଯୁବରାଜ ବସାକୁ ଫେରିଲେ । ମାଂସ ଲୋକଙ୍କ ମଧ୍ୟରେ ବିତରଣ କଲେ ଦ୍ୱୀପୀ ଅଜିନ ବୈଷ୍ଣବମାନଙ୍କୁ, ଖଡ଼୍ଗପାତ୍ର ବ୍ରାହ୍ମଣମାନଙ୍କୁ, ଶୃଙ୍ଗ ଶୃଙ୍ଗକାରଙ୍କୁ, ଚର୍ମ ଚର୍ମକାରଙ୍କୁ, ବରାହଲୋମ ପାଟରାଙ୍କୁ, ମୃଗନାଭି ବଣିକମାନଙ୍କୁ ଅର୍ପଣ କରି ପ୍ରଶଂସିତ ହେଲେ ।*

## ସରୋବର

"ସରସୀ ଶୋଭିତ ଅନାଇଁ ମନ ନେତ୍ର ଲୋଭିତ । ତଟ ଘଟନା ବିଦ୍ରୁମରେ ପକ୍ଷିପଙ୍କ୍ତି କମ୍ପିତ । କି ନୀଳଶାଢ଼ୀ ରଙ୍ଗ ଧଡ଼ି ହଂସାବଳୀ ହୋଇଛି । ଅବନୀ ବନିତା ବସ୍ତ୍ରରେ କବା କଷିବା ଇଚ୍ଛି । ପାବଚ୍ଛ ସ୍ୱଚ୍ଛ ସ୍ଫଟିକରେ ନୀର ତୀର ପ୍ରଣୀତ । ସୁବେଣୀ ସ୍ମରଣ ଭାବି କି ତହିଁ ତ୍ରିବେଣୀ ଖ୍ୟାତ । ଧୀପଦସ୍ତ୍ରୀ ଲଭି ମରାଳପଙ୍କ୍ତି ଦିଏ ଭଉଁରୀ । ବଡ଼ ବଡ଼ବଣିକ ବେଢ଼ି କି ଶୋଭା ଚୂର୍ଣ୍ଣି ଚଉଁରୀ । ଜଳ ଜମ୍ବାଲ ଆବିଳରେ ସ୍ନାନ ମନ ହରୁଛି । ଜଳ ନିର୍ମଳରେ ଆଦର ଆଦରଶୁଁ ପାରୁଛି । ଗମ୍ଭୀର ଗୁଣକୁ ପଣ୍ଡିତଠାରୁ ଗୃହୀତ କରି । ନର୍ତ୍ତକୀ ଠାବରୁ ଭଉଁରୀ ଶିକ୍ଷା ପରି ଏହାରି । ଅମୃତ ସଙ୍ଗତେ ହୋଇଛି ମିତ ମଧୁର ପଣେ । ବିଧୁର ସ୍ନେହକୁ ବିଧୁର କରେ ଶୀତଳ ଗୁଣେ । ......" ଗୁ୨, ଲ: ବ: ।

## ଆକାଶ ବର୍ଣ୍ଣନା

ସନ୍ଧ୍ୟା ରାତ୍ରି ନିଶା ବର୍ଣ୍ଣନରେ ମଧ୍ୟେ ମଧ୍ୟେ ମିଶି ରହିଥିଲେ ମଧ୍ୟ ନଗର ନଗରୀ ବର୍ଣ୍ଣନା ମଧ୍ୟରେ ତାହା ଅତ୍ୟନ୍ତ ଚମତ୍କାର ରୀତିରେ ସ୍ଥାନେ ସ୍ଥାନେ ଦେଖାଯାଏ । କୋଟିବ୍ରହ୍ମାଣ୍ଡସୁନ୍ଦରୀର ଜନ୍ମସ୍ଥାନ ଚମ୍ପା ନଗରୀର ଚିତ୍ତାକର୍ଷକ ବର୍ଣ୍ଣନ ଭିତରେ ଆକାଶ ବର୍ଣ୍ଣନା ମଧ୍ୟ ରହିଛି । ଯଥା :—ଆକାଶ—"ବଡ଼ଶ୍ରୀ ବଡ଼ଶ୍ରୀ ଜନମନରେ । ହରିହସ୍ତ ହରିହସ୍ତ ଚରିରେ । ବଇଜୟନ୍ତକୁ ଜିଣିବ ବୋଲି । ବଇଜୟନ୍ତୀରେ ଛନ୍ଦନ ଖେଳି । ବିତାନ ଏସନ ପ୍ରସନ୍ନ ଧରେ । ଯେସନ ଗଗନ ନିଶା କାଳରେ । ଚନ୍ଦ୍ରମଣ୍ଡଳ ନରେ ପ୍ରକାଶିତ । ପୁଣି ତାର ତାର-ରାଜ ରାଜିତ । ......" ଛ ୨, କୋ: ବ୍ର: ସୁ: ।

ବୈଚିତ୍ର୍ୟମୟୀ ପ୍ରକୃତିର ବିଚିତ୍ରତା ସମ୍ବନ୍ଧରେ ଯୁଗ ଯୁଗ ଧରି କବିମାନେ ନିଜ ନିଜ କବିତାରେ ଶତ ଶତ ଚିତ୍ର ଅଙ୍କନ କରୁଥିଲେ ମଧ୍ୟ ପ୍ରକୃତିପେଟିକାନିହିତ ସୌନ୍ଦର୍ଯ୍ୟ-ଭଣ୍ଡାରର ଅବସାନ ଘଟେ ନାହିଁ ।

---

*"Their peal the merry horns rungour, A hundred voices joined the shout,"
(stag hunt in the High-lands) scott.

Digitized by srujanika@gmail.com

## ସଙ୍ଗୀତ

ମାନବ ମନ ଓ ହୃଦୟରେ ସଙ୍ଗୀତକଳାର ପ୍ରଭାବ ବେଶୀ ପଡ଼େ । କର୍ମକ୍ଳାନ୍ତ ମାନବର ଶ୍ରାନ୍ତି ଅପନୋଦନ କରି ଶାନ୍ତି ସନ୍ତୋଷ ଆଣେ ସଙ୍ଗୀତ । କାପୁରୁଷକୁ ସତେଜ କରିବାରେ, ଦୁଃଖ ଭିତରେ ସୁଖ ସନ୍ତୋଷ-ସ୍ରୋତ ଉନ୍ମେଷ କରିବାରେ, ଅପ୍ରସନ୍ନ ପରିସ୍ଥିତିରେ ଆହ୍ଲାଦ ବାୟୁମଣ୍ଡଳ ସୃଜନ କରିବାରେ ସଙ୍ଗୀତ ହିଁ ସହାୟ ହୁଏ । ※ ଆମ୍ଭମାନଙ୍କର ସାମାଜିକ ପର୍ବପର୍ବାଣୀ, ଦେବଯାତ୍ରା, ବିବାହ ବ୍ରତ, ଯାଗ ଯଜ୍ଞ, ଯୁଦ୍ଧ ଅଭିଯାନ, ଜନ୍ମ ମୃତ୍ୟୁ, ରାଜଦରବାର, ରାଜାଭିଷେକ, ସଭାସମିତି ଇତ୍ୟାଦି ସମସ୍ତ ଶୁଭ ଅଶୁଭ କାର୍ଯ୍ୟରେ ସଙ୍ଗୀତକୁ ବାଦ୍ ଦିଆଯାଇ ନାହିଁ । କବି ଉପେନ୍ଦ୍ର ନିଜେ ସଙ୍ଗୀତରସିକ ଓ ପ୍ରବୀଣ ସଙ୍ଗୀତ-କଳାବିତ୍ ଥିବା ହେତୁ ସଙ୍ଗୀତ-ଶାସ୍ତ୍ରର ପ୍ରାୟଶଃ ସମସ୍ତ ଲକ୍ଷଣରେ ନିଜ କାବ୍ୟ କବିତା ଅଳଙ୍କୃତ କରିଅଛନ୍ତି ।

### ସଙ୍ଗୀତଚର୍ଚ୍ଚାରେ ମୌଳିକତା

ଉପେନ୍ଦ୍ର ଭଞ୍ଜ ନିଜ ଗ୍ରନ୍ଥର ବିଭିନ୍ନ ବୃତ୍ତାନ୍ତକୁ ବିଭିନ୍ନ ଋତୁ, ରସ, ସମୟ ଅନୁଯାୟୀ ବୈଧ ଛନ୍ଦ, ବୃତ୍ତି, ସ୍ୱର ଭିତରେ ସ୍ୱରନ୍ୟାସ, ପଦନ୍ୟାସ ରାଗର ଆରୋହ ଅବରୋହ, ବାର୍ଜ୍ୟାବର୍ଜ୍ୟ, ଗ୍ରହ ଅଂଶ ନ୍ୟାସ ଯୋଗାଇ ଲୋକସମ୍ମୁଖରେ ଉପସ୍ଥାପିତ କରିଅଛନ୍ତି । ଆମର ସଙ୍ଗୀତକୁ କେହି କେହି କାର୍ଣ୍ଣାଟକୀ କହନ୍ତି । ତାହା ଭ୍ରମାତ୍ମକ ବୋଲି ଆମର ସଙ୍ଗୀତ ବିଶାରଦମାନଙ୍କର ଧାରଣା । ଦେଶରୁଚି ଦୃଷ୍ଟିରେ ସଙ୍ଗୀତ ଗଢ଼ାଯାଇଥିବାରୁ ତାହା ଓଡ଼ିଶୀ ସଙ୍ଗୀତ ନାମରେ ଖ୍ୟାତ । ଭଞ୍ଜକବିଙ୍କ ରଚନାପ୍ରଣାଳୀରୁ ତାହା ପ୍ରମାଣିତ ହୁଏ । ଉପେନ୍ଦ୍ର ଭଞ୍ଜ ସଙ୍ଗୀତର ଚିରାଚରିତ ରୀତି ଓ ପଦ୍ଧତି ଅନୁସରଣ କରିଥିଲେ ମଧ୍ୟ କେତେଗୁଡ଼ିଏ ରାଗ, ବୃତ୍ତ, ବାଣୀ ଇତ୍ୟାଦି ସୃଷ୍ଟି କରି ଓଡ଼ିଶୀ ସଙ୍ଗୀତର ଶ୍ରୀ ସମ୍ପାଦନ କରିଅଛନ୍ତି ।

### ରାଗରାଗିଣୀ

ମଙ୍ଗଳଗୁର୍ଜ୍ଜରୀ, କେଦାରଚକ୍ରକେଳୀ ବାଣୀ, ମାଳବ (ଚୋଖି ବାଣୀ), ମଙ୍ଗଳବରାଡ଼ି, ମୁଖାରୀ-ବାଣୀ, ଗୁର୍ଜ୍ଜରୀ, ବସନ୍ତ, ଦେଶାକ୍ଷ, ମଙ୍ଗଳ, କଉଶିକ, ଶଙ୍କରାଭରଣ, ଆଷାଢ଼ଶୁକ୍ଳ ବାଣୀ, ବରାଡ଼ି, କାମୋଦୀ, ଘଣ୍ଟାରବ, ନଳିନୀଗୌଡ଼ା, ଚନ୍ଦ୍ରାକୋଶଳ, କାଳୀ, ରାମକେରୀ, କଳହଂସ କେଦାର, ଭୂପାଳ, କନଡ଼ା, କଲ୍ୟାଣଆହାରୀ, ଚନ୍ଦ୍ରାଭୈରବ, ଚନ୍ଦ୍ରାଦେଶାକ୍ଷ, କାଫିକାମୋଦି, ମାଳବରାଡ଼ି, କୁମ୍ଭକାମୋଦୀ, ପାହାଡ଼ିଆ କେଦାର, ବସନ୍ତ ବରାଡ଼ି, ବିଚିତ୍ର ଦେଶାକ୍ଷ, ସିନ୍ଧୁଦେଶାକ୍ଷ, ଚନ୍ଦ୍ରା ବରାଡ଼ି, ପଞ୍ଚମ ବରାଡ଼ି, କଲସା ବାଣୀ, ଭାଟିଆରୀ ଇତ୍ୟାଦି ଅସଂଖ୍ୟ ରାଗରାଗିଣୀ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ କବିତାରେ ଦେଖାଯାଏ । ଏକମାତ୍ର "କୋଟିବ୍ରହ୍ମାଣ୍ଡସୁନ୍ଦରୀ" ରେ ଦିଆଯାଇଥିବା ବିଭିନ୍ନ ରାଗରାଗିଣୀ ଏଠାରେ ଉଲ୍ଲେଖ କରାଗଲା; ଇତର କାବ୍ୟରେ ଆହୁରି ଅସଂଖ୍ୟ ବିଭିନ୍ନ ରାଗରାଗିଣୀ ସନ୍ନିବେଶିତ ଅଛି ।

---

※ "In sweet music is such art—
Killing care and grief of heart"—fletcher,

Digitized by srujanika@gmail.com

## ତାଳକାଳ—

କୋଟିବ୍ରହ୍ମାଣ୍ଡସୁନ୍ଦରୀ, ଛାନ୍ଦ ୩୧, ୨୧—୩୬ ପଦରେ କବି ସଙ୍ଗୀତସମ୍ବନ୍ଧୀୟ ସୁନ୍ଦର ଆଲୋଚନା କରିଅଛନ୍ତି । ସେଥିରେ ଶିବଙ୍କ ମଙ୍ଗଳ ବଚନରୁ ପ୍ରକଟିତ ଦଶତାଳ, ଶତ ଏକ ତାଳ ମଧ୍ୟରୁ ସିଂହନନ୍ଦନ ତାଳ, ତାଳଦ୍ୱାରା ପଞ୍ଚ, ଷଷ୍ଠ, ଅଷ୍ଟକଳା; ଶୁକ୍ଳ, ସାଳଗ, ଗ୍ରସ୍ତ, ଲୟ ଏବଂ ସୂଡ଼ ପ୍ରଭୃତି ଛନ୍ଦଲକ୍ଷଣ; ମେଦନୀ, ନନ୍ଦନୀ, ଯାବନୀ, ଦୀପିନୀ, ତାରାବଳୀ ପ୍ରଭୃତି ଲକ୍ଷଣ, ନିଷାଦ, ଋଷଭ, ଗାନ୍ଧାର, ମଧ୍ୟମ, ଷଡ଼୍‌ଜ, ଧୈବତ, ପଞ୍ଚମ ସ୍ୱର ପ୍ରଭୃତି ପ୍ରକାଶ ପାଏ । ତତ୍‌ପରେ ତ୍ରିଶ ପ୍ରକାର ନୃତ୍ୟ ଗୀତ, ଗୀତର ସାବଧି, ଧ୍ରୁବସ୍ଥ ପ୍ରଭୃତି ରାଗରାଗିଣୀ ଭିତରେ ବସନ୍ତ ରାଗ, ସୋମ ରାଗ, କେଦାର ରାଗ ପ୍ରଭୃତି ତଥ୍ୟ ସେଥିରେ ପ୍ରକାଶ କରାଯାଇଛି । ନର୍ତ୍ତକୀମାନଙ୍କ ନୃତ୍ୟ, ନୃତ୍ୟରେ ସେମାନଙ୍କ ଜନ ମନୋହାରିଣୀ ନାନା ଭଙ୍ଗୀ, ସ୍ୱରର ଚିତ୍ତାକର୍ଷକ ବର୍ଣ୍ଣନ ଦେଇ, ପଦର ପଦରେ କବି ସଙ୍ଗୀତ-ସାହିତ୍ୟ-ଚର୍ଚ୍ଚାର ଉପଯବହାର କରିଅଛନ୍ତି । ସେଥିରୁ ୨ଟି ପଦ ମାତ୍ର ନମୁନ ସ୍ୱରୂପ ଏଠାରେ ଉଦ୍ଧୃତ ହେଲା—"ସେ କ କଇଳାସ ତାଳରେ ପ୍ରକାଶ ଆଦ ଯତ ମନ ମୋହ ଯେ । ଶୋଭନୀ ସାସ୍ୱି ସିଦ୍ଧ ମଠାଲଙ୍କନ ଜ୍ଞାନ ଝମ୍ପା ରୂପକହିଁ ଯେ । ନିସ୍ରୁଟ । ଏକ ତାଳୀ ଯୁକ୍ତ କାହିଁ ଯେ । ସମ୍ମୋନ ଅଡ଼୍‌ଡ଼ ଶିବ ବଚନରେ ଗରିବ ପ୍ରକଟ ସନ୍ଧି ଯେ । କୋ: ବ୍ର: ସୁ: ।

'ବନ୍ଦିତ ସିଂହନନ୍ଦନ ପୁଣି ନଳ କୁବର ( ଫୁଙ୍କା ବାଦ୍ୟ ) ବିଳାସ ଇଛି ଯେ । ନନ୍ଦୀ ପ୍ରମୁଖରେ ଶ୍ଳୋକ ବଖାଣିତରେ ଲଘୁ ଗୁରୁ ଉପୁଜୁଛି ଯେ । ନିର୍ମିତ । ଦ୍ରୁତରେ ବିରାମ ଅଛୁ ଯେ । ନଭ ପ୍ରାୟ ପଞ୍ଚ ଷଷ୍ଠ ଅଷ୍ଟକଳା ଚନ୍ଦ୍ରବିମ୍ବ ପ୍ରକାଶୁଛି ଯେ, ।" "କି ଅଯୋଧ୍ୟା ରାମ ଲକ୍ଷ୍ମଣ ବନ୍ଦେ ସେ ବାଦକ କୁଳେ ଅଗମ୍ୟ ଯେ । ଶୁକ୍ଳ ସାଲଗ ଗ୍ରସ୍ତ ଲୟ ବଧିରେ ସୁନ୍ଦର ନିଦାନ ଧାମ ଯେ ।

ଆହତାନାହତ କେତନେ କ୍ଷମ ଯେ ।  
ମେଦନୀ-ନନ୍ଦନୀ ପାବନୀ ଦ୍ୱିପିନୀ ତାରାବଳୀ ଯୁକ୍ତେ ରମ୍ୟ ଯେ ।"

ଇତ୍ୟାଦି ଛା ୩୧, ପ୨୧-୩୬, କୋ: ବ୍ର: ସୁ: ।

## ବିବିଧ ବାଦ୍ୟ ଓ ରାଗରାଗିଣୀର ଦୃଷ୍ଟାନ୍ତ

ଉପେନ୍ଦ୍ର ଭଞ୍ଜଙ୍କ ସମୟରେ ଓଡ଼ିଶାରେ ବିବିଧ ବାଦ୍ୟ ଓ ବାଦ୍ୟଯନ୍ତ୍ରର ପ୍ରଚଳନ ଥିଲା । ନାଗରା, ଦୁନ୍ଦୁଭି, ପଟହ, ଡମରୁ, ଶଙ୍ଖ, ଘଣ୍ଟା, କାହାଳୀ, ତୂରୀ, ଭେରୀ, ମହୁରୀ, କଂସାଳ, ତାଳ, କର୍ତ୍ତାଳ, ଡମ୍ପା, ମୁରଜ, ଡିଣ୍ଡିମ, ଅମୃତୀ, ବେଣୁ, ବୀଣା, ମୃଦଙ୍ଗ, ମର୍ଦ୍ଦଳ ଇତ୍ୟାଦି ନାମ ନିମ୍ନୋକ୍ତ ଦୃଷ୍ଟାନ୍ତରୁ ସୂଚିତ ହୁଏ । ସଙ୍ଗୀତ ବେଳେ କଂସାଳ, ତାଳ, ମୃଦଙ୍ଗ, ମର୍ଦ୍ଦଳ, ବେଣୁ ବୀଣାର ବହୁଳ ବ୍ୟବହାର, ଦେବଯାତ୍ରା, ଶୋଭାଯାତ୍ରା ଓ ଇତର ପର୍ବପର୍ବାଣିରେ ଅନ୍ୟାନ୍ୟ ବାଦ୍ୟଯନ୍ତ୍ରର ବ୍ୟବହାର ହେଉଥିବା ଜଣାଯାଏ ।

"ଶଙ୍ଖ ଶଙ୍ଖ ଶଙ୍ଖ ବାଜେ ଅସଂଖ୍ୟ ମହୁରୀ,  
ଘଣ୍ଟା ପଟହ କଂସାଳ ତାଳ ତୂରୀ ଭେରୀ ଯେ ।  
କର୍ତ୍ତାଳ କାହାଳ ବଜଘୋଷ ବେଣୁ ଡମ୍ପା,  
ମୁରଜ ଡିଣ୍ଡିମ ଦୁନ୍ଦୁଭିରେ ମଚ୍ଚା କମ୍ପା ।  
ବୀଣା ରବା ତାଳ ତାଳ ମୃଦଙ୍ଗ ମର୍ଦ୍ଦଳ ।  
ସ୍ୱର ମଣ୍ଡଳ ଅମୃତୀ ବାଏ ଘୂର୍ଣ୍ଣିକୁଳ ଯେ ।" ଲ: ବ: ।

"ଅସ୍ତୁ ଏ ଇଙ୍ଗିତ ସଙ୍ଗୀତ ଜାଣେ ସେ କଳା ପ୍ରସାରିଲ୍ଲ ପର୍ଯ୍ୟ ରେ ।" ଇତ୍ୟାଦି, ଲ: ବ: ।

Digitized by srujanika@gmail.com

ରକ୍ଷି ନ ପାରନ୍ତି ବଧି ନଷେଧକୁ ଭେକ ତାହୁକ ଶବଦ ।
ଶୁଣନ୍ତି ମଣନ୍ତି କାହୁଁ ଉଆଇଲା ଅନଙ୍ଗ ତେଲଙ୍ଗୀ ବାଦ୍ୟ ।" ଲା: ବ: ।
ରାମଚନ୍ଦ୍ର ଙ୍କ ଅଭିଷେକୋତ୍ସବ ଉପଲକ୍ଷେ ହେଉଥିବା ବାଦ୍ୟ ଗୀତ ଇତ୍ୟାଦ—

"ବାଦ୍ୟମାନ ବଳ ଶୁଭେ ରସନାର ସ୍ୱନ
ବାରନାରୀ ସାର ନୃତ୍ୟ ଗୀତର ବିଧାନ ଯେ ।"
× × ×
ବ୍ୟକ୍ତ ଗନ୍ଧର୍ବ ଗାୟକ ରସାଳେ ମାଧୁର୍ଯ୍ୟ ।
ବସନ୍ତ ମଙ୍ଗଳ ରାଗେ ଏକ ଭାବେ ଭଜ ଯେ ।"
ଛାଂ୧, ବୈ: ବ: ।

"ବସୁସୀଏ ଗୀତ ଗାଇ କେ ରାମା ବୀଣା ବଜାଇ ଥୋଇଅଛୁ ଭାବ ଗୃହି କୁଚୋରମାଳୀ । ବାଜନ୍ତ କଙ୍କିଣୀ ସ୍ୱର ମଣିତ ଧାଉଁ ପ୍ରସୃର ଆମୃଠାରେ ଦେଲା ଭଳ ଗମିଲ ଆଳୀ । ବସୋର ସେ ରାଗରେ ରାଗ । ବୋଲୁଥିଲେ ରାମକେଶ୍ୱ ର ଳ ସଂଯୋଗ ।" ଛାଂ୪, ବୈ: ବ: ।

ସଙ୍ଗୀତମାଧୁର୍ଯ୍ୟ—

ଅରଫିୟୁସ୍ ଯେତେବେଳେ ବୀଣାବାଦନ କରି ପଞ୍ଚମତାନରେ ଗାନ କରନ୍ତି, ସେତେବେଳେ ଗଛ ପଥର, ପର୍ବ, ପର୍ବତ, ନିର୍ଝରିଣୀ, ପଶୁ ପକ୍ଷୀ ବଗଳିତ ହୋଇ ପଡ଼ନ୍ତି ବୋଲି ଗ୍ରୀସ୍ ଓ ଇଂରେଜ ସାହିତ୍ୟରେ ଗଦ୍ୟ, ପଦ୍ୟ, କାହାଣୀ, ଉପନ୍ୟାସରେ ଘନ ଘନ ପ୍ରକାଶ ପାଇଥାଏ ।

Orpheus with his lute made trees
Ard the mountain-tops that freeze
Bow themselves when he did sing !
To his music, plants and flowers
ever spring;"—J. Fletcher.

"ଶିଶୁର୍ବେତ୍ତି ପଶୁର୍ବେତ୍ତି ବେତ୍ତି ଗୀତରସଂ ଫଣୀ"
"ମଧୁକରୈରପବାଦକରୈରିବସ୍ମୃ ତିଭୁବଃ ପଥିକା ହରଣା ଇବ,
କଳତୟା ବରସଃ ପରିବାଦିନୀ ସ୍ୱରଜିତାରଜିତା ବଶମାୟୟୁଃ ।" (ମାଘ)

ଉପେନ୍ଦ୍ର ମଧ୍ୟ ଠିକ ସେହିପରି କହନ୍ତି :—

"ମୋହି ପାରଇ ଜଗତ ଯେଉଁ ଗୀତ ଆଲଙ୍ଗିତ ସ୍ୱର ସପତ
ଛକତ ଲେଖକ ଯହିଁରେ ପନ୍ନଗ ଅନଙ୍ଗ ତହିଁତ ଗୁପତ ।
ବିହଗ ପଶୁ ସ୍ୱରେ ସ୍ୱରେ ଧଇଲେ ।
ପ୍ରଶସ୍ତ କରି ବସନ୍ତ ରାଗ ଧରି ସବ ଲୋକେ ତାହା ଗାଇଲେ ।"
ଛାଂ୨, କୋ: ବ୍ର: ସୁ: ।

Digitized by srujanika@gmail.com

ମିଶର ରାଣୀ 'କ୍ଲିଓପାଟ୍ରା' ଆଣ୍ଟୋନୀକୁ ଭେଟିବା ପାଇଁ (ପ୍ଲୁଟାର୍କଙ୍କ ଲେଖନୀରୁ) ଯେଉଁପରି ଅପୂର୍ବ ଶୋଭାସମ୍ପଦରେ ବିମଣ୍ଡିତ ହୋଇ ସେବକ ସେବିକା ପ୍ରଭୃତି ଦଳ ବଳ ସହିତ ଅତ୍ୟନ୍ତ ସମାରୋହରେ ଧୀରେ ଧୀରେ ଅଗ୍ରସର ହେଉଥିଲେ, ଲବଣ୍ୟବତୀ ଶୋଭା-ସରୋବରରେ ଶୁଭ୍ର ସରୋଜ ସରୋଜବନ୍ତ ମୃଦୁ ଅନିଳ ହିଲ୍ଲୋଳ ସ୍ପର୍ଶରେ ଢଳଢଳ ହୋଇ ଠିକ୍ ସେହିପରି ସେବିକା, ସହଚରୀ ସହିତ ଅତ୍ୟନ୍ତ ସମାରୋହରେ ଚନ୍ଦ୍ରଭାନୁଙ୍କୁ ଭେଟିବା ପାଇଁ ରାମେଶ୍ୱର ଦେବାଳୟକୁ ପ୍ରସ୍ଥାନ କରନ୍ତି। ଲବଣ୍ୟବତୀଙ୍କର ଏହି ସମୟରେ ଦେବ ଦର୍ଶନ ଓ ଚନ୍ଦ୍ରଭାନୁ ଦର୍ଶନଲାଳସା ରହିଛି। କିନ୍ତୁ ସେଥିରେ ପ୍ରଥମତଃ ମାତୃଭୂମିର ଦୁର୍ଲଭ ଶିଳ୍ପାଗାର ଓ ରାଜକୀୟ ଆଡ଼ମ୍ବର, ଦ୍ୱିତୀୟତଃ ବିଶ୍ୱବନ୍ଦନୀୟ ସଙ୍ଗୀତକୁ ବାଦ୍ ଦେଇ ନାହାନ୍ତି। ଯଥା:—

"ଅତନୁ ସ୍ୟନ୍ଦନ ଚନ୍ଦନ ବନ୍ଦନ ଶୀତଳ ତନୁକୁ ରଞ୍ଜାଇ।
ପଦ୍ମଣ୍ଡ ମଣାଇ ସଙ୍ଗୀତ ପ୍ରବୀଣା-ସଙ୍ଗିନୀଏ ବୀଣା ବଜାଇ।
କୁମାର। ଥିବା ସ୍ଥାନକୁ ଅନୁସର।
ଶୋଭାଙ୍ଗୀଙ୍କ ପାନ ଭଙ୍ଗି ଦେଇ ମନ ତୋଷୁଅଛୁ ମନ୍ତ୍ରୀ-କୁମାରୀ।"
ଇତ୍ୟାଦି। ଲ: ବ:।

## ନୃତ୍ୟ

ଭାରତର ନୃତ୍ୟକଳା ଜଗତରେ ଅତୁଳ୍ୟ। ଏହି ବିଂଶଶତାବ୍ଦୀରେ ମଧ୍ୟ ସୁସଭ୍ୟ ଦେଶମାନଙ୍କରେ ଭାରତୀୟ ନୃତ୍ୟକଳା ପ୍ରଶଂସ୍ୟ ଓ ଦର୍ଶନୀୟ ହୁଏ। ଭାରତର ନର୍ତ୍ତକ, ନର୍ତ୍ତକୀମାନେ ଦେଶ ଦେଶାନ୍ତର ଭ୍ରମଣ କରି ଭାରତୀୟ ବିଭିନ୍ନ ନୃତ୍ୟ ପରିପାଟୀରେ ଜଗତବାସୀଙ୍କୁ ମୁଗ୍ଧ କରନ୍ତି। କବି ନୃତ୍ୟପରିପାଟୀର ପ୍ରଦର୍ଶନୀ ଚମତ୍କାରିତାରେ ନିଜର ବିଭିନ୍ନ ଗ୍ରନ୍ଥରେ ଉଦ୍‌ଘାଟନ କରି ପାଠକ ପାଠିକାଙ୍କ ହୃଦୟ ରଞ୍ଜନ କରନ୍ତି। ଯଥା :—

"ଆଗେ ପ୍ରସରିବା ଅପସରିବା କି ପୁଷ୍ପବଲ୍ଲୀ ଚଳେ ବାତେ ଯେ।
ଅଳକା ଅଳି ଆଳୀ କି ପାନ ଲୋଭେ କର୍ମେ ସ୍ୱେଦ ମଧୁ ଜାତେ ଯେ।
କରି କି। ସେ ହସ୍ତକୁ ଉତ୍ତୋଳତେ ଯେ।
ଫାନ୍ଦରି ବାରେ ଧଇର୍ଯ୍ୟ ପଙ୍କଜକୁ ଉପାଡ଼ି ନେବାର ମନ୍ଦେ ଯେ।"

"ଚରଣେ ତର୍ଜନୀ ଦେଇ ଠାରନ୍ତି କି ଏ ଓଷ୍ଠ ମଧୁର ଠାବ ଯେ।
ମୃଦୁ ସ୍ମିତ ଜାତ ସାକ୍ଷାତ କରଇ ମୃତ ଲୋକେ ଦେଇ ଜୀବ ଯେ।
କଟାକ୍ଷେ। ଲବଣ୍ୟଲକ୍ଷ୍ମୀ ସମ୍ଭବ ଯେ।
ଭଙ୍ଗ ଭଙ୍ଗୀ ଅଙ୍ଗୀକାର ସାଗରୀ ସେ ଭାଙ୍ଗଇ ବିବେକ ନାବ ଯେ।"

"ପଦଯୁଗ ବେଗ ବେଗ ପ୍ରଚଳନେ ବାଜନ୍ତି ମଞ୍ଜୁ ମଞ୍ଜୀର ଯେ।
ଦ୍ୱିରଦ ମନ୍ଥର ମନ୍ଥନ କଳଙ୍କ ଦେଉଛନ୍ତି ଭାର ଭୂର ଯେ।
ନର୍ତ୍ତକୀ। ଲଯ୍ୟ କୃତ ମୁନିଙ୍କର ଯେ।
ଲୁଟି ହୋଇଅଛୁ ମାନ ବଡ଼ପଣ ଲୁଚୁଥିବା ଠାବୁ ଯାଉ ଯେ।" କୋ: ବ୍ର: ସୁ:।

Digitized by srujanika@gmail.com

ଉପେନ୍ଦ୍ରଙ୍କ ପର ବଙ୍ଗୀୟ (ପାଶ୍ଚାତ୍ୟ) ଢଂଗରେ ନବ ନୃତ୍ୟ-କଳା ସମ୍ବନ୍ଧରେ ତାହା କହୁଥିଲେ ମଧ୍ୟ, କେହୁ ତାହାଦ୍ୱାରା ପ୍ରଭାବିତ ନୁହେଁ । ସ୍ୱନାମଧନ୍ୟ ଭଞ୍ଜ ବ୍ୟକ୍ତିମାନେ ବାସ୍ତବ କଥା ବର୍ଣ୍ଣନା କରୁ କରୁ ସେମାନଙ୍କ ବର୍ଣ୍ଣନାସମ୍ବଳିତ ଭାବଭଙ୍ଗୀରେ ସାମଞ୍ଜସ୍ୟ ବେଳେ ବେଳେ ଦେଖାଯିବା ସ୍ୱାଭାବିକ । ଯଥା ବର୍ଣ୍ଣନାରେ ସଙ୍ଗୀତ, ନୃତ୍ୟକଳା—"ହସ୍ତତଳସ୍ଥ ପଦ କଟକର, ସ୍ୱନ ପ୍ରଖର ମର୍ଦ୍ଦଳ ଝର୍ଝର । ସରସ ବଚନ ପଞ୍ଚମ ସ୍ୱର, ଭୂଷଣ ନର୍ତ୍ତକ ନର୍ତ୍ତନ କର । ବଦନ ଘଣନ୍ତ । ଚଳନ ରଞ୍ଜନ ଅଞ୍ଜନ ଯତ ।"

ଅ: ର: ତ: ।

ନୀଳାଚଳ ଉପଲକ୍ଷେ

ବଧୂର ଚତେ ମଧୁର କର ଗାଆନ୍ତି ସାଧୂ ।
ଆଗତ ହୋଇଣ ନାଚନ୍ତି ସହିଁ ଗଣିକା ବଧୂ ।

× × ×

ଗୋପୀ ଗୋପୀନାଥ ସୁବେଶ ସବୁ ଆବେଶ ନୃତ୍ୟେ ।
ଅତ ବନ୍ଦନ୍ଧ ମାଗଧ ତୋଷେ ଶନ୍ଦ କବନ୍ତେ ।" ଇତ୍ୟାଦି । ର: ହ୍ନା: ।

## ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା

"ଘାଗୁଡ଼ି ନୂପୁର ଖଞ୍ଜି କଟିପଦେ ବେଣୀ ରଞ୍ଜି ଫୁଲ ଲମ୍ବାଇ ।
ଘଟଣ କପାଳେ ଦେଇ ଫଗୁ ଗୋପୀ ଗୋପୀ କରତାଳ ବଜାଇ ।
ଘନଶ୍ୟାମଙ୍କୁ ।
ଘୋଷି ଥେଇ ଥେଇ ନଚାଇ ।" ଇତ୍ୟାଦି । ଗ୍ଧ: ଭୂ: ।

———

## ଭକ୍ତିପ୍ରବଣତା

"Ideas constitute a force among people as well as among individuals."

*Andra Thiers.*

ନୃପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥରେ ଈଶ୍ୱରଭକ୍ତି ଦୃଷ୍ଟାନ୍ତର ଅଭାବ ନାହିଁ । ସମସ୍ତ ଦୃଷ୍ଟାନ୍ତ ଦର୍ଶାଇବାକୁ ହେଲେ ଭଞ୍ଜ-ସାହିତ୍ୟର ତିନି ଚତୁର୍ଥାଂଶ ଏଥିରେ ଥୋଇବାକୁ ହେବ । ଭକ୍ତି-ସାହିତ୍ୟକୁ ଭଞ୍ଜଙ୍କ ଅବଦାନ ଅସୀମ । ତାହା ସ୍ପଷ୍ଟ କରିବା ପାଇଁ ଭଞ୍ଜ-ସାହିତ୍ୟ-ରତ୍ନାକର ଗର୍ଭରୁ ଯେତେ ଦୃଷ୍ଟାନ୍ତ-ରତ୍ନ ଆହରଣ କରାଯାଇ ପାରିବ, ସେତେ ଅଧିକ । ତାହା କରି ପ୍ରବନ୍ଧର କଳେବର ବୃଦ୍ଧି କରିବା ବର୍ତ୍ତମାନ ଆମ୍ଭମାନଙ୍କ ଅଭିପ୍ରାୟ ନୁହେଁ । କବିଙ୍କ ବିଖ୍ୟାତ କାବ୍ୟ 'କୋଟିବ୍ରହ୍ମାଣ୍ଡସୁନ୍ଦରୀ', 'ବୈଦେହୀଶ ବିଳାସ' ଓ 'ଲାବଣ୍ୟବତୀ'ରୁ ସାଧାରଣ କେତେକ ଦୃଷ୍ଟାନ୍ତ ଏବଂ ଅନ୍ୟାନ୍ୟ ଗ୍ରନ୍ଥରୁ ପଦେ ଅଧେ ଏଥିରେ ସନ୍ନିବେଶିତ ହେଲା । ସେଥିରେ କବିଙ୍କ ଭାବର ବୈଚିତ୍ର୍ୟ, ଭାଷାର ସୌନ୍ଦର୍ଯ୍ୟ, ଦେଶପ୍ରେମ ଓ ଅଗାଧ ପାଣ୍ଡିତ୍ୟ କିପରି ପ୍ରାଞ୍ଜଳ ଅଥଚ ସ୍ୱାଭାବିକ ଭାବରେ ଫୁଟି ପାରିଛି, ତାହା ହୃଦୟବାନ୍ ପାଠକବର୍ଗଙ୍କ ଅବବୋଧ ସକାଶେ ନିମ୍ନରେ ଦିଆଗଲା :—

ଦୃଷ୍ଟାନ୍ତ—୧

"ଶୁଣ କୋବିଦେ ଭରତ ଖଣ୍ଡେ ପୁଣ୍ୟଧାମ ।
ଯେଣୁ ନାରାୟଣ ଦେହୀ ତେଣୁ ସେହି ନାମ ହେ ॥
ଗୀର୍ବାଣ ମତେ ନିର୍ବାଣ ସାରୂପ୍ୟକୁ ଦେଇ ।
ସାକ୍ଷୀ ପକ୍ଷୀ କରନ୍ତି ପ୍ରତିମାରୂପେ ଥାଇ ଯେ ॥
ଯେ ବ୍ରହ୍ମହତ୍ୟା-ପାତକ-ନିପାତକ ମହୀ ।
କପାଳମୋଚନ ତ୍ରିଲୋଚନ ସାକ୍ଷୀ ଯହିଁ ଯେ ॥
ଆସି କାଶୀଶ୍ୱର ବାସ କଲେ ଏହା ଜାଣି ।
ଅନ୍ୟ କ୍ଷେତ୍ର ସମସ୍ତଙ୍କ ଏ ମସ୍ତକ ମଣି ହେ ॥
ଏଣୁ କ୍ଷେତ୍ର ନରେନ୍ଦ୍ର ପଦତ ସମ୍ମାନିତ ।
ବିନାଶେ ଭୁଜଙ୍ଗ ଦୋଷ ତାକୁ କେତେ ମାତ୍ର ହେ ॥
ଅବିଦ୍ୟା ବିଷମ ଆଶୀବିଷଘାତୀ ଜନେ ।
ଜ୍ଞାନାଜ୍ଞାନେ ପରାଧୀନେ ଯେ ସ୍ଥାନ ଗମନେ ହେ ॥
ଶ୍ରୀ ମହାପ୍ରସାଦ ଗଦ ପଦ ଘଣ୍ଟା ଘୋଷ ।
ଭକ୍ଷଣେ ଶ୍ରବଣେ ଯେ କଳିବିଷ ବିଷ ନାଶ ହେ ॥

Digitized by srujanika@gmail.com

ଉନ୍ନତ ପ୍ରାସାଦଗ୍ରଜ ପତାକା ଉଡ଼ାଇ ।
ଏ ପ୍ରଦେଶେ ଯମବର୍ତ୍ତୀପଣ ନାହିଁ ନାହିଁ ହେ ॥
ବଟରାଜା ଶାଖା ଯେନ ନଗମ ସାକ୍ଷାତ ।
ପାପ ତାପ ପଞ୍ଚୁନାଶ ସୁକର୍ମ ଉଦତ ଯେ ॥
ସେ ଦୁର୍ଗ-ପରିଖା ତୀର୍ଥରାଜ ଗର୍ଜନରେ ।
କହେ ଅବଗାହେ ପାପବ୍ୟୂହ ଦହନରେ ହେ ॥
ଦହି ସବୁ ବାଡ଼ବରେ ଦେବ ଏ ପକାଇ ।
ଏ ଉଚ୍ଚବଣରୁ ଦୂରୁ ଦୁରିତ ପଳାଇ ହେ ॥

ଛା ୧, କୋ: ବ୍ର: ସୁ: ।

ତାତ୍ପର୍ଯ୍ୟ—

ଭାରତବର୍ଷରେ ପୁଣ୍ୟଧାମ ପୁରୁଷୋତ୍ତମ । ସ୍ୱୟଂ ନାରାୟଣ ପୁରୁଷୋତ୍ତମ ନାମରେ ସେଠାରେ ଅବତୀର୍ଣ୍ଣ ହୋଇଥିବାରୁ ସ୍ଥାନର ନାମ ପୁରୁଷୋତ୍ତମ ହୋଇଅଛି । ଚାରି ପ୍ରକାର ମୁକ୍ତି— ସାମୀପ୍ୟ, ସାଲୋକ୍ୟ, ସାଯୁଜ୍ୟ, ସାରୂପ୍ୟ ସେଠାରେ ମିଳେ । ଭୁଷଣ୍ଡ କାକ ରୋହିଣୀ କୁଣ୍ଡରେ ଚତୁର୍ଭୁଜ ହୋଇ ବସି ଅନବରତ ତାହାର ସାକ୍ଷ୍ୟ ଦେଉଅଛି । ସେଠାରେ ବ୍ରହ୍ମହତ୍ୟା ପାତକ ନପାତ ହୁଏ । ସ୍ୱୟମ୍ଭୂ ସ୍ୱୟଂ ସେଠାରେ ବଜେ କରି ତାହାର ସାକ୍ଷ୍ୟ ଦଅନ୍ତି । ( ମହାଦେବ ଜଣେ ବ୍ରାହ୍ମଣଙ୍କୁ ଗୋଟିଏ ଚାପୁଡ଼ା ମାରି ମାରି ଦେଇଥିଲେ । ବ୍ରହ୍ମହତ୍ୟା ଦୋଷରୁ ତାହାର କପାଳ ମହାଦେବଙ୍କ ହାତରେ ଲାଗିଲା, ଛାଡ଼ିଲା ନାହିଁ । ଶ୍ରୀକ୍ଷେତ୍ର ଦର୍ଶନରେ ସେ ବ୍ରହ୍ମହତ୍ୟା ଦୋଷରୁ ମୁକ୍ତ ହେଲେ, କପାଳ ଛାଡ଼ିଲା । ) ବଟ ପୁରୁଷ ଦୋଷ, ଅଜ୍ଞାନ-ଆଶୀଚଷ, କଳ୍ପବଟ ବିଷ ଶ୍ରୀ ମହାପ୍ରସାଦ ଚଦ, ପଦ, ଘଣ୍ଟଘୋଷ, ଭକ୍ଷଣ ଓ ଶ୍ରବଣରେ ନାଶ ଯାଏ । କ୍ଷେତ୍ରରାଜ ପଦ ଶ୍ରୀକ୍ଷେତ୍ରଠାରେ ବିଶେଷ ଭାବରେ ପ୍ରଯୁଜ୍ୟ । ପ୍ରାସାଦରାଜର ପତାକା ଫରଫର ଉଡ଼ି କହେ—"ଏ ପ୍ରଦେଶରେ ଯମର ଭୟ ନାହିଁ ।" ଯଜ୍ଞରେ ପଶୁବଧ କଲେ ସୁଫଳ ମିଳେ, ସେଠାରେ କନ୍ତୁ କଳ୍ପବଟ ପାପତାପ ନଷ୍ଟ କରି ସୁଫଳ ଦଏ । ସେହି ଗଡ଼ର ଗଡ଼ଖାଇ ଭାବରେ ଥାଇ ତୀର୍ଥରାଜ ଗର୍ଜ୍ଜନ ଛଳରେ ଘୋଷଣା ଦଏ– "ହେ ଯାତ୍ରିବୃନ୍ଦ ! ଏଥିରେ ସ୍ନାନ କରି ପାପ ତାପ ଧୌତ କର ।"

"ସେ କମ୍ବୁ କଟକ ରାଜା ନାମ ଜଗନ୍ନାଥ ।
ଚାରିବର୍ଣ୍ଣେ ଚତୁର୍ବର୍ଗ ଦେବାକୁ ସମର୍ଥ ହେ ॥
ଭକ୍ତିଦେବା ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ ।
ବୈଷ୍ଣବ ବିହୀନେ କେ ବା ଜାଣିବ ସଂସାରେ ହେ ॥
ପାଦେ ବନ୍ଦେ ସାର୍ବଭୌମ ବୋଲିବା କି ଯଶ ।
ବୃଷାସନଙ୍କର ଶିର ଲାଗିବାକୁ ଆଶ ହେ ॥" ୧୪, କୋ: ବ୍ର: ସୁ: ।

ସେହି କମ୍ବୁକଟକ (ଶଙ୍ଖତୀର୍ଥ) ରାଜାଙ୍କ ନାମ ଜଗନ୍ନାଥ । ସେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର— ଏହି ଚାରିବର୍ଣ୍ଣଙ୍କୁ ଧର୍ମ, ଅର୍ଥ, କାମ' ମୋକ୍ଷ— ଚତୁର୍ବର୍ଗ ଫଳ ଦଅନ୍ତି । ବୈଷ୍ଣବମାନଙ୍କ ମତରେ 'ଜଗତ୍' ଶବ୍ଦର ଅର୍ଥ ରାଧା, 'ନାଥ' ଶବ୍ଦର ଅର୍ଥ କୃଷ୍ଣ । 'ଜଗନ୍ନାଥ'ର ଅର୍ଥ ହେଲା ରାଧାକୃଷ୍ଣ । ଏ ଅର୍ଥ ବୈଷ୍ଣବଙ୍କ ପକ୍ଷରେ ହିଁ ସମ୍ଭବ, ଅନ୍ୟମାନଙ୍କ ପକ୍ଷରେ ନୁହେ । ସେହିଁ ସମ୍ରାଟଙ୍କର ଏପରି ମହିମା, ଯାହାଙ୍କ ପାଦ ସ୍ପର୍ଶ କରିବାକୁ ସ୍ୱୟଂ ମହାଦେବ ଆଶା କରିଛନ୍ତି, ସେହି ପାଦ ମୁଁ ବନ୍ଦୁଅଛି କହିବା କ'ଣ ବଡ଼ାଇ ?

Digitized by srujanika@gmail.com

"ଯାହା କଟାକ୍ଷ-କୁଠାର ପତନ ମାତ୍ରରେ ।
ଅନେକ ଦୁଃଖ-ଅନୋକହକୁ ଛେଦିପାରେ ହେ ॥
ସେହି ପାଦ-ପଦ୍ମାସମା ପାଟ ମହାଦେବୀ ।
ଅଷ୍ଟ ଐଶ୍ୱର୍ଯ୍ୟ-ଦାୟିନୀ ଅଷ୍ଟଶକ୍ତି ସେବି ହେ ॥
ଭରସା କରି ଆସନ୍ତି ଦୂରଦେଶୁଁ ପ୍ରାଣୀ ।
ଆର୍ତ୍ତଭଞ୍ଜନ ଦୀନବନ୍ଧୁ ନାମ ଶୁଣି ହେ ॥
କରଯୋଡ଼ି ସ୍ତମ୍ଭରେ ଜଣାଇ ଖଗେଧବ ।
ଆର୍ତ୍ତଜନ ଗୁହାରିକି ସାବଧାନ ହେବ ହେ ॥" ୧୮, ସ୍ଥ ୧, କୋ.ବ୍ର:ସୁ: ।

ଯାହାର କଟାକ୍ଷକୁଠାର ଦୁଃଖ-ଅନୋକହ (ବୃକ୍ଷ)କୁ ଛେଦି ପାରେ, ସେହି ଜଗନ୍ନାଥଙ୍କ ପାଦ-ପଦ୍ମରେ ଅଷ୍ଟଐଶ୍ୱର୍ଯ୍ୟ—ଅଣିମା, ଲଘିମା, ପ୍ରାପ୍ତି, ପ୍ରାକାମ୍ୟ, ମହିମା, ଈଶିତ୍ୱ, ବଶିତ୍ୱ, କାମାବସାୟିତା ଦାୟିନୀ ବିମଳା ପ୍ରଭୃତି ଅଷ୍ଟମହାଦେବୀବୃନ୍ଦ ନିରନ୍ତର ସେବା କରୁଅଛନ୍ତି । ଆର୍ତ୍ତଭଞ୍ଜନ ଦୀନବନ୍ଧୁ ନାମ ଶ୍ରବଣରେ ଦୂର ସ୍ଥାନରୁ ଯାତ୍ରୀ ଅଜାଡ଼ି ହୋଇ ଆସନ୍ତି । 'ଆର୍ତ୍ତଜନଙ୍କ ଗୁହାରିକୁ ସାବଧାନ ହୁଅନ୍ତୁ'—ଏହି କଥା ଗରୁଡ଼ ଶ୍ରୀସ୍ତମ୍ଭରେ ଦଣ୍ଡାୟମାନ ହୋଇ ଅହରହ ନିବେଦନ କରନ୍ତି ।

କୋଟି-କନ୍ଦର୍ପ-ଲାବଣ୍ୟ ମୂର୍ତ୍ତି ଦରଶନ ।
ଦେବାକୁ ସୁବେଶେ ବିଜେ ରତ୍ନସିଂହାସନ ॥
ଶିରେ ହେମ-ରଚିତ ମୁକୁଟ ସପ୍ତ ଶାଖା ।
କରୁଣାସିନ୍ଧୁରେ କି ବଡ଼ବାନଳ ଶିଖା ॥
କନାଣି ସାର୍ଥ ନୋହିବ ଏମନ୍ତ ବର୍ତ୍ତୁର ।
ପୁଣି ମଞ୍ଜୁଳ କୁଣ୍ଡଳ ମକର ଆକାର ॥
ପ୍ରବାଳ ତରଣୀ ଦୃଷ୍ଟି ରଙ୍ଗାଧରେ ଅଛି ।
ବକ୍ଷେ ସର୍ବ ଲାବଣ୍ୟଲକ୍ଷ୍ମୀ ସମ୍ଭବିଛି ॥
ଦଶ ଅବତାର ଲୀଳା ଯାହା ବିରଚନ ।
ଜନଙ୍କୁ ଦେଖାନ୍ତି ସ୍ୱଗାତ୍ରର କଥାମାନ ॥
ସ୍ନାନ ଗୁଣ୍ଡିଚ୍ଚ ଏ କେତେ ସ୍ୱୟଂଲୀଳା ଯାର ।
ଚଢ଼ଚଢ଼ ବନ ଅର୍ଥେ ପ୍ରାସାଦୁଁ ବାହାର ହେ ॥
ଜ୍ୟେଷ୍ଠ ପୌର୍ଣ୍ଣମାସୀ ପୂର୍ବନିଶି ଅବଶେଷ ।
ସେବକ ଜନଙ୍କେ ମିଳି ମହାପ୍ରଭୁ ପାଶେ ॥
ସେ କାଳକୁ ଅନୁସରି ଯାତ୍ରୀ ନର ନାରୀ ।
ଯେ ଯାହାର ନିତ୍ୟକର୍ମ ଭୁଲି ହୋଇ ସରି ॥
ହରି ହରି-ଦ୍ୱାରେ ମିଳି ହରିଧ୍ୱନି କଲେ ।
ହରିତ ପରିତ ଭୂମିତଳେ ତର୍ଦ୍ଧ ହେଲେ ॥
ଢୋଲ ଭେରୀ ପାହାଡ଼ ବିଜୟ ନିମିତ୍ତେ ।
ବାଜିଲା ଘଣ୍ଟା ମୃଦଙ୍ଗ ଢୋଲ ସହିତେ ॥
କି ସାଲ ତଳ କର୍ଣ୍ଣାଳ ପଟହ ଝର୍ଝରୀ ।
ମୋ ପରେ ବିଜେ କରନ୍ତେ ଭାବ ତୋଷଧାରୀ ॥ ଜ. ଭ-୦

ନୋହିବେ ସର୍ବଙ୍କ କଁପା କୃଷ୍ଣ-ପରିକର ।
ଜାଣିଲେ ନିଶ୍ଚୟ ପ୍ରଭୁ ଦକ୍ଷିଣ-କୁଞ୍ଜର ॥
ପୂର୍ବଜରେ ପୂର୍ବଗଜ ସ୍ତବ ଉପୁଜାଇ ।
ପହଣ୍ଡି ବିଜୟ କଲେ ଝୁଲାଇ ଝୁଲାଇ ॥
ସାର ଗନ୍ଧସାର-ପଙ୍କେ ଭୂଷିତ ହୋଇବେ ।
ଜନପଙ୍କ-ପଙ୍କଜ-ବନକୁ ଉଜାଡ଼ିବେ ॥
ସବୁ ଦିନେ ଲୀଳାସ୍ନାନ ଜଳ ମସ୍ତାଧର ।
ଭକ୍ତରବ-ଉକ୍ଷ୍ଟ୍ରେ ବନ୍ଧନ ଅଛୁ ଯାର ॥
ଜଡ଼ି ଯେତେ ଛନ୍ଦ ଏତେ ସ୍ତବକ ଜାଣିବେ ।
ବାହୁଡ଼ିବା ହେଲେ ବେଶେ ବ୍ୟାକତ ହୋଇବେ ॥
ଭବ ସାଗର-ସୁବର୍ଣ୍ଣ ତରଣୀ ବିଗ୍ରଶ ।
ସୁଭଦ୍ରାଙ୍କୁ ବିଜେ କରାଇଲେ ତଥା ଧଶ ॥
ତାପ-ଧ୍ୱସ୍ତ ଖଣ୍ଡ-ଭଞ୍ଜନକୁ ଦଣ୍ଡବର ।
ସୁଦରଶନଙ୍କ ବିଜେ ସେହୁ ପରକାର ॥
ଛନ୍ଦ ପଦ ଦାତା ଯେ ରଜାଧିରାଜେଶ୍ୱର ।
ବିଜେ କରେ ଦ୍ୱିଜେ ଦେଇ ନିଜ କରଭର ॥
ଢାଳନ୍ତି ଚାମର ଶ୍ୱେତଛତ୍ର ଟେକା ତହିଁ ।
କ୍ଷୀର-ସାଗର-ଲହରୀ ଭ୍ରମ ଉପୁଜାଇ ॥
ଗହଳ ହୋଇଣ କଳାଛତ୍ର ଶୋଭା ଦଶି ।
ତୁଙ୍ଗ ଶିଖରୀ ପରେ କି ଜଳଦ ଆକର୍ଷି ॥
ପତାକା ବ୍ୟାଜନ୍ତି ଯେତେ ଶୂନ୍ୟେ ନୀରଧାର ।
ସ୍ୱେଦଛଳେ କରେ କରତନୁ ଜରଜର ॥
ଚଞ୍ଚଳା ଖେଳା ଚଳବା ଖଦ ପୀତବାସ ।
ତୃଷିତ ଦ୍ୱିଜ-ଚାତକ ଜଳପାନେ ତୋଷ ॥
ଏ ପ୍ରମାଣ ବରହିଣ ପୁଚ୍ଛ ତେଣୁ ଚଳ ।
ନିଶାଣ ମଣ୍ଡୁକ-ନାଦେ ଦିଗନ୍ତ ଉଛୁଳ ॥
ପ୍ରଭୁ ଚଳନ ଶବଦ ଜଡ଼ିତ ସ୍ତନିତ ।
ପୁଷ୍ପାଞ୍ଜଳି ବଳାବଳୀ ଉଡ଼ି ଖସେ ସତ ॥
ଏମନ୍ତେ ସ୍ନାନମଣ୍ଡପେ ସିଂହାସନ ପର ।
ବିଜେ ମହାପ୍ରଭୁ ଘେନି ଭଗ୍ନୀ ସହୋଦର ॥
ନାଗ ନର କିନ୍ନର ଗନ୍ଧର୍ବ ଛନ୍ଦ ରହି ।
ଅନେକ କନକ ଘଟେ ପୂର୍ଣ୍ଣ କରି ତହିଁ ॥
ଢାଳିଲେ ଭୂପୁରେ ନୀର ଶ୍ରୀମୁଖମଣ୍ଡଳେ ।
ଧାରମାନ ପତନ ହୋଇଲା ମଂହୋଲ୍କଲେ ॥
କି ମେରୁ ଶିଖରୀ-ମାରଗ-ହେମ-ଶୃଙ୍ଗୁ ଖସି ।
ଜାହ୍ନବୀ ଯମୁନା ହରିତାଳ-ଧାର ଆସି ॥

Digitized by srujanika@gmail.com

ଲେପନ ଚନ୍ଦନ ଖସି ପଡ଼ିଲା ଏମନ୍ତ
ସେ ତନୁ ଶୃଙ୍ଗକ ଜାତ ତରଳ ରଜତ ॥
ଦେଖିଲା ଆଖିରେ ଦରିଦ୍ରତା ନ ରହିଲା ।
ମନରୁଁ ଦୁଃସହ ଦୁଃଖମାନ ଉପେକ୍ଷିଲା ॥
ହୃଚ୍ଚନ୍ଦନ ସଙ୍ଗରୁ ସେହି ବୋଲି ଘେନ ।
ସ୍ପର୍ଶକଲେ ହେବେ ଏ ତ ବାଞ୍ଛା ବରଦାତା ॥ ପୃ ୫୧, କୋ: ବ୍ର: ପୁ: ।

## ଜଗନ୍ନାଥ ବର୍ଣ୍ଣନା

ତାତ୍ପର୍ଯ୍ୟ—

କୋଟି-କନ୍ଦର୍ପ-ମୂର୍ତ୍ତି ଧାରଣ କରି ଯାତ୍ରୀଙ୍କୁ ଦର୍ଶନ ଦେବା ସକାଶେ ପ୍ରଭୁ ଜଗନ୍ନାଥ ରତ୍ନସିଂହାସନରେ ବିଜେ କଲେ । କରୁଣାସିନ୍ଧୁରେ ବଡ଼ବାନଳ ଶିଖାରୂପୀ ପ୍ରଭୁଙ୍କ ଶିରରେ ହେମ-ରତନ-ମୁକୁଟ ସପ୍ତ ଶାଖାରେ ଶୋଭା ପାଉଅଛି । ଜଗନ୍ନାଥଙ୍କ ଠାରେ ସାଗରଭେଦ ପ୍ରଯୁକ୍ତ ନ ହେବ କାହିଁକି ? ତାଙ୍କର କର୍ଣ୍ଣଦେଶରେ ମକରକୁଣ୍ଡଳ ବିରାଜିତ, ତାଙ୍କର ସୁରଙ୍ଗ ଅଧର ପ୍ରବାଳତରଣୀ ରୂପ, ସେଥିରେ ଲାବଣ୍ୟଲକ୍ଷ୍ମୀ ଦେଦୀପ୍ୟମାନ । ଦଶ ଅବତାରଲୀଳା ସ୍ଥୂଳଥିବାରୁ, ସେ ଦର୍ଶକବର୍ଗଙ୍କୁ ସେଠାରେ ବିଭିନ୍ନ ଯୁଗର କଥାମାନ ଦେଖାନ୍ତି । ସ୍ନାନ ଓ ସୃଷ୍ଟି ସ୍ୱ—ପ୍ରଭୁଙ୍କ ନିଜ ଲୀଳା । ସୃଷ୍ଟିଙ୍କୁ ଉଦ୍ଧାର କରିବା ପାଇଁ ସେ ଏ ଦୁଇ ଯାତରେ ଦେବାଳୟରୁ ରାଜଦାଣ୍ଡକୁ ବିଜେ କରନ୍ତି । ସେବକମାନେ ଯଥା ସମୟରେ ପହଣ୍ଡି ଦିଅନ୍ତି । ଯାତ୍ରୀମାନେ ସ୍ନାନ ଶୌଚ ସମାପନ କରି ଜଗନ୍ନାଥଙ୍କ ସିଂହଦ୍ୱାରରେ ଏକତ୍ର ହୋଇ ହରିଧ୍ୱନି କରନ୍ତି । ପ୍ରଭୁଙ୍କ ପାଇଁ ପାଟ ମୁକୁଳା ପଡ଼େ । ଢୋଲ, ମୃଦଙ୍ଗ, ମର୍ଦ୍ଦଳ, ତାଳ, କଂସାଳ, କର୍ଣ୍ଣାଳ, ଝାଞ୍ଜ ବାଜେ । ପ୍ରଭୁ "ମୋ ଉପରେ ବିଜେ ହେବେ ହବ ଧରଣୀ ଭଣି ଅନନ୍ତ ଧ୍ୱନି"। "କୋଉଠିବେ ଦେବଙ୍କୁ କହିଁ। ପ୍ରଭୁ ପଟେକେ। ନାହିଁଲେ ଶିହର ପ୍ରଭୁ ଦର୍ଶଣ କୁଞ୍ଜର।" ଜଗନ୍ନାଥଙ୍କୁ ପୁଣ୍ଡରୀ ହାତୀ, ବଳଦେବଙ୍କୁ ଐରାବତ ହାତୀ ମନେକରି ପଣ୍ଡାମାନେ ସେମାନଙ୍କୁ ଝୁଲାଇ ଝୁଲାଇ ପହଣ୍ଡି ବିଜେ କରାଇଲେ । ହାତୀ ହେବାରୁ ସେମାନେ ପ୍ରାସାଦ-ଦୀର୍ଘ ଛାଡ଼ି ମଣ୍ଡପସର ସ୍ନାନ ପାଇଁ ଇଚ୍ଛାକଲେ । ସ୍ନାନ ପରେ ହାତୀମାନେ ପଙ୍କରେ ଘାଣ୍ଟି ହୁଅନ୍ତି, ପଦ୍ମବନକୁ ଦଳନ୍ତି, ସ୍ନାନ ପରେ ପ୍ରଭୁ ଚନ୍ଦନ-ପଙ୍କ ଚର୍ଚ୍ଚିତ ହୋଇ ଲୋକମାନଙ୍କ ପାପ-ପଦ୍ମବନକୁ ନାଶ କରିବେ । ଲୋକେ ତାହା ନ ବୁଝି, ଆଜି ପ୍ରଭୁଙ୍କର ହାତୀ ବେଶ ହେଲା—ବୋଲି କେବଳ କହନ୍ତି । ଶ୍ରେଷ୍ଠ ନୌକାକୁ ଥୁଆ ରଖା କଲାଭଳି, ସୁଭଦ୍ରାଙ୍କୁ ଭବ-ସାଗର-ସୁବର୍ଣ୍ଣ-ତରଣୀ ଭାବି ସେବକମାନେ ନେଲେ । ସୁଦର୍ଶନ ଯେଉଁ ମହିମା ଅନନ୍ତ, ଆଧ୍ୟାତ୍ମିକ, ଆଧିଦୈବିକ, ଆଧିଭୌତିକ—ତାପ-ଅସ୍ତ୍ର-ଖଣ୍ଡ ଭଙ୍ଗିବାକୁ ଯେଉଁ ଚକ୍ର ଦଣ୍ଡରୂପ ଧାରଣ କରିଛନ୍ତି, ସେବକମାନେ ତାଙ୍କୁ କାନ୍ଧରେ ଥୋଇ ବିଜେ କରାଇଲେ । ଇନ୍ଦ୍ରପଦ ଦେବା ପାଇଁ ଯେଉଁ ପ୍ରଭୁ ସମର୍ଥ, ସେ ରାଜାଧିରାଜରୂପୀ ସେବକମାନଙ୍କ ଉପରେ ହାତଭରା ଦେଇ ବିଜେ କଲେ । ସେତେବେଳେ ଶ୍ୱେତାତପତ୍ର ଟେକା ଯାଇଥିଲା, ଚାମର ପଡ଼ୁଥିଲା । ଜଣାଯାଉଥିଲା ଯେପରି କ୍ଷୀରସମୁଦ୍ରରୁ ଲହରୀ ଉଠି ଖେଳି ଯାଉଛି । ଦର୍ଶକବର୍ଗ କଳାଛତା ଧରିଥିଲେ, ଜଣାଯାଉଥିଲା ଯେପରି କଳାହାଣ୍ଡିଆ ମେଘ ତୁଙ୍ଗ ଶିଖରୀ ମସ୍ତକ ଘୋଟିଲାଣି । ସେହି ମେଘରୁ ପତାକାବ୍ୟାଜରେ ଜଳଧାର ଝରି ସ୍ୱେଦଛଳରେ ଲୋକମାନଙ୍କ ଶରୀର ଓଦା କରୁଥିଲା । ଜଗନ୍ନାଥ ବିଜେ କଲାବେଳେ ଯାତ୍ରୀମାନେ ହଳଦିଆ ଲୁଗା ପିନ୍ଧିଥିଲେ, ତାହା ହଲିଲାବେଳେ ମେଘରେ ବିଜୁଳି ଖେଳିଲା ପରି ଜଣା ଯାଉଥିଲା । ପ୍ରଭୁଙ୍କ ପାଦୋଦକ ପାନ କରି ଭକ୍ତମାନେ ତୃପ୍ତ ହେବା ଦୃଶ୍ୟ ତୃଷାର୍ତ୍ତ ଚାତକ ମେଘଜଳ ପାନ କରି ତୃପ୍ତ ହେବା ତୁଲ୍ୟ ଜଣାଗଲେ । ଏହି ପ୍ରକାର ବର୍ଷାକାଳ ପ୍ରମାଣିତ ହେବାରୁ ମୟୂରମାନେ ପୁଚ୍ଛ ତ୍ୟାଗ କଲେ, (ପ୍ରଭୁ ବିଜେ ହେବାବେଳେ ମୟୂରପୁଚ୍ଛ ପିନ୍ଧାଯାଏ)

Digitized by srujanika@gmail.com

"ନିଶାଣ (ନାଗରା), ମଣ୍ଡନନାଦେ (ବେଙ୍ଗ ରଡ଼ି, ଗୁଳଗୁଳି) ବଜନ୍ତ ଉଚ୍ଛୁଳିଲ ।" ପ୍ରଭୁଙ୍କ ଧୀର ଚଳନରେ ଜାତ ହେବା ଶବ୍ଦ ମେଘଗର୍ଜ୍ଜନ ତୁଲ୍ୟ ଏବଂ ପ୍ରଭୁଙ୍କ ଉଦ୍ଦେଶ୍ୟରେ ଫିଙ୍ଗା ଯାଉଥିବା ପୁଷ୍ପାଞ୍ଜଳି ବଜ୍ରପଂକ୍ତି ତୁଲ୍ୟ ଶୂନ୍ୟମାର୍ଗରେ ହୁଡ଼ୁ ହୁଡ଼ୁ ଖସି ପଡ଼ୁଥିବା ପ୍ରାୟ ପ୍ରତୀତ ହେଲା । ଏହିପରି ସ୍ନାନମଣ୍ଡପସ୍ଥିତ ସିଂହାସନରେ ଯାଇ ଭଣ୍ଡାରୀ ସହିତ ପ୍ରଭୁ ବିଜେ କଲେ । ନାଗ, ନର, କିନ୍ନର, ଗନ୍ଧର୍ବ ସମସ୍ତେ ସୁବର୍ଣ୍ଣ କଳସରେ ଜଳ ଧରି ରହିଛନ୍ତି, ବ୍ରାହ୍ମଣମାନେ ଶ୍ରୀମୁଖମଣ୍ଡଳରେ ଜଳ ଢାଳିଲେ । ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରାଙ୍କ ଶରୀରରୁ ଜଳ ଖସିବାରୁ ଜଣାଗଲା, ଯେପରି ମେରୁ ପର୍ବତର ସ୍ଫଟିକ, ମର୍କତ ଓ ସୁବର୍ଣ୍ଣ ଶୃଙ୍ଗମାନଙ୍କରୁ ଯଥାକ୍ରମେ ଗଙ୍ଗା, ଯମୁନା ଓ ସରସ୍ୱତୀ ଧାରା ଖସି ଆସୁଛି । ଚନ୍ଦନବୋଳା ଅଙ୍ଗରୁ ଚନ୍ଦନ ଖସିପଡ଼ିଲେ ଜଣାଗଲା, "ସେ ଚନ୍ଦନ ଶୃଙ୍ଗରୁ ଜାତ ରଜତ ।" ତାହା ଦର୍ଶନ କରିବାରୁ ଦର୍ଶକମାନଙ୍କ ଚକ୍ଷୁରୁ ଦରିଦ୍ରତା ଦୂର ହେଲା, ମନରୁ ଦୁଃସହ ଦୁଃଖ ଦୂର ହେଲା, ସେମାନେ ଭାବିଲେ— ଚନ୍ଦନ ଲାଗି ହୋଇ ସେ କଳ୍ପତରୁ ହେଲେଣି, ବାଞ୍ଛିତ ବର ପ୍ରଦାନ କରିବେ ।

"ସବୁରୂପେ ଏ ଉପମା ଉତ୍ତମ ସମ୍ଭବେ ।
ବିରାଜିତ ଭୁଜ-ଶାଖା ଅଧର-ପଲ୍ଲବେ ॥
ଭକ୍ତି ମୁକ୍ତି ଫଳ ଅଛି ନ ଦେଖନ୍ତି କେହି ।
ସ୍ୱଭାବରେ ବ୍ରହ୍ମଦାରୁ ବାସ୍ତପଦେ ରହି ॥
ସୁରଭିର ସ୍ଥାନ ସେନାପଟା ବଳକଳ ।
ଯାହା ପଦେ ସଦା ଢଳଢଳ ଗଙ୍ଗାଜଳ ॥" ୫୪ ।

ତାତ୍ପର୍ଯ୍ୟ—

ଜଗନ୍ନାଥ ହୁଅନ୍ତି—ଦାରୁବ୍ରହ୍ମ, ବପସ୍ଥିତ ପଦରେ ବ୍ରହ୍ମଦାରୁ ଅର୍ଥାତ୍ କଳ୍ପତରୁ ଅଟନ୍ତି । ଏ ଉପମାଟି ସର୍ବସମ୍ଭବ । ଭୁଜଦ୍ୱୟ ଶାଖାସଦୃଶ, ଅଧର ପଲ୍ଲବିତ ପତ୍ର, ଭକ୍ତି ମୁକ୍ତି ସେଥିର ଫଳ ହେଲେ ମଧ୍ୟ ତାହା ଲୋକଲୋଚନର ଅଗୋଚର; କଳ୍ପତରୁରେ ମଧ୍ୟ ଫଳ ନ ଥାଏ, କିନ୍ତୁ କାମଧେନୁର ତାହା ଆଶ୍ରୟସ୍ଥଳ । କଳ୍ପତରୁ ଯେପରି ବଲ୍କଳାବୃତ, ପ୍ରଭୁ ଜଗନ୍ନାଥ ସେହିପରି କାଠପଟାବୃତ; ସ୍ୱର୍ଗଙ୍ଗା ଯେପରି କଳ୍ପତରୁ ତଳେ ପ୍ରବାହିତ, ଏଠାରେ ପ୍ରଭୁଙ୍କ ନଖକୋଣରେ ସେ ସେହିପରି ଢଳଢଳ ରହିଛନ୍ତି; ସୁତରାଂ ସ୍ୱୟଂ ଜଗନ୍ନାଥ କଳ୍ପତରୁ ଅଟନ୍ତି ।

"ସ୍ୱରୂପରୁ ଏ ଉପମାକାରକ ମୁଁ ଯେ ହେଲି ।
ପୁଲକିତ-ଶରୀରେ ହରିରେ ସ୍ତୁତି କଲି ॥
ମହିମା ଅନନ୍ତ ପ୍ରଭୁଙ୍କ ମହିମା ଅନନ୍ତ ।
ମନୋହାରୀ ସହୋଦର ହୋଇ ଯାଉ ଖ୍ୟାତ ॥
ଅରି ଦର-କର ବକ୍ଷେ ଅଭେଦର ତର ।
ଯୁଗେ ଯୁଗେ ଧର ନାନାବିଧ ଅବତାର ॥
ଜଗ୍ମିଗଣ-ଅଘ ଜଗ୍ମିଗଣ-ଅଘ-ହର ।
ସ୍ନାନ କରି ଦେଲ ଲଙ୍କା ଉଜ୍ଜ କଳେବର ॥
ଭବ-ଭରଣ ପୂଜିତ ହେ ଭବ-ଭରଣ
ଶ୍ରୁତି-କବଳକ ସଦାନନ୍ଦ ସଦାଶ୍ରିତ ।" ୫୧ । ଭୋ: ବୃ: ସୁ: ।

Digitized by srujanika@gmail.com

ତାତ୍ପର୍ଯ୍ୟ: —

କବି ଉପେନ୍ଦ୍ର କହନ୍ତି—ଏହି ଉପମାକାରଙ୍କ ମୁଁ ଯେ ହେଲି, ତାହା ସ୍ୱର୍ଗର କଥା । ପୁଲକିତ ଶରୀରରେ ମୁଁ ଯେପରି ପ୍ରଭୁଙ୍କୁ ସ୍ତୁତି କରୁଛି, ତାହା ଏହି:—ହେ ପ୍ରଭୋ ! ଆପଣଙ୍କ ମହିମା ଅନନ୍ତ, ମହୀ—ପୃଥିବୀ, ମା—ଲକ୍ଷ୍ମୀ ଆପଣଙ୍କ ମନୋହାରିଣୀ ଅଟନ୍ତି; ଅନନ୍ତ ଶେଷଦେବ, ଆପଣଙ୍କ ଅଗ୍ରଜ ଅଟନ୍ତି । ହେ ପ୍ରଭୋ ! ଆପଣ ଅରି (ଚକ୍ର) ଦର (ଶଙ୍ଖ) ଧର ଅର୍ଥାତ୍ ଶଙ୍ଖ ଚକ୍ର ହସ୍ତ ଅଟନ୍ତି , ଏବଂ ଆପଣ ଶରୀରୀ ହୋଇ ଯୁଗେ ଯୁଗେ ନାନା ଅବତାର ଧରନ୍ତି । ଆପଣ ବିଭୀଷଣଙ୍କୁ ତାଙ୍କ ଲଙ୍କାରେ ରାଜା କଲେ, ରାବଣ ଅଯାପୁରକୁ ମାରି ସାଯୁଜ୍ୟ ମୁକ୍ତି ଦେଲେ । ଆପଣ ହର ଓ ବ୍ରହ୍ମାଙ୍କ ପୂଜ୍ୟ ଓ ବିଶ୍ୱ ବ୍ରହ୍ମାଣ୍ଡର ଶାସକ ଅଟନ୍ତି । ଆପଣ ଅଗ୍ନି (ଶୁଚି) କୁ ଗ୍ରାସ କରି ପବିତ୍ର (ଶୁଚି) ହୋଇ ଅଛନ୍ତି ।

ରଚିବ "କୋଟିବ୍ରହ୍ମାଣ୍ଡ-ସୁନ୍ଦରୀ" ଚରିତ ।
ସୁଜାତ ସୁମନାହି ହୋଇବ ଏହି ଗୀତ ॥
ସୁରଭିରେ ମୋହିତ-ମାନସ ହେବେ ଭବ୍ୟ ।
ଗୁଣବନ୍ତେ ହୃଦେ ମାଳା କରିଣ ଧରିବେ ॥
ରସିକ ଭ୍ରମରେ ହେବେ ରସ ଘେନି ବଶ ।
ନିର୍ଗୁଣେ ଘେନିଲେ ନ ଘେନିଲେ ଅଛି କିସ । ୬୨ ।

ତାତ୍ପର୍ଯ୍ୟ:—

ହେ ପ୍ରଭୁ, ମୁଁ "କୋଟିବ୍ରହ୍ମାଣ୍ଡ-ସୁନ୍ଦରୀ" ଚରିତ ରଚନା କରିବି । ଏହା ଉତ୍ତମ ଜାତିଫୁଲ ତୁଲ୍ୟ ହେଉ; ସାଧୁ ଲୋକ ତାହାର ସୁଗନ୍ଧରେ ମୁଗଧ ହୁଅନ୍ତୁ; ସୁଧୀବର୍ଗ ତାହା ମାଳା ତୁଲ୍ୟ ଧାରଣ କରନ୍ତୁ । ସାହିତ୍ୟ-ରସିକବର୍ଗ ଭ୍ରମର ପରି ଏହି ଫୁଲର ରସ ଗ୍ରହଣ କଲେ ଯଥେଷ୍ଟ, ମୂର୍ଖମାନେ ଭଲ ପାନ୍ତୁ ବା ନ ପାନ୍ତୁ, ସେଥିରେ କିଛି ଯାଏ ଆସେ ନାହିଁ ।

"କବି ଉପଇନ୍ଦ୍ର ତବ କୃପାରେ ହୋଇଛି ।
ଏତେ ମନୋରଥ ସାର୍ଥେ କି ଫଳିସ୍ତ ଅଛି ॥"

ଦୃଷ୍ଟାନ୍ତ — ୨

ଅବନା ରସତରଙ୍ଗ ଛାଂ, ପଂ—୮

"ବରଧନ ଅନନ୍ତ ଯଶ ଏ ଜଗତର ।
ବରଧନ ଅନନ୍ତ ସହଜ ଭକତର । ୧ ।"

ତାତ୍ପର୍ଯ୍ୟ:—

ହେ ରାମଚନ୍ଦ୍ର ! ତୁମ୍ଭେ ଏ ଜଗତରେ ଅସୀମ ଯଶ ବୃଦ୍ଧି କରିଅଛ । ଭକ୍ତମାନଙ୍କର ତୁମ୍ଭେ ଶ୍ରେଷ୍ଠ ସମ୍ପଦ ଅଟ ।

"ରକ୍ଷଚକ୍ରଦରକର ସକଳ ସମସ୍ତ ।
ରକ୍ଷ ଚକ୍ର ଦର କର ନବରସମସ୍ତ । ୩ ।"

ହେ ଶଙ୍ଖଚକ୍ରଧାରୀ ! ତୁମ୍ଭେ ନବରସମସ୍ତ; ତୁମ୍ଭେ ସର୍ବଦା ରାକ୍ଷସମାନଙ୍କର ଉପଦ୍ରବ ଅଟ, ତୁମ୍ଭେ ଆମ୍ଭମାନଙ୍କୁ ଭବଭୟରୁ ରକ୍ଷାକର ।

Digitized by srujanika@gmail.com

"ଧର୍ମବନ୍ତ ବରମଖ ରକ୍ଷଣ ତତ୍ପର ।
ଇନ୍ଦ୍ରପଦ ବହୁ ତପସ୍ୱର ସଙ୍ଗଚର । ୩ ।"

ତୁମ୍ଭେ ଧର୍ମଶୀଳ ଅଟ । ଯଜ୍ଞ ରକ୍ଷା କରିବା ଫଳରେ ତପସ୍ୱୀଙ୍କ ସଙ୍ଗେ ଯାଇ ତୁମ୍ଭେ ପରମପଦ ଲାଭ କରିଅଛ ।

"ବଡ଼ ଦମ୍ଭ ପଣହୃତ କର ରକ୍ଷଗଣ ।
ଅଶରଣ ଶରଣ ଅମର ପ୍ରବରଣ । ୪ ।"

ତୁମ୍ଭେ ଅତି ଧୈର୍ଯ୍ୟଶୀଳ ଅଟ; ଦୁଷ୍ଟଦଳନ ଓ ସନ୍ଥପାଳନ କରି ଦେବଗଣଙ୍କ ପୂଜନୀୟ ହୋଇଅଛ ।

"ସତ୍ୟସନ୍ଧ ମଣ୍ଡନ ଜନକ ବଚସ୍କର ।
ଜଟ ବଲକଲ ପଟ ବହୁ ବନଚର । ୫ ।"

ହେ ସତ୍ୟସନ୍ଧ ! ଆପଣ ପିତାଙ୍କ କଥା ମାନି ସତ୍ୟ ରକ୍ଷା କଲ; ଜଟା ବଲ୍‌କଲ ଧାରଣ କରି ବନବାସ କଲ ।

"ଅକପଟ ବଡ଼ପଣ ସମ୍ପଦ ଅବଶ ।
ସମର୍ପଣ କଟକ ଭରତ ସମ ଯଶ । ୬ ।"

ଆପଣ ରାଜ୍ୟ, ରାଜ ଐଶ୍ୱର୍ଯ୍ୟ, ସମ୍ପତ୍ତିର ବଶ ନ ହୋଇ ସ୍ୱଚ୍ଛ ସରଳ ହୃଦୟରେ ସେ ସମସ୍ତ ଭରତଙ୍କୁ ଅର୍ପଣ କଲ ।

"ମହୃତ୍ତମ ସମପଣ କଲମଷ ହର ।
ଦଣ୍ଡକ ଗତ ଦଣ୍ଡକ ପଥ ଅଗ୍ରସର । ୭ ।"

ଆପଣ ସମଦର୍ଶୀ ଓ ଦୁଷ୍ଟ ଦମନକାରୀ ଅଟ । ଦଣ୍ଡକାରଣ୍ୟ ମାର୍ଗରେ ଆପଣ ବିରାଧକୁ ବଧ କଲ ।

"ଅଭୟପଞ୍ଜର ତବ ଉଭୟ ଅନ୍ତର ।
ରସ ବର୍ଣ୍ଣନର, ମମ ମନ ତତପର । ୮ ।"

ହେ ଅଭୟପଞ୍ଜର । ଆପଣଙ୍କ ଓ ଜାନକୀଙ୍କ ଦୁଃଖଚରିତ ଅଙ୍କନ କରିବାକୁ ମନ ବଳୁ ନାହିଁ ।

ଦୃଷ୍ଟାନ୍ତ—୩

"ବନ୍ଦଇ ସ୍ୱଜନବାନ୍ଧବ ହରି ଯେ ତମଚର ଖଣ୍ଡନକାରୀ
ସଦା କମଳାନନ୍ଦବିହାରୀ ସ୍ୱଭାବେ ଛନ ଯେ ।
ବିଭୁ ଅନନ୍ତ ଅଙ୍କବିହାରୀ କର ପ୍ରତାପ ଯାର ସଞ୍ଚରି
ନିଶାଚରଙ୍କ ଉଲ୍ଲାସ ହରି ପୂଜେ ସୁମନ ଯେ ।
ବଇନତେୟ ଯାହା ଅଗ୍ରତେ ସ୍ଥିତ ଯେ ।
ବଇକୁଣ୍ଠ-ପଙ୍କଜ-ଲୋକ ତୋଷିତ ଯେ ।

Digitized by srujanika@gmail.com

ଵିକାଶ ଅଖଣ୍ଡିତ ମଣ୍ଡଳେ ସିଂହସ୍ଵରେ କୀର୍ତ୍ତିତ କାଳେ
ଭବେ ତରଣୀ ହୋଇ ମଞ୍ଜୁଳେ ଗତ ଉଦିତ ଯେ । ୧ ।
ବହିତ ଯେହୁ ଲୋହିତ ମୂର୍ତ୍ତି ଶ୍ରୀ ଚରଣ ଜନାରବ ଅତ
ହଂସ ହୋଇଣ ଯାହା ପ୍ରଶସ୍ତି ଅଛୁ ପ୍ରବର୍ତ୍ତି ଯେ ।
ବିରାଜ ରୂପ ଯାହାର ପୁଣି ଦ୍ଵିଜରଙ୍କ ଯା ଦର୍ଶନ ଗୁଣି
ଆତ୍ମରୂପର ସଂସାରେ ଭଣି ଯା ଶୁଭ୍ର କାନ୍ତି ଯେ ।
ବୃଧଜନ-କ-ଣିର ଭୂଷଣ ସେହୁ ଯେ ।
ବିନସ୍ଵରୁ ଯେ ଆନ ବାଣୀ ନ କହୁ ଯେ ।
ବଳ ଯାହାକୁ ସର୍ବଦା ନାହିଁ ଦ୍ଵିପ ପ୍ରସନ୍ନ କରତା ସେହୁ
ପୂନତ ଧର୍ମସ୍ଵରୂପଗ୍ରାହ୍ୟ କ ସ୍ତୁତ ତହିଁ ଯେ ।" ପ୨, ସ୍ତଂ, ବୈ: ବି: ।

କବିସମାଟ୍ ଉପେନ୍ଦ୍ର ଭଞ୍ଜ ବିଷ୍ଣୁ ଓ ସୂର୍ଯ୍ୟ ଉଭୟଙ୍କର ମଙ୍ଗଳାଚରଣ କରି ମହାକାବ୍ୟ ବୈଦେହୀଶବିଳାସ ରଚନା ଆରମ୍ଭ କରିଅଛନ୍ତି । ଉପରୋକ୍ତ ଉଭୟ ପଦରେ ବିଷ୍ଣୁ ଓ ସୂର୍ଯ୍ୟ ପ୍ରତି ଭକ୍ତିରସାତ୍ମକ ଦ୍ଵିବିଧ ଅର୍ଥ ସନ୍ନିବେଶିତ ଅଛି ।

ତାତ୍ପର୍ଯ୍ୟ:—

ବିଷ୍ଣୁଙ୍କ ପ୍ରତି:—ହେ ପ୍ରଭୁ ! ଆପଣ ସମସ୍ତଙ୍କ ଅଜ୍ଞାନତା ନାଶ କର, ଆପଣ ସ୍ଵୟଂ ବୈକୁଣ୍ଠ, ଶ୍ରେଷ୍ଠ ରୂପବାନ, ବ୍ରହ୍ମାଣ୍ଡକର୍ତ୍ତା, ସର୍ବବ୍ୟାପୀ, ସର୍ବଶ୍ରେଷ୍ଠ, ପରମ ହଂସ, ଲକ୍ଷ୍ମୀଙ୍କ ହର୍ଷବର୍ଦ୍ଧକ ଓ ଭକ୍ତଙ୍କ ଆନନ୍ଦଦାୟକ ଅଟ । ଆପଣ ପ୍ରଳୟରେ ଅନନ୍ତଶୟନ କରିଥିଲେ, ରାକ୍ଷସଙ୍କ ଗର୍ବ ଗଞ୍ଜନ କରିଥିଲେ, କୁମ୍ଭୀର ଗ୍ରାସରୁ ଗଜକୁ ରକ୍ଷା କରିଥିଲେ, ନୃସିଂହ ଓ ରୋହିତ ମତ୍ସ୍ୟ ଅବତାର ହୋଇଥିଲେ । ଆପଣ ଦେବତାଙ୍କ ପୂଜ୍ୟ, ଗରୁଡ଼ଙ୍କ ସେବ୍ୟ ଓ ଧାର୍ମିକଙ୍କ ସହାୟ ଅଟନ୍ତି । ବର୍ତ୍ତମାନ ଆପଣ ଶ୍ରୀକ୍ଷେତ୍ରରେ ଜଗନ୍ନାଥ ନାମରେ ବିରାଜିତ ଅଛନ୍ତି । ଭବଜଳଧିର ନୌକାସ୍ଵରୂପ ଯେ ଆପଣ, ଆପଣଙ୍କୁ ମୁଁ ବନ୍ଦନା କରୁଅଛି ।

ସୂର୍ଯ୍ୟଙ୍କ ପକ୍ଷରେ :—ହେ ପ୍ରଭୋ ! ଆପଣ ବିଶ୍ଵବ୍ରହ୍ମାଣ୍ଡର ତାମସ ନାଶକାରୀ ଅଟନ୍ତି; ଆପଣ ଧର୍ମନାମରେ ଖ୍ୟାତ, ପଦ୍ମର ଆନନ୍ଦଦାୟକ; ଆପଣ ସଂସାରର ଶ୍ରେଷ୍ଠ ବ୍ରହ୍ମ, ଜ୍ୟୋତିଷ୍କମାନଙ୍କ ମଧ୍ୟରେ ଶ୍ରେଷ୍ଠ; ଆପଣ ପ୍ରକାଶ ପାଇଲେ ପେଚକର ଦୁଃଖ ଜାତ ହୁଏ । ଆପଣ ପଣ୍ଡିତମାନଙ୍କ ପୂଜ୍ୟ, ଅରୁଣଙ୍କ ସେବ୍ୟ । ଯାହାଙ୍କ କିରଣରେ ଧରିବକ୍ଷ ରଞ୍ଜିତ ହୁଏ, ସେହି ସୂର୍ଯ୍ୟଙ୍କୁ ମୁଁ ନମସ୍କାର କରୁଅଛି ।

ଦୃଷ୍ଟାନ୍ତ—୪

"ଜୟ ଜୟ ଜୟ ରାମ ଜନକସୁଖଦ ।
ରାମ ହରଷ ଦାନରେ ସଦା ବିଶାରଦ ହେ । ୧ ।
ଚନ୍ଦ୍ରହାସ ଶୋଭାକର ସମସ୍ତ କାଳର ।
ଲକ୍ଷଣବନ୍ତ ଅଲକ୍ଷ୍ୟ ମୁଖ ମନୋହର ଯେ । ୨ ।
ଜବ ଭାରତୀ କ ଅଗୋଚର ଛବି ଯାର ।
ସୁମନାବୃନ୍ଦବନ୍ଦିତ ଏଣୁ ନିରନ୍ତର ଯେ । ୩ ।

Digitized by srujanika@gmail.com

ମହାଶସ୍ତ୍ର ବଳଶସ୍ତ୍ର ପରେ ନାପକର ।
ଛନ୍ଦଭଙ୍ଗ କୃତରୁ କାତର ଅଶସ୍ତୁର । ୪ ।
ସହସ୍ରକର ଉନ୍ନତ ହର ତେଜବାନ ।
ହରି ପକ୍ଷ ସଦାନନ୍ଦ ତୋଷ ବର୍ଦ୍ଧନ ହେ । ୫ । ଗ୍ର ୧, ଲ: ବ: ।

ଉପରୋକ୍ତ ପ୍ରତ୍ୟେକ ପଦରେ ରାମ, ପରଶୁରାମ ଓ ବଳରାମ ପ୍ରତି ଦ୍ୱିବିଧ ଅର୍ଥସମ୍ବଳିତ ସ୍ତୁତି ସନ୍ନିବେଶିତ ।

ତାତ୍ପର୍ଯ୍ୟ:—

ଶ୍ରୀରାମଚନ୍ଦ୍ରଙ୍କ ପକ୍ଷେ—ଆପଣ ଦଶରଥଙ୍କ ନନ୍ଦନ; ପିତୃସତ୍ୟ ପାଳନ କରି ନଜେ ବନବାସ କ୍ଲେଶ ସହ୍ୟ କରି, ଭରତଙ୍କୁ ରାଜ୍ୟ ଓ ରାଜସିଂହାସନ ଅର୍ପଣ କରି ନନକଙ୍କ ସୁଖଦ ହୋଇଛନ୍ତି; ଶିବଧନୁ ଭଞ୍ଜନ ଓ ଜାନକୀଙ୍କ ପାଣିଗ୍ରହଣ ଦ୍ୱାରା ଆପଣ ଜନକ ମହର୍ଷିଙ୍କ ସୁଖଦ ଅଟନ୍ତି । ଶିବଙ୍କ ରାମତାରକ ମନ୍ତ୍ର ଜପଦ୍ୱାରା ଆପଣ (ଶ୍ରୀରାମ) ମହାଦେବଙ୍କ ଆନନ୍ଦ ବର୍ଦ୍ଧନ କରିଅଛନ୍ତି । ଆପଣଙ୍କ ହସ୍ତ ସତତ ଖଡ୍ଗଶୋଭିତ; ଲକ୍ଷଣବନ୍ତ ଲକ୍ଷ୍ମଣ ଆପଣଙ୍କ ଅନୁଗତ ଅଟନ୍ତି । ଆପଣ (ସୁମନାବୃନ୍ଦ ବନ୍ଦିତ) ଦେବଗଣପୂଜ୍ୟ; ମହାଶସ୍ତ୍ରବଳ (ଅତିଶସ୍ତ୍ର ବଳବାନ୍) ରାବଣର ଆପଣ ଗାଦଚ୍ୟୁତ କରି ଧ୍ୱଂସବିଧାନ କରିଅଛନ୍ତି । ଆପଣ ଅତ୍ୟନ୍ତ ତେଜସ୍ୱୀ ଏବଂ ହରିପକ୍ଷ (ମର୍କଟ) ଠାରୁ ଆରମ୍ଭ କରି ଯୋଗିଜନ ପର୍ଯ୍ୟନ୍ତ ସମସ୍ତଙ୍କର ଆନନ୍ଦଦାୟକ ଅଟନ୍ତି । ଏପରି ମହିମାମୟ ଯେ ଆପଣ, ଆପଣଙ୍କୁ ମୁଁ ନମସ୍କାର କରୁଅଛି ।

ପରଶୁରାମ ପକ୍ଷେ—ଆପଣ ପିତା ଜମଦଗ୍ନିଙ୍କ ଅନୁରୋଧ ରକ୍ଷା କରି ତାଙ୍କର ସୁଖଦାୟକ ହୋଇଛନ୍ତି । ଆପଣ ଶ୍ରୀରାମ (କୃଷ୍ଣ) କ୍ଷତ୍ରିୟମାନଙ୍କୁ ଦମନ କରିଛନ୍ତି । ଆପଣ ନୀଳମେଘତୁଲ୍ୟ ମନୋହର ଏବଂ ଶଙ୍ଖ, ଚକ୍ର, ଗଦା, ଅର୍ଦ୍ଧଚନ୍ଦ୍ର ପ୍ରଭୃତି ବହିଃ ଲକ୍ଷଣଯୁକ୍ତ, ସୁମନାବୃନ୍ଦ (ମନସ୍ୱୀବୃନ୍ଦ) ଦ୍ୱାରା ପୂଜ୍ୟ, ହେ ମହାଶସ୍ତ୍ରବଳ (ଅତ୍ୟଧିକ ବଳଶାଳୀ), ସହସ୍ରକର (ସହସ୍ରାର୍ଜୁନ) ର ଗର୍ବଖର୍ବକାରୀ ଏବଂ ଆପଣ ଶିଷ୍ୟରୂପେ ସଦାନନ୍ଦ (ମହାଦେବ)ଙ୍କ ଆନନ୍ଦବର୍ଦ୍ଧନ କରିଅଛନ୍ତି ।

ବଳରାମ ପକ୍ଷେ — ଆପଣ (ଜନକ) ଜନପଦସ୍ଥ, (ଶ୍ରୀରାମ) ଭୀମସେନଙ୍କ (ଦୁର୍ଯ୍ୟୋଧନଦ୍ୱାରା) ଦୁଃଖଦାୟକ, ଆପଣ ଚନ୍ଦ୍ରଙ୍କ ଅପେକ୍ଷା ଅଧିକ ସୁନ୍ଦର, କବି (ଶୁକ୍ର), ଭାରତୀ (ସରସ୍ୱତୀ) ଦ୍ୱାରା ଅବର୍ଣ୍ଣନୀୟ; ଗୋପାଙ୍ଗନାମାନଙ୍କ ଆରାଧ୍ୟ; ଆପଣ ଇଚ୍ଛାଭିଳାଷୀ; ଅରିପୁର (ଭୂମଣ୍ଡଳ ବା ହସ୍ତିନାପୁର) ମୂଷଳରେ ଟାଣିବାରେ ସମର୍ଥ; ଆପଣ ସହସ୍ର କ (ମସ୍ତକ) ଅଥବା ଶେଷ ମୂର୍ତ୍ତି ଅଟନ୍ତି; ଆପଣ ସର୍ବଦା ହରିପକ୍ଷ (ଶ୍ରୀକୃଷ୍ଣଙ୍କ ପକ୍ଷ) ଅଟନ୍ତି ଏବଂ ସଦାନନ୍ଦ ଯେ ବ୍ରଜରାଜ ତାଙ୍କର ଆନନ୍ଦବର୍ଦ୍ଧକ ଅଟନ୍ତି ।

ଦୃଷ୍ଟାନ୍ତ—୫

"ଯେ ବନ୍ଧୁ ସୁରଭିହର ଧୃତରାମପଦ ।
ଉଦିତ ଯେ ଜଗତେ ଜନକମୋଦପ୍ରଦ ।
ହରିତାମ୍ବର ସର୍ବଦା ଅଙ୍କସ୍ଥିତ ଯେହ ।
ରାଘବ ଶିବ ବଧିରେ ଉପଇନ୍ଦ୍ର ଧାଇଁ ଯେ ॥" ପ ୫୭, ଗ୍ର ୩୪
କୋ: ବ୍ର: ସୁ: ।

Digitized by srujanika@gmail.com

**ଅର୍ଥ:—**"ଯେ ବିଭୁ ସୁରଭିହର (ତୁଳସୀକୁ ହରଣ କରିଥିଲେ) ଧୃତରାମପଦ (ରାମ ପଦକୁ ଧରିଛନ୍ତି), ଜଗତରେ ଉଦିତ (ଜନ୍ମିଥିଲେ) ଜନକ (ପିତା କଶ୍ୟପ ଋଷିଙ୍କର) ମୋଦପ୍ରଦ (ଆନନ୍ଦଦାତା), ହରିତାମ୍ବର (ପୀତବାସ), ସର୍ବଦା ଅଙ୍କସ୍ଥାନ (ନିଷ୍କଳଙ୍କ) ସେହି ରାଘବଙ୍କୁ ଯେ ବିଭୁ (ଜନ୍ମରହିତ) ସୁରଭିହର (ସହାରକର୍ତ୍ତା) ରାମପଦଧୃତ (ରାମପଦଧାରୀ) ଜଗତରେ ଉଦିତ (ବିଖ୍ୟାତ) ଜନକ ମୋଦପ୍ରଦ (ବରଦାନ ଦ୍ୱାରା ଲୋକଙ୍କର ଆନନ୍ଦଦାତା) ହରିତାମ୍ବର (ଦିଗମ୍ବର) ଏବଂ ସର୍ବଦା ଅଙ୍କସ୍ଥାନ (ଦୁଃଖରହିତ) ସେହି ଶିବଙ୍କୁ—ଯେ ବିଭୁ ସୁରଭିହର (ବସ୍ତ୍ରାହରଣକାରୀ) ରାମପଦଧୃତ (ରମଣୀସ୍ତ କୃଷ୍ଣପଦଧାରୀ), ଜଗତରେ ଉଦିତ ଜନକ (ପିତାରୂପେ) ମୋଦପ୍ରଦ (ଆନନ୍ଦଦାତା), ହରିତାମ୍ବର (ପୀତବସ୍ତ୍ରଧାରୀ) ଏବଂ ଅଙ୍କସ୍ଥାନ (ଦୂଷଣ ରହିତ) ସେହି ବିଧିରେ (ଶ୍ରୀରାମ, ଶିବ ଓ କୃଷ୍ଣଙ୍କୁ) ଉପେନ୍ଦ୍ର ଭଞ୍ଜ ଧ୍ୟାନ କରଇ ।"

ଦୃଷ୍ଟାନ୍ତ —୭

ସୁଗ୍ରୀବର ଚକ୍ରବନ୍ଧରେ ସ୍ତୁତ:—

"ବିଭୁ ଖରପର ମେଳ ସାଧବ ।
ବିଡ-ଶାଳ ମେଘ ତନୁ ଖ-ରବ ।
ବୀରଣ୍ଣ-ନୁତ କ ସ୍ୱ ଭୁପ୍ରଭବ ।
ବୀଶପ୍ରଭୁ ସ୍ୱ ତରେ କ ବସ୍ତବ । ୩୮, ଛ ୨୮ ବୈ: ବ: ।

ଶବ୍ଦ ଅର୍ଥ:—ଖ-ରବ ସୂର୍ଯ୍ୟଙ୍କ ପରି ତେଜସ୍ୱର । ବୀରଣ୍ଣ—ବୀରଜ୍ଞ । ନୁତ—ପୂଜିତ । କ—ନାରାୟଣ । ବୀଶପ୍ରଭୁ—ଗରୁଡ଼ର ପ୍ରଭୁ । କ—କୃଷ୍ଣା । ବସ୍ତବ—ଧ୍ୟାନ କରି ।

**ଅର୍ଥ**—"ହେ ରାମଚନ୍ଦ୍ର ! ଆପଣ ଜଗତର ନାଥ, ଆପଣ ଖର ରାକ୍ଷସର ବିନାଶକ ଅଟନ୍ତି, ସତୀ ସୀତାଙ୍କ ପାଣି ଗ୍ରହଣ କରିଅଛନ୍ତି, ଆପଣ ସପ୍ତଶାଳଭେଦୀ, ଶ୍ୟାମଳ ବର୍ଣ୍ଣ ଓ ସୂର୍ଯ୍ୟଙ୍କ ପରି ତେଜସ୍ୱର ଅଟନ୍ତି । ଆପଣ ବୀରବୃନ୍ଦରେ ବନ୍ଦନୀୟ, ନରରୂପରେ ପୃଥିବୀରେ ଅବତୀର୍ଣ୍ଣ ହୋଇଅଛନ୍ତି, କୃଷ୍ଣା ସ୍ୱଇଚ୍ଛାରେ ଭକ୍ତି ସହିତ ଆପଣଙ୍କୁ ଧ୍ୟାନ କରୁଅଛନ୍ତି ।"

"ବସ୍ତ୍ରବକରେ ଖେଦଭେଦ ପଵ ।
ବପଦ ଭେଦନ ତାର ପଦବୀ । ୩୯ ।
ବିଦପର ତା ସମଦର୍ଭ ହିବ ।
ବାହିତ ଦଶରୂପ ରଖ ଭୂବପଦବୀ ।" ୪୦ । ଛ ୨୮, ବୈ: ବ: ।

ଶବ୍ଦ ଅର୍ଥ:—ବସ୍ତ୍ରବକରେ—ଭକ୍ତ । ପଵ—ବଜ । ବିଦପର—ଜ୍ଞାନଶ୍ରେଷ୍ଠ । ହିବ—ଘୃତ ।

ତାତ୍ପର୍ଯ୍ୟ—

ଭକ୍ତଙ୍କ ଦୁଃଖ ଦୂର କରିବା ପାଇଁ ଆପଣ ବଜ୍ରତୁଲ୍ୟ । ବପଦଭଞ୍ଜନ ପଦ ଆପଣଙ୍କଠାରେ ସାର୍ଥକ ହୋଇଅଛି । ଆପଣ ପରଦୁଃଖଜ୍ଞାତା ଥିବା ଯୋଗୁଁ ଦୃତାହୁତ ଆପଣଙ୍କୁ ଦଆଯାଉଛି । ମତ୍ସ୍ୟକଚ୍ଛପାଦି ଦଶ ଅବତାର ଧାରଣପୂର୍ବକ ଆପଣ ପ୍ରଳୟୋନ୍ମୁଖ ସଂସାରକୁ ରକ୍ଷା କରୁଅଛନ୍ତି ।



Digitized by srujanika@gmail.com

ଏତାଦୃଶ ଦୃଷ୍ଟାନ୍ତ କବିଙ୍କ ଗ୍ରନ୍ଥାଦିରେ ଅପର୍ଯ୍ୟାପ୍ତ ଥିଲେ ମଧ୍ୟ ଅଧିକ ଦୃଷ୍ଟାନ୍ତ ଦେଇ ପ୍ରବନ୍ଧର କଲେବର ସ୍ଫୀତକାନ୍ତ କରିବା ବର୍ତ୍ତମାନର ପରିସ୍ଥିତିର ଦୃଷ୍ଟିରେ ସମୀଚୀନ ବିବେଚିତ ହୁଏ ନାହିଁ । କବିତାର ଦୁର୍ଲଭପରିପାଟୀ ସହିତ ସ୍ତବବାଞ୍ଜକ ମଙ୍ଗଳାଚରଣ କବି ନିଜର ମହାକାବ୍ୟମାନଙ୍କରେ ଯେ କେବଳ ଲିପିବଦ୍ଧ କରିଛନ୍ତି, ତାହା ନୁହେଁ; ସେ ନିଜର ଶ୍ରେଷ୍ଠ ଶ୍ରେଷ୍ଠ ସମସ୍ତ କାବ୍ୟ କବିତାରେ ତାହା ସନ୍ନିବେଶିତ ରଖି ଆପଣାର ଗାଢ଼ ଦେବଭକ୍ତିର ଶ୍ରେଷ୍ଠ ପରିଚୟ ପ୍ରଦାନ କରିଅଛନ୍ତି । ଯଥା:—

ହରିହର ସ୍ତୁତି

"ଜୟମକରକୁଣ୍ଡଳୀ କୁଣ୍ଡଳକୁଣ୍ଡଳୀ<br>
ଘନସାରଶ୍ୟାମ ଘନସାରକାନ୍ତିଝଳ ।<br>
ଜୟ ତ୍ରିପୁରମୋହନ ତ୍ରିପୁର ଦହନ ।<br>
ଖଗପୁଙ୍ଗବବାହନ ପୁଙ୍ଗବବାହନ ।<br>
ଜୟ ସ୍ତ୍ରୀମୀକରିକୃତ ବାସ କୃତ୍ତିବାସ<br>
ପଞ୍ଚାସ୍ୟଜିତବିକ୍ରମ ଯେ ପୁଣି ପଞ୍ଚାସ୍ୟ ।<br>
ଜୟ କମଳଦଳଲୋଚନ ତ୍ରିଲୋଚନ ।<br>
ମାର ଯାର କୁମାର କୁମାର ଯା ନନ୍ଦନ ।<br>
ଜୟ ପାଣ୍ଡବପକ୍ଷକ ତାଣ୍ଡବପଣ୍ଡିତ ।<br>
ଚନ୍ଦ୍ରମୁକୁଟଧର ଚନ୍ଦ୍ରମୁକୁଟ ସେ ତ ।<br>
ଜୟ ଭବଭ୍ରମଦୂରକାରୀ ଶ୍ରୀମ ଶ୍ରୀମ ।<br>
ନୀଳକଣ୍ଠପୁଚ୍ଛଚୂଡ଼ ନୀଳକଣ୍ଠ ନାମ ।" ଇତ୍ୟାଦି—ଶ୍ରୀ: ର: ଲୋ: ।

ପ୍ରତ୍ୟେକ ଗ୍ରନ୍ଥର ପ୍ରାୟ ପ୍ରତ୍ୟେକ ଛାନ୍ଦ ଭଣିତାରେ ସେ ପରମେଶ୍ୱରଙ୍କୁ ସ୍ମରଣ କରିଥିବା ଦେଖାଯାଏ । ଯଥା:—

ରାମ, ଚନ୍ଦ୍ର, ଶିବ ସ୍ତୁତି—

"ଅନନ୍ତ ଭୂଷଣ ବୃଷ ଧନୁଯୁତ ସୁହୃଦ ଭବତାପ ନାଶୀ!<br>
ଶ୍ରୀନଳୟ ଦ୍ୱିଜରାଜ ବନ୍ଦନୀୟ ଜନକ ସୁଖକୁ ପ୍ରକାଶୀ ।<br>
ସୁମରି । ମନେ ସେ ରାମ ଚନ୍ଦ୍ର, ଶିବ ।<br>
କହେ ଉପେନ୍ଦ୍ର ଭଞ୍ଜ ବୀରବର ଯୁବାଜନ କର୍ଣ୍ଣୋତ୍ସବ ।" ୩୨, ଗ୍ରୀ: ଲ: ବ: ।

କବିଙ୍କ ମଙ୍ଗଳାଚରଣ ଅଥବା ଭକ୍ତିରସାତ୍ମକ ପଦ୍ୟାଂଶରେ ଅପୂର୍ବ ବିଶେଷତ୍ୱ ଦେଖାଯାଏ । ଶ୍ରୀରାମ କବିଙ୍କ ଇଷ୍ଟ ଦେବତା ସ୍ୱରୂପ ଗ୍ରହଣ କରାଯାଉଥିଲେ ମଧ୍ୟ ସେ ଗ୍ରନ୍ଥାଦିରେ ଜଗନ୍ନାଥ, ଶ୍ରୀକୃଷ୍ଣ, ଶ୍ରୀରାମ, ପରଶୁରାମ, ବଳରାମ, ଶିବ, ବ୍ରହ୍ମା, ବିଷ୍ଣୁ, ସୂର୍ଯ୍ୟ, ଚନ୍ଦ୍ର ପ୍ରଭୃତିଙ୍କୁ ଭକ୍ତିପ୍ରବଣ ହୃଦୟରେ ସ୍ତୁତି କରିଛନ୍ତି । ପରମେଶ୍ୱର ଏକ ଓ ନିରାକାର ହେଲେ ମଧ୍ୟ ବିଶ୍ୱବ୍ରହ୍ମାଣ୍ଡର ସୁଶୃଙ୍ଖଳ ଶାସନ ପାଇଁ ସେ ଅନେକ ନାମରେ ଓ ଆକାରରେ ଭକ୍ତଙ୍କ ହୃଦୟମନ୍ଦିରରେ ସ୍ଥାନ ପାଉଥିବା କବିଙ୍କର ବିଶ୍ୱାସ ଥିବାରୁ ସମସ୍ତ ଦେବଦେବୀଙ୍କଠାରେ ଈଶ୍ୱରସତ୍ତା ଅନୁଭବ କରି, ସର୍ବସାଧାରଣଙ୍କ ସମ୍ମୁଖରେ ସେ ସେହି ମହତ୍ ନିଷ୍କଳଙ୍କ ଆଦର୍ଶ ଉପସ୍ଥାପନ କରିଅଛନ୍ତି । ଶ୍ରୀମଦ୍‌ଭଗବଦ୍‌ଗୀତା ଦଶମ ଅଧ୍ୟାୟରେ ଭଗବାନ ତାହାହିଁ କହିଛନ୍ତି ।

Digitized by srujanika@gmail.com

"ଆଦିତ୍ୟାନାମହଂ ବିଷ୍ଣୁର୍ଜ୍ୟୋତିଷାଂ ରବିରଂଶୁମାନ୍ ।
ମରୀଚିର୍ମରୁତାମସ୍ମି, ନକ୍ଷତ୍ରାଣାମହଂ ଶଶୀ ।"
"ରୁଦ୍ରାଣାଂ ଶଙ୍କରଶ୍ଚାସ୍ମି ...... . ...ଇତ୍ୟାଦି, ଇତ୍ୟାଦି

[God moves in a mystericus way
His wonders to perform :
Judge not the Lord by feeble sense
But trust him for His grace
Behind a frowning providence
He hides a smiling face."
—Cowper.]

---

# ବର୍ଣ୍ଣନା ଓ ରଚନା ବୈଚିତ୍ର୍ୟ

## ନଗର ନଗରୀ ବର୍ଣ୍ଣନା

**ପାଟଳିପୁତ୍ର ବା ପୁଷ୍ପପୁର ନଗର ବର୍ଣ୍ଣନା :—**
**କବିବୈଚିତ୍ର୍ୟର ଦୃଷ୍ଟାନ୍ତ ହିସାବରେ କେତୋଟି ପଂକ୍ତି ମାତ୍ର ଏଥିରେ ଉଦ୍ଧୃତ ହେଲା ।**

ଶୁଣ ବିଦଗଧ ଜନ । ମଗଧ ଦେଶ ରଞ୍ଜନ ।
ମାଗଧ ମାଗଧେ ଭଣି । ଦେଶ ଅଗ୍ରଣୀ ଏ । ୧ ।
ପୁଚ୍ଛିଲେ ନିଷେଧ କହି । ସ୍ୱଦେଶୀ ସେ ସମ ଡକହି ।
ଏ ବାଣୀ ମରୁ ମଲ୍ଲାରେ । କହେ ବେଗରେ ସେ । ୨ ।
ଯହିଁ ବସ୍ତୁ ପଦୀ ସ୍ଥିତ । ବିଦେହେ ଗତ ବାଞ୍ଛନ୍ତି ।
ଭଦ୍ରଯୋନ ପ୍ରେତଶିଳା । ହୋଇଛି ମେଳା ସେ । ୩ ।
ରାଜଧାନୀ ପୁଷ୍ପପୁର । ସହଜେ କୁନ୍ତଳ ପର ।
ଶୈଳ କାଞ୍ଚି ତାର ତଳ । ଏତେ ମଞ୍ଜୁଳ ସେ । ୭ ।
ଷଡର୍ଧ ରାକ୍ଷସ ପୁରୀ । ଅପମାନ ମାନୁ କରି ।
ନଗରମାନଙ୍କ ମୋକ୍ଷ । ତହିଁକି ଲକ୍ଷ୍ୟ ସେ । ୮ ।
ଛନ୍ଦ ନୁହଇ ଏ ପୁଣ । ସଦ୍ମ ରତନେ ନିର୍ମାଣ ।
ପଦ୍ମ ପ୍ରକାଶକୁ ଜାଣି । ହେବା ରଜନୀ ସେ । ୯ ।
ପ୍ରଭାସ୍ୱାନ ପ୍ରଭାକର । ହିଙ୍ଗୁଳୀ କୁନ୍ତୁଳୀ ସାର ।
ଉଡ଼ାଇ କାକତ ଚକ୍ର । ଏମନ୍ତ ତର୍କି ସେ । ୧୧ ।
ଜଗତୀ ବିଳାସୀ ରମା । ସନ୍ନିଧେ ଯାହିଁ ଚନ୍ଦ୍ରମା ।
କ୍ଷିବନ୍ତି ସେ ଆଦରେଣ । ସ୍ୱାନ ପାରସ ସେ । ୧୨ ।
କଣି ବଦରି ସଙ୍ଗତେ । ଶିଶୁ କ୍ଷେପଣ କରନ୍ତେ ।
ମାତଙ୍ଗୀ ଯୋଗ୍ୟ ହୁଅନ୍ତି । ମାତଙ୍ଗ-ମୋଦ ସେ । ୧୯ ।

ଛା ୪, କୋ: ବ୍ର: ସୁ ।

ତାତ୍ପର୍ଯ୍ୟ—ମଗଧ ଦେଶର ଲୋକେ ନାନା ଦେଶ ଦର୍ଶନ କରି କହନ୍ତି—ଆମ ଦେଶ ଅନ୍ୟ ସମସ୍ତ ଦେଶ ଅପେକ୍ଷା ଶ୍ରେଷ୍ଠତର । ସେମାନଙ୍କ ମଧ୍ୟରୁ କେହି କେହି ସଗର୍ବରେ ନିଷେଧବାସୀଙ୍କୁ ପଚାରନ୍ତି—ତୁମ ଦେଶ ଆମ ଦେଶ ପରି ନା ? ନିଷେଧବାସୀ କହିବାକୁ ବାଧ୍ୟ ହୁଅନ୍ତି ଯେ ନିଷେଧରେ ମଗଧର ବିଭବ ନିଷେଧ । ମଲ୍ଲାର ଦେଶବାସୀଙ୍କୁ ପଚାରିଲେ, ସେମାନେ ଉତ୍ତର ଦିଅନ୍ତି—ଆମ ଦେଶ ତୁମ ଦେଶ ତୁଳନାରେ ମରୁପରି ବା ମରୁଭୂମି । ଯେଉଁ ଦେଶରେ ପ୍ରସିଦ୍ଧ ନଦନଦୀ ତୀର୍ଥସ୍ଥାନ ଥାଏ, ସେହି ଦେଶ ଦେଶମାନଙ୍କ ମଧ୍ୟରେ ପ୍ରସିଦ୍ଧ । ମଗଧରେ ତାହା ଅଛି; ଗଙ୍ଗା, ସରସ୍ୱତୀ, ଫଲ୍‌ଗୁ ପ୍ରବାହିତା ହୋଇ ଜମି ଉର୍ବର ଓ ସ୍ଥାନ ପବିତ୍ର କରନ୍ତି । ଏପରି ଯେଉଁ ମଗଧ, ତାହାର ରାଜଧାନୀ—ପୁଷ୍ପପୁର

Digitized by srujanika@gmail.com

(ପାଟଳିପୁତ୍ର) । ପୁଷ୍ପପୁର (ଫୁଲର ସ୍ଥାନ) କୁନ୍ତଳ ଦେଶ, (କେଶ)ର ଉପରେ, ତାର ତଳ ସ୍ୱର୍ଗରେ ଥାଏ ଗ୍ରୈଲ (ପୁର, କଷଣ୍ଣ) କାଞ୍ଚି (ପୁରୀ, କଟିକିଂକଣୀ) । ରାକ୍ଷସପୁରୀ ସ୍ୱର୍ଣ୍ଣଲଙ୍କା ତାର ସମାନ ଯେତେବେଳେ ନୁହେ, ଅନ୍ୟ ନଗର କଥା ପଡ଼ିବା ଅବଧି । ତାହାର ସଦ୍ମ (ଗୃହ) ରତ୍ନନିର୍ମିତ ଥିବାରୁ ନଗର ରାତି ଦିବସ ଉଜ୍ଜ୍ୱଳ ଦେଖାଯାଏ । ପଦ୍ମଫୁଲ ଯୋଗୁଁ ରାତି ଦିବସ ବାରି ହୁଏ ମାତ୍ର । ସେ ନଗରର ରତ୍ନପ୍ରଭାରେ ସୂର୍ଯ୍ୟତେଜ ନଷ୍ଟପ୍ରାୟ ଦେଖାଯାନ୍ତି, କାକତେଜା (କାଗଜପୁଡ଼ୀ) ତୁଲ୍ୟ ଜଣାଯାନ୍ତି । ହର୍ମ୍ୟବାଳାସିନୀମାନେ ଚନ୍ଦ୍ରଙ୍କୁ ପାଉଦନ୍ତିଷ୍ଟ ଆଦରଣ (ଦର୍ପଣ) ଜ୍ଞାନ କରନ୍ତି । ସେଠାରେ ଗଜମୁକ୍ତା ଏତେ ହୋଇ ଏତେ ପଡ଼ିଥାଏ ଯେ ଶବରଣୀମାନେ କୋଳି ସହିତ ମୁକ୍ତା ଗୋଟାଇ ଆଣିଥାନ୍ତି । ପିଲାମାନେ କୋଳି ଖାଇ ଖାଇ ସେଥିରୁ ମୁକ୍ତା ବାଛି ଫୋପାଡ଼ି ଦିଅନ୍ତି । ସେଠାରେ ଗଜମୁକ୍ତା କେବଳ ମାତଙ୍ଗୀ (ଶବରଣୀ) ମାନଙ୍କର ଗ୍ରହଣଯୋଗ୍ୟ ହୋଇଥାଏ ।

"ସୁବର୍ଣ୍ଣ ପର୍ବତ ଯହିଁ ଅହରହ,
ଶବର ଯୁବତି କରନ୍ତି ଫଉହ" । (ସ୍ୱ: ରାଧାନାଥ)

ରାଧାନାଥ ରାୟ ଓଡ଼ିଶା ବିଷୟରେ ଏପରି କହନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ଦେଶପ୍ରେମର ସୂଚନା ସେଥିରୁ ମିଳେ ।

**ଚମ୍ପାନଗରୀ**

"ଚମ୍ପା ସେ ରସା-ଯୋଷା ଶିରେ ବନ୍ଧ । ଶିବ ତହିଁ ରେ ଗୁରୁତର ସ୍ନେହ ।
ଜନମନୋହର ସୁବାସ ଅଛି । ଭ୍ରମର ଅବଲମ୍ବ ନାହିଁ କଛି । ୨ ।
ଯେଉଁ ପୁର ହାଟ ଅମରାବତୀ । ଉପରେ କରୁଛି ଆକ୍ଷେପ ଅତି ।
କେତେ ରମ୍ଭା-ଉରୁ ବସି ଅଛନ୍ତି । ଅଇରାବତ ଗଡ଼ାଗଡ଼ି ଦ୍ୟନ୍ତି । ୬ ।
କେତେ ଚନ୍ଦ-ରଥ ଗନ୍ଧର୍ବ ଚୟ । ଅଳପ ଧନେ ହେଉଛନ୍ତି କ୍ରୟ ।
ମାଳୀ ପସରାଟି ସୁଧର୍ମା ସମ୍ଭ । ସୁମନା ବଳୀରେ ହୋଇଛି ଶୋଭ ।
ଯେଉଁ ପୁରେ ପଢ଼େ ଶୁକ-ବ ଯାକ । ଶୁକ ବଦଟର ତତେ ଶ୍ଳୋକ ।
ସୂକ ବ ମାନେ ତା ଅର୍ଥ କରିବା । ବଢେ କରି କାହିଁକି ଯେନବା । ୯ ।
ବୈଦ୍ୟ-ଶାର୍ଦ୍ଦୂଳେ ଅଶ୍ୱିନୀ କୁମାରେ । ମୁଗ କରି ଚନ୍ଦ୍ରେ ବବେକ କରେ ।
ଥିଲେ ତାଙ୍କର ଚରକ ସୁଶ୍ରୁତ । ବୁଝିଥାନ୍ତେ ଆସି ଆମ୍ଭ ପୁରତ । ୧୦ ।
ଗଣକ-ଗଣକ ଏମନ୍ତ ହୃଦ । ଗୁରୁ-ଶୁକ୍ର ହେବା ପଣ୍ଡିତେ ବାଦ
ଧନୀ-ଜନ ମତେ ଧନଦ ଊଣା । ନ ଥିବାରୁ ତାଙ୍କ ପୁଷ୍ପକ ଗଣା । ୧୧ ।
ପୁ-ନାରୀରଙ୍କର ଏହି ଗୁମାନ । କେ କଲ୍ପ ଆମ୍ଭ ପଦ ଇନ୍ଦ୍ରେ ଦାନ ।
ବଣ୍ଟିତ ବଳ ଭୟ ଉପୁଜାଇ । ବଜ୍ର-ସାର-ବାର ଭୂଷଣେ ବହିଁ । ୧୨ ।
ବହେ ସେ ବିଷ୍ଣୁଜାନୁ ଅନୁମାନ । ସର୍ବଦା ଲକ୍ଷ୍ମୀ କରିବାରୁ ସ୍ଥାନ ।
ଅଶାନ୍ତ-ରତନ କେତୀତ ପ୍ରକାଶେ । ଅଶାନ୍ତ ପ୍ରାପ୍ତ ସବୁବେଳେ ଦଶେ । ୧୪ ।
ଉଷନ-ହଟେ କେବଳି କ ରାଜେ । ଜଳସ କୁଚ ଦ୍ରୋଣ ପ୍ରମ୍ଭ ଭୁଜେ ।
ଶୁଭେ ନାରୀ ପଦ-ନୂପୁର ବାଦ୍ୟ । ସମ୍ଭବେ ଯହିଁ ଭଲ ଭଲ ପଦ । ୧୫ ।
ମୁଖ-ଝଳ ପଣ ଦର୍ପଣ ଭଳି । ଅଷ୍ଟ ଲକ୍ଷିବା ଗବାକ୍ଷ ଅଛନ୍ତି ।
ଭ୍ରମର ଛଡ଼ାଇ ଚକୁର ଶଙ୍କା । ବଦନ ପ୍ରସନ୍ନକୁ ଯବନିକା । ୧୬ ।

Digitized by srujanika@gmail.com

ରୂପାଜୀବା ତନ୍ତ୍ରସ୍ୱରୂପା ହୋଇଣ । ଯନ୍ତ୍ରିରେ ଧନ୍ୟା କନ୍ୟା-ସ୍ତମ୍ଭ ଗଣ ।
କରଇ ଭ୍ରମ କେତେ ରାଗ ଜାତ । ବୀଣା ସ୍ୱରେ କରେ ଆଲାପ ଗୀତ । ୧୭ ।
ଏଣୁ ସେ ପୁର ରହସ୍ୟ ନିବାସ । ତହିଁ ନରେଶ୍ୱର ଉପମା କସ ।
ନୃପତମାନେ ମହାଦେବ କହ୍ନି । ରାଜା ଚୂଡ଼ାମଣି ହେବାରୁ ସେହି । ୧୮ ।

ଛାଂ ୨, କୋ: ବ୍ର: ସୁ: ।

ତାତ୍ପର୍ଯ୍ୟ—କୋଟିବ୍ରହ୍ମାଣ୍ଡସୁନ୍ଦରୀର ଜନ୍ମସ୍ଥାନ ଚମ୍ପାନଗରୀ । ଚମ୍ପାଫୁଲକୁ ନାରୀମାନେ ମୁଣ୍ଡରେ ଲଗାନ୍ତି, ରସା-ଯୋଷା ତାହା ଶିରରେ ଧାରଣ କରିଛନ୍ତି । ଶିବ (ମଙ୍ଗଳ, ମହାଦେବ) ତାଙ୍କୁ ଭଲ ପା'ନ୍ତି । ସେଠାରେ ଅମଙ୍ଗଳର ଭୟ ନ ଥାଏ । ଚମ୍ପାରେ ମନୋହର ସୁଗନ୍ଧ ଥାଏ, ଭ୍ରମର କନ୍ତୁ ରସେ ନାହିଁ । ସେଠାରେ ସୁବାସ (ଉତ୍ତମ ଗୃହ, ସୁଗନ୍ଧ) ଅଛି । ସେଠାରେ ଥିବା ହାଟ ଅମରାବତୀକୁ ଧିକ୍କାର ଦିଏ । ସେଠାରେ ରମ୍ଭା, ଉର୍ବଶୀ, ଐରାବତ ଗୋଟିଏ ଗୋଟିଏ ଅଛନ୍ତି, ଏଠାରେ ଅନେକ ଅଛନ୍ତି; ଐରାବତ (ନାରଙ୍ଗ ଫଳ) ରମ୍ଭା (କଦଳୀ ଗଛ) ଉରୁ (ଜଘନ) ଥିବା ସ୍ତ୍ରୀମାନେ ବେଶି ଅଛନ୍ତି । ସେଠାରେ ଚିତ୍ରରଥ ନାମରେ ଜଣେ ଗନ୍ଧର୍ବ ଅଛି, ଏଠାରେ ବିଚିତ୍ର ରଥ (ଚିତ୍ରରଥ) ଘୋଟକ (ଗନ୍ଧର୍ବ) ଅଛନ୍ତି । ସେଠାରେ ସୁଧର୍ମା ସଭା ଅଛି, ସେଥିରେ (ସୁମନାବଳି) ଦେବତାମାନେ ବସନ୍ତି । ଏଠାରେ ମାଳୁପସରୂପ ସୁଧର୍ମା ସଭା ଅଛି, ସୁମନାବଳି (ପୁଷ୍ପ-ସମୂହ) ରେ ଶୋଭିତ ହୋଇଅଛି । ଚମ୍ପାନଗରୀରେ ଶୁକଦେବଙ୍କ ରଚିତ ଶ୍ଳୋକାବଳି (ଶୁକ-ବ) ଶୁକପକ୍ଷୀ ପଢ଼ୁଛନ୍ତି; ସୁକବିମାନେ ତାହା ପଢ଼ିବା କ'ଣ ବିଚିତ୍ର ? ସେଠାରେ ଥିବା ବୈଦ୍ୟମାନେ ସ୍ୱର୍ଗବୈଦ୍ୟ ଅଶ୍ୱିନୀକୁମାରଙ୍କୁ, ଗଣକମାନେ ବୃହସ୍ପତିଙ୍କୁ, ଧନୀମାନେ କୁବେରଙ୍କୁ, ଯୋଦ୍ଧାମାନେ ଇନ୍ଦ୍ରଙ୍କୁ ତୁଚ୍ଛଜ୍ଞାନ କରନ୍ତି । ଚମ୍ପାପୁରର ବୈଦ୍ୟମାନେ ନିଜ ନିଜ ବିଦ୍ୟାରେ କୁଶଳ ଥିବା ହେତୁ ସେମାନେ ଭାବନ୍ତି, ଚରକ ସୁଶ୍ରୁତରେ ସନ୍ଦେହ ହେଲେ ଆମ୍ଭେମାନେ ଅଶ୍ୱିନୀକୁମାରଙ୍କର ମଧ୍ୟ ସନ୍ଦେହ ମୋଚନ କରି ପାରିବୁ; ଗଣକମାନେ ସୁପଣ୍ଡିତ ଥିବା ହେତୁ ସେମାନେ ଭାବନ୍ତି— ବାଦ ପଡ଼ିଲେ ଆମ୍ଭେମାନେ ବୃହସ୍ପତି (ଗୁରୁ) ଙ୍କର ଗୁରୁ ହୋଇ ପାରିବୁଁ; ଧନୀମାନେ ଭାବନ୍ତି—କୁବେରଙ୍କର ଗୋଟିଏ ପୁଷ୍ପକ ବିମାନ ଅଛି, ଆମ୍ଭମାନଙ୍କର ଅନେକ ପୁଷ୍ପକ (ରତ୍ନକଙ୍କଣ) ଅଛି; ଯୋଦ୍ଧାମାନେ ଟାଣ କରି କହନ୍ତି— ଇନ୍ଦ୍ର ଗୋଟିଏ ବଳ ନାମକ ରାକ୍ଷସକୁ ପରାସ୍ତ କରିଥିଲେ, ଆମେ କିନ୍ତୁ ଅସଂଖ୍ୟ ଶତ୍ରୁବଳର ଦର୍ପ ଦଳି ପାରିବୁଁ; ସେ ଗୋଟିଏ ବଜ୍ରଶର (ବଜ୍ରାସ୍ତ୍ର, ହୀରା) ଧରନ୍ତି, ଆମ୍ଭେମାନେ ଅନେକ ବଜ୍ରସାର (ହୀରା) ଧାରଣ କରୁଁ । ସେ ନଗରୀ ସର୍ବଦା ଲକ୍ଷ୍ମୀଙ୍କ ଲୀଳାସ୍ଥଳୀ ଅଟେ । ତାହାର ବହିର୍ଦ୍ୱାର ଶୋଭା କେଳୁଣୀର ବନ୍ଧ ତୁଲ୍ୟ; ସିଂହଦ୍ୱାର ସ୍ତମ୍ଭ ତାହାର ହସ୍ତପରି; ସୁବର୍ଣ୍ଣ କଳସ ସ୍ତନ ପରି; ନୂପୁର ଶବ୍ଦ ବାଦ୍ୟ ପରି, ଲୋକମାନଙ୍କ ଭଲ ଭଲ ଶବ୍ଦ ତାହାର ଭଲ ଭଲ ଧ୍ୱନି ତୁଲ୍ୟ । ନଗରୀରୁ ଅନବରତ ଶ୍ରୁତି ସୁଖକର ସଙ୍ଗୀତ ଝଙ୍କାର ଉଠୁଥିବାରୁ ତାହା ନଗରୀସ୍ଥ ଅଟ୍ଟାଳିକାସ୍ତମ୍ଭରୂପ ବିଳାସିନୀଙ୍କ ମୁଖନିଃସୃତ ସଙ୍ଗୀତସ୍ୱର-ସ୍ୱରୂପ ପ୍ରତୀତ ହୁଏ । ମୂଳତଃ ତାହା ସମସ୍ତ ପ୍ରକାର ପ୍ରମୋଦର ଆଧାର ଅଟେ । ସେ ସ୍ଥାନର ଶାସକ ରାଜା ଚୂଡ଼ାମଣି ଥିବା ହେତୁ, ସେ ଲୋକଙ୍କ ଦୃଷ୍ଟିରେ ଦେବଦେବ ମହାଦେବ ତୁଲ୍ୟ ।

ଦୃଷ୍ଟାନ୍ତ—୧ ସିଦ୍ଧବନ

"ବଡ଼ୋଜା ସୁଧାଂଶୁ ଗୁରୁ ସଙ୍ଗତ ସମାନ
ଦେଖ ଭ୍ରାତା ମୁନି ସଙ୍ଗେ ଦେଖେ ସିଦ୍ଧବନ ।
ବୃକ୍ଷତଳ ତପିପନ୍ତି ତହିଁ ଏକାକୃତ
ବଲ୍କଳ ପିଧାନ କରି ଜଟା ଧରିଛନ୍ତି ।

Digitized by srujanika@gmail.com

ବେଦ-ସାର ମୂଳ ସଦା ସୁମନା ଫଳଦ
ବାସବୃତ୍ତ ପର୍ଣ୍ଣଚୟ ଅଛି ସ୍ଥିର ଦ୍ରୁଦ୍ଧା ।
ବନାଧର ପ୍ରାୟେ ଲତାତଳ ମନୋହର
ବଶ୍ରମିଛନ୍ତି କମଳ ହଂସ ତାପ ଦୂର ।
ବଘଟିତ ଘନପୁଷ୍ପ ଭ୍ରମରେ ସହିତ
ବ୍ରନୋଦୀ ଜନମାନଙ୍କ ଦ୍ରବୁଅଛି ଚିତ୍ତ ।
ବନର କେଉଁ ପ୍ରଦେଶ ଅଦିତି ପ୍ରକାର
ବସ୍ତକ ଅନୁଭବରେ ଶିଖୀ ଶୋଭାକର ।
ବରୁଣ ଦେବ ବଲ୍ଲଭ ହୃଦୟ କଚ୍ଛି
ବହୁ ସୁମନା ସନ୍ତୋଷକର ହୋଇଅଛି ।
ବନର କେଉଁ ପ୍ରଦେଶ ଦଧିଛବି ଧରି
ବଜାୟତ ଦୈତ୍ୟଗଣ-ରୂପ ଅଛି ଧରି ।
ବସ୍ତାଛି ପବନମାଳାକୁ ନିରନ୍ତର
ବଶେଷିତ ମୁନିଗଣେ ସେ ମନୋହର ।
ବନର କେଉଁ ପ୍ରଦେଶ ରଞ୍ଜନେ ରଞ୍ଜନ
ବନତାପ୍ରାୟ ଅରୁଣ ସୁପର୍ଣ୍ଣ ସୁମନ ।
ବନର କେଉଁ ପ୍ରଦେଶ କଦ୍ରୁଛବି ବହି
ବହୁଷ୍ଟହର ହୋଇଛି ନାଗଇଶ୍ୱର ହିଁ ।
ବନର କେଉଁ ପ୍ରଦେଶ ସଙ୍ଗୀତର ଶାଳା
ବ୍ୟୋମଳସିକା ନର୍ତ୍ତନେ ହୋଇଅଛି ମେଳା ।
ବରଳ ଗନ୍ଧର୍ବଗାନେ ଖ୍ୟାତ ସାତ ସ୍ୱର
ବତାଳ ହୋଇଣ ରାଗ ଜାତ ମନୋହର ।
ବସନ୍ତ ବାସ କରିଛି କେଦାରହିଁ ମେଳ
ବଚଳିତ ସନ୍ଧିରେ ସଦା ସୁମରଦୋଳ ।
ବର୍ଣ୍ଣୁଥିଲେ ସଣବାର ନୃହେ ଏ ଚରିତ
ବଶ୍ରାମ କଲେ କୌଶିକ ମଠେ ରଘୁସୁତ । ଛ ୭, ବୈ: ବ: ।

ତାତ୍ପର୍ଯ୍ୟ—

ଚନ୍ଦ୍ର ଓ ବୃହସ୍ପତି ଉଭୟଙ୍କ ଗହଣରେ ଯିବା ପରି, ରାମ ଓ ଲକ୍ଷ୍ମଣ ବିଶ୍ୱାମିତ୍ରଙ୍କ ସହିତ ଯାଇ 'ସିଦ୍ଧବନ' ଦର୍ଶନ କଲେ । ସେଠାରେ ଥିବା ବୃକ୍ଷଗୁଡ଼ିକର ବଳ୍କଲ ଓ ଓହଳଗୁଡ଼ିକ ତପୋବନସ୍ଥ ତପସ୍ୱି-ବୃନ୍ଦ ବଳ୍କଲ ଓ ଜଟା ଧାରଣ କରିଥିଲେ । ତରୁଶ୍ରେଣୀ ଯେପରି ଫଳ ଫୁଲ ଦାନ କରି ସ୍ଥିରଭାବରେ ରହିଥାନ୍ତି, ତପସ୍ୱିମାନେ ତଦ୍ରୂପ ବାଞ୍ଛିତ ଫଳ ଦାନ କରି ସ୍ଥିରଚିତ୍ତରେ ଥିଲେ । ତପୋବନସ୍ଥ ଲତାତଳ ସରୋବର ତୁଲ୍ୟ ସ୍ୱଚ୍ଛ । ସରୋବରରେ ହଂସ ସନ୍ତରଣ କରି ଶ୍ରାନ୍ତି ଅପନୋଦନ କରୁଥିବା ପରି, ଘନପତ୍ରା-ଚ୍ଛାଦିତ ଲତାତଳେ ମୃଗମାନେ ଆଶ୍ରୟ ଗ୍ରହଣ କରି ସୂର୍ଯ୍ୟତାପରୁ ରକ୍ଷା ପାଉଥିଲେ । ପୁଷ୍ପଶୋଭିତା ଲତିକା ଶ୍ରେଣୀ ଜନମନ ହରଣ କରୁଥିଲା । ଦେବମାତା (ଅଦିତି)ଙ୍କ ନିକଟରେ ପୁତ୍ର (ବଶ୍ରଜ) ଅଗ୍ନି (ଶିଖୀ) ବିରାଜି ଉଠୁଥିବା ପରି, ଅରଣ୍ୟର କେତେକ ସ୍ଥାନରେ ରଶ୍ମିକାମାନ (ବସ୍ତକ) ପ୍ରସ୍ଫୁଟିତ ଥାଇ ଶୋଭା

Digitized by srujanika@gmail.com

ପ୍ରକାଶ କରୁଥିଲେ । ଅଦିତି ସମୁଦ୍ର ଓ ଇନ୍ଦ୍ରଙ୍କୁ ଜାତ କରି ଦେବଗଣଙ୍କ ଶ୍ରେୟକରିଥିବା ପରି, ବନଜାତ ବରୁଣ ଓ ପୁନ୍ନାଗବୃକ୍ଷଶ୍ରେଣୀ ପୁଷ୍ପବିମଣ୍ଡିତ ହୋଇ ଦର୍ଶକବର୍ଗଙ୍କୁ ମୁଗ୍ଧ କରୁଥିଲେ । ଦିତି ଯେପରି ଅସୁରମାନଙ୍କୁ ଜନ୍ମ ଦେଇଥିଲେ, ସେ ବନ ସେହିପରି କଣ୍ଟକବୃକ୍ଷମାନଙ୍କୁ ଜାତ କରିଥିଲେ; ଦିତିଙ୍କ ପୁତ୍ର ପବନ ଯେପରି କଶ୍ୟପଙ୍କ ନଗରରେ ଲୀଳା ବିସ୍ତାର କରୁଥିଲେ, ସିଦ୍ଧବନ ସେହିପରି ଅଗସ୍ତି ବୃକ୍ଷମାନଙ୍କ ଦ୍ୱାରା ସୁଶୋଭିତ ହୋଇଥିଲା । ବିନତା (ଗରୁଡ଼ମାତା) ଯେପରି ଗରୁଡ଼ ଓ ଅରୁଣଙ୍କ ଯୋଗୁଁ ଭାଗ୍ୟବତୀ, ସେହି ବନାଂଶ ସେହିପରି ରକ୍ତଚନ୍ଦନବୃକ୍ଷ, ପଲ୍ଲବିତ ପଦ୍ମପୁଷ୍ପରେ ଶୋଭା ପାଉଥିଲା । ନାଗମାତା (କଦ୍ରୁ) ନାଗମାନଙ୍କ ଦ୍ୱାରା ପରିବେଷ୍ଟିତ ଥିବା ପରି, ତାହା ନାଗେଶ୍ୱର ବୃକ୍ଷମାନଙ୍କ ଦ୍ୱାରା ମଣ୍ଡିତ ହୋଇଥିଲା । ଏହି ସିଦ୍ଧବନ ଗୋଟିଏ ବିଶାଳ ସଙ୍ଗୀତଶାଳା ପ୍ରାୟ । ବ୍ୟୋମନର୍ତ୍ତକୀ—ଶୂନ୍ୟନର୍ତ୍ତକୀ ଭରଦ୍ୱାଜ ପକ୍ଷୀ । ଗନ୍ଧର୍ବ—ଗାୟକ, କୋକିଳ । ରାଗ—ଗୀତର ରାଗ, ସ୍ନେହ । ବସନ୍ତ—ବସନ୍ତରାଗ, ହଳଦୀବସନ୍ତ ପକ୍ଷୀ । ସୁମନଦଳ—ମର୍ଦ୍ଦଳ, ପୁଷ୍ପ । ଏଠାରେ ନୃତ୍ୟ, ଗୀତ, ବାଦ୍ୟ ଚାଲିଛି । ସଙ୍ଗୀତାଳୟରେ ନର୍ତ୍ତକର ନୃତ୍ୟତୁଲ୍ୟ ଏଠାରେ ଭରଦ୍ୱାଜ ପକ୍ଷୀସମୂହ ନୃତ୍ୟ କରନ୍ତି, ପୁଷ୍ପଚୟ ପବନରେ ଦୋହଲୁଛନ୍ତି; ଯେଠାରେ ଗାୟକମାନେ ତାଳ ବାଦ୍ୟ ସହିତ ସପ୍ତସ୍ୱରରେ ବସନ୍ତ, କେଦାର ଆଦି ରାଗରେ ଗାନ କଲା ପରି, ଏଠାରେ କୋକିଳମାନେ ଗାନ କରନ୍ତି । ତାଳଗଛ ଅଛି, ହଳଦୀବସନ୍ତ (ପକ୍ଷୀ) ଅଛନ୍ତି । ଏହି ସିଦ୍ଧବନର ଶୋଭା ଅବର୍ଣ୍ଣନୀୟ । ସେହି ବନରେ ବିଶ୍ୱାମିତ୍ରଙ୍କ ରାମ ଲକ୍ଷ୍ମଣ ସହିତ ସ୍ୱ-ଆଶ୍ରମରେ ବିଶ୍ରାମ କଲେ ।

## ଦୃଷ୍ଟାନ୍ତ—୨

"ବିସ୍ତରଇ ମାଳ ସମକରେ ଜବ ମନେ
ବୁଲେ ରାମ ରାମ ରାମନେହୀ ଯେଉଁ ବନେ ଯେ ।
ବୃହଦ୍ଭାନୁ ଭାନୁ ଭାନୁ ପ୍ରଭାତାପ ନାହିଁ
ବୃତ ତମାଳ ମାଳ ମାଳତୀ ଲତା ସହି ଯେ ।୧।
ବହଇ ନିର୍ଝର ଝର ଝର ଅବିରତ
ବିଶେଷ ତରଙ୍ଗ ରଙ୍ଗ ରଙ୍ଗଣୀ ଶୋଭିତ ଯେ ।
ବହି ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ର ଶୀତଳକୁ ବାତ
ବହେ ମନ୍ଦ ମନ୍ଦ ମନ୍ଦପୂତ କରେ ରୂତ ଯେ ।୨।
ବର୍ଷେ ଘନ ଘନ ଘନ କୃଶକଣ ଯଥା
ବୃଷ୍ଟି ମଧୂର ମଧୂର ମଧୂରକେ ତଥା ଯେ ।
ବିଭ୍ରମିତ ଭୃଙ୍ଗ ଭୃଙ୍ଗ ଭୃଙ୍ଗ କରେ କେଳି
ବନି ବନ ବନିତା କି ପୁଷ୍ପହାସେ ଝିଲି ଯେ ।୩।
ବ୍ରତତି ତତି ଜୟନ୍ତ ଅତନ୍ତ୍ର ବାସନ୍ତ
ବାସନ୍ତୀ ସତି ରେ ! ଫୁଲ ଫୁଲରେ ପ୍ରବନ୍ଧି ଯେ ।
ବୋଧେ ଶୃଙ୍ଖଳାରେ ରଘୁନାଥ ସୀତାମତି
ବିତନ ଚମ୍ପକୂଟ ଯେ କୁଟଜେ ବ୍ରତତି ଯେ ।" ୪, ଛା୧୯, ବୈ: ବି: ।

ଶବ୍ଦ ଅର୍ଥ:—ରାମ—ରମଣୀୟ, ରାମଚନ୍ଦ୍ର; ମୃଗନେତ୍ରୀ । ବୃହଦ୍ଭାନୁ—ଅଗ୍ନି, ଭାନୁ—ସୂର୍ଯ୍ୟକିରଣ । ମନ୍ଦପୂତ—କୋକିଳ । ଚନ୍ଦ୍ର—ଚନ୍ଦନ, କର୍ପୂର—ଜଳ । କୃଶକଣ—ଜଳବିନ୍ଦୁ । ମଧୂର—ମହୁଲ ଗଛ, ମହୁ, ପୁଷ୍ପରାଗ । ଭୃଙ୍ଗ—ଗୁଡ଼ତ୍ୱକ, ଭୃଙ୍ଗରାଜ ଗଛ, ଭ୍ରମର ବା କଜଳପାତି । ବନିତା—ସୁନ୍ଦରୀ ସ୍ତ୍ରୀ; ବନି—ଶୋଭା ପାଇବା । ବ୍ରତତି—ଲତାସମୂହ । ଅତନ୍ତ୍ର—ଦେଦୀପ୍ୟମାନ । ବାସନ୍ତୀ—ମାଧବୀ ଫୁଲ । କୁଟଜେ—ଗିରିମଲ୍ଲିକାମାନ । ବ୍ରତତି—ବିସ୍ତାର ହୋଇଅଛି ।

Digitized by srujanika@gmail.com

## ସମୁଦ୍ର ଚିତ୍ର

ଶ୍ରୀରାମଚନ୍ଦ୍ର ସସୈନ୍ୟରେ ବାରିନିଧି ପର୍ଯ୍ୟନ୍ତ ଗଲେ । ଅନନ୍ତର—

"ବାରିନିଧିକି କେତେ ଦିନେ ଭେଟି ।
ଗୀତ ତ ଅଧିକାରେ ପ୍ରକଟି । ୧୦ ।
ବୀଣାପ୍ରାୟେ ପ୍ରାପ୍ତେ ବନ୍ଧୁ ପ୍ରବାଳେ ।
ବରିଜ ଖ୍ୟାତ ଇକ୍ଷ୍ୱାକୁକୁଳେ ।
ବୃନ୍ଦ ବୃନ୍ଦ ଯହିଁ କଚ୍ଛପ ଯୁକ୍ତ ।
ବରିଷ୍ଠ ସାରଗୁଣାଢ୍ୟ ବ୍ୟକ୍ତ ।
ବିପିନ ପ୍ରାପ୍ତେ ପଳାଶୀରେ ମେଳ ।
ବିହାରୀ ଜନେ ଲଭ୍ୟ ସୁଫଳ ।
ବଳସନ୍ତ ପରଭୃତ ଭ୍ରମରେ ।
ବର୍ହୀ ସ୍ଥିତ ଯହିଁ ମଧ୍ୟରେ । ୧୪ । — ଛ ୩୧, ବୈ: ବି: ।

ତାତ୍ପର୍ଯ୍ୟ—

କେତେକ ଦିନ ପରେ ଶ୍ରୀରାମଚନ୍ଦ୍ର ମର୍କଟବାହିନୀ ସହିତ ସିନ୍ଧୁତଟରେ ପହଞ୍ଚିଲେ । ସେମାନଙ୍କ ଦର୍ଶନରେ ସମୁଦ୍ର ଆନନ୍ଦରେ ଉଦ୍‌ବେଳିତ ହେବାରୁ, ତହିଁରେ ଅସଂଖ୍ୟ ଲହରୀ ଦେଖାଗଲା । ବୀଣା ଯେଉଁପରି ଲାଉତୁମ୍ବୀ ଓ ବୀଣାଦଣ୍ଡଯୁକ୍ତ, ସମୁଦ୍ର ସେହିପରି ଅସଂଖ୍ୟ ପ୍ରବାଳ (ବୀଣାଦଣ୍ଡ, ପୋହଳା) ଯୁକ୍ତ ହୋଇଅଛି । ସମୁଦ୍ରରେ ଯେପରି ସାରଗୁଣ (ଉତ୍କୃଷ୍ଟ ଗୁଣମାନ, ଉତ୍କୃଷ୍ଟ ଗୁଣ) ସଂଯୁକ୍ତ ହୋଇଥାଏ, ସମୁଦ୍ରରେ ସେହିପରି ଅସଂଖ୍ୟ କଚ୍ଛପ ରହିଛନ୍ତି ଏବଂ ସମୁଦ୍ରଜଳରେ ଦଧି, ଦୁଗ୍ଧ, ସୁରା ଓ ସର୍ପି ଇତ୍ୟାଦି ସାରଗୁଣ ରହିଅଛି । ନବ ତଟରେ ସମୁଦ୍ର ବିପିନ ପ୍ରାପ୍ତ । ଅରଣ୍ୟରେ ନାନାପ୍ରକାର ପଳାଶୀ ( ବୃକ୍ଷ, ମାଂସାଶୀ ରାକ୍ଷସ ) ଥିବା ହେତୁ ଭ୍ରମଣକାରୀମାନେ ନାନା ସୁସ୍ୱାଦୁ ଫଳ ଯେପରି ପାଆନ୍ତି, ସମୁଦ୍ରରେ ପଳାଶୀ (ମାଂସାଶୀ) କୁମ୍ଭୀର ଥିବା ହେତୁ ପୋତପାଳମାନେ ଲାଭବାନ୍ ହୁଅନ୍ତି । ତାହା ରତ୍ନାକର ଓ ତୀର୍ଥରାଜ ହେତୁ ଲୋକେ ରତ୍ନ ଓ ସୁକୃତ ଲାଭ କରନ୍ତି । ବନରେ କୋକିଳ ପରଭୃତ ଓ ଭ୍ରମରମାନେ ବିହାର କରନ୍ତି; ସମୁଦ୍ରରେ ସେହିପରି ଜଳଭଉଁରୀମାନେ(ପରଭୃତ) ବଳସନ୍ତ ଏବଂ ବନରେ ମୟୂରମାନେ ଥିବା ପରି ସିନ୍ଧୁଗର୍ଭରେ ବାଡ଼ବାଗ୍ନି ଅଛି ।

## ଋତୁଚିତ୍ର

"ବିରୋଧାଭାସ ପ୍ରକଟାଇ ନବରେ ବରଷା ସମସ୍ତ ସଞ୍ଚାର ।
ବ୍ୟାପି ଶୋଭା ଦିଶଇ ଭୟଙ୍କର ଦିଶେ ଗଗନେ ଘନାଘନ ହର ।
ବିପର୍ଜନ୍ତ ସେ । ବଡ଼ ଆନନ୍ଦରେ ଜୀବନ ।
ବିଧିନରେ କାଳକା ମନ୍ଦହିତ ସନ୍ତାପ ନାଶି ପ୍ରମୋଦ କରେ ଦିନ । ୧ ।
ଛ ୨୯, ବୈ: ବି: ।

ଏଥିରେ ଦ୍ୱିବିଧ ଅର୍ଥ ଅଛି—ବସ୍ତୁଭାର୍ଥ ଓ ପ୍ରକୃତାର୍ଥ । ବର୍ଷା ହେବାରୁ ଜନଙ୍କ ମନରେ ବିରୋଧାଭାସ ପ୍ରକାଶିତ ହେଲା ।

Digitized by srujanika@gmail.com

ବିରୁଦ୍ଧାର୍ଥ—"ବର୍ଷାକାଳ ଉପସ୍ଥିତ ହେବାରୁ ପୃଥିବୀ ସୁନ୍ଦର ଓ ଭୟଙ୍କର ଦେଖାଗଲା । ମଦହସ୍ତୀ ସିଂହକୁ ଗ୍ରାସ କରିବାରୁ ସେ ଆନନ୍ଦରେ ପ୍ରାଣତ୍ୟାଗ କଲା । ଦୁର୍ଗା ମହିଷାସୁରର ସନ୍ତାପ ନାଶ କରି ତାହାକୁ ଆନନ୍ଦ ପ୍ରଦାନ କଲେ ।"

ପ୍ରକୃତାର୍ଥ—"ସଜଳ ମେଘମାନଙ୍କର ଶୋଭା ପ୍ରତି ଦିଗରେ ବ୍ୟାପିଯିବାରୁ ଅନ୍ଧକାର ଯୋଗୁଁ ସେହି ସମୟରେ ପୃଥିବୀ ଭୟଙ୍କର ଦେଖାଗଲା । ମେଘ ଚନ୍ଦ୍ର, ସୂର୍ଯ୍ୟ ଦୁହିଁଙ୍କୁ ଗ୍ରାସ ଅର୍ଥାତ୍ ଆଚ୍ଛନ୍ନ କରି ଅତି ଆନନ୍ଦରେ ଜଳ ବର୍ଷଣ କଲା । ବିଧିରେ (ଦୈବବଶରେ) ମେଘସମୂହ ଜଳବର୍ଷଣ କରି ମହିଷ ପଶୁମାନଙ୍କର ଦେହତାପ ବିନାଶପୂର୍ବକ ସେମାନଙ୍କୁ ଆନନ୍ଦ ପ୍ରଦାନ କଲା ।"

"କୃଷ୍ଣପୁତ୍ରକୁ ଭକ୍ଷିବା ଇଚ୍ଛା କଲେ ବିଚ୍ଛେଦୀ ହୋଇଥିଲା ଜନେ ।
ବିଷ୍ଣୁର ପଥିକ ପଦ ବିଚାରିଲେ ଅତି ଉତ୍କଣ୍ଠ ଜାତ ମନେ ।
ବହେ ଅଗତି । ବହେ ଯହିଁରେ ସଦାଗତି ।
ବିଟପ ବିନାଶେ ସୁମନରେ ହସେ ଗଣିକାପନ୍ତି ଦିବା ରାତି ।

ବିରୁଦ୍ଧାର୍ଥ—"ଦ୍ୱିଖଣ୍ଡ ବା ତତୋଽଧିକ ଖଣ୍ଡରେ ହଣା ହୋଇଥିବା ଜନମାନେ କପିଳ ଋଷିଙ୍କୁ ଭକ୍ଷଣ କରିବାକୁ ଇଚ୍ଛାକଲେ । ବିଷ୍ଣୁ ଯେ ଭଗବାନ ପଥିକ ଅର୍ଥାତ୍ ବୈଷ୍ଣବମାନଙ୍କର 'ପଦବୀ' ସ୍ଥାନ ବା ମୁକ୍ତିକୁ ଉତ୍କଣ୍ଠିତ ମନରେ ଜାତ କରନ୍ତେ ସେମାନେ ଗଲେ ଅର୍ଥାତ୍ ଯେଉଁ ପଥରେ ସଦା ମୁକ୍ତବନ୍ଧ ଲୋକ ଏପରି ଅଗତିକୁ ବିଧାନ କରେ, ସେଠାରେ ଆଉ କି ଗତି ? ପୁଣି ବେଶ୍ୟାମାନେ ବିଟ ପୁରୁଷମାନଙ୍କୁ ବିନଷ୍ଟ କରି ଆନନ୍ଦରେ ହସିଲେ ।"

ପ୍ରକୃତାର୍ଥ—"ଏହି ସମୟରେ ବିରହୀ ଲୋକମାନେ ମନରେ ବିଚାର କଲେ, ଆମ୍ଭେମାନେ ଆଉ ଏ ଯନ୍ତ୍ରଣା ସହି ନ ପାରି କାଳକୂଟ ବିଷ ଭକ୍ଷଣପୂର୍ବକ ପ୍ରାଣତ୍ୟାଗ କରିବା । ପଥିକମାନେ ପ୍ରିୟା ପାଖରେ ଉପସ୍ଥିତ ହୋଇ ଉତ୍କଣ୍ଠିତ ମନରେ ପଥିକ ପଦକୁ ଅର୍ଥାତ୍ ପଥିକାବସ୍ଥାର ଯନ୍ତ୍ରଣାକୁ ପାସୋରିଲେ । ଆହୁରି ମଧ୍ୟ ଏ ସମୟରେ ପବନ ଅତି ବାତ୍ୟା ଅର୍ଥାତ୍ ଦ୍ରୁତଗତିରେ ବହିବାରୁ ଜୁଇ ଲତାମାନେ ଫୁଲ ଝଡ଼ାଇଲେ ଏବଂ ପୁଷ୍ପବିକାଶଛଳରେ ଦିବା ରାତି ହାସ ପ୍ରକାଶ କଲେ ।"

"ବାହାରି ପର୍ଣ୍ଣବାସୁ ରୁହିଁ ବୋଇଲେ ବିଭ୍ରମେ ସବୁଗୁଁ ରାବଣ ।
ବୈଦେହୀହରଣେ ଜଟାୟୁ ମାରଣେ ଗରୁଡ଼ଭରେ ପକ୍ଷିଗଣ ।
ବେଢିଛନ୍ତି ଯେ । ବିକାଶି କେ ଶିଖା କେ ତ କେ ।
ବସିଣ ମରୁତରଥେ ଶରବୃଷ୍ଟି କରେ ଯୁକ୍ତ ହୋଇ କାର୍ମୁକେ । ୧୦ ।

ତାତ୍ପର୍ଯ୍ୟ—

ରାମଚନ୍ଦ୍ର ଏପରି ସମୟରେ ପର୍ଣ୍ଣକୁଟୀରରୁ ବାହାରି ଉପରକୁ ଚାହିଁ ଦେଖନ୍ତେ ଦେଖିଲେ—ମେଘ ବାତାଘାତରେ ସଞ୍ଚାଳିତ ହେଉଅଛି, ଆକାଶରେ ଇନ୍ଦ୍ରଧନୁ ପଡ଼ୁଛି, ମୟୂର ନାଚୁଛି, ଡାହୁକ ଡାକୁଛି, ମେଘ ଗର୍ଜୁଛି—ବର୍ଷୁଛି । ସେ ଭ୍ରମବଶତଃ କହିଲେ—ଏହା ମେଘ ନୁହେଁ, ନିଶ୍ଚୟ ରାବଣ । ସେ ଜଟାୟୁକୁ ମାରି ଦେଇଥିବାରୁ ଗରୁଡ଼ ଭୟରେ ପକ୍ଷୀମାନେ ବେଢ଼ି ତା ସହିତ ଯୁଦ୍ଧ କରୁଛନ୍ତି, ମୟୂର ଯୁଦ୍ଧ ବେଳ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଛି, ଡାହୁକ ଡାକ ଦେଉଛି, ରାବଣ ପବନରଥରେ ବସି ଇନ୍ଦ୍ରଧନୁ ଧରି ଜଳଧାରା ଶର ବୃଷ୍ଟି କରୁଛି ।

Digitized by srujanika@gmail.com

"ବାଳାକୁ ମୋର ଚରମେ ଲୁଗ୍ଭଇଛି ନନ୍ଦଶେ ତେଣୁ ଶଶୀମୁଖ ।
ବଦ୍ୟୁତ୍‌କାନ୍ତି ଦଶି ନ ଦଶି ଯାଉଛି ଅଙ୍ଗ ପ୍ରଚଳେ ତାର ଦେଶ ।
ବାଣୀ କୋକିଳ । ବହୁଛି ଗଦ୍‌ଗଦ ଶୋକରୁ
ବଢ଼ାଇ ସମର ଛଡ଼ାଇ ଘେନବା ସାର ନାହିଁ ଏହା ବସ୍ତୁରୁ । ୧୧ ।

ବରଷା ହେଲଣି ଘନ ନଭେ ଖେଳେ ଭ୍ରସିଲେ ଶଦ୍ଦ ଘନ ଜ୍ୟୋଷ୍ଟ ।
ବନଜ ହେଲେ ଉନ୍ନତ ଗ୍ରନ୍ତ ଦୂତ ହୁଅ ବୋଲଣ ହୋଇ ହୃଷ୍ଟ ।
ବାନ୍ଧବାହ ହେ । ବନାଶିଛ ଦବ ବକଳ ।
ବନ ସମର ମୁହିଁ ସମ ବନାଶ କାମାନଳ ତାପ ଚପଳ" । ୧୨ ।

ତାତ୍ପର୍ଯ୍ୟ—

ମୋର ପ୍ରିୟାକୁ ରାବଣ ଲୁଚାଇଛି; ସେ ଛଟପଟ ହେଉଥିବାରୁ ତାହାର ବଦ୍ୟୁତ୍‌କାନ୍ତି ବେଳେ ବେଳେ ଝଟଝଟ ଦେଖାଯାଉଛି, ତାହାର ବ୍ୟାକୁଳ କ୍ରନ୍ଦନ କୋକିଳସ୍ୱନ ସ୍ୱରୂପ ଶୁଭୁଛି । ଏହି ସମୟରେ ଯୁଦ୍ଧ କରି ତାହାଠାରୁ ସୀତାଙ୍କୁ ରକ୍ଷା କରିବା ସର୍ବାପେକ୍ଷା ଉତ୍ତମ ଉପାୟ । ଲକ୍ଷ୍ମଣ ତାହା ଶୁଣି କହିଲେ—ନାହିଁ ନାହିଁ, ତାହା ମେଘ, ରାବଣ ନୁହେ । ରାମଚନ୍ଦ୍ର ପ୍ରକୃତିସ୍ଥ ହୋଇ କହିଲେ—ହେ ଜଳଧର ! ତୁମ୍ଭେ ମୋହର ଦୂତ ହୁଅ, ଦାବାନଳ ଶାନ୍ତ କଲା ପରି ମୋର କାମାନଳ ଶାନ୍ତ କର ।

ବରହରେ କ୍ଷୀଣ ଖ୍ରାରୁମଣି ଧନ ନ ନଅ ପ୍ରଖର ପବନ ।
ବଜ୍ର ପତନ ସ୍ତନତ ନ କରିବ ପ୍ରବେଶ ହେବ ସନ୍ନିଧାନ ।
ବାନ୍ଧବାହ ହେ ! ବନ୍ଧୁ ଜବାନୁଭବୀ ସତ ।
ବୋଲିବ ଯେମନ୍ତେ ଶିବ ଶିବ ଜତୋ ସେ ରୂପେ ମନାଇବ ଚନ୍ଦ୍ର ।
ପ ୧୩, ଛ ୨୧, ବୈ: ବ: ।

ତାତ୍ପର୍ଯ୍ୟ—

ମୋର ପ୍ରିୟା ବରହବାଧାରେ କ୍ଷୀଣ ହୋଇଥିବ, ସେ ଅତ୍ୟନ୍ତ ଭୟଶୀଳା; ସେହିହେତୁ ହେ ଜଳଧର ! ତୁମ୍ଭେ ସାଥିରେ ପ୍ରଖର ପବନ ନେବ ନାହିଁ, ବଜ୍ରପତନ ଓ ମେଘଧ୍ୱନି କରିବ ନାହିଁ । ସେ ପ୍ରଖର ପବନରେ ଉଡ଼ିଯାଇ ପାରେ, ବଜ୍ରାଘାତରେ ମରିଯାଇ ପାରେ । ଏ ଦୁଇ କଥା ନ ଥାଇ ତୁମ୍ଭେ ତାହା ସମୀପକୁ ଯିବ । ତୁମ୍ଭେ ତାକୁ ଏପରି ମନାଇ କହିବ ଯେ, ସେ ଯେପରି ଶିବ, ଶିବ—ଉଚ୍ଚାରଣ କରେ । ତଦ୍ୱାରା କାମତାପ ଉପଶମିତ ହୁଏ ।

ଦୃଷ୍ଟାନ୍ତ—୨

କୋଟିବ୍ରହ୍ମାଣ୍ଡସୁନ୍ଦରୀ, ଛ ୨୫—"ଏ ଛାନ୍ଦରେ ପ୍ରଥମ ରାଗ ଚକ୍ରାଦେଶାକ୍ଷ, ବର୍ଷାକାଳ ଅର୍ଥ; ପ୍ରତ୍ୟେକ ପଦରୁ ଗୋଟିଏ ଗୋଟିଏ ଅକ୍ଷର କାଟିଦେଲେ ଦ୍ୱିତୀୟ ରାଗ କାଫି କାମୋଦୀ, ଶୀତକାଳ ଅର୍ଥ, ପୁଣି ଆଉ ଏକ ଏକ ଅକ୍ଷର କାଟିଦେଲେ ରାଗ ମାଳବଶ୍ରୀ, ଗ୍ରୀଷ୍ମକାଳ ଅର୍ଥ ।" ସମୁଦାୟ ଛାନ୍ଦ ୩୦ ପଦ ବଶିଷ୍ଟ । ଏତେ ଦୀର୍ଘ ସତ୍ତ୍ୱେ ତାହାକପରି ଭାବଗର୍ଭିତ ସମୁଦାୟ ଛାନ୍ଦରୁ ଧରାଯିବ । ନମୁନା ସ୍ୱରୂପ ଏକ ପଦ ମାତ୍ର ଏଠାରେ ଉଦ୍ଧୃତ ହେଲା ।

"କାଶ ସୁରଭି ସୁମନା ପ୍ରକାଶ ହୋଇ ।
ମଧୁ ପରମ ରୋଚକ ନବାସ ତହିଁ ।" ୧, ଛ ୨୫, କୋ: ବ୍ର: ସୁ: ।

Digitized by srujanika@gmail.com

ରାଗ—ଚନ୍ଦ୍ରା ଦେଶାକ୍ଷ, ବର୍ଷାକାଳ ଅର୍ଥ:—"କାଶ (କାଇଁଶ ପୁଷ୍ପ) ସୁରଭି (କଦମ୍ବ ପୁଷ୍ପ) ସୁମନା (ପୁଷ୍ପ) ପ୍ରକାଶ ପାଇଲେ, ତହିଁରେ ପରମ ରୋଚକ (ରୁଚିକର) ମଧୁ (ମଦ୍ଯ) ର ନିବାସ ହେଲା । ପ୍ରଥମ ଅକ୍ଷର କାଟି ଦେଲେ ଦ୍ୱିତୀୟ ରାଗ—କାଫି କାମୋଦୀ, ଶୀତକାଳ ଅର୍ଥ:—ସ ସୁରଭି (ସୁଗନ୍ଧଯୁକ୍ତ) ସୁମନା (ଜାତିପୁଷ୍ପ) ପ୍ରକାଶ ହୋଇ (ଫୁଟିଲା) ତହିଁ ସେକାଳେ ନିବାସ (ଗୃହ) ରମ (ଆନନ୍ଦଜନକ) ଧୂପରେ ରୋଚକ (ରୁଚିକର) ହେଲା । ପ୍ରଥମ ଦୁଇ ଅକ୍ଷର କାଟିଦେଲେ, ରାଗ—ମାଳବଶ୍ରୀ ଗ୍ରୀଷ୍ମକାଳ ଅର୍ଥ:—ସୁରଭି ସୁମନା (ସୁଗନ୍ଧ ପୁଷ୍ପମାନେ) ଫୁଟିଲେ ତହିଁ ପୁଷ୍ପିତ ବୃକ୍ଷମାନ ଥିବା ସ୍ଥଳେ) ନିବାସ କରିବାକୁ ପରମ ରୋଚକ (ଅତ୍ୟନ୍ତ ରୁଚିକର) ହେଲା ।"

ଦୃଷ୍ଟାନ୍ତ—୩

"ଅତି ରସମୟ ବସନ୍ତ ସମୟ ବିଚାରି ପ୍ରମେୟ ତାହାର
ମିତ୍ର ଅନଙ୍ଗକୁ ପ୍ରବଳ କରାଇ ଆଚରି ଚର୍ଚ୍ଚରୀ-ବିହାର ।
ଆଗତେ । ଅରୋହିଲା ନାଗେଶ୍ୱରକୁ ।
ଋତୁରାଜପଣୁଁ ସେ ରଜ ଘେନିଲା ସ୍ୱହିଁ ପ୍ରଫୁଲ୍ଲ କେଶରକୁ । ୧ ।

ମଧୁ ବନ୍ଧୁପଣେ ମଳୟ-ଶଇଳ-ନିଳୟ ଅନିଳ ବହିଲା ।
ସଲିଳେ ମଜ୍ଜି ପଦ୍ମିନୀ ସ୍ୱଜାତି ଦକ୍ଷିଣ ସ୍ୱଭାବେ ମୋହିଲା ।
ତା ଜାଣି । ବନ-ଉବନେ ଯେ ଅବେଶ ।
ତରୁ ଲତା ଶ୍ରେଣୀ ତରୁଣ ତରୁଣୀ ସମସ୍ତେ ସୁମନ ସୁବେଶ । ୩ ।

ସ୍ନେହ ପୂର୍ଣ୍ଣରେ ଚନ୍ଦ ଚନ୍ଦ୍ର-ଚୂର୍ଣ୍ଣରେ ଖେଳିଲେ ତାରାଳୀ ସଙ୍ଗତେ ।
ଜି ଯାମ ରାମା ଶ୍ୟାମା ଅତିଶୟରେ କସ୍ତୁରୀକା ଦଳ ଫିଙ୍ଗନ୍ତେ ।
ସେ ଧୂଳି । ସେହୁ ଲେଉଟାଇ ମାଇଲେ ।
ନିଃଶଙ୍କେ ଚନ୍ଦ୍ରିକା ଅଙ୍କ କରି ଅଙ୍କେ ନୀଳା ବିଳାସେ କି ଥୋଇଲେ ।

ପ ୧୦, ଯୁ ୬, କୋ: ଭୁ: ସୁ: ।

ତାତ୍ପର୍ଯ୍ୟ—

ବସନ୍ତ ଋତୁ ମିତ୍ର ଅନଙ୍ଗ ସହିତ ଚର୍ଚ୍ଚରୀ ବିହାର (ଦୋଳଯାତ୍ରା ଫଗୁଖେଳ) ଆରମ୍ଭ କଲା । ଋତୁରାଜ ହେବା ହେତୁ ସେ (ନାଗେଶ୍ୱର ଶ୍ରେଷ୍ଠ ହସ୍ତୀ ଓ ବୃକ୍ଷ) ଆରୋହଣ କରି ନାଗେଶ୍ୱର (ପୁଷ୍ପ) ପରାଗରେ ଫଗୁଖେଳ କଲା । ବସନ୍ତକାଳର ବନ୍ଧୁଭାବରେ ମଳୟାନିଳ ବହିଲା । ସଲିଳେ (ଜଳରେ) ଥିବା ପଦ୍ମିନୀ ପ୍ରଭୃତି ସ୍ୱଜାତି ପୁଷ୍ପ ସଳିଳେ (କ୍ରୀଡ଼ାରେ) ମଜ୍ଜି ରହିଥିବାପଦ୍ମିନୀ ପ୍ରଭୃତି ସ୍ତ୍ରୀ ଜାତି ସ୍ତ୍ରୀ ହେଲେ । ସେମାନଙ୍କୁ ଦକ୍ଷିଣ ନାୟକରୂପ ମୋହିତ କରିବାରୁ, ଅରଣ୍ୟଜାତ ତରୁ ଲତାମାନେ ତରୁଣ-ତରୁଣୀ ରୂପ ପୁଷ୍ପରେ ସୁସଜ୍ଜିତ ହେଲେ । କୃଷ୍ଣବର୍ଣ୍ଣ ଜି ଯାମା ରାମା କସ୍ତୁରୀ ଦଳ ଚନ୍ଦ୍ରଙ୍କୁ ଫିଙ୍ଗନ୍ତେ, ସେ ଶ୍ରଦ୍ଧାରେ କର୍ପୂର ଧୂଳି ମାରି ପ୍ରତିଶୋଧ ନେଲେ । ଯେହୁ କୌତୁକ ଖେଳକୁ ଏହା ହେଲା ଯେ, କସ୍ତୁରୀକୁ ଚନ୍ଦ୍ରର କଳଙ୍କରୂପେ, କର୍ପୂରଧୂଳକୁ ରାତି ଚନ୍ଦ୍ରିକାସ୍ୱରୂପ ଧାରଣ କଲେ । ଲା: ବ: ଯୁ ୫, ବସନ୍ତଋତୁ ଛନ୍ଦ, ଯୁ ୧୧ ବର୍ଷାଋତୁ ବର୍ଣ୍ଣନା ଅତ୍ୟନ୍ତ ସୁଖପାଠ୍ୟ; ବାହୁଲ୍ୟ ଦୃଷ୍ଟିରୁ ଏଥିରେ ଦିଆଯାଇ ନାହିଁ ।

Digitized by srujanika@gmail.com

ସାକ୍ଷାଦ୍ଦର୍ଶନ:— ଛ ୧୮, କୋ: ଭ୍ରା: ସ୍ବ. ।

"ଏ ନୋହୁଛୁ ନୋହୁବ ଏ ଉତ୍ସବ ବହୁବ ସମାଜ-ରାଜୀବ ଲୋଚନ ।
ଏହୁ ମୁନି ମନ୍ତ୍ର କରିଅଛୁ ଅନ୍ତର ଗଢଉର ମାତର ଶ୍ରବନ ସେ ।
ଅନୁପମା । ହୃଦରେ ଆଦର ଉଚ୍ଛନ୍ନ । କଏ ସେ ଭୂପତି ନନ୍ଦନ ।
ରାମାରଞ୍ଜନ ରମ୍ୟ ଯତନରେ ପତନ ସେ କାଳେ କୁମାରନୟନ ସେ । ୧୫ ।

ତାତ୍ପର୍ଯ୍ୟ—

କୌଣସି ଦେବ ଉତ୍ସବ ଏ ଉତ୍ସବ ଅପେକ୍ଷା ଅଧିକ ନୁହେ । ଏହା ମୁନିଙ୍କ ମନ୍ତ୍ରପ୍ରଭାବରୁ ଜଣାଯାଏ । ରାଜପୁତ୍ରକୁ (ପୁଷ୍କରକେତୁ) ରାଜକେମା (କୋଟିବ୍ରହ୍ମାଣ୍ଡସୁନ୍ଦରୀ) ଦେଖି ଭାବିଲା—ସେ ରାଜକୁମାର ସତେ ଏହୁ କି ? ସେକାଳେ ରାମାରନ୍ଦ୍ର ଉପରେ 'କୁମାର ନୟନ' ଅତ୍ୟନ୍ତ ଯତ୍ନରେ ପଡ଼ିଲା ।

"ସ୍ଥଳେ ଧନଦାଚଳେ ଚଳେ କିଛୁ ଚଞ୍ଚଳେ ସ୍ଥାନ କି ଶମ୍ଭୁ ସମ୍ପାଦହୁ ।
ଝଟକ ଉପୁଜାଇ ଝଟିତି ମିଶିଯାଇ ଆଖି ବୃଜି ହୋଇ ଯାଉଛୁ ସେ ।
ଅନୁପମା । ଚରପ୍ରଭା ପୁଣି ସହଜେ ।
ଅଧିକ ପୂର୍ବରୁ ସେ ଭଜେ ।
ଗଣ ଇଶ୍ବର ସ୍ବର ଭଙ୍ଗ ହୋଇ ପାପୋର ଉପମା ହେବ ଏ ଆଶ୍ଚର୍ଯ୍ୟେ ସେ ।

ତାତ୍ପର୍ଯ୍ୟ—

କୈଳାସ ପର୍ବତରେ ଶମ୍ଭୁ ଅସ୍ଥାନ ସମ୍ପାଦ ବେଳେ ବେଳେ ଝଟଝଟ ଝଟକ ହଉଛୁ କି ? ରାଜକୁମାର ପୁଣି ଭାବେ—ବିଜୁଳି ଅଚରପ୍ରଭା, ଏ ସୁନ୍ଦରୀ ଚରପ୍ରଭା । କିବ ଗଣେଶ ମଧ୍ୟ ଏହା ସହିତ ଲକ୍ଷ୍ୟ ଦେବା ପାଇଁ ଉପମା ପାଇବେ ନାହିଁ ।

"ସେ ନଗେ ଜାତଜାତରୂପ୍ୟ-ସର ଉଚତ ମୋ ଚକ୍ଷୁ-ହଂସ ବଶ ହୋଇ
ସ୍ବର୍ଣ୍ଣ ସାରସ ରସପୂର୍ଣ୍ଣ ସୁବାସ-ବାସ ମତ୍ତ ରୋଳମ୍ବ ଚୁମ୍ବ ଦେଇ ସେ ।
ଚକ୍ରଯୁଗ । ବୃଜି ଉଠେ ଶୈବଳ ଯେଣ ।
ପୁଣି ତରଙ୍ଗ ରଙ୍ଗ ସ୍ଥାନ ।
ମୁଖ ଚକ୍ରକ-ଚତା ସ୍ତନ ନୀଳ-ରୋଳତା ଅଙ୍ଗ ଭଙ୍ଗ ଏ ଅନୁମାନ ସେ ।" ୧୭ ।

**ଅର୍ଥ**:—"ସେ ନଗେ (କୈଳାସ ପର୍ବତରେ) ଏ ଜାତରୂପ୍ୟସର (ସୁବର୍ଣ୍ଣ ପୁଷ୍କରଣୀ) ଜାତ ହୋଇଛୁ, ମୋ ଚକ୍ଷୁ ହଚତରେ ହଂସ ପରି ବଶ ହୁଅଇ, ପୁଷ୍କରଣୀ ରସ (ଜଳ) ସାରସ (ପଦ୍ମରେ) ପୂର୍ଣ୍ଣ, ଏ ସୁନ୍ଦରୀ ରସ (ଶୃଙ୍ଗାର ରସ) ରେ ପୂର୍ଣ୍ଣ, ମୁଖ ସ୍ବର୍ଣ୍ଣସାରସ ପରି (ସୁବର୍ଣ୍ଣପଦ୍ମ ପରି) ସେ ମୁଖ୍ୟସୁବାସରେ ବାସସ୍ଥାନ ମତ୍ତ ରୋଳମ୍ବ (ଭ୍ରମର) ଚକ୍ରଳରେ ଚକିତ ଭ୍ରମର ଶୋଭା ପାଉଛୁ । ଚକ୍ରବାକ ଯୁଗପରି ସ୍ତନଦ୍ବୟ, ସେ ବୃଜି ଶୈବଳ (ଜଳମାଳ) ଯେଣ ଉଠିଲା ପରି ନୀଳ କାଞ୍ଚଳି ପୁଣି ପୁଷ୍କରଣୀ ତରଙ୍ଗର ରଙ୍ଗ (କ୍ରୀଡ଼ା) ସ୍ଥାନ ହେଲା ପରି ଏ ଅଙ୍ଗଭଙ୍ଗୀର ସ୍ଥାନ । ଏ ଉପମାମାନ, ମୁଖ, ଚକ୍ରକ ଚତା, ସ୍ତନରୋଳର ନୀଳତା ଏବଂ ଅଙ୍ଗଭଙ୍ଗୀରେ ଅନୁମାନ ହେଉଛୁ ।"

"ମନେ ଜନ୍ମ ଏ ଦେବସଭା ମୋତେ ତ ଦେବ ଗଢ ଜଗତ ବ୍ୟାଜ ମେରୁ
ଖେଳାଇ ମନୋରମା ତୋଳା ନୋହୁ ଉପମା ନଗ୍ନଇ ଚନ୍ଦ୍ରରେଖା ଭୂରୁ ସେ ।
ଗୁପ୍ତବାସ । ପିଧାନେ ରତ୍ନାକରକ୍ଷେତ୍ରୁ । ପାରଜାତକ ଗନ୍ଧଭରୁ ।
ସୁଖ ଅନେକ ନେହେ ଦେଉଅଛୁ ବଚନେ ମୁଁ ମିଳେ କି ଭାଗ୍ୟବଶରୁ ସେ ।"୧୯ ।

Digitized by srujanika@gmail.com

**ଅର୍ଥ**—"ମନେ କଲି ଏ ସୁନ୍ଦରୀ ମୋତେ ଗତି (ମୋକ୍ଷ) ଦେବ, କାରଣ ଏ ସ୍ୱର୍ଗର ଦେବସଙ୍ଘ, ଜଗତୀ (ଅଟ୍ଟାଳିକା) ବ୍ୟାଜରେ ଏ ମେରୁ (ସ୍ୱର୍ଗ), ସ୍ୱର୍ଗରେ ମନୋରମା ନାମ୍ନୀ ଅପ୍ସରା ଅଛି, ତାହାର ଉପମା ନାହିଁ, ଏ ମନୋରମା ସୁନ୍ଦରୀ ଖେଳାଉ ଥିବା ଡୋଳାକୁ ଉପମା ନାହିଁ । ସ୍ୱର୍ଗରେ ଚନ୍ଦ୍ରଲେଖା ନାମ୍ନୀ ଅପ୍ସରା ନାଚନ୍ତି, ଏ ଚନ୍ଦ୍ରଲେଖା (ଚନ୍ଦ୍ରରେ ଲେଖା) ଭ୍ରୂଲତା ଭ୍ରୂରୁ (ଭ୍ରୂଲତାକୁ) ନଚାଉଛି, ସେଠାରେ ରମ୍ଭାନାମ୍ନୀ ଅପ୍ସରା ଅଛି, ଏ ରମ୍ଭା (କଦଳୀ ବୃକ୍ଷ) ଓ କରଭ (ହସ୍ତୀଶାବକର ଶୁଣ୍ଢ) ସଦୃଶ ଊରୁକୁ ବାସପିଧାନେ (ବସ୍ତ୍ରାଚ୍ଛାଦନରେ) ଗୁପ୍ତ କରିଛି, ପାରିଜାତ ପୁଷ୍ପ ପରି ଏହାର ଦେହର ସୁବାସ, ସ୍ୱର୍ଗ ଅନେକ ନେତ୍ର (ଇନ୍ଦ୍ରଙ୍କୁ) ସୁଖ ଦିଏ, ଏ ବିଚନ୍ଦ୍ରରୂପେ (ଅନେକ ନେତ୍ରେ, ଅନେକ ଲୋକ ଚକ୍ଷୁରେ) ସୁଖ ଦେଉଛି କି ଭାଗ୍ୟବଶରୁ ଏଠାରେ ମିଳିଲା ।"

"ନେତ୍ରଭ୍ରୂକୁ ଦର୍ଶିଲା ଗୁରୁଶୀଳା ଆସିଲା ନିଧିପ୍ରତିମାରୂପେ ପାଶେ ।
କୁନ୍ତଳ ଇନ୍ଦ୍ରନୀଳ ଅବଧ କି ମଞ୍ଜୁଳ ମୁଖ ମହାପଦ୍ମ ବିକାଶେ ସେ ।
ଗଣ୍ଡଚନ୍ଦ୍ର । ମକର ଶୋଭା ଖର ଅତି । ଈକ୍ଷଣ ପଦ୍ମ ଯେ ଉଲ୍ଲସନ୍ତି ।
କଣ୍ଠ ଶଙ୍ଖ ସୁଦନ୍ତ ମୁକୁନ୍ଦ ମତ ସତ ପାଦପର କଚ୍ଛପାକୃତି ସେ ।୨୦ ।"

**ଅର୍ଥ**—"ନେତ୍ର ଭ୍ରୂକଟେ ଏପରି ଦର୍ଶିଲା—ଗୁରୁଶୀଳା ନବନିଧି ପ୍ରତିମାରୂପେ ପାଖକୁ ଆସିଲା । କୁନ୍ତଳ ଅବଦ୍ଧ ଇନ୍ଦ୍ରନୀଳମଣି ପରି କି ମଞ୍ଜୁଳ, ମହାପଦ୍ମ ପରି ବିକଶିତ ମୁଖ ମହାପଦ୍ମନିଧି, ଗଣ୍ଡରେ ଥିବା ମକରୀ ଚନ୍ଦ୍ର ମକରନିଧି, ଈକ୍ଷଣ (ନୟନ) ଅତି ଖର ହେବାରୁ ଖରନିଧି ଏବଂ ପଦ୍ମପରି ଉଲ୍ଲସୁଥିବାରୁ ପଦ୍ମନିଧି, କଣ୍ଠ ଶଙ୍ଖନିଧି, ସୁଦନ୍ତ ମୁକୁନ୍ଦନିଧି ଏବଂ କଚ୍ଛପ ଆକୃତି ପାଦ ଉପରେ କଚ୍ଛପନିଧି ।"

"ପାଣି ଧରି ଅଣିମା କୋଳେ ନଷ୍ଟେ ଅଣିମା ଦୀର୍ଘ ନୋହିଲି ହ୍ରସ୍ୱଭାବ ।
ଲଘିମା ଭଜି ତାପ ଯିବ ସୁଖ କଲାପ ପ୍ରକାଶ ବିକାଶ ସର୍ଜିବ ସେ ।
ପ୍ରାପ୍ତି ହୋଇ । ମହିମା ନିଷ୍ଟଳେ ରହିବ । ଈକ୍ଷଣ ଲୁପ୍ତ ଜନ୍ମି ଥିବ ।
ନିରତ ବଶିତାରେ କାମାବଶାୟିତାରେ ଐଶ୍ୱର୍ଯ୍ୟ ପୂର୍ଣ୍ଣେ ହେବ ଶିବ ସେ । ୨୧ ।"

**ଅର୍ଥ**—"ପାଣି (ହାତ) ଧରି ଅଣିମା ଦ୍ୱାରା ମୋହ ଅଣିମା (ଲଘୁତା) ଦୀର୍ଘ ନ ହୋଇ ହ୍ରସ୍ୱଭାବ ଧରିବ, (ଏଥିରେ ମୋର ଅଣିମା ଐଶ୍ୱର୍ଯ୍ୟ ଲାଭ ହେଲା), ତାପ (ସନ୍ତାପ) ଲଘିମା (ଲଘୁତା) କୁ ଭଜିବ, (ଏଥିରେ ଲଘିମା ଐଶ୍ୱର୍ଯ୍ୟ) ସୁଖ କଲାପ (ସୁଖ ସମୂହ) ପ୍ରକାଶରେ ବିକାଶ (ଉଲ୍ଲାସ) ସର୍ଜିବ (ଏଥିରେ ମହିମା ଓ ପ୍ରାପ୍ତି ଐଶ୍ୱର୍ଯ୍ୟ) ସେ ସୁନ୍ଦରୀ ସମୟରେ ଈଷିତାଲାପ (ଅଳ୍ପ ଅଳ୍ପ ଆଳାପ) ଜନ୍ମାଉଥିବ, (ଏହାଦ୍ୱାରା ଈଶିତା ଐଶ୍ୱର୍ଯ୍ୟ) ମୁଁ ନିରତ ବଶିତାରେ (ବଶ କରିବା କ୍ଷମତାରେ) ତାକୁ କାମାବଶାୟିତା (କାମକ୍ରୀଡ଼ାରେ ବଶ କରି) କାମାବଶାୟିତା ଐଶ୍ୱର୍ଯ୍ୟ ଲାଭ କରିବେ । ଏହିପରି ମୁଁ ଅଣିମାଦି (ଅଣିମା, ଲଘିମା, ପ୍ରାକାମ୍ୟ, ପ୍ରାପ୍ତି, ମହିମା, ଈଷିତା, ବଶିତା ଓ କାମାବଶାୟିତା) ଅଷ୍ଟ ଐଶ୍ୱର୍ଯ୍ୟରେ ପୂର୍ଣ୍ଣ ହୋଇ ଶିବଙ୍କ ପରି ହେବି (ଶିବ ଏ ଅଷ୍ଟଐଶ୍ୱର୍ଯ୍ୟର ଅଧିକାରୀ) ।"

## ସପ୍ତଶାଳ ଭେଦ—ନାଗବନ୍ଧ

ବାଳି ଭୂମିଷ୍ଠ ହେବା ପରେ ତାହାର ଭାର୍ଯ୍ୟା ପୃଥିବୀ ଦେବୀ ସମ୍ଭାଳି ପାରିଲେ ନାହିଁ । ବିଧାତା ତାହାର ବଳର ଅନେକ ସପ୍ତଶାଳରେ ସେନ୍ଧ ହେତୁ ରଖିଥିଲେ । ଇନ୍ଦ୍ରାଦି କେହି ହେଲେ ତାହା ବାଣଦ୍ୱାରା ବିଦ୍ଧ କରି ପାରି ନ ଥିଲେ । ତାହା ଏକ ବାଣରେ ଛେଦନ କରିବା ବ୍ୟକ୍ତି କେବଳ ବାଳିକୁ ପରାସ୍ତ କରି ପାରିବେ—ଏପରି ପ୍ରବାଦ ଥିବାରୁ, ସୁଗ୍ରୀବଙ୍କ ଅନୁରୋଧରେ ରାମଚନ୍ଦ୍ର ତାହା ଏକ ବାଣରେ ନିମ୍ନମତେ ଭେଦ କରିଥିଲେ;—

Digitized by srujanika@gmail.com

"ବିଶାଳତା ପଦ୍ମ ଦୃଶ୍ୟ ସେବନ ।
ବୃକ୍ଷବୃନ୍ତ ଶତପତ୍ର ରଞ୍ଜନ ।
ବନ୍ଧେ ରହି ସଶୋଭି ଧୃତା ସେହି ।
ବଦ୍ଧ ନାଗ ନାଡ଼ନ୍ତରୁ ଦଶଇ ।
ବପ୍ରତାର ତର ସାର ନବୀନ ।
ବଷ୍ଟ ସ ପ୍ରଭାରେ ବହିର ହୀନ ।
ବନଭୂହପଦ ପ୍ରଚଳ ବଳ ।
ବିନସ୍ତ ରଚ ସର୍ପ ସପ୍ତଶାଳ ।"
"ବ୍ୟାଳ ସଲଖି ହୋଇ ରଘୁବୀର ।
ବାଣ ପ୍ରୟୋଗ କଲେ ସେ ସତ୍ୱର ।
ବୃକ୍ଷସାତ ଭେଦ ଭେଦ ପର୍ବତେ ।
ବାହୁଡ଼ିଲା ସେ ମାର୍ଗଣ ତ୍ୱରିତେ ।" ୩୫, ଛ ୨୮, ବୈ: ବି: ।

ତାତ୍ପର୍ଯ୍ୟ—

ସପ୍ତଶାଳ ବୃକ୍ଷ ବେଶି ଉଚ୍ଚ, ମୋଟା ଓ କଠିନ ଥିଲା । ତାହା ମଣ୍ଡଳାକାରରେ ରହିଥିବାରୁ ସପ୍ତଦଳ ପଦ୍ମବତ୍ ଦେଖାଯାଉଥିଲା । ସେଥିରେ ଗୋଟିଏ ନାଗ ସାପ ବେଷ୍ଟନ କରି ରହିଥିବାରୁ ତାହା ପ୍ରାଚୀରବେଷ୍ଟିତ ଦୁର୍ଗ ତୁଲ୍ୟ ଦେଖାଯାଉଥାଏ । ରାମଚନ୍ଦ୍ରଙ୍କ ପଦାଘାତରେ ସର୍ପ ସଳଖ ହୋଇଯିବାରୁ ବୃତ୍ତାକାରରେ ଥିବା ସପ୍ତଶାଳ ସଳଖ ହୋଇ ଧାଡ଼ି ହୋଇଗଲେ । ସେହି ସମୟରେ ସେ ମାର୍ଗଣ ପ୍ରୟୋଗ କରନ୍ତେ ତାହା ସପ୍ତଶାଳ ସହିତ ପର୍ବତ ଭେଦକରି ତୂଣୀରକୁ ଫେରିଲା ।

ବସା ବନ୍ଦୋବସ୍ତ—

କୋଟିବ୍ରହ୍ମାଣ୍ଡସୁନ୍ଦରୀ ପ୍ରାପ୍ତି ପାଇଁ ରାଜପୁତ୍ରମାନେ ଚମ୍ପାବତୀପୁରରେ ପହଞ୍ଚିଲେ । ସେ ସମ୍ପର୍କରେ ମନ୍ତ୍ରୀ, ରାଜା ବଣ୍ଟାନନ୍ଦଙ୍କୁ ନିମ୍ନମତେ ଜଣା କଲେ :—

"ମନ୍ତ୍ରୀବର ବେଗ କହେ ନୃପବର୍ଗ ଅଭିଧାନ ବଣ୍ଟାନନ୍ଦଙ୍କୁ ।
କାନ୍ତ୍ୟାଦି କାଣ୍ଡ ପ୍ରକାଶ ତିନି ଲୋକ ଜିତ କୃତ-ଶ୍ଳୋକ ବୃନ୍ଦଙ୍କୁ ।
ଉତ୍ତମ । ବର୍ଣ୍ଣ ଉଜ୍ଜ୍ୱଳ ସର୍ବେ ତହିଁ ।
ଉପବନ ହେବ ସ୍ୱଭାବେ ପୁସ୍ତକ ଲେଖା ଭାବେ ଦେବା ରଖାଇ ।"

ପ ୭, ଛ ୨୮, କୋ: ବ୍ର: ସୁ: ।

**ଅର୍ଥ**:—"ଏ ରାଜାମାନେ ଅଭିଧାନ ଶାସ୍ତ୍ର ଅଟନ୍ତି । ଅଭିଧାନ କାନ୍ତ୍ୟାଦି କାଣ୍ଡ (ବର୍ଗ) କୁ ଓ ତିନି ଲୋକରେ (ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ) ଜିତ (ଉତ୍କୃଷ୍ଟ) ଶ୍ଳୋକ ବୃନ୍ଦକୁ ପ୍ରକାଶ କରେ, ତହିଁରେ ଉତ୍ତମ ବର୍ଣ୍ଣ ଓ ସର୍ବେ (ସର୍ବନାମମାନେ) ଉଜ୍ଜ୍ୱଳ ହୋଇଥାନ୍ତି । ରାଜପୁତ୍ରମାନେ ପରିଚ୍ଛରବର୍ଗ, କାନ୍ତ୍ୟାଦି (ବେଶଭୂଷାଦି) ଓ କାଣ୍ଡ ପ୍ରଭୃତିରେ (ଶସ୍ତ୍ର ପ୍ରଭୃତିରେ) ପ୍ରକାଶ ପାଉଛନ୍ତି, କୃତ ଶ୍ଳୋକବୃନ୍ଦଙ୍କୁ (ଧାର୍ମିକମାନଙ୍କୁ) ତିନି ଲୋକରେ ଜିତ (ଜିଣିଛନ୍ତି), ସର୍ବେ ଉତ୍ତମ ବର୍ଣ୍ଣ (ସଦ୍ବଂଶୀୟ) ଏବଂ ଉଜ୍ଜ୍ୱଳ (କଳଙ୍କହୀନ) ଏମନ୍ତ ରାଜବୃନ୍ଦଙ୍କୁ, ଉପବନ ସ୍ୱଭାବରେ ପୁସ୍ତକ ହେବ, ତହିଁରେ ଏହି ରାଜାମାନଙ୍କୁ ଲେଖା ଭାବେ (ଅକ୍ଷରଧାଡ଼ି ପରି ଶ୍ରେଣୀବଦ୍ଧକରି) ରଖାଇ ଦେବା ।"

Digitized by srujanika@gmail.com

ଭଞ୍ଜ ଗ୍ରନ୍ଥାଦିରେ ଏହିପରି ସ୍ୱରଗର୍ଭକ ପର୍ଯ୍ୟାୟର ଅଭାବ ନାହିଁ ।

## କୁକ୍କୁଟର ବାର୍ତ୍ତା

ରାମଚନ୍ଦ୍ର ବ୍ୟାକୁଳ ଚିତ୍ତରେ ସୀତାଙ୍କୁ ବନମଧ୍ୟରେ ଖୋଜିବୁଲୁଥିବାବେଳେ ଗୋଟିଏ କୁକୁଡ଼ା ସୀତାଙ୍କୁ ରାବଣ ନେଉଥିବା ସମ୍ବାଦ ନିମ୍ନମତେ କହିଲା:—

ବିଧିରେ ପ୍ରଜାପତି-ନପ୍ତା ଅର୍ଥୀ । ବ୍ୟାକୁଳ ବଳିବର୍ଦ୍ଦ ଯୋଚ ତଥି । ବଳେ ପ୍ରଜାକୁ ଘଉଡ଼ି । ବୁଣିବାକୁ ପ୍ରେମରାଶିକି ଲୋଡ଼ି । ବଳ ଥିଲେ ତୁମ୍ଭେ । ବିଚ୍ଛେଦ ସୀରକୁ ଦ୍ୱନ୍ଦ ଆରମ୍ଭେ ।

ପ ୧୧, ଛ ୩୧, ବୈ: ବି: ।

ତାତ୍ପର୍ଯ୍ୟ—

ପୁଞ୍ଜିପତିମାନେ ବର୍ଷା ପରେ ଚଷାଙ୍କୁ ଜମିରୁ ବିତାଡ଼ିତ କରି ବଳେ ବଳେ ହଳ କରି ବୀଜ ବୁଣି ପକାନ୍ତି । ଧୈର୍ଯ୍ୟଶୀଳ ଚଷା ଛାଡ଼େ ନାହିଁ, ସେ ଜୋତି, ଲଙ୍ଗଳ କାଟି ଦ୍ୱନ୍ଦ୍ୱ ଆରମ୍ଭ କରିଦିଏ । ସେହିପରି ପ୍ରଜାପତିନପ୍ତା ଅର୍ଥାତ୍ ରାବଣ ଅର୍ଥୀ ବା ପୁଞ୍ଜିପତି ତୁଲ୍ୟ । ସେ ସୀତାଙ୍କ ବକ୍ଷ ପ୍ରଦେଶ ଲୋତକ-ଜଳରେ ଆର୍ଦ୍ର ହେବା ଦେଖି ରତି-ରତ୍ନ ଆଦାୟ କରିବା ଅଭିପ୍ରାୟରେ ତାଙ୍କର ହୃଦୟକ୍ଷେତ୍ରରୁ ହର୍ଷ-ପ୍ରଜାଙ୍କୁ ଘଉଡ଼ି ବ୍ୟାକୁଳତା ବଳିବର୍ଦ୍ଦ ଯୋଚି, ସେଥିରେ ପ୍ରେମବୀଜ ବଳେ ବୁଣିବାକୁ ଇଚ୍ଛାକରେ । ବଳ ଥିଲେ ତୁମ୍ଭେ ତାହାର ସୀର (ଲଙ୍ଗଳ, ମସ୍ତକ) ଚ୍ଛେଦନ କର । ସ୍ଥୂଳତଃ ରାବଣ ସୀତାଙ୍କୁ ବଳପୂର୍ବକ ନେଉଥିଲା, ସେ ଅତି ବ୍ୟାକୁଳ ହୋଇ କାନ୍ଦୁଥିଲେ । ତୁମ୍ଭେ ରାବଣର ଶିର ଛେଦନ କରି ସୀତାଙ୍କୁ ରକ୍ଷା କର ।

## ବକର ବାର୍ତ୍ତା

"ବକେ ବସିଥିଲି ଧ୍ରୁବ ଉପରେ । ବିଷ୍ଣୁ ପଦକୁ ଭଜିଲି ଉପ୍ରରେ ।
ବିଲକ୍ଷ ପକ୍ଷକୁ ଅଙ୍ଗରେ ବହି । ବହନ ସେ ତମ ନାଶନ ବହି ।
ବକତା ଏ ଡିର । ବିଶ୍ରାମ ବାର୍ତ୍ତା କହିବା ସୁନ୍ଦର । ୧ ।
ବଧୂଁ କାମ ଧର୍ମେ ଅଛୁ ଜୀବନେ । ବଧୂକାମ ବିଶେ ଭ୍ରମ ଏ ବନେ ।
ବାଉଳୁ ଅଛ ଯେଉଁ ରମଣୀଙ୍କୁ । ବିଶେଷ ଶୋଭି ତହୁଁ ରମଣୀଏ ।
ବିଂଶବାହୁ ରଥେ । ବିଲୋକିଛୁ ଗଲା ଦକ୍ଷିଣ ପଥେ । ୨ ।
ବିତ ପ୍ରସୂନ ଇନ୍ଦୁ ଜିତ ଦେଖେଁ । ବିଲକ୍ଷ୍ୟ ପ୍ରସନ୍ନ ନ ଥିଲା ମୁଖେ ।
ବାଷ୍ପ ହେଉଛୁ ନୟନୁ ଜନତା । ବୋଲନ୍ତି ମୀନ ଉଦ୍‌ଗାରେ ମୁକୁତା ।
ବଡ଼ ଉଣା ସେହି । ବାଗରେ ଲୁଚେ ଧନ ଭକ୍ଷେଁ ମୁହିଁ ।୩।
ବାସ ଚହଟି ଅଙ୍ଗୁ ଯାଉଥିଲା । ବେଢ଼ିଥିଲେ ରଥେ ଭ୍ରମରମାଳା ।
ବର୍ଣ୍ଣି କଣ୍ଟକ ବକୁଳରେ ନାହିଁ । ବାଟଦେ ନିକଟେ ଦେଖିଛୁ ମୁହିଁ ।
ବୀଣା କି ମଧୁର । ବାହାରୁଥିଲା ଯେଉଁ ରାମ ସ୍ୱର । ୪ ।
ବୋଲିବ ତୁ ବୀଣା ଶୁଣିଲୁ କାହୁଁ । ବାଜଇ ସପତ ସ୍ୱରରେ ସେହୁ ।
ବର୍ଷାଭୁ ଧୈବତ ମୟୂର ଷଡ୍‌ଜ । ବନପ୍ରିୟରେ ପଞ୍ଚମ ସହଜ ।
ବାଜୁଛୁ ମୋ କଣ୍ଠେ । ବିଧିରେ ଏହିପରି ଆଉମାନେ । ୫ ।
ବାର୍ତ୍ତା ଶୁଣି ବରଯାଚୁଁ କୃପାଳୁ । ବସାରେ ବର୍ଷାରେ ଆହାର ମିଳୁ ।
ବଳାକା ଖପୁଁ ଆଜ୍ଞା ଦେଲେ ହେଉ । ବର୍ଷା ଚତୁର ମାସ ଅଣି ଦେଉ ।
ବଇଷ୍ଣ ଉଚ୍ଛିଷ୍ଟ । ବୋଲୁଁ ବୋଇଲେ ପାନ କରୁ ଓଷ୍ଠ" । ୬ ।

ଛ ୩୧, ବୈ: ବି: ।

Digitized by srujanika@gmail.com

## ଶବ୍ଦ ଅର୍ଥ

ଧ୍ରୁବ—ଜଣ୍ଡାଗଛ । ବିଷ୍ଣୁପଦ—ଆକାଶ । ଉତ୍କଳ ହସ୍ତରେ—ଉତ୍କଳ ପରେ । ଧବଳ ପକ୍ଷ—ଧଳା ପକ୍ଷ । ବିଷପ୍ରସୂନ—ପଦ୍ମ । ବର୍ଷାଭୂ—ଭେକ । ବନପ୍ରିୟ—କୋଇଲି ।

ତାତ୍ପର୍ଯ୍ୟ:—

ଶ୍ରୀରାମ ସୀତାଙ୍କ ସୌନ୍ଦର୍ଯ୍ୟ ବାହୁନି ବାହୁନି କାନ୍ଦି ତାଙ୍କର ସନ୍ଦେଶ ବୁଝୁଥିବା ବେଳେ ଗୋଟିଏ ବକପକ୍ଷୀ କହିଲା—ହେ ସୁନ୍ଦର ! ମୁଁ ତୁମ୍ଭ ପ୍ରିୟାର ସନ୍ଦେଶ ଦେବି, ବସି ଶୁଣନ୍ତୁ । ରାବଣ ଗୋଟିଏ ରମଣୀୟ ରମଣୀକୁ ରଥରେ ବସାଇ ଦକ୍ଷିଣ ଦିଗକୁ ନେଇ ଯାଉଥିବା ମୁଁ ଦେଖିଛି । ପଦ୍ମ ଓ ଚନ୍ଦ୍ର ସୌନ୍ଦର୍ଯ୍ୟରେ ତାଙ୍କ ସମାନ ନୁହନ୍ତି, ମୀନର ମୁକ୍ତାବାନ୍ତ ତାଙ୍କର କଣ୍ଟକିତ ଅଶ୍ରୁବିନ୍ଦୁକୁ ସମାନ ନୁହେଁ; କନ୍ଦନ ସମୟରେ ତାଙ୍କର ନେତ୍ର ସୌନ୍ଦର୍ଯ୍ୟ ମୀନର ମୁକ୍ତା ବାନ୍ତଶୋଭାକୁ ବଳିଯିବାରୁ, ମୀନ ଲଜ୍ଜାରେ ଜଳରେ ଲୁଚେ, ମୁଁ ତାକୁ ଧରି ଖାଏଁ, ତାଙ୍କର ଦେହର ତେଜ ବିଦ୍ୟୁତରେ ନାହିଁ, ତାଙ୍କର କଣ୍ଠନିଃସୃତ 'ରାମ, ରାମ' ସ୍ୱର ମଧୁର ବୀଣାସ୍ୱର ଅପେକ୍ଷା ଅଧିକ ମଧୁର । ପକ୍ଷୀଟାଏ ହୋଇ ବୀଣାସ୍ୱର ଜାଣିଲୁ କପରି ବୋଲି ଅବା ପଚାରି ପାର । ମୁଁ ଜାଣେ, ବୀଣା ସପ୍ତ ସ୍ୱରରେ ବାଜେ । ଭେକର ଧୈବତ ସ୍ୱର, ମୟୂରର ଷଡ଼ଜ ସ୍ୱର, କୋକିଳର ପଞ୍ଚମ ସ୍ୱର, ବୃଷଭର ଋଷଭ ସ୍ୱର, ଛାଗର ଗାନ୍ଧାର ସ୍ୱର, କୌଞ୍ଚର ମଧ୍ୟମ ସ୍ୱର ଏବଂ ହସ୍ତୀର ନିଷାଦ ସ୍ୱର ମୁଁ ଶୁଣିଛି । ସେ ରମଣୀର ସ୍ୱରର ମଧୁରତା ତୁଳନାରେ ଏ ସମସ୍ତ ତୁଚ୍ଛ ।

ସୀତାଙ୍କ ସମ୍ବାଦ ଶୁଣି ଦୟାଳୁ ରାମଚନ୍ଦ୍ର ବକକୁ ବର ଯାଚନ୍ତେ ସେ କହିଲା—"ବର୍ଷାରେ ବର୍ଷାରେ ଆହାର ମିଳୁ"-। ସେ "ଆଜ୍ଞା ଦେଲେ ଦେଉ । ବକ୍ର ଚକ୍ଷୁର ମାସ ଆଣି ଦେଉ ।"

ମନ୍ତବ୍ୟ:—

ଏଥିରେ ଭାଷାର ସୌନ୍ଦର୍ଯ୍ୟ, ଭାବର ଗାମ୍ଭୀର୍ଯ୍ୟ ଓ ପ୍ରାଣୀ ବର୍ଣ୍ଣନରେ ପାଣ୍ଡିତ୍ୟର ପରିଚୟ ଦେବା ସଙ୍ଗେ ସଙ୍ଗେ ଶାସନପରମ୍ପରାକୁ 'ଖାଦ୍ୟ ସମସ୍ୟା'ର ଆଶୁ ସମାଧାନ ପାଇଁ କବି ଇଙ୍ଗିତ ଦେଇଛନ୍ତି । ଗାନ୍ଧିଜୀ ବିବେକାନନ୍ଦ ପ୍ରଭୃତି ରାଜନୈତିକ ଏବଂ ଆଧ୍ୟାତ୍ମିକ ନେତାବର୍ଗ ତାହା ଯେ ବରାବର ସମର୍ଥନ କରିଆନ୍ତି, ତାହା ସେମାନଙ୍କ ବକ୍ତୃତା ଏବଂ ଗ୍ରନ୍ଥାଦିରୁ ସ୍ପଷ୍ଟ ହୁଏ ।

ଶ୍ରୀରାମଚନ୍ଦ୍ର ହୁଅନ୍ତି ତ୍ରିକାଳଜ୍ଞ । ବକ ତାଙ୍କୁ ନୂଆ ବାର୍ତ୍ତାଟାଏ ବା ଦେଲା କ'ଣ ? ସେ ବିପଦ ସମୟରେ 'ହଁ'ଟାଏ ମାତ୍ର ଅଥବା "ରମଣୀଏ ବଂଶ ବାହୁ ରଥେ ବସିଲେକଛି ଗଲା ।" କହି ରାମଚନ୍ଦ୍ରଙ୍କ ବିପଦରେ ବନ୍ଧୁ ହୋଇପାରିଥିଲା । ସେଥିରେ କୃତଜ୍ଞ ରହି କୃତଜ୍ଞତାର ନିଦର୍ଶନ ସ୍ୱରୂପ ତାର ଖାଦ୍ୟସମସ୍ୟାର ସମାଧାନ କରି ଜଗତକୁ ଏଇ ଇଙ୍ଗିତ ଦିଅନ୍ତି ଯେ—"-ହିତକର କାର୍ଯ୍ୟ ପାଇଁ ମନୁଷ୍ୟ କୃତଜ୍ଞ ରହିବା ବାଞ୍ଛନୀୟ, "-ବିପଦ ସମୟର ବନ୍ଧୁ ବନ୍ଧୁରେ ଗଣ୍ୟ ।"

ଶୁକ ସାରୀ ଉକ୍ତି—(ବୈଦେହୀଶ)

"ବୁଧ ସାରସେ ବେନ ରାଗ ଚୁଚିର ।
ନୀର କ୍ଷୀର ମିଶ୍ରିତ ଦ୍ୱିଭୁଜ ବାଛ ଯେ ।"

Digitized by srujanika@gmail.com

କୋ: ବ୍ର: ସୁ: ୩୬୦ ରେ ପୁଷ୍ପକେତୁ ପକ୍ଷରୁ ଶୁକ କଳହଂସକେଦାର ରାଗରେ ଓ କୋବିବ୍ରହ୍ମାଣ୍ଡସୁନ୍ଦରୀ ପକ୍ଷରୁ ସାରୀ ଭୂପାଳରାଗରେ କହୁଅଛି । ଏଥିରେ ଦୁଇଜଣଙ୍କର ଉକ୍ତି ମିଶ୍ରିତ ହୋଇଅଛି ।" ହେ ପଣ୍ଡିତମାନେ ! ତାହା ଭିନ୍ନ ଭିନ୍ନ କରି ଅର୍ଥ କରନ୍ତୁ ।

"ନାଗରମଣି ସାର ଶୁର-ଭି-ଧାମ ।
ନାହିଁ ଶ୍ରୁତିରେ ତାହା କାନ୍ତି ସମ ଯେ ।
ସୁନା ସାଦୃଶ କାନ୍ତ କି ମନୋରମ ।
କାମିନୀଚୟ ଧୈର୍ଯ୍ୟ ହରିବାକୁ କ୍ଷମ ଯେ ॥" ୮ ॥

ଅର୍ଥ—"ସେ ଭ୍ରମର ନାଗରମଣି (ପୁରୁଷ ଶ୍ରେଷ୍ଠ) ସାର ଶୁର-ଶ୍ରୀ-ଧାମ (ଶ୍ରେଷ୍ଠ ବୀରମାନଙ୍କର ଉତ୍ସବ ସ୍ଥାନ) ତାହାଙ୍କ କାନ୍ତି ସମାନ ଆଉ ଶ୍ରୁତିରେ (ବେଦରେ ମଧ୍ୟ) କାହାର କାନ୍ତି ବର୍ଣ୍ଣିତ ହୋଇ ନାହିଁ ବା ଶ୍ରୁତିରେ (କର୍ଣ୍ଣରେ ମଧ୍ୟ) ଶୁଣାଯାଇ ନାହିଁ । ତାଙ୍କର ସୁନା ସମାନ କାନ୍ତି (ଶୋଭା) କି ମନୋରମ (କେଡ଼େ ସୁନ୍ଦର) । ସେ କାମିନୀଚୟର (ସ୍ତ୍ରୀସମୂହର) ଧୈର୍ଯ୍ୟ ହରି କରିବାକୁ କ୍ଷମ ଅଟନ୍ତି । ସ୍ତ୍ରୀ ପକ୍ଷରେ—ସେ କୁମାରୀ ନାଗରମଣୀ (ନାଗକନ୍ୟା) ମାନଙ୍କ ଠାରୁ ସାର (ଶ୍ରେଷ୍ଠ) ସୁରଭିର (ସୌନ୍ଦର୍ଯ୍ୟର) ଧାମ (ସ୍ଥାନ) ଶ୍ରୁତିରେ (ଶୁଣିବାରେ) ତା ପରି ନାହିଁ, ଆଉ ରତି ତାକୁ ସମ କି ? ସୁନାସା (ସୁନ୍ଦର ନାସିକା) ଓ ଦୃଶ (ନକ୍ଷତ୍ର) କାନ୍ତ (ଶାନ୍ତ) କି ମନୋରମ (ମନୋହର), ସେ କାମୀ-ନିଚୟ (କାମୀ ପୁରୁଷମାନଙ୍କର) ଧୈର୍ଯ୍ୟ ହରି କରିବାକୁ କ୍ଷମ ଅଟଇ ।"

"କାମନା ସଫଳରେ କରି ବରୁର ।
କି ରସନିଧି ଥାଇ ପ୍ରତିସ୍ୱରର ଯେ ।
ଦେବକୀ କୁମାରକୁ କରଇ ସ୍ତୁତି ।
ଆହେ କରୁଣାକର ମୁଁ ଅତି ଆର୍ତ୍ତୀ ଯେ ॥" ୯ ॥

ଅର୍ଥ—"କାମନା ସଫଳରେ (ବାଞ୍ଛାସିଦ୍ଧି ନିମିତ୍ତ) ବ୍ୟୁର କରିବ । (ଦୂତ ପଠାଇବା) ସେ କଣ ରସନିଧି ? ଏହା ପ୍ରତିସ୍ୱରର (ପ୍ରତି କଥାର) ଥାଏ । ଦେବକୀ କୁମାରଙ୍କୁ (ଶ୍ରୀକୃଷ୍ଣଙ୍କୁ) ସ୍ତୁତି କରଇ—ଆହେ ପ୍ରଭୁ, ମୁଁ ଅତ୍ୟନ୍ତ ଆର୍ତ୍ତୀଜନ, ମୋତେ କରୁଣା (ଦୟା) କର । ସ୍ତ୍ରୀ—କାମପୀଡ଼ା ନାଶ ପାଇଁ ବରୁର ପ୍ରତିଉତ୍ତର (ପ୍ରତ୍ୟୁତ୍ତର) ଦେବାକୁ କୀର (ଶୁକପକ୍ଷୀ) ସନ୍ନିଧି ସ୍ଥାୟୀ (ନିକଟ ସ୍ଥାୟୀ) ହୋଇଛୁ, ଆହେ କରୁଣାକର ! (ଦୟାମୟ ହରି) ମୁଁ ଅତି ଆର୍ତ୍ତୀଜନ, କୁମାରକୁ ଆଣି ମୋତେ ଦେବେ କି ? ଏହିପରି ସ୍ତୁତି କରଇ ।"

"କରେ ଗଉରୀପତି ସେବାରେ ପ୍ରେମ ।
ମାଳି କରେ ଆଦର ଜପଇ ନାମ ଯେ ।
ଶିବ ଦେବ ଅଭୟ ଦେବାରେ ଧ୍ୟାୟି ।
ରଣ ପରାଧୀନରେ ଏମନ୍ତ ହୋଇ ଯେ ॥" ୧୦ ॥

ଅର୍ଥ—ପୁରୁଷ—"କରେ ମାଳ ଧରି ଗୌରୀପତି ଶିବସେବାରେ ପ୍ରେମ କରଇ ଏବଂ ଆଦରରେ (ଶିବ) ନାମ ଜପଇ । ଶିବଦେବ (ମଙ୍ଗଳଦାତା ମହାଦେବଙ୍କୁ) ଅଭୟ ଦେବା ନିମିତ୍ତ ଧ୍ୟାୟି (ଧ୍ୟାନ କରଇ) । ରଣପର (କାମର) ଅଧୀନରେ (ବଶରେ) ଏମନ୍ତ ହୁଅଇ ।

Digitized by srujanika@gmail.com

ସ୍ତ୍ରୀ—ଗୋତ୍ର (ଗୌରାଙ୍ଗୀ) ପତିସେବାରେ ପ୍ରେମ ପ୍ରକାଶ କରଇ, କରେ ମାଳା ଧରି ଆଦରରେ ନାମ ଜପଇ । ହେ ଅଭୟଦେ (ଅଭୟ-ବରଦାୟିନୀ ଅମ୍ବିକେ) ବାରେ (ଥରେ) ଶିବ (ମଙ୍ଗଳ) ଦେବ ବୋଲି ଧ୍ୟାୟି (ଧ୍ୟାନ କରଇ) । ସେ ଧଣପରାଧୀନରେ (ପତିପରାଧୀନା ହୋଇ) ଏମନ୍ତ ହୁଅଇ ।

ଦୃଷ୍ଟାନ୍ତ—୧ (ହାସପରିହାସପୂର୍ଣ୍ଣ କଥୋପକଥନ)

କୋଟିବ୍ରହ୍ମାଣ୍ଡସୁନ୍ଦରୀର ହସ୍ତାଙ୍କିତ ପତ୍ର ଜଟିଳା (ଅବଧୂତୀ) ଓ (ଉପାଧ୍ୟାୟୀ) ପୁଷ୍ପକେତୁଙ୍କୁ ଦେବାପାଇଁ ଗଲେ । ସେତେବେଳେ ରାଜପୁତ୍ର ଉପବନରେ ସଖା ସହିତ ଉପସ୍ଥିତ ଥିବା ଦେଖି "କେ କାହୁଁ ଆସିବା ପ୍ରକାରେ" "ସାଧୁଜନୀ ବେନି ହରଷ ବରଷ ଲପନେ" କଥୋପକଥନ କଲେ :—

"ଜଟିଳା ଭଣି କିଂନରେଶନନ୍ଦନୀ-ପାଠ-ପଠିନୀ ପରା ଦିଶ ।
ପଣ୍ଡିତା ବୋଲେ କହିବାରୁ ଅକ୍ଷରେ କାଟି ରଖ ଗୋ ଏକାଦଶ ।
ସେ ଛଳ । ଏ ନଗରେ ତୁମ୍ଭ ନିବାସ ।
ପୁନରୁକ୍ତ ଦୂରୁଁ ଆଗତ କଦର୍ଥେ ଯଦର୍ଥେ କହି ହେବ କିସ ।୧୩।"

ଛା ୨୭, କୋ: ବ୍ର: ସୁ: ।

ଅର୍ଥ—ପ୍ରଥମେ ଜଟିଳା କହିଲା—"ତୁମ୍ଭେ ତ କିନ୍ନରେଶ ନନ୍ଦନୀ (କୁବେରକନ୍ୟା) ର ପାଠପଠିନୀ (ଶିକ୍ଷୟିତ୍ରୀ) ପରା ଦିଶୁଅଛ । ପଣ୍ଡିତା (ଉପାଧ୍ୟାୟୀ) ବୋଇଲା, ତୁମ୍ଭେ କହିବା "କିଂନରେଶ ନନ୍ଦନୀ" ରୁ ଅକ୍ଷରେ (କିଂ) କାଟି ଏକାଦଶ ଅକ୍ଷର ଘେନ (ଅର୍ଥାତ୍ ନରେଶନନ୍ଦନୀର ଆମ୍ଭେ ଶିକ୍ଷୟିତ୍ରୀ ଅଟୁଁ)। ସେ ଛଳିଲା—ଏହି ନଗରେ ତୁମ୍ଭ ନିବାସ ? ପୁନରୁକ୍ତ (ପୁଣି କହିଲା) ଅଥବା ଦୂରୁଁ ଆଗତ କଦର୍ଥେ (କାହିଁକି) ? ଯଦର୍ଥେ (ଯହିଁପାଇଁ) ଆସିଛ, ତାହା କହି କିସ ହେବ ।"

"ତଥାପି କହିବା ତୁମ୍ଭେ କେ କହ, ସେ କହେ ମୁଁ ସ୍ୱର୍ବୈଦ୍ୟଭଗିନୀ ।
ବୃଷ-ଅନ୍ତକ ଅନ୍ତଃପୁର ଅବଳା ବିଭ୍ରମ-ରୋଗ-ବିନାଶିନୀ ।
ଶୁଣି ତା ଭଣିଲା ଆମ୍ଭ ବାଳାମଣି ।
ଅଦ୍ଭୁତେ କି ଦେଖି ଭୂତପତିକୃତ ଭୂତ ଲାଗିଲା ପ୍ରତି ଆଣି ।୧୪।"

ତାତ୍ପର୍ଯ୍ୟ:—

ହେଲେ ମଧ୍ୟ ତୁମ୍ଭେ କିଏ ? ଏକଥା ପଣ୍ଡିତା ପଚାରିବାରୁ ଅବଧୂତୀ କହିଲେ—ମୁଁ ସ୍ୱର୍ବୈଦ୍ୟ ଅଶ୍ୱିନୀକୁମାରଙ୍କର ଭଗିନୀ, ବୃଷଅନ୍ତକ (ଶିବ) ଙ୍କ ଅନ୍ତଃପୁର ମହିଳାଙ୍କ ଉନ୍ମାଦ ରୋଗ ମୁଁ ଭଲ କରେ । ତାହା ଶୁଣି ପଣ୍ଡିତା କହିଲେ—ଆମ ବାଳାମଣି ଭୂତପତିକୃତ (ଶିବଙ୍କ ସୃଷ୍ଟ) ଭୂତ, ଅନ୍ୟାର୍ଥରେ ଭୂତପତିକୃତଭୂତ (କାମ) ଲାଗିଲା ପରି ଜଣାଯାଏ ।

"ବାର ବାର ପରଦରେ ତା ଶୟନ ବର୍ଜି ନାହିଁ ଚନ୍ଦ୍ରବଦନେ ।
ଭଜି ବହିତ ଘନବାର ସୁକେଶୀ ତନୁକୁ ନ ବର୍ଣ୍ଣି ସଘନେ ।
ତପତି । ସଦା ରହିଅଛି ଶାଗରେ ।
ବ୍ୟାଧି ଜନନ କି ଗୋଚର ନୁହଇ କରେ ଚନ୍ଦ୍ରାକୁ ଯେ ବର୍ଦ୍ଧନର ।"

ପ ୧୬, ଛା ୨୭ ।

Digitized by srujanika@gmail.com

**ଅର୍ଥ**—(ଦନ୍ତ୍ୟତାକ୍ଷର) ଦରେ (ଉପ୍ପରେ) ତା ଶୟନ (ନୟନ, ଏଠାରେ 'ଶ'ଚ୍ୟୁତ 'ନ'ଦତ୍ତ) ବର୍ଜି (ତ୍ୟାଗ କରଇ) ଏବେ ସେ ଚନ୍ଦ୍ରବଦନେ (ଚନ୍ଦ୍ର ସଦନେ ଚନ୍ଦ୍ରଶାଳାପୁରେ, ଏଠାରେ 'ବ' ଚ୍ୟୁତ 'ସ' ଦତ୍ତ) ନାହିଁ, ସୁକେଶୀ ତନୁକୁ ଘନବାର (ଘନସାର କର୍ପୂର ଏଠାରେ 'ବ' ଚ୍ୟୁତ 'ସ' ଦତ୍ତ) ବହୁତ (ଅହୁତ ଏଠାରେ 'ବ' ଚ୍ୟୁତ 'ଅ' ଦତ୍ତ) ଭଜ (ଭଜଇ), ସଘନେ (ସପନେ, ସ୍ୱପ୍ନକଥାକୁ ଏଠାରେ 'ଘ' ଚ୍ୟୁତ 'ପ' ଦତ୍ତ) ନ ବୃତ୍ତ, (ନ ମୁହୁ), ଏଠାରେ 'ବୃ' ଚ୍ୟୁତ 'ମୁଁ' ଦତ୍ତ) ନ ପାସୋରଇ । ସଦା ଶଯ୍ୟାରେ ତପନ୍ତ ତାପ ରହୁଛୁ, ଏ କି ବ୍ୟାଧି ଜନନ (ଜନମି—ଜାତ ହୋଇଛୁ, ଏଠାରେ 'ନ' ଚ୍ୟୁତ 'ମ' ଦତ୍ତ) ଗୋଚର ନୁହଇ, ଏଣୁ ସମସ୍ତେ ବଧିରେ ଚିନ୍ତାକୁ କରୁଛନ୍ତି ।"

"କହେ ଏ ପଦ ହରିବ ସପ୍ରୟୋଗେ ଏ ତାପଶାନ୍ତିକ ତାପସୀ ।
ବୃଦ୍ଧି ନଦୀରେ ତୃଣ ପ୍ରାୟେ ଭାସିଲ କଲ୍ପନ ଭାଷିଲ୍ ବିଦୂଷୀ ।
ପୁଣି ସେ । କାହିଁରୁ କଲ ବୋଲ୍ ପୁଚ୍ଛି !
ସ୍ନାନ କାସାକୁ ସହିତ ସପୁଟରୁ ବୋଲନ୍ତେ ବୋଲେ ଭିନ୍ନେ ଅଛୁ ।୧୦।

ତାତ୍ପର୍ଯ୍ୟ :—

ଉପଯୁକ୍ତ ପ୍ରୟୋଗ ଦେଲେ ହେବ—ଏକଥା ଅବଧୂତୀ କହିବାରୁ, ବିଦୂଷୀ କହିଲା—ଯେଉଁ ଉପାୟ କଲେ ମଧ୍ୟ ନଦୀବନ୍ଦରେ କୁଟା ଭାସିଲା ପରି ଭାସି ଯାଉଛୁ; ପଦ୍ମଦଳ, କର୍ପୂର, ପ୍ରୟୋଗ କରାଗଲା । ସେ କହିଲା—ଭିନ୍ନେ ଅଛୁ ।

"କି ଅଛୁ ଗିରେ ଛଳିଲା ଧୀରେ ଯେତ୍ତୁ ସୁନ୍ଦର ନବ ସରସୀତ ।
ତା ହୃଦ ପଦ୍ମ ସଦ୍ମ ପାଣି ପରଶ ଅଙ୍ଗସ୍ଥ ଶୀତରଜ ହୃତ ।
ଶ୍ରବଣେ । ନୃପଜ ମନ୍ତ୍ରିଜ ଏ କଥା ।
ବଦ୍ୟାନଧିକ ସନ୍ନିଧିକି ଯିବାକୁ ସମ୍ମତେ ଟେକ ଗୃଳ ମଥା । ୧୮ ।"

**ଅର୍ଥ**—"ଏ କହିଲା କି ଅଛୁ ? ସେ ଧୀରେ ଗିରେ (ବାକ୍ୟରେ) ଛଳିଲା—(ଶ୍ଳେଷ)—ଯେତ୍ତୁ ସୁନ୍ଦର ନବ ସରସୀ (ପୁଷ୍କରିଣୀ) ତା ହୃଦପଦ୍ମ (ମଧ୍ୟସ୍ଥିତ ପଦ୍ମପତ୍ର) ପାଣି ପରଶ (ପାଣିଛୁଆଁ ସଦ୍ମା) ଅଙ୍ଗସ୍ଥ ଅଙ୍ଗଦେଶସ୍ଥିତ) ଶୀତରଜ (କର୍ପୂର) ହୃତ ହେବ ।

ଅନ୍ୟାର୍ଥ—ସୁନ୍ଦରୀ ଯେଉଁ ସୁନ୍ଦରଠାରେ ନବ ସରସିତ (ନୂତନେ ରସିଛୁ) ତାହାର ହୃଦପଦ୍ମ ସଦ୍ମା, ତା ପାଣିପରଶ (ହସ୍ତସ୍ପର୍ଶ) ଏବଂ ଅଙ୍ଗସ୍ଥ (ଦେହସ୍ଥିତ) ଶୀତରଜ (କର୍ପୂର) ହୃତ ହେବ । ଏ କଥା ଶୁଣି ନୃପଜ (ରାଜପୁତ୍ର) ଓ ମନ୍ତ୍ରିଜ (ମନ୍ତ୍ରୀପୁତ୍ର) ବଦ୍ୟାନଧିକ ସନ୍ନିଧିକି (ସମୀପକୁ) ଯିବାକୁ ସମ୍ମତେ (ସମ୍ମତିସୂଚକ) ମଥା ଟେକି ଗୃଳଲେ ।"

"ସେ ଯାଇ ବୋଇଲା କି ଭାଗ୍ୟ ହୋଇଲା ସର୍ବଜ୍ଞା ବିଜ୍ଞା ତ ଆଗତ ।
ନ ଥିଲା ନାହିଁ ନୋହିବ ଚନ୍ଦ୍ରରୂପେ ଦେଖିଲା ଆମ୍ଭ ନୃପସୁତ ।
ଚନ୍ଦ୍ରରେ । କଳେବର ନର୍ଶ୍ୱେ ନିର୍ମିତ ।
ଦ୍ୱିତୀୟା ଚତୁର୍ଥୀ ଅଷ୍ଟମୀ ପୂର୍ଣ୍ଣିମୀ ଚନ୍ଦ୍ର ଏକାବେଳେ ଉଦିତ ।" ୧୯ ।

ଛା ୨୩, କୋ: କୃ: ସୁ:

Digitized by srujanika@gmail.com

ଅର୍ଥ—"ସେ ଯାଇ ବୋଇଲେ କି ସ୍ୱର୍ଗ ହୋଇଲା ସବଂଶ (ହପାଧ୍ୟାୟୀ) ବିଷ୍ଣୁତ (ଅଶେଷରୂପେ-ଜାଣି) ଆଗତ । ଏପରି ରୂପ ନ ଥିଲା, କାହିଁ ବା ନୋହିବ । ଅନ୍ୟ ନୃପସୁତଙ୍କୁ ଚଳରୂପେ (ଆଶ୍ଚର୍ଯ୍ୟରୂପେ) ଦେଖିଲେ । କଳେବର (ରାଜପୁତ୍ରଙ୍କର ଦେହ) ଚନ୍ଦ୍ରରେ ନିଷ୍ପନ୍ନ ନିର୍ମିତ । ଯେଣୁ ଏହାଙ୍କ ଦେହରେ ଦ୍ୱିତୀୟା ଚତୁର୍ଥୀ, ଅଷ୍ଟମୀ ଓ ପୂର୍ଣ୍ଣିମା ଚନ୍ଦ୍ର ଏକାବେଳକେ ଉଦିତ ହୋଇଛନ୍ତି । ଦ୍ୱିତୀୟା ଚନ୍ଦ୍ର ପରି ଚିବୁକ, ଚତୁର୍ଥୀ ଚନ୍ଦ୍ର ପରି ଗଣ୍ଡ, ଅଷ୍ଟମୀ ଚନ୍ଦ୍ର ପରି ଭାଲ, ପୂର୍ଣ୍ଣିମା ଚନ୍ଦ୍ର ପରି ମୁଖମଣ୍ଡଳ) ।"

ଦୃଷ୍ଟାନ୍ତ—୨ (ହାସପରିହାସପୂର୍ଣ୍ଣ କଥୋପକଥନ)

"'ଚମ୍ପାବତୀ' ରେ ବାରବର୍ଷଯାଏ ବର୍ଷା ନ ଥିଲା । ସେଠାରେ ଋଷ୍ୟଶୃଙ୍ଗଙ୍କ ପାଦ ପଡ଼ିଲେ ବର୍ଷା ହେବ—ଏହି କଥା ଥିବାରୁ, ତାଙ୍କୁ ଆଣିବା ପାଇଁ ବେଶ୍ୟାଶ୍ରେଷ୍ଠା ଜରତା ଦ୍ୱାଦଶ ବେଶ୍ୟା ସହିତ ତାହାଙ୍କ ଆଶ୍ରମକୁ ଗଲେ । ନିମ୍ନମତେ ସେମାନଙ୍କ କଥୋପକଥନ ହୋଇଲା—

ବଟପୀକି ମୁନିମଣି ଆଉକି ଯେ ଥିଲେ ।
ବଟପୀକି ମୁନିମଣି ସମ୍ଭାବନା କଲେ ଯେ ।
ବସାଇ ଆସନେ ପୁଚ୍ଛେ କାହିଁ ତପୀଗଣ ।
ବସ ମଠ କାହିଁ, କାହିଁ ମଠ ନ ଜାଣେ ସେ ।
ବଖାଣ କିଂ କି ମନ୍ତ୍ରକୁ ଜପ କରି ଜାଣ ।
ବିଷ୍ଣୁ ଶିବ ସେବା କାହା ସ୍ତବରେ ନିପୁଣ ହେ ।
ବିକାଶି ହାସକଟାକ୍ଷ ଚାଳିଣ ରସିକା ।
ବୋଇଲେ ଗେଲଇ ହୋଇ ଫୁଲାଇ ନାସିକା ଯେ ।
ବନେ ତୁମ୍ଭେ ଭ୍ରମ, ଆମ୍ଭେ ବନୀରେ ଖେଳୁଁ ।
ବନୌକା ତୁମ୍ଭେ, ବନିତା ଆମ୍ଭେଟି ଏ ବଣୁ ଯେ ।
ବୋଲିବାର ବ୍ରହ୍ମମନ୍ତ୍ର ଅଦ୍ୟବର୍ଣ୍ଣ ଭିନ୍ନ ।
ବିସର୍ଗ ଚତୁର୍ଥ ବର୍ଣ୍ଣ ଏକ କରି ଘେନ ଯେ ।
ବସନ୍ତ ଆମ୍ଭ ଦେବତା ଶମ୍ଭୁ ହୃଦସ୍ଥଳ ।
ବକ୍ଷୋରୁହ ଉରେ ଯୋଡ଼ି ଶୀଘ୍ରେ କଲେ କୋଳ ଯେ ।
ବିଭୁଲ ଆମ୍ଭ ଦେଶର ବୋଲି ତତ୍ପର ।
ବୋଲି ଦେଲେ ଚୁମ୍ବି କାମମୋହିନୀ କର୍ପୂର ଯେ ।
ବାସାନ୍ତର କରି ଋଷି ଦେଖି, ପୟୋଧର ।
ବୋଇଲେ ହେ ହର-ହର ! ମୋତେ କୃପା କର ହେ ।
ବିଜ୍ଞାନ ବେଦ ଅର୍ଥକୁ ବୁଝି ସେ ବଚନେ ।
ବିଧାନ କଲେ ମୁଖରେ ଚୁମ୍ବନେ ଚୁମ୍ବନେ ଯେ ।
ବନଫଳ କହି ପକ୍ୱ କଦଳୀ ଭୁଞ୍ଜାଇ ।
ବାଣ ପୟଃଫେଣୀ ପୟଃପାନ ସେ କରାଇ ଯେ ।
ବୋଧି ଚିତ୍ତ ଏ ଆମ୍ଭ ନର୍ତ୍ତର ନୀର କହି ।
ବୃଷ୍ୟକାନ୍ତା କାମରାଜ ଅଧାମ ପିଆଇ ଯେ ।
ବାଢ଼ିଲେ ଯେ ଘୃତପକ୍ୱ ଆମିକ୍ଷା ଅଗ୍ରତେ ।
ବର୍ଣ୍ଣି ପୁଚ୍ଛେ କି ଭୋଜନ କାର ଯେ ବୋଲନ୍ତେ ।

Digitized by srujanika@gmail.com

ବିପ୍ର ତୁମ୍ଭେ, ଅମ୍ଭେ ଯାହା ବୋଲଇଁ ତା ଶୁଣ ।
ବିପ୍ରଲବ୍ଧା ଘେନି ଅଷ୍ଟ ନାୟିକାରେ ନିପୁଣ ଯେ ।
ବାଳକାଏ ବୋଲୁଁ ମୁନି ଭୁଞ୍ଜି ସ୍ୱାଦ ପାଇ ।
ବଟୁ ! ତୁମ୍ଭ ତପ ଧନ୍ୟ ବୋଲି ପ୍ରଶଂସଇ ଯେ ।
ବଟୁ ଯାହା ବୋଇଲ ପ୍ରମାଣ ଅନୁସାରେ ।
ବାତ୍ସ୍ୟାୟନ ଶାସ୍ତ୍ରପଢ଼ା ଗୁରୁ ଛନ୍ତି ଦୂରେ ଯେ ।

ପ ୭୨, ଛ ୪, ବୈ: ବି:

ତାତ୍ପର୍ଯ୍ୟ:—

ଖଣ୍ଡେ ଦୂରରେ ରହି ମଧୁର ଗାନ କରିବା ପରେ ଦ୍ୱାଦଶ ବେଶ୍ୟା ଋଷ୍ୟଶୃଙ୍ଗଙ୍କର ଆଶ୍ରମକୁ ଗଲେ । ଋଷି ସେମାନଙ୍କୁ ତପସ୍ୱୀ ମନେ କରି ଅତ୍ୟନ୍ତ ସମ୍ମାନସହକାରେ ବସିବାପାଇଁ ଆସନ ଦେଲେ, କହିଲେ—ହେ ତାପସଗଣ ! ତୁମ୍ଭମାନଙ୍କ ମଠ କେଉଁଠାରେ ? କେଉଁ ମନ୍ତ୍ର ତୁମ୍ଭେମାନେ ପୁରଶ୍ଚରଣ କର ? ତୁମ୍ଭେ ଶୈବ ନା ବୈଷ୍ଣବ ? ସେମାନେ ଉତ୍ତର ଦେଲେ—"ତୁମ୍ଭେ ବନରେ ବାସ କର, ଅମେ ବିଳାସ କରୁଁ ବଗିଚାରେ (ପୁଷ୍ପବାଟିକାରେ); ତୁମ୍ଭେ ବନୌକା (ଋଷି) ଆମ୍ଭେ ବନିତା ଅଟୁଁ ; 'ତୁମ୍ଭେ ରାମାୟ ନମଃ' ମନ୍ତ୍ର ଜପ କର, ଆମ୍ଭେମାନେ 'କାମାୟ ନମଃ' ମନ୍ତ୍ର ଜପ କରୁଁ ।" ତତ୍ପରେ କାମମୋହିନୀ କହିଲା—ଆମ୍ଭ ଆରାଧ୍ୟ ଦେବତା ଆମ୍ଭ ବକ୍ଷସ୍ଥଳରେ ବିରାଜିତ ଅଛନ୍ତି, ଆମ ଦେଶର ଭସ୍ମ କହି ସେ କର୍ପୂର ଚୂର୍ଣ୍ଣ ଋଷିଙ୍କ ଦେହରେ ବୋଳି ଦେଲା । ଯେତେବେଳେ ଋଷିଙ୍କର ପୟୋଧର ପ୍ରତି ଦୃଷ୍ଟି ପଡ଼ିଲା, ସେ ଭାବିଲେ—ଯଥାର୍ଥରେ ସ୍ୱୟଂ ଶମ୍ଭୁ ଏଠାରେ ବିରାଜିତ । ଭକ୍ତିବିହ୍ୱଳ ହୋଇ "ବୋଇଲେ ହେ ହରନ୍ଦର ! ମୋତେ କୃପା କର ହେ ।" । ଅନନ୍ତର ବେଶ୍ୟାମାନେ ତାଙ୍କୁ କଦଳୀ, ଘୃତପକ୍ୱ, ଆମିକ୍ଷା, ବାଣପସ୍ତଃପେଟୀ ପସ୍ତଃ ଖାଦ୍ୟପାନ ସ୍ୱରୂପ ଦେଲେ । 'ଭୋଜନ କର ବୋଲନ୍ତେ' ଋଷି ପଚାରିଲେ—ତୁମ୍ଭର କି ବର୍ଣ୍ଣ ? ବାରବିଳାସିନୀଗଣ କହିଲେ—ତୁମ୍ଭେ ବିପ୍ର, ଆମ୍ଭେମାନେ ବିପ୍ରଲବ୍ଧା ପ୍ରଭୃତି ନାୟିକାଙ୍କ ଲକ୍ଷଣରେ କୁଶଳ । ସେମାନଙ୍କୁ ବ୍ରାହ୍ମଣ ଭାବି ଋଷି ଭୋଜନ କଲେ । "ତାହା ଭୁଞ୍ଜି ସ୍ୱାଦ ପାଇ" ମୁନି ପ୍ରଶଂସା କରି କହିଲେ—"ହେ ବଟୁ ! ( ହେ ବ୍ରାହ୍ମଣମାନେ ! ) ତୁମ୍ଭ ତପ ଧନ୍ୟ ।" ତାହା ଶୁଣି ସେମାନେ କହିଲେ—ଆମ୍ଭେମାନେ ବଟୁ ନୋହୁ, ବଟୁଂ (ପୁରୁଷଙ୍କୁ ବଟୁ ଅର୍ଥାତ୍ ଠକୁଁ) ।

କବି ଋଷ୍ୟଶୃଙ୍ଗ ଓ ବାରବିଳାସିନୀମାନଙ୍କ କଥୋପକଥନ ଅତ୍ୟନ୍ତ କୌତୂହଳାବହ ଓ ଚିତ୍ତାକର୍ଷକ ଭାବରେ ଚିତ୍ରଣ କରିବା ପରେ ସର୍ବସାଧାରଣଙ୍କୁ ସମୟୋଚିତ ଉପଦେଶ ଦେବାକୁ ଭୁଲି ନାହାନ୍ତି । ସେ ଋଷ୍ୟଶୃଙ୍ଗଙ୍କ ପିତା ମହର୍ଷି ବିଭାଣ୍ଡକଙ୍କ ମୁଖରେ କହନ୍ତି :—

"ବନିତା ସଜଳ କଥା କିତବେ ଲକ୍ଷିତ ।
ବିଶ୍ୱବଶ୍ୟ-ଚକ୍ଷୁ ସେ ଭକ୍ଷନ୍ତି ତପିସ୍ତ ଯେ ।
ବ୍ୟବହାର କଲେ ନଷ୍ଟେଁ ତାହାଙ୍କ ସଙ୍ଗରେ ।
ବାଞ୍ଛୁ ହେବୁ ଅଗ୍ନି ପ୍ରୀତି ପତଙ୍ଗ ପ୍ରକାରେ ଯେ ।"

ପ ୪୪, ଛ ୪, ବୈ: ବି: ।

Digitized by srujanika@gmail.com

### ଦୃଷ୍ଟାନ୍ତ—୩ ( ମିଶ୍ରହାସଗର୍ଭକ କଥୋପକଥନ )

**ଲାବଣ୍ୟବତୀର ସଖୀଗଣଙ୍କ ସହ ଉପବନ ବିହାର:—**

“ନେ ତାହାକୁ କହେ ମୋହପାଇଁ ସଖି ରଖିଥିବୁ ଏକା କରୁଣା ।
ଦେବବଲ୍ଲଭକୁ ଲଭିବାକୁ ତୋତେ ବାଧିତା କଲିନ ଫୁରୁଣା ।
ସେ ଶୁଣି । ବୋଇଲା ଏ କଥା ସ୍ଫୁଟ ରେ ।
ଖୋଜିଲେ ନ ପାଇ ମୁଁ ବନ୍ଧୁଜୀବକୁ ପଶିଲି ବସନ୍ତଦୂତରେ ।

ପ; ୧୨, ଛନ୍ଦ, ଲା: ବ: ।

କେତେ ସ୍ୱରୂପରେ ତରୁଣୀଏ କହେ ସହଚରୀ ମୁଖ ଅନାଇଁ ।
ବଣ କରବୀରେ ହୋଇଲ ହସ୍ତରୁ ମଳି ମଳି ହୋଉ କିମ୍ପାଇଁ ।
ସେ ବୋଲେ । ଭଙ୍ଗୀରେ ଆଳକ ଚେତାଇ ।
ଝଆଳୀ ହେଲାଣି ଦେଖିଲି ଉପରୁ ପଲାଶ ପାଟଣ ଯା ଗମଇଁ । ୧୩ ।

ଇତ୍ୟାଦି, ଇତ୍ୟାଦି—ଲା: ବ:

ଶବ୍ଦ **ଅର୍ଥ**—କରୁଣା—ଦୟା, କରୁଣା ଫଳ । ଦେବବଲ୍ଲଭ—ଇନ୍ଦ୍ର, ଇନ୍ଦ୍ରପଦ ସ୍ୱାମୀ, ପୁନ୍ନାଗ-ଗଛ । ଫୁରୁଣା—ଆନନ୍ଦ । ବସନ୍ତଦୂତ—ବସନ୍ତ ଦୂତ, ଫୁଲବିଶେଷ । କରବୀର—କଣିଅର ଫୁଲ । ଝଆଳୀ—ଫୁଲବିଶେଷ, ଝର୍ଜିତ ହେବା ଆଳି ।

ତାତ୍ପର୍ଯ୍ୟ:—ଇନ୍ଦ୍ରପଦ ପଦ୍ମ ପାଇବା ପାଇଁ ଦଇବ ଘଟସୂତ୍ର କଲାଣି, ମୋ ପ୍ରତି ଦୟା ରଖିଥିବୁ । ଜଣେ ସଖୀର ଏ କଥା ଶୁଣି ସେ କହିଲା—ପ୍ରାଣବନ୍ଧୁଙ୍କୁ ଖୋଜି ପାଉ ନାହିଁ, ଅନ୍ତ୍ର୍ୟାରେ ପଡ଼ିଛୁ । ଜଣେ ବିଚକ୍ଷଣା ସଖୀ କହିଲା—କରବୀରେ— କଣିଅର ଫୁଲରେ ବଣ ହେଲା ଉପରୁ, ମଲ୍ଲୀଫୁଲ ଲେଉଡ଼ ହେଉଛୁ କାହିଁକି ? ଅନ୍ୟାର୍ଥରେ, ଜଣେ ବୀରପୁରୁଷରେ ବଣ ହେଲା ଉପରୁ ମଳ ମଳ ହେଉଛୁ କାହିଁକି ?

### ଦୃଷ୍ଟାନ୍ତ—୪ ( ପରିହାସମୟ କଥୋପକଥନ )

ବ୍ରହ୍ମା ଓ ଦ୍ୱାସ୍ଥ

“......ବିଶ୍ୱବଶ୍ୟ ଶେଷ ଏହି କାଳେ ।
ବିରଞ୍ଚି ନାରଦ ତୁମ୍ବୁରୁ ଲଙ୍କାରେ ସେବା ବିରଚିବାକୁ ଆସିଲେ ସେ ।
ବେଗରେ । ୧୨ ।
ବେଦ ବୀଣା ସ୍ତୁତି ଆରମ୍ଭଣେ । ବୋଲେ ଦ୍ୱାଃସ୍ଥ କେଉଁ ବଡ଼ପଣେ ।
ବିଷୟ ନ ଜାଣି ହୁଅ କଳକଳ । ରହ ସକଳେ ମଉନେ କ୍ଷଣେ ହେ ।
ବିବୁଧେ । ୧୩ ।
ବିଶେ କି ବୋଲୁଁ ବୋଲେ ଦ୍ୱିଜତ । ବ୍ୟାଧି ରାଜା ଅନ୍ତର୍ଗତେ ଜାତ ।
ବୈଦେହୀ ପାତକ ରସରତ୍ନାକର । ବିରଚନକୁ ଅର୍ଜିତ ଚିତ୍ତ ହେ ।
ବିବୁଧେ । ୧୪ ।
ବ୍ରହ୍ମା ବୋଲେ ତେବେ ସନ୍ଧି ପାତ । ବିନାଶନେ ତେଜ ହୁଏ ସତ ।
ବିହିଲ ଭଙ୍ଗିତ ନ ବୁଝି ଇଙ୍ଗିତ । ଜାଣ ପଦ୍ୟ ସଙ୍ଗୀତ ସାହିତ୍ୟ ହେ ।
ବିଧାତଃ । ୧୫ ।”

ଛାନ୍ଦ ୫, ବୈ: ବି: ।

Digitized by srujanika@gmail.com

ତାତ୍ପର୍ଯ୍ୟ—ରଜନୀ ପ୍ରଭାତ ହେଉଁ ହେଉଁ ରାବଣର ସେବା ପାଇଁ ବ୍ରହ୍ମା, ନାରଦ ଓ ତୁମ୍ବୁରୁ ଲଙ୍କାରେ ପହଞ୍ଚି ଯଥାକ୍ରମେ ବେଦପାଠ, ବୀଣାବାଦନ ଓ ସ୍ତୁତିପାଠ ଆରମ୍ଭ କଲେ । ଦ୍ୱାରୀ ଧାଇଁ ଆସି କହିଲା—ବର୍ତ୍ତମାନ ସମସ୍ତ କ'ଣ କରୁଛ ନ ଜାଣି ଭଡ଼ ଭଡ଼ ହେଉଛ କାହିଁକି ? ଚୁପ୍ ରହ । ବଶେ କ—ବେଦସ୍ରଷ୍ଟା କଣ ? ଏହି କଥା ବ୍ରହ୍ମା ପଚାରିବାରୁ ଦ୍ୱାଃସ୍ଥ—ଦ୍ୱାରୀ କହିଲା—ବର୍ତ୍ତମାନ ରାବଣଠାରେ ଅତ୍ୟନ୍ତ ବ୍ୟାଧି ଜାତ ହୋଇଛି; ବୈଦ୍ୟେ ପାଚନ—ପିପ୍ଳଳୀକ୍ୱାଥରେ ରସରତ୍ନାକର ନାମକ ବଟିକା (ବରଚନ କରି) —ମିଶ୍ରଣ କରି ଖାଇବା ପାଇଁ ତାଙ୍କର ଇଚ୍ଛା, ଅନ୍ୟ କଥାରେ ତାଙ୍କର ବର୍ତ୍ତମାନ ଇଚ୍ଛା ନାହିଁ । ତାହା ଶୁଣି ବ୍ରହ୍ମା କହିଲେ, ତେବେ ରାବଣର ସନ୍ନିପାତ ବ୍ୟାଧି ହେଲାଣି, (ନାନା-ଅଶନେ) ବାସ୍ତୁକ ଔଷଧ ପାନେ ନ ବାଳବାକୁ ରୋଗ ବଢ଼ି ବଢ଼ି ଯାଉଛି ।

ଇଙ୍ଗିତାର୍ଥ—ରାବଣର ଶଂନପାତ ଅର୍ଥାତ୍ ମଙ୍ଗଳ ନପାତ ହେଲା; ତାହାର ଶନ୍ନିପାତ-ବନାଶନେ ସ୍ୱବଂଶ ଧ୍ୱଂସ ପାଇଁ ଚନ୍ଦ୍ର ବଳଲଣି । ତାହା ଶୁଣି ଦ୍ୱାରୀ କହିଲା—ହେ ବିଧାତଃ ! ତୁମ୍ଭେ ପର ପାଠ ଶାସ୍ତ୍ର ଜାଣିଛ, ମୋ କଥା ନ ବୁଝି ମୋତେ ଅଟ୍ଟା କରୁଛ କଣ ?

ବେଦପଢ଼ ବ୍ରହ୍ମାଙ୍କୁ ସାଧାରଣ ଜଣେ ଦ୍ୱାରୀ ଟାଣ ଟାଣ କଥା କହି ଦେବାରୁ କିଞ୍ଚିତ୍ କୁଣ୍ଠିତ ନୁହେ । ଶାସକମାନଙ୍କ ଚାମୁଆମାନେ ବା ପାଖଲଗା ଲୋକେ ସାଧାରଣତଃ ବାହାପିଆ କଥା କହନ୍ତି । ତାହା ସର୍ବସାଧାରଣଙ୍କର ଅସହ୍ୟ ହୋଇ ଉଠେ । ଏକଥା କବି ପ୍ରାଞ୍ଜଳ ଭାଷାରେ ପ୍ରକାଶ କରି ଶାସକ ଓ ଶାସିତ ପରମ୍ପରାକୁ କହନ୍ତି—ସାବଧାନ । ରାୟ ରାଧାନାଥ କହନ୍ତି—"ସବୁ ଦେଶେ ସବୁକାଳେ ଉଚ୍ଚ-ମୁହାଁ, ହୋଇଥାନ୍ତି ସିନା ଶ୍ରୀରାମୁ ଚାମୁଆ ।"

## ସପ୍ତମ

ଲଙ୍କାଦେବୀ ସ୍ୱପ୍ନରେ ରାବଣକୁ କହିଲେ—"ସୀତାଙ୍କଠାରେ ରାମଚନ୍ଦ୍ରଙ୍କ ସନ୍ଦେଶ ଆସି ପହଞ୍ଚିଲାଣି, ସାବଧାନ !" ରାବଣ ଉଠିଲା । "ବାହାରିଲା ସେ ଅଶୋକବନ । ବହୁତ ଦନ୍ତୁରୀ ଅଙ୍କାର ଘଉଡ଼ି ଶୁଭେ ମଣିମା ମଣିମା ସ୍ୱନ ସେ । ବୀଥିରେ ।" ସୀତାଙ୍କ ନିକଟରେ ପହଞ୍ଚି ରାବଣ ନାନା ଭ୍ରଷ୍ଟ କଥା କହିଲା । ସେ ସେଥିକି ଭ୍ରୂକ୍ଷେପ କଲେ ନାହିଁ । ତାହା ତାଙ୍କର କଷ୍ଟଦାୟକ ହେଉଥିବା ବୁଝିପାରି ଶାପଭୟରେ ସ୍ଥାନ ଛାଡ଼ି ଚାଲିଗଲା । ଧମକ ଚମକ ଦେଇ ନାନା ଭୟ ଦେଖାଇବାକୁ ମାତ୍ର ସେ ରାକ୍ଷସୀମାନଙ୍କୁ ଆଦେଶ ଦେଇ ଯାଇଥିଲା । ସେମାନେ ସେଥିରେ ତ୍ରୁଟି କଲେ ନାହିଁ । "ବୋଲୁ ବାହୁଡ଼ିଣ ନିଶାଚରୀ । ବେଢ଼ି ଭୟଙ୍କର ରୂପ ଧରି । ବାଣ୍ଟି ପଲ ପଲ କରି ଏହା ପଲ ଶିରେ ଉପଲ ତାଡ଼ ଉଚ୍ଚାରି ସେ । ବାମାଏ ।" ପଥର ଛେଚ ତାକୁ ମାର, ତାର ମାଂସ ପଲ ପଲ କରି ବାଣ୍ଟି ଖାଇବା—ଧମକଚମକଦ୍ୱାରା ବଶ କରିବା ପାଇଁ ଏହିପରି ନାନା କଥା ସେମାନେ କହିଲେ । ହନୁମାନ ସେତେବେଳେ ସେହି ଅଶୋକବନରେ ଭ୍ରମରରୂପେ ଥାଇ ସକଳ କଥା ଦେଖୁଥାନ୍ତି । ରାକ୍ଷସୀମାନଙ୍କ ମଧ୍ୟରୁ ଜଣେ କହିଲା:—

"ବଶ ନୋହେ ଏ ରାଜାଧିରାଜେ । ବଡ଼ପଣ ଦେଖାଉଛୁ ଧୈର୍ଯ୍ୟେ ।
ବାୟସୀ ହଂସ ପ୍ରେୟସୀ ଯୋଗ୍ୟ କାହିଁ ବର୍ଣ୍ଣ ଅସିତ ସିତ କି ଭଜେ ଗୋ ।
ବାମାଏ ।"

ତାତ୍ପର୍ଯ୍ୟ—ସୀତା ରାଜାଧିରାଜଠାରେ ବଶ ନ ହୋଇ ସତୀସ୍ୱଭାବ କେବଳ ଦେଖାଉ ହେଉଛି, କହୁଛି—"ମୁଁ ଏପରି ଧୈର୍ଯ୍ୟଶୀଳା ଯେ ପ୍ରାଣ ସିନା ଯିବ, ପାତିବ୍ରତ୍ୟ ଛାଡ଼ିବ ନାହିଁ ।" କଳା କେବେ ଧଳା ହୁଏ ନାହିଁ କାଉ ହଂସବଧୂ ହୋଇ ପାରେ ନାହିଁ । ସେ ଠିକ୍ ସେହିପରି ।

Digitized by srujanika@gmail.com

"ବ୍ୟବହାର ଏହା ଶୁକ ପରି । ବିଳସନ୍ତି ସୁବର୍ଣ୍ଣ ପଞ୍ଜରେ ।
ବନ ଭବନ ଭାବନା ଏହା କରେ । ଭଲ ପଢ଼ାଇଛୁ ଜଟାଧାରୀ ଗୋ ।
ବାମାଏ ।"

ତାତ୍ପର୍ଯ୍ୟ—କୌଣସି ରାକ୍ଷସୀ ସୀତାଙ୍କୁ ଲକ୍ଷ୍ୟ କରି କହିଲା—"ଏହାର ଆଉର ବ୍ୟବହାର ଶୁଆ ପରି । ସୁନା ପଞ୍ଜୁରୀରେ ଥିଲେ ମଧ୍ୟ ତାର ବଣ ବନସ୍ତ ମନେ ପଡ଼େ, ସୁନା ପିଞ୍ଜରା ରୁଚେ ନାହିଁ । ସୀତାଙ୍କୁ ସେହିପରି କନକଗଡ଼ ରୁଚେ ନାହିଁ । ସେହି ବଣ, ସେହି ରାମ ନାମ ମନେ ପଡ଼ୁଛି କେବଳ । ସେହି ଜଟାଧାରୀ ରାମ, ଶୁଆକୁ ରାମ ନାମ ପଢ଼ାଇଲା ପରି ଏହାକୁ ଏପରି ପଢ଼ାଇଛି ଯେ, ସେ କ୍ଷଣକ ପାଇଁ ମଧ୍ୟ ତାହା ଭୁଲେ ନାହିଁ ।

"ବୋଲୁଅଛୁ ଏହା ରାମ ରାମ । ବନ୍ଧ ମୋକ୍ଷଣେ ହେବ କି କ୍ଷମ ।
ବିବେକ ପ୍ରଚଣ୍ଡ ପକ୍ଷୀ, ବନଗୁଣ୍ଡ, ବାଇ ପଶୁ ଗୁରୁ ଏ ସୁଷମ ଗୋ ।
ବାନ୍ଧବୀ ।"

ତାତ୍ପର୍ଯ୍ୟ—ଜଣେ ରାକ୍ଷସୀ କହିଲା—କେବଳ ରାମ ରାମ ନାମ, ଘୋଷି ହେଲେ ସେ କଣ ବନ୍ଧନରୁ ରକ୍ଷା ପାଇ ପାରିବ ? ପକ୍ଷୀ, ପଶୁ, ବାବାଜି, ବାୟା—ଏଇ ଗୁରୁକୁଳ ସମାନ । ଭଲ ମନ୍ଦ ଏମାନେ ବୁଝି ପାରନ୍ତି ନାହିଁ । ସୀତା ତ ବଣରେ ବୁଲିବା ଲୋକ, ସେ ଭଲ ମନ୍ଦ ବୁଝିବ କଣ ?

"ବୋଧ ନିକଟା ତାହାଙ୍କ ରହି । ବୋଲ ସୀତା ସିତାଂଶୁ-ସୁମୁଖୀ ।
ବରୁଣ ଦିଗେ କି ତରୁଣ ଅରୁଣ ଉଦେ ହୋଇଛୁ କେ ଅଛ ଦେଖି ଗୋ ।
ବାମାଏ ।"

ତାତ୍ପର୍ଯ୍ୟ—ବିକଟା ରାକ୍ଷସୀ ନାନା ହିତକଥା କହି ରାକ୍ଷସୀମାନଙ୍କ ମୁଖ ବନ୍ଦ କଲା । ଅନନ୍ତର ଚନ୍ଦ୍ରବଦନା ସୀତା କହିଲେ—ଆଲୋ ବାମାମାନେ, ପଶ୍ଚିମରେ କେବେହେଲେ ବାଲସୂର୍ଯ୍ୟ ଉଦିତ ହେବାର ତୁମ୍ଭେମାନେ ଦେଖିଛ କି ? ତାହା କେବେ ଘଟେ ନାହିଁ । ସେହିପରି ରାବଣଠାରେ ଅନୁରକ୍ତ ହେବା ମୋ ପକ୍ଷରେ କେବେ ସମ୍ଭବ ହେବ ନାହିଁ ।

"ବିକଶିଛି କି ଶିଖରୀ ଶିଖେ । ବିନା ଜଳରେ ପଦ୍ମ ତା ସୁଖେ ।
ବନ୍ଧନ ଆଣାବନ୍ଧରେ କି କୁଞ୍ଜର, ଶୁଣା ପ୍ରବନ୍ଧ କି ମୂର୍ଖମୁଖେ ଗୋ ।
ବାମାଏ ।"

ତାତ୍ପର୍ଯ୍ୟ—ସୀତା ପୁଣି କହିଲେ—ଆଗୋ ନାରୀମାନେ ! ଜଳଶୂନ୍ୟ ପର୍ବତଶିଖରରେ ପଦ୍ମ ଫୁଟେ ନାହିଁ, ହାତୀ ବୁଢ଼ିଆଣୀ ସୂତାରେ ବନ୍ଧାଯାଇ ପାରେ ନାହିଁ, ମୂର୍ଖମୁହଁରେ ଶାସ୍ତ୍ରକଥା ଶୁଣାଯାଏ ନାହିଁ ।

"ବଳି ପଞ୍ଚିବା ଏମାନ ହେବ । ବଳଦେଖି ଚନ୍ଦ୍ର କି ଟଳିବ ।
ବିନା ଶ୍ରୀରାମରେ କୋଟିଏ କାମରେ ଏ ତ ପାମରେ କି ସମ୍ଭବିବ ଗୋ ।
ବାମାଏ ।"

Digitized by srujanika@gmail.com

ତାତ୍ପର୍ଯ୍ୟ—ସୀତା କହୁଲେ—ଆଗୋ ଲଙ୍କାରାକ୍ଷସୀମାନେ ! ଅସମ୍ଭବ କଥାମାନ ସମ୍ଭବ ହେଲେ ଅବା ହୋଇପାରେ, ପଶ୍ଚିମରେ ସୂର୍ଯ୍ୟ ଉଦୟ ହେଲେ ଅବା ହୋଇ ପାରନ୍ତ, କିନ୍ତୁ ଏହି ଯେ ବୈଦେହୀ, ଶ୍ରୀରାମ ବିନା ଅନ୍ୟ କାହା କଥାମାନ ମନରେ କିଞ୍ଚିତ୍ ସ୍ଥାନ ଦେଇ ପାରିବ ନାହିଁ । କୋଟି କନ୍ଦର୍ପ ମୂର୍ତ୍ତିମନ୍ତ ହୋଇ ବରେ କଲେ ମଧ୍ୟ ସୀତାର ମନ ସେଥିରେ ଟଳିବ ନାହିଁ । ରାବଣ ତ ନୀଚ ଲୋକ, ତାହାଠାରେ ତାହାର ମନ ଭୁଲିବା କିଣ ସମ୍ଭବ ?

ସୀତାଦେବୀଙ୍କ ବେଣୀରେ ତ୍ରିବେଣୀର କଳ୍ପନା—

"ବିଶ୍ୱସୃଜକ ଏକ କରିଛୁ ଧିର ଶୋଭାଚୟକୁ
ବିଶ୍ୱକେତୁ କେତୁ ବାନ୍ଧିଲ ଜାଣି ଜଗତ୍ଜୟକୁ ।
ବେଣୀ ଗ୍ରନ୍ଥିରେ ଶୁକଳ ରଙ୍ଗ ଫୁଲେ ଘଟନ
ବେଣୀ ତ୍ରିପୁଷ୍ପ କି ନଭରୁ ହୋଇଅଛୁ ପତନ ।
ବନ୍ଧା ସୁମନରେ ଜୁଡ଼ା ଯେ ଧୈର୍ଯ୍ୟ ଉଜୁଡ଼ା ସେହୁ
ବନ୍ଧା ସୁମନକୁ ପକାଇ ନେବ କେ ମୁକୁଳାଇ ।" ବୈ: ବି: ।

ସନ୍ଧ୍ୟାର କାର୍ଯ୍ୟ—

"ବୋଇଲ ତାମସୀ ଯେ ସେ ବାହାର
ବଢ଼ାଇ ଦେଇ ସନ୍ଧ୍ୟା ଛଳେ କର ।
ବାରୁଣୀ କୁଣ୍ଡେ ବୁଡ଼ାଇ ଇନକୁ
ବିନାଶ କରିବା ଇଚ୍ଛି ଦିନକୁ ।
ବାଲ ଧରି କିବା ନେଇ ଆକର୍ଷି
ବାସୁସଚୟ ଗିବା ତଥା ଦର୍ଶି ।
ବୋବ ଦେଲେ ପକ୍ଷୀନାଦ ଛଳର
ବଦନେ କାଳ ପଡ଼ିଲ ଦିଗର ।" ବୈ: ବି: ।

ଅର୍ଥ—ଦିବସକୁ ବିନାଶ କରିବା ପାଇଁ ସନ୍ଧ୍ୟା ହସ୍ତ ପ୍ରସାରଣ ପୂର୍ବକ ସୂର୍ଯ୍ୟଙ୍କୁ ପଶ୍ଚିମ ଦିଗ-କୁଣ୍ଡରେ ବୁଡ଼ାଉଛୁ । ଦିବସର ଦୁଃଖରେ ଦୁଃଖିତ କାକମାନେ ରବ କରନ୍ତି ବା କାନ୍ଦନ୍ତି ।

ରାତ୍ରି ସଙ୍ଗେ ଚନ୍ଦ୍ରର ବିବାହ—

"ଏଥିଅନ୍ତେ ଶୁଣ ରସ ଗ୍ରୀଷମେ ବଣି ପ୍ରବେଶ
ଉଦୟ ତାରାକାବେଶ ହେଲେ ଆକାଶେ,
ଚନ୍ଦ୍ର-ସୁଖ-ଚନ୍ଦ୍ର-ନନ୍ଦ ଛେଦନେ କ୍ଷୀରଜଚନ୍ଦ୍ର
ଫିଙ୍ଗିଛୁ ଜାତ ସିନ୍ଧୁରେ କାମ କି ରୋଷେ ।
ବେଶ ହେବ କି ରାତ୍ରିବାଳୀ
ସ୍ଫଟିକ ପେଡ଼ୀରେ କିବା କସ୍ତୁରୀ ଦଳି ।

Digitized by srujanika@gmail.com

ଆଜ୍ଞ କି ବସ୍ତୁବଶୀ କି ହୋଇବ ବନ୍ଧ ବଚନ
ମନ୍ତ୍ରୀମାନ ଦେଇ ବଧୂକରଣେ ମଣି,
ଏ ବଚନ ସ୍ୱୟମ୍ବର ନାୟିକ ବରନ୍ତି ବର
କେତେକାଳେ ଦେଖାଗଲା ଏ କଥା ପୁଣି ।
ରତନରେ ମଣ୍ଡ-ମଣ୍ଡଳା
ଜାଗି ହୋଇଥିଲା କି ଚନ୍ଦନ ଲେପିଲା ।"

ଏଥିର ତାତ୍ପର୍ଯ୍ୟ—ଏକ ସମୟରେ ଚନ୍ଦ୍ର ସନ୍ଧ୍ୟା ଦେଖାଗଲେ । ରାତ୍ରି ସଙ୍ଗରେ ଚନ୍ଦ୍ରର ବିବାହ ଓ ବର ନାୟିକୁ ବରିବା ପାଇଁ ସ୍ୱୟମ୍ବରର ଯୋଗାଡ଼ ଏଥିରେ କରାଯାଇଛି ।

ସୀତାଙ୍କର ଦେହକାନ୍ତି—

"ବିଗ୍ରହକାନ୍ତି କି ଝଟକନ୍ତି କନକ ଅନାଇଲା
ବାନ ବଢ଼ାଇ ଅଗ୍ନିରେ ଦନ୍ଧ ଶିଳେ କଷାଇ ହେଲା ।
ବିଚରକୋଷ୍ଠ ଲଭି ସେ ଖଣ୍ଡ ବନ୍ଧୁ ଲକ୍ଷଣ ଏତେ
ଗୁଣ ଲକ୍ଷଣ ହୋଏ ଭକ୍ଷଣ ଯାହା ଦର୍ଶନ ମାତେ ।
ବଢ଼ାଇ ସ୍ଥାନ କଣ୍ଟକ ପୃଷ୍ଠ ମଧ୍ୟରେ ଦରେ ଲୁଚ
ବାସ ସମେଳ କେତକୀ ଫୁଲ କେତେ ମନକୁ ରୁଚ ।"

ତାତ୍ପର୍ଯ୍ୟ—ସୀତାଙ୍କ ଦେହକାନ୍ତି ସଙ୍ଗେ ସମାନ ନ ହେବାରୁ ସୁବର୍ଣ୍ଣ ନିଆଁରେ ପୋଡ଼ି ହୁଏ, କଷଟି ପଥରରେ ଘଷି ହୋଇ କଷ୍ଟ ପାଏ । ବିଜୁଳି ସମାନ ନ ହେବାରୁ କ୍ଷଣେ ଦେଖାଦେଇ ଲୁଚିଯାଏ, ସୌରଭ ସଙ୍ଗେ ସମାନ ନ ହୋଇ କେତକୀ କଣ୍ଟାପତ୍ର ମଧ୍ୟରେ ଲୁଚି ରହେ ।

କୋଟିବ୍ରହ୍ମାଣ୍ଡସୁନ୍ଦରୀର ବର୍ଣ୍ଣନା—

"ନବ ବିଧାତା ମଦନ ହୋଇଲା
ନବ ଯୌବନ ସୃଷ୍ଟି ଭିଆଇଲା ।
ବାଲ୍ୟ ପୌଗଣ୍ଡ ଯୌବନ ସ୍ଥିତକ
ଆନ ଆନ ସ୍ଥାନେ ଦେଲା ସ୍ଥିତକ ।
ରଜନୀକର ମାଗିଲା କେଳିକି
ରଜନୀକର ହେନ୍ତେ ତା ଗୁଣ୍ଡିଲା ।
ଧାତ୍ରୀମଣ୍ଡନା ହେବାରୁ ଭୁଲଇ
ଧାତ୍ରୀମଣ୍ଡନା ନାମ ଯେ ବୋଲଇ ।
ନେତ୍ରଗଢ଼ରେ ଥିଲା ଅଧୀରତା
ନେତ୍ରଗଢ଼ରେ ଆଣି କଲା ରତା ।
ଚନ୍ଦ୍ରା ଜନମ ଉପମା ଲେଖାର
ତାଙ୍କ ଇଚ୍ଛାରେ ହେଲେ ନାରଖାର ।

Digitized by srujanika@gmail.com

ବଦ୍ୟୁ ଅଧର ପ୍ରଭାର ଲକ୍ଷକେ
　　　　　　　　ଚନ୍ଦ୍ର କ୍ଷୀଣ ହୋଇଗଲା ପକ୍ଷକେ ।
ଘନ ଜୀବନୁ ଅଗ୍ନି ଉପୁଜାଇ
　　　　　　　　ଧୂମ୍ର ବିବର୍ଣ୍ଣ ହେଲା ଜଳ ଯାଇ ।
ଭକ୍ଷ କଲା ସୁପର୍ଣ୍ଣ କାକୋଦର
　　　　　　　　ମନ୍ଦ ନାମରେ ବହିଲା ମନ୍ଦର ।
ପଦ୍ମ-ମୃଣାଳ କଣ୍ଟକକୁ ଧରି
　　　　　　　　ଥୁଏ ପଙ୍କଜ ପଦେ ସେ ଉଦ୍ଧରି ।
ବମ୍ବ ହୋଇଲା ଭମ୍ବ-ବଟଲପନ
　　　　　　　　ବୃକ୍ଷରାଜ-ଦଳ ବହେ କମ୍ପନ ।
ଫଳେ ଅଧୋମୁଖ ହେଲା କଦଳୀ
　　　　　　　　ଜମା କାଳିମା—ରଙ୍ଗେ ଶୋଭି ଦଳି ।
ଖେଦୁଁ ଇନ୍ଧନ ହୋଇଲା ଚନ୍ଦନ
　　　　　　　　କଲା ମୁକୁତା ଶାମୁକେ ସଦନ ।
ବୀଣା ସ୍ୱନ କଲା ପରବଶରେ
　　　　　　　　ସିଂହ ଲୁଚିଲା କେଉଁ ପ୍ରଦେଶରେ ।"

ଏଥିରେ କୋଟିବ୍ରହ୍ମାଣ୍ଡସୁନ୍ଦରୀର ବାଲ୍ୟ, ପୌଗଣ୍ଡ, ଯୌବନ ଅବସ୍ଥା ବର୍ଣ୍ଣନା କରାଯାଇଛି । ତାର ଯୌବନର ଅପୂର୍ବ କମନୀୟ ଶୋଭା ନିରୀକ୍ଷଣ କରି ଜଗତର ସମସ୍ତ ଉପମା ଦ୍ରବ୍ୟମାନ ନିଜ ନିଜକୁ ହୀନ ମନେ କରି କାତର ହୁଅନ୍ତି ।

ରସିକହାରାବଳୀର ଅବୟବ ବର୍ଣ୍ଣନା —

"ଦର୍ପଣୁ ଝଲ କମଳୁଁ ବାସ ବଳେ ହରି
ଚନ୍ଦ୍ରରୁ ଆହ୍ଲାଦ ନେଇ ଲପନରେ ଧରି ।
ନଳୋତ୍ପଳୁଁ ନୀଳ ଖଞ୍ଜନରୁ ଚଞ୍ଚଳତା
ବଶୀଙ୍କୁଁ ତୀକ୍ଷଣ ଆଣି ଆକ୍ଷି କଲା ଧାତା ।
କାଳିନ୍ଦୀନୀର ଜଳଦଠାରୁ ହରିକଳା
ଭ୍ରମର ନୀଳ ରୁଚିରୁଁ କୁଟିଳ ହରିଲା ।
ଲବଣୀ ଶିରୀଷରୁ କୋମଳ ନେଇ ଦେହେ
ବଦ୍ୟୁ ହେମ ଚମ୍ପାକାନ୍ତି ହରିକାନ୍ତି ବହେ ।
ଯେଉଁ ଅଙ୍ଗକୁ ଉପମା ଯେଉଁ ଦ୍ରବ୍ୟ ହୋଇ
ତହୁଁ ସାର ନେଇଛି ସେ ତନୁ କଲା ବିହି ।"

ଉପରୋକ୍ତ ଅବୟବବର୍ଣ୍ଣନରେ କଳ୍ପନାପସାରର ଯାବତୀୟ ସୁନ୍ଦର ସାମଗ୍ରୀର ସାର-ସୌନ୍ଦର୍ଯ୍ୟ-ଉପାଦାନ ପ୍ରୟୋଗ କରାଯାଇଛି ।

Digitized by srujanika@gmail.com

ସୁଭଦ୍ରାଙ୍କର ଅଙ୍ଗଲଗ୍ନା —

"ସର୍ପପୁରେ ଯାଇ　　ପର୍ବତ କନ୍ଦରେ
ମଣ୍ଡନାତ ହେମମଣ୍ଡପ
ସୁଗନ୍ଧବତୀ　　ସ୍ୱଇଚ୍ଛାରେ ଚଳିତ
ପଦ୍ମାବଳରେ କ ମାଧୁର୍ଯ୍ୟ
ସଙ୍କୁଳ । ତହିଁ ପୁଣି ଫୁଲ ଏତେକ ।
ସବେରୁନ୍ଦ, ଚମ୍ପା　　କୁମୁଦ ପାଟଳି
ନଆଳୀ ଶିରୀଷ ଅଶୋକ ।
ସଫଳ ଆମ୍ବ ଡାଳିମ୍ବ ଜମ୍ବ ଦ୍ରାକ୍ଷା
ରମ୍ଭା ନାରଙ୍ଗ ମାତୁଳଙ୍ଗ ।
ସାରଙ୍ଗ ଖଞ୍ଜନ ଚକୋର ମୟୂର
ଶୁକ କପୋତ ହଂସ ସଙ୍ଗ ।
ସ୍ୱରୂପେ । ମହା ଅଦ୍ଭୁତ କଥା ଏହି ।
ସପତ ଜାତ ଫଳ　　ଫୁଲ ବିହଙ୍ଗ ଲତାକେ
ଥିବା ଶୁଣା ନାହିଁ ।"

ସୁଭଦ୍ରାଙ୍କର ଅଙ୍ଗଲଗ୍ନାରେ ସାତ ପ୍ରକାର ଫୁଲ, ସାତ ପ୍ରକାର ଫଳ, ସାତ ପ୍ରକାର ପକ୍ଷୀ ସୃଷ୍ଟି କରି କବି ବର୍ଣ୍ଣନା କରିଅଛନ୍ତି ।

———

Digitized by srujanika@gmail.com

## ଉପନାୟକ

କବିଗୁରୁ ଉପେନ୍ଦ୍ର ଭଞ୍ଜ ବୈଦେହୀଶବିଳାସରେ ରାବଣକୁ ଉପନାୟକ ଓ ମନ୍ଦୋଦରୀକୁ ଉପନାୟିକାରୂପେ ଚିତ୍ରଣ କରିଛନ୍ତି । ସାଧାରଣ ପରିଚୟ ସଙ୍ଗେ ସଙ୍ଗେ ରାବଣରେ ବୀରତ୍ୱ, ଅତ୍ୟାଚାର, ତର୍କ, ପାଣ୍ଡିତ୍ୟ, ଶାସନରୀତି ଓ ରସିକତା ପ୍ରଭୃତି ସେ ନିଜର ସ୍ୱାଭାବିକ ଚରିତ୍ରାଙ୍କନ ରୀତିରେ ପରିବେଷଣ କରିଅଛନ୍ତି ।

## ପରିଚୟ

ବୈଦେହୀଶବିଳାସ ପ୍ରଥମ ଛାନ୍ଦରେ ରାବଣର ଜନ୍ମବୃତ୍ତାନ୍ତର ଉଲ୍ଲେଖ ଅଛି । ରାବଣର ପିତା ମହର୍ଷି ବିଶ୍ରବା । ସେ ସ୍ୱୀୟ ଜନନୀ ନିକଷାଗର୍ଭରୁ ଭୂମିଷ୍ଠ ହେବାମାତ୍ରେ ସଚରାଚର ବ୍ରହ୍ମାଣ୍ଡ ଥରି ଉଠିଲା । ତାହାର ଦଶ ମୁଣ୍ଡ, ବିଂଶ ବାହୁ, ବିକଟ ରୂପ ଦର୍ଶନ କରି, ଭୟଙ୍କର ଗର୍ଜନ ଶୁଣି ଦେବଗଣ, ନାଗ, ନର, କିନ୍ନର ସମସ୍ତେ ଭୟରେ କମ୍ପିଲେ ।

> "ବିଂଶତିଭୁଜ ଦଶାନନରେ କି ଦଶା ଦେବ ଦେବ କିନ୍ନରେ
> ନର ନାଗରେ ଧରଣୀ ଥରେ ହେଉଁ ପତନ ଯେ ।
> ବିକଟ ରୂପ ପ୍ରକଟ ଅତି ରକତ ପରି ବ୍ୟକତ କାନ୍ତି
> ଘଟଣ ଘଟ ସଦୃଶ ଶ୍ରୁତି ଭୈରବ ସ୍ୱନ ଯେ ।" ବୈ: ବି ।

ପ୍ରଥମେ ସେ ଉଦ୍ଦୀପ୍ତନ ଆମ୍ଭେ କଲା ପାତାଳରେ । ଜଗଜ୍ଜୟ ପାଇଁ ସେ କଠୋର ତପସ୍ୟା କଲା, ନିଜର ମସ୍ତକ ଛେଦନ କରି ଅଗ୍ନିକୁଣ୍ଡରେ ଆହୁତି ଦେଲା, ମୁଣ୍ଡ ବାହୁ ଶିରାରେ ବୀଣା ପ୍ରସ୍ତୁତ କରି ବଜାଇଲା । ରାବଣର ଏତାଦୃଶ କଠୋର ତପଶ୍ଚରଣରେ ବିଧାତା ତୃପ୍ତ ହୋଇ "ବର କାମନା ପୂର୍ଣ୍ଣେ କଲେ ପ୍ରଦାନ ଯେ ।" ଜଗଦ୍‌ବିଜେତା ହେବାପାଇଁ ବରପ୍ରଦାନ ସଙ୍ଗେ ସଙ୍ଗେ ସେ କହିଲେ—"ବର୍ତ୍ତିବୁ ଯୁଗ ଛପନଶତ୍ରୀ ବରଣୀ ହେବ ବ୍ରହ୍ମାଣ୍ଡେ ଖଣ୍ଡା ସୀତାହରଣେ ନିଶ୍ଚେ ମରଣ କାରଣ ଜାଣ ରେ ।"

ରାବଣ ବ୍ରହ୍ମାଙ୍କ ନାତି, ବିଶ୍ରବାଙ୍କ ପୁତ୍ର, କୁବେରଙ୍କ ଭାଇ ହୋଇଥିବାରୁ ସେ ନିଜେ ଇତର ସମସ୍ତଙ୍କ ପୂଜ୍ୟ ବୋଲି ମନେ କରୁଥିଲା ଏବଂ ପୁତ୍ର ଇନ୍ଦ୍ରଜିତ ଇନ୍ଦ୍ରଙ୍କୁ ଜିଣିବା ଦିନଠାରୁ ସେ ବିଶେଷ ଗର୍ବ ଅନୁଭବ କଲା । ବୀର ହନୁମାନ୍ ଶ୍ରୀରାମଚନ୍ଦ୍ରଙ୍କ ଆଜ୍ଞାପତ୍ର ଯେତେବେଳେ ରାବଣକୁ ଦେଇ "ବୋଲେ ଉଠ ହଠ ବୀର । ପ୍ରଭୁ ଆଜ୍ଞା ଘେନ ଲଗା ଶିର," ତାହା ରାବଣକୁ ସେତେବେଳେ ସହ୍ୟ ହେଲା ନାହିଁ । ତତ୍‌କ୍ଷଣାତ୍ ସେ ସଗର୍ବରେ "ବାପ ଯା ଲେଖିଛୁ ଆଜ୍ଞାପତ୍ର ନୋହେ ଜଣାଣ ସେ ଦେଇଥିବ । ବ୍ରହ୍ମା ନପ୍ତା ସୁତ କୁବେର ମୋ ଭ୍ରାତ ପୁତ୍ର ଜିଣିଛୁ ବାସବ ରେ । ବାଇ ।" କହି ନିଜର ଓ ଅଂଶ ବଂଶର ବିସ୍ତୃତ ପରିଚୟ ଦେଲା ।

ରାବଣ ଅନ୍ତଃପୁରରେ ସ୍ୱୀୟ ପ୍ରେୟସୀବର୍ଗଙ୍କ ସମ୍ମୁଖରେ ଦିନେ ତାହାର ପୂର୍ବବୃତ୍ତାନ୍ତ ନିମ୍ନମତେ କହିଲା:—

> "ବୈକୁଣ୍ଠ ନ ମାନୁ ଅମ୍ଭେ — ବୈକୁଣ୍ଠ ପାଳିତ ଯେ,
> ବୈକୁଣ୍ଠ ଦ୍ୱାରସ୍ଥ ବିଜୟ — ଜୟ ବେନି ଭ୍ରାତ ଯେ ।"

Digitized by srujanika@gmail.com

ରାବଣର ନାମ ଜୟ, କୁମ୍ଭକର୍ଣ୍ଣର ନାମ ଥିଲା ବିଜୟ । ସେ ଦୁହେଁ ଅତ୍ୟନ୍ତ ଦୁର୍ଦ୍ଦାନ୍ତ ଥିଲେ, କାହାକୁ ମାନୁ ନ ଥିଲେ । ବୈକୁଣ୍ଠଧାମର ଦ୍ୱାରୀ ଭାବରେ ରହି ନିଷ୍ଠାର ସହିତ କର୍ତ୍ତବ୍ୟ ସାଧନ କରୁଥିଲେ । ଏ ଜନ୍ମରେ ତାର ନାମ ହେଲା ରାବଣ, ତାର ରୂପ ଅତ୍ୟନ୍ତ ବୀଭତ୍ସ, ଆଚରଣ କୁତ୍ସିତ ହେଲା । ସେତେବେଳେ ଜୟ ବିଜୟ ଉଭୟ କନ୍ଦର୍ପତୁଲ୍ୟ ରୂପବାନ୍ ଥିଲେ । ସେମାନେ ବିଷ୍ଣୁଙ୍କ ତୁଲ୍ୟ ଚତୁର୍ଭୁଜ ଥିଲେ, ସେମାନଙ୍କ ହସ୍ତରେ ଶଙ୍ଖ ଚକ୍ର ଗଦା ପଦ୍ମ ଶୋଭା ପାଉଥିଲା । କବିଙ୍କ ଭାଷାରେ—

"ବୋଇଲା । ବୟସରେ ତରୁଣ ଚତୁର୍ଭୁଜେ ଗୁରୁ ଯେ ।
ବହି କରେ ଶଙ୍ଖାରି ଶଙ୍ଖାରି ରୂପ ଧରୁ ଯେ ।
ବୋଇଲା । ବର୍ଣ୍ଣରେ କନ୍ଦର୍ପ ଦର୍ପ କରିଥିଲୁ ଲୋପ ଯେ ।
ବହିଲୁ ସେହି ଉଭୟ ଭୟଙ୍କର ରୂପ ଯେ ।"

## ଶାପ

ଥରେ ବୈକୁଣ୍ଠଧାମରେ ଜୟ (ବର୍ତ୍ତମାନ ରାବଣ) ବିଜୟ ସମ୍ମାନର ସହିତ ଶାନ୍ତ ସନ୍ତୋଷରେ କର୍ତ୍ତବ୍ୟ ପାଳନ କରୁଥିଲେ । ଥରେ ନାରାୟଣଙ୍କ ଦର୍ଶନ ଆକାଂକ୍ଷାରେ ସନକ ସନାତନାଦି ଅଷ୍ଟ ମହର୍ଷି ଆସି ପହଞ୍ଚିଲେ । ଲକ୍ଷ୍ମୀ ନାରାୟଣ ଏକାନ୍ତରେ ଥିବା ସମୟରେ ପ୍ରବେଶ ନିଷେଧ ଥିଲା । ସେମାନେ ସେହି ସମୟରେ ପ୍ରବେଶ ପାଇଁ ଅନୁରୋଧ କଲେ । ଦ୍ୱାରୀଦ୍ୱୟ ଅନୁରୋଧ ରକ୍ଷା କଲେ ନାହିଁ । ମହର୍ଷିବୃନ୍ଦ ବଳପୂର୍ବକ ଦ୍ୱାର ଅତିକ୍ରମ କରିବାରୁ, ସେମାନେ ବାରଣ କଲେ, ଧର୍ଷଣ ମଧ୍ୟ ଦେଲେ । ମହର୍ଷିମାନେ କୁପିତ ହୋଇ ଶାପ ଦେଲେ—"ବୋଇଲେ ବହ ଶୂର ଅସୁର ରୂପ" "ବୋଲାଇବ ବିଷ୍ଣୁଦ୍ୱେଷୀ ।"

ଆଉ ଥରେ ନାରାୟଣଙ୍କ ସହିତ ମହର୍ଷିମାନଙ୍କ କଥୋପକଥନ ଚାଲିଥିଲା । ଲକ୍ଷ୍ମୀ ଆସି ପହଞ୍ଚିଲେ । ସେ ଦ୍ୱାର ଅତିକ୍ରମ କରି ଅଗ୍ରସର ହେବାବେଳେ ଦ୍ୱାରୀ ଦ୍ୱୟ ବାରଣ କଲେ ଓ ପ୍ରତ୍ୟାବର୍ତ୍ତନ ପାଇଁ ବାଧ୍ୟ କଲେ । ସେ କୁପିତା ହୋଇ ସେମାନଙ୍କୁ ବୋଇଲେ—"ବହନ ବହ କର୍ବୂର ରୂପ, ଏଥୁଁ ଯା ଯା" ।

ସେହି ଲକ୍ଷ୍ମୀ ବେଦବତୀ ରୂପ ଧାରଣ କରିଥିବା ବେଳେ, ଜୟ (ରାବଣ) ତାଙ୍କୁ ବଳପୂର୍ବକ ହରଣ କରିବାକୁ ଉଦ୍ୟମ କଲା । ସେ ଅଗ୍ନିରେ ଝାସ ଦେଇ ଧର୍ଷଣରୁ ରକ୍ଷା ପାଇଲେ । ଦେହତ୍ୟାଗପୂର୍ବରୁ ସେ "ବୋଲିଥିଲା, ମୋ ହେତୁ ଅମରଣ ନ ମର;" ଏ ସମସ୍ତ ଅଭିଶାପରୁ ସେମାନେ ଭୀଷଣ ରାକ୍ଷସରୂପରେ ଧରାଧାମରେ ଜନ୍ମ ହେଲେ । ପ୍ରେୟସୀମାନଙ୍କ ସମ୍ମୁଖରେ ରାବଣ "ବୋଇଲା । ବୋଲାଉ ହିରଣ୍ୟାସୁର ହିରଣ୍ୟାକ୍ଷ ପୂର୍ବେ ଯେ । ବରାହ ନୃହରି ହରି ହରି ପ୍ରାଣ ତେବେ ଯେ ।" ସେ ଦୁହେଁ ପୂର୍ବଜନ୍ମରେ ହିରଣ୍ୟ ହିରଣ୍ୟାକ୍ଷ ଥିଲେ । ସେମାନଙ୍କର ଭର ଧରା ସମ୍ଭାଳିଲା ନାହିଁ । ନାରାୟଣ ନରସିଂହରୂପରେ ହିରଣ୍ୟ-(ରାବଣ) କୁ, ବରାହରୂପରେ ହିରଣ୍ୟାକ୍ଷକୁ ବଧ କଲେ ।

## ଅତ୍ୟାଚାର

ଲକ୍ଷ୍ମୀ ବର୍ତ୍ତମାନ ସୀତା, ନାରାୟଣ ଅଭିରାମ ରାମଚନ୍ଦ୍ର ନାମରେ ବର୍ତ୍ତମାନ ଧରାଧାମରେ ଅବତୀର୍ଣ୍ଣ । ନିଜର ଅସାଧାରଣ ପାଣ୍ଡିତ୍ୟ ପ୍ରଭାବରେ ରାବଣ ତାହା ହୃଦୟଙ୍ଗମ କରିଥିଲେ ମଧ୍ୟ ତାହାର ରାକ୍ଷସସ୍ୱଭାବ ତାକୁ କେତେକ ଅକ୍ଷମଣୀୟ ପାପକାର୍ଯ୍ୟରେ ପ୍ରବର୍ତ୍ତିତ କଲା । ସେ ପ୍ରେୟସୀବର୍ଗଙ୍କ ସମ୍ମୁଖରେ ସ୍ୱଚ୍ଛ ହୃଦୟରେ କହିଲା—"ବଡ଼ ପାତକୀ ଅତର୍କୀ ମୁଁ ସୀତା ଅଣିଛୁ ।" ଘଟଶ୍ରବଣ ସମ୍ମୁଖରେ ମଧ୍ୟ ସେ କହିଥିଲା, କବିଙ୍କ ଭାଷାରେ—

Digitized by srujanika@gmail.com

"ବୋଇଲ୍ଲ ଲଙ୍କପତ୍ତ ଯାଇ ମାରୀଚ କତ୍ତ
କପ୍ଟଇ ତାକୁ ମାୟା ମୂର୍ତ୍ତି ସେ । ବେଳ ଯତ୍ତ ।
ବନ୍ଧଯାଉଁ ତାକୁ ଝଁଟତ୍ତ । ବଳେ ଆଣିଲ୍ଲ ତା ଯୁବତ୍ତ ।"

ତାହା କୁମ୍ଭକର୍ଣ୍ଣର ରୁଚର ଘୋର ପ୍ରତକୂଳ ହେବାରୁ ସେ "ବୋଲେ କଲୁ କ ବୁଦ୍ଧ ନାଶ୍ଚତରର ସିଦ୍ଧି ମାତର ହୋଇଲ୍ଲ ପ୍ରସିଦ୍ଧ ।" ତାହା ଶୁଣି ରାବଣ କୋଧରେ ଜଳ ଉଠିଲ୍ଲ । ବିଭୀଷଣ ଦନେ ତଦ୍ରୂପ କହି ରାବଣର ରୀବ୍ର କଟାକ୍ଷରେ ପଡ଼ଲେ । ତାଙ୍କୁ ଏକାବେଳକେ ସ୍ଥାନ ଛାଡ଼ବାକୁ ପଡ଼ଲା । ରାବଣର ପଟ୍ଟମହଷୀ ମନ୍ଦୋଦର୍‌ରୀ ଅତ୍ୟନ୍ତ ବଦୂଷୀ, ସକଳ ଗୁଣସମ୍ପନ୍ନା । ସେ ଏତାଦୃଶ ଅତ୍ୟାଗ୍ଭରରେ ଦୁଃଖିତା ହୋଇ ସମୟୋଚତ କଥା ପଦେ କହିବା ପାଇଁ ସୁସମୟର ଅପେକ୍ଷାରେ ଥିଲ୍ଲ । ଦନେ ସୁବିଧା ପାଇ ସେ

"ବୋଇଲ୍ଲ, ବାଲକ ଲୁହ କମ୍ବାଲ ମଧ୍ୟରେ ନ ମଜ୍ଜ ଯେ ।
ବମଳ ଉଜ୍ଜ୍ୱଳ କଳ ଛାଡ଼ ମହାରାଜ ଯେ ।" ଇତ୍ୟାଦ ।

ରାବଣର ଅନ୍ୟ ରାଣୀ ଇନ୍ଦୁମତୀ "ବୋଇଲ୍ଲ । ବରସିତା ଯେ ପିତା ସିନା ସୀତା ଦଅ ଯେ । ବଳସିତେ ଉଲ୍ଲସିତେ ଏ ସମ୍ପଦେ ଥାଅ;" ରାବଣର ଅପର ପ୍ରସ୍ୱା ନାରକାସୁର କନ୍ୟା "ବୋଇଲ୍ଲ । ବାନ୍ଧୁତ୍ରାଅ ମସ୍ତକା ମହିଲା ନେଇ ଯତ୍ତ ।" ସମୀପସ୍ଥ ଅନ୍ୟାନ୍ୟ ରମଣୀମାନେ ରାଣୀମାନଙ୍କୁ ସମର୍ଥନ କର ସୀତାଙ୍କୁ ପ୍ରତ୍ୟର୍ପଣ ପାଇଁ ପ୍ରାର୍ଥନା କଲେ । ରାବଣର ମନ ମାନଲ୍ଲ ନାହିଁ । ଅମୂଲ୍ୟ ରତ୍ନ ଚୌରର ହସ୍ତଗତ ହେଲେ ସେ ପ୍ରାଣ ପଛକେ ଦଏ, ତାହା ଛାଡ଼େ ନାହିଁ । ସଂସାର ରୂପଣୀରେ ଯେଉଁ ସୀତା ଶ୍ରେଷ୍ଠ ମଣିତୁଲ୍ୟ, ସେ ତାହା କଠୋର ଚୌର୍ଯ୍ୟବୃତ୍ତି ଅବଲମ୍ବନ କର ହସ୍ତଗତ କରଥିବାରୁ ଛାଡ଼ବାକୁ ଦୃଢ଼ଭାବରେ ଅନଚ୍ଛା ପ୍ରକାଶ କଲ୍ଲ ।

"ବୋଇଲ୍ଲ । ବୈଶ୍ରବଣ ଶ୍ରବଣରେ କ କହୁ ରମଣି ଯେ ।
ରୂପଣୀ ଏ ସଂସାର ତହିଁର ସାର ମଣି ଯେ ।
ବୋଇଲ୍ଲ । ବଡ଼ କୃପଣ ଚଉରପଣ କର ଆଣି ଯେ ।
ବସର୍ଜିବ ଜୀବ ସଙ୍ଗେ ସିବ କେବେ ପୁଣି ଯେ ।"

ରାବଣର ଅତ୍ୟାଗ୍ଭର ଏତକରେ ଶେଷ ନୁହେଁ । ସେ ଚଉଦ ଭୁବନ ଜୟକର ଇନ୍ଦ୍ର, ଚନ୍ଦ୍ର, ବରୁଣ, କୁବେର, ବ୍ରହ୍ମା, ନାରଦ, ତୁମ୍ବୁରୁ ପ୍ରଭୃତଙ୍କୁ ନଜ ସେବାରେ ସତତ ଖଟାଉଥିଲ । ସେମାନେ ବାଧ୍ୟ ହୋଇ ରାବଣର ସେବକରୂପେ ପ୍ରତ୍ୟହ ଖଟୁଥିଲେ ମଧ୍ୟ, ସେମାନଙ୍କୁ ତାହାର ଅନୁଚର ସହଚର ପ୍ରଭୃତଙ୍କ ଠାରୁ ଅପମାନ ସହ୍ୟ କରବାକୁ ପଡ଼ୁଥିଲ୍ଲ । ବ୍ରହ୍ମା, ନାରଦ, ତୁମ୍ବୁରୁଙ୍କ ଉପଲକ୍ଷେ ଥରେ ରାବଣର ଦ୍ୱାଃସ୍ଥ କହେ "କେଉଁ ବଡ଼ପଣେ, ବଶସ୍ତ ନ ଜାଣି ହୁଅ କଲକଲ" ଇତ୍ୟାଦ । ରାବଣର ରାଜତ୍ୱରେ, ଜୀବଦ୍ଦଶାରେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ ତାହାର ଦୌରାତ୍ମ୍ୟବହ୍ନି ଜଳ ଉଠିଲ୍ଲ । ସଚରାଚର ବ୍ରହ୍ମାଣ୍ଡ ଥର ଉଠିଲ୍ଲ, ଦେବଲୋକ, ବ୍ରହ୍ମଲୋକ ଓ ବିଷ୍ଣୁଲୋକରେ ରାବଣର ବନାଶ ପାଇଁ ଭ୍ରଲେଣି ପଡ଼ିଲ୍ଲ ।

ରାବଣର ଆଧ୍ୟାତ୍ମିକ ଚର୍ଚ୍ଚା—

ରାଣୀମାନଙ୍କ ବରସତା ଲକ୍ଷ୍ୟ କର ସେମାନଙ୍କ ତୃପ୍ତି ସାଧନ ପାଇଁ ରାବଣ କେତେକ ସାର କଥା କହିଲ୍ଲ । ରାମଚନ୍ଦ୍ର ମାରୀଚଙ୍କୁ ସ୍ୱହସ୍ତରେ ବଧ କରବାରୁ ସେ ମୁକ୍ତ ପାଇଲେ । ଦବ୍ୟବିମାନ ଆରୋହଣ-ପୂର୍ବକ ଦେବଗଣଙ୍କ ଗହଣରେ ସେ ଦେବଲୋକକୁ ଯାତ୍ରା କରଥିବା ରାବଣର ଦୃଷ୍ଟିପଥାରୂଢ଼ ହେଲ୍ଲ । ଶତ୍ରୁଭାବରେ, ଭକ୍ତଭାବରେ ଓ ସେବକଭାବରେ ଭକ୍ତମାନେ ମୁକ୍ତି ପାଆନ୍ତି । ରାବଣ ପ୍ରଥମୋକ୍ତ

Digitized by srujanika@gmail.com

ଉପାୟରେ ମୁକ୍ତି ପାଇବାପାଇଁ ସ୍ଥିର କରିଥିବାରୁ, ସମସ୍ତ ପ୍ରେୟସୀ ଓ ପ୍ରିୟବର୍ଗଙ୍କ ହାର୍ଦ୍ଦିକ ପ୍ରାର୍ଥନାସତ୍ତ୍ୱେ ସୀତାଦେବୀଙ୍କୁ ପ୍ରତ୍ୟର୍ପଣ କରିବାକୁ ଇଚ୍ଛା କଲା ନାହିଁ । ତାହା କଲେ ଶ୍ରୀରାମଚନ୍ଦ୍ରଙ୍କ କ୍ରୋଧ ଉପଶମ ହେବ । ସୁତରାଂ ରାବଣ କହିଲା, ସୀତାଙ୍କୁ "ବାହୁଡ଼ାଇ ଫୁଙ୍ଗୁଦିବାର ଏତେ ଶୁଭ ଯୋଗ ।" "ତ୍ରିପୁରାର ପୂଜନ-ନାଗର ମୋକ୍ଷ-ଦାତା" ବୋଲି ରାବଣର ଦୃଢ଼ ବିଶ୍ୱାସ ଥିଲା ।

ନିୟତିର ନିର୍ଦ୍ଦେଶ ରାବଣପ୍ରତି ଯାହା ଥିଲା, ତାହା କେତେକ ଘଟଣାରେ ପ୍ରକାଶ ପାଇଥିଲା । ଅନ୍ତଃପୁର ବିଳାସିନୀମାନଙ୍କ ସମ୍ମୁଖରେ ତାହା ସେ ଜନ୍ମମତ୍ତ ବ୍ୟକ୍ତ କଲା । ପ୍ରଥମେ—ସେ ଏହି କାଳରେ ନଗର ବିଜେତା ହେବା ପାଇଁ ନିର୍ଜନ କାନନରେ କଠୋର ତପସ୍ୟା କଲା । ବାରମ୍ବାର ନିଜର ମସ୍ତକ-ଗୁଡ଼ିକ କାଟି ସେ ବଳି ଦେଉଥିଲେ ମଧ୍ୟ ପୁନଃ ପୁନଃ ତାହା ଜାତ ହେଉଥିଲା । କଠୋର ତପସ୍ୟାରେ ସନ୍ତୁଷ୍ଟ ହୋଇ ବିଧାତା ତାକୁ ସେତେବେଳେ ମର୍କତ ଓ ସ୍ୱର୍ଣ୍ଣନିର୍ମିତ ଦୁଇଟି ରୂପ ଦେଖାଇଲେ । ତାହା ଥିଲା ସୀତା ଓ ରାମଙ୍କର ରୂପ । ସୁବର୍ଣ୍ଣବର୍ଣ୍ଣା ସୀତାଙ୍କୁ ହରଣ କଲେ ବଂଶନିପାତ ଓ ମୁକ୍ତିପ୍ରାପ୍ତି ପାଇଁ ସେଥିରେ ଇଙ୍ଗିତ ଥିଲା । ତାହା ସେ କରିବା ମୁହୂର୍ତ୍ତରୁ, ମୁକ୍ତି ସୁନିଶ୍ଚିତ ବୋଲି ତାର ଦୃଢ଼ ଧାରଣା ଥିଲା । ପାର୍ଥିବ ସମ୍ପତ୍ତି ଅଳୀକ, ବୈକୁଣ୍ଠ ସମ୍ପତ୍ତି ଶାଶ୍ୱତ ଓ ଅବିନଶ୍ୱର, ଏହି ଭାବ ରାବଣହୃଦୟରେ ଉଦୟ ହେବା ଉତ୍ତାରେ ସେ ନାରାୟଣଙ୍କ ବାଣରେ ନଶ୍ୱର ଶରୀର ତ୍ୟାଗ ପାଇଁ କେବଳ ଅପେକ୍ଷା କରୁଥିଲା । ସେ "ବୋଇଲା । ବିଷ୍ଣୁ ମୋ ମାରଣେ ଅଭିରାମ ରାମମୂର୍ତ୍ତି ଯେ । ବୈକୁଣ୍ଠ ସମ୍ପତ୍ତିକି ଏ ସମ୍ପତ୍ତି ବିପତ୍ତି ଯେ ।"

. ଦ୍ୱିତୀୟ—ଦିଗ୍‌ବିଜୟ ଅଭିଳାଷରେ ବାହାରି ବହୁ ସାମ୍ରାଜ୍ୟ ଗିରି କାନନ ଅତିକ୍ରମ କରି ଯାଇଁ ଯାଇଁ ଦିନେ ରାବଣ ଦୈବାତ୍ ପାତାଳପୁରରେ ପ୍ରବେଶ କଲା । ସେଠାରେ ଲଗାଲଗି ହୋଇ ଅନେକ ପୁର ବିଦ୍ୟମାନ ଥିବା ଦେଖାଗଲା । ଗୋଟିଏ ପୁରର ଦିବ୍ୟ ମଣ୍ଡପରେ ଏକ ଯୁବତୀ ଜଣେ ଯୁବକ ସହିତ ପଶା ଖେଳୁଥିଲା । ଦୁହେଁ ରତି ଓ ରତିପତି ତୁଲ୍ୟ ଶୋଭା ପାଉଥିଲେ । ତୁମ୍ଭେମାନେ କିଏ ?—ଏହି ପ୍ରଶ୍ନ ପଚାରିବାରୁ ଯୁବକ "ବୋଇଲା । ବିଷ୍ଣୁ ମହିମା ଏ ମନ୍ଦିରଦ୍ୱାରା ଶରବଶ ଯେ । ବେନି ଜଣ ମଙ୍ଗଳତା ମହିଳା ପୁରୁଷ ଯେ ।" ସେମାନେ ଆଉ ଯାହା କହିଲେ, ତାହା ଅଲୌକିକ ଓ ଅକଥନୀୟ । ସେମାନେ ନାରାୟଣଙ୍କ ମହିମା କୀର୍ତ୍ତନ କଲେ । 'ମାତ୍ର ନାରାୟଣଙ୍କ ଶରଘାତରେ ସ୍ୱର୍ଗ ପାଇଲ, ତୁ ତଦ୍ରୂପ ପାଇବୁ' – ଏହି କଥା ସେମାନେ ରାବଣକୁ କହିଲେ ।

ଏ ସଂସାର ବିଧାତାଙ୍କ ସଂସାର । ବ୍ରହ୍ମ ପ୍ରଳୟରେ ସମସ୍ତେ ନାଶ ଯାନ୍ତି ; ସ୍ୱୟଂ ବ୍ରହ୍ମା ମଧ୍ୟ କ୍ଷୟ ଭଜନ୍ତି । ଶାସ୍ତ୍ରଦର୍ଶିତା ପ୍ରଭାବରେ ରାବଣ ତାହା ବୁଝିଥିଲା । ରାବଣର ଆୟୁ ଛପନ ଗଣ୍ଡାଯୁଗ ବୋଲି ବିଧାତା ସ୍ଥିର କରିଥିଲେ ମଧ୍ୟ, ସେ ରାମଙ୍କ ହାତରେ ମରି ପରମ ଗତି ପାଇବାପାଇଁ ବ୍ୟାକୁଳ ଥିଲା । ରାମଚନ୍ଦ୍ରଙ୍କ ଶର ପ୍ରହାରରେ ନ ମରି, ପରେ ଅନ୍ୟ ମାର୍ଗରେ ମଲେ, ଅତି ପାପିଷ୍ଠ ହେବା ହେତୁ ନରକ-ଗତି ହେବ ବୋଲି ରାବଣର ପୂର୍ଣ୍ଣ ଆଶଙ୍କା ଓ ଦୃଢ଼ ବିଶ୍ୱାସ ଥିଲା । ସୀତା କେବଳ ବନ୍ଦିନୀ ହୋଇ ରହିଥିଲେ । ରାମ ଶରରେ ବେଗରେ ଯଥାଶୀଘ୍ର ମୃତ୍ୟୁ ଘଟିବା ଅବଶ୍ୟମ୍ଭାବୀ । ତାହା ସ୍ଥିର କରି ରାମଚନ୍ଦ୍ରଙ୍କ ପରମ ଶତ୍ରୁରୂପେ ରାମଙ୍କ ସହିତ ଭୀଷଣ ସଂଗ୍ରାମ ପାଇଁ ରାବଣ ପ୍ରସ୍ତୁତ ହେଲା ।

ବାରଭି

ବରପ୍ରାପ୍ତି ପରେ ରାବଣ ପାତାଳପୁରକୁ ଯାଇ ରାକ୍ଷସମାନଙ୍କୁ ଏକତ୍ର କଲା; ରାକ୍ଷସବଳ ସହିତ ଲଙ୍କା ଆକ୍ରମଣ କରିବାରୁ କୁବେର ଲଙ୍କା ଛାଡ଼ି ଭୟରେ ବାହାରି ଗଲେ; ପୁଷ୍ପକ ବିମାନ ପାଇବା ପାଇଁ କୁବେରଙ୍କ ସହିତ ଯୁଦ୍ଧ କରିବାକୁ ଇଚ୍ଛା କଲା; ଜଗତବାସୀଙ୍କୁ ଉତ୍କଟ ଉତ୍ପୀଡ଼ନରେ ଅସ୍ଥିର କଲା ।

Digitized by srujanika@gmail.com

"ବାହୁଡ଼ି ତହୁଁ ପାତାଳେ ରାଜ ନିକଷାତ୍ମଜ ପୁଷ୍ପକୁ ସାଜି
ବେଢ଼ିଲେ ଲଙ୍କା କୁବେର ତେଜି ଗଲା ସେ ପୁର ସେ ।
ଅମାନେ ନେଲା ସର୍ବ ସମ୍ପତ୍ତି ବି-ମାନେ ଯଥା ଗଗନେ ଗତି
ସେ ମନୋରଥ ରଥ ପ୍ରାପତି ଇଚ୍ଛି ସମର ସେ ।
ଅଶେଷ ଉତ୍କଟ ପ୍ରଭା ପ୍ରକଟ କରି ସେ ।"

ରାବଣର ବିକ୍ରମ ଏପରି ଯେ ସେ 'ବାମକରରେ ହୋଇଣ ବାମ ବାମଦେବର ଗିରି କୁସୁମ ପରି ଉତ୍ପାଟି ଧରଣେ କ୍ଷମ' ହେଲା; ମହାବୀର ବାଲୀକୁ ଧରିବା ପାଇଁ ଉଦ୍ୟମ କଲା; ସହସ୍ରାର୍ଜ୍ଜୁନ ସହିତ ସଂଗ୍ରାମ କରିବାକୁ ସାହସ କଲା । ବିଧାତାଙ୍କ ବରବଳରେ ସେ ସହସ୍ରାର୍ଜ୍ଜୁନର "ବନ୍ଧନେ ପଡ଼ି ଖଡ଼ଗେ ନ ଛିଡ଼ି ଅନଳ ଯୋଗେ ନ ଗଲା ପୋଡ଼ି ଜଳେ ନ ବୁଡ଼ି" ବଞ୍ଚିଲା । ରାମଚନ୍ଦ୍ରଙ୍କ ସହିତ ସଂଗ୍ରାମ ପାଇଁ ପରିଶେଷରେ ସେ ବାହାରିଲା ।

## ସଂଗ୍ରାମ

"ବାହାରେ ବାହାରେ ବଂଶବାହା ବାନ୍ଧି ବଇରୀ ବିଭ୍ରାଟ ବାନା,
ବସି ପୁଷ୍ପକରେ କରବାଳକରେ କରଇ ସୁରେ ତର୍ଜ୍ଜନା ।"

ବାହୁରେ ବିଜୟବାନା ବାନ୍ଧି, ପୁଷ୍ପକବିମାନ ଆରୋହଣ କରି ଖଡ୍ଗହସ୍ତ ହୋଇ ଓ ଦେବଗଣଙ୍କୁ ଧମକ ଦେଇ ରାବଣ ଅପରିମିତ ରାକ୍ଷସ ଦଳବଳ ସହିତ ଯୁଦ୍ଧକୁ ବାହାରିଲା । ସଂଗ୍ରାମ ଚାଲିଲା । ଅଳ୍ପ ସମୟ ମଧ୍ୟରେ ରାବଣର ଅନେକ ସୈନ୍ୟ ସହିତ ପରି ପରି ପୁଅ, ନାତି ନାଶ ଗଲେ । ମନୁଷ୍ୟ, ଋକ୍ଷ ଓ ବାନରମାନଙ୍କଦ୍ୱାରା ପ୍ରବଳ ପରାକ୍ରମଶାଳୀ ଦାନବଙ୍କ ଅଲୌକିକ ନିଧନ ଦେଖି ରାବଣ ହତାଶ ହେଲା ।

"ବର୍ତ୍ତମାନସ୍ଥ ନିସ୍ତମରେ କି କରିବା ପୁତ୍ର ନାତି ସର୍ବ ହତ ।
ବଂଶ ବାହାର ବାହାର ଚତୁଁ ଗର୍ବ ଲୋକେ ଏ ଅଲୋକିତ ।
ବିଧାତା ଗ୍ରହିଲା ଏଥର, ଏ ଥର ଉପୁଜି ଗଲା ତା ଅଙ୍ଗେ ।"

ପରମୁହୂର୍ତ୍ତରେ ଧୈର୍ଯ୍ୟ ଧରି "ବିଗ୍ରେର ଚଉଦ ପୁର ପୁରସ୍କାର ଉଦେଶ୍ୟେ କେ ଥିଲା ସଙ୍ଗେ ।" ତାହାର ବକ୍ଷଦେଶସ୍ଥ ମଣିଶ୍ରେଷ୍ଠ ମୋହମଣିକୁ ଗ୍ରହିବାକୁ ସେ ଗର୍ବ, ଉତ୍ସାହ, ଆନନ୍ଦ ଅନୁଭବ କଲା, ଘୋର ଗର୍ଜ୍ଜନ କରି ଅବାଧ ନିଧନ ସଂକଳ୍ପରେ ଧନୁଷ୍ଟଙ୍କାର କଲା; ରାମ, ଲକ୍ଷ୍ମଣ, ସୁଗ୍ରୀବ ଓ ବିଭୀଷଣ— ଏହି ଚାରି ମଧ୍ୟରୁ ଜଣକୁ ଅନ୍ତତଃ ବଧ କରିବା ମାନସରେ ପଦ୍ମସଂଖ୍ୟକ ବ୍ରହ୍ମାସ୍ତ୍ର, ଚକ୍ର, ଶକ୍ତି, ଶୂଳ ପ୍ରଭୃତି ପ୍ରୟୋଗ କରି ଦବଦ ଅହଙ୍କାର କଲା ଏବଂ ବହୁ ସମୟ ବୀରଦର୍ପରେ ଭୀଷଣ ସଂଗ୍ରାମ କରି ଶ୍ରୀରାମଚନ୍ଦ୍ରଙ୍କ ଅବ୍ୟର୍ଥ ବ୍ରହ୍ମାସ୍ତ୍ରରେ ପ୍ରାଣତ୍ୟାଗ କଲା ।

## ଉପନାୟିକା ମନ୍ଦୋଦରୀ

ରଣଭୂମିରେ ଭର୍ତ୍ତା ରାବଣର ଶବ ଗଡ଼ୁଥିବା ବେଳେ ଅନ୍ତଃପୁରର ସମସ୍ତ ରାଣୀ ଓ ରମଣୀଗଣ ଧାଇଁଯାଇ ଶବ ସମୀପରେ ବସି ରୋଦନ କଲେ । ରାଣୀ ସଂଖ୍ୟା ଅଗଣିତ । 'ବୃନ୍ଦ ବୃନ୍ଦ', 'ବର୍ଗ ବର୍ଗ' ପଦ୍ମିନୀ, ଚିତ୍ରିଣୀ, ଶଙ୍ଖିନୀ ଓ ହସ୍ତିନୀ ସେଥି ମଧ୍ୟରେ ଥିଲେ । ଅଙ୍ଗଦପଡ଼ିରେ ରାବଣର ପତ୍ନୀ ସଂଖ୍ୟା "ତିନି କୋଟି ନଅ ପଚାଶ" ଉଲ୍ଲେଖ ଅଛି । ତନ୍ମଧ୍ୟରେ ମନ୍ଦୋଦରୀ ସର୍ବଶ୍ରେଷ୍ଠା ଅଥଚ ପାଟରାଣୀରୂପେ

Digitized by srujanika@gmail.com

ସମ୍ମାନ ପାଉଥିଲେ । ରାମଚନ୍ଦ୍ରଙ୍କ ଆଦେଶରେ ମନ୍ଦୋଦରୀ ମଣ୍ଡିତ ବିଭୀଷଣର ପାଣିଗ୍ରହଣ ଓ ରାଜ୍ୟାଭିଷେକ ବିଧାନ ଲକ୍ଷ୍ମଣ, ହନୁମାନ, ଅଙ୍ଗଦ ପ୍ରଭୃତିଙ୍କ ଉପସ୍ଥିତିରେ ସମାହିତ ହେଲା । ରାମଚନ୍ଦ୍ର ମନ୍ଦୋଦରୀର ଅଲୋକସାମାନ୍ୟ ସୌନ୍ଦର୍ଯ୍ୟ ମାଧୁରୀ ଅବଲୋକନ କରି କହିଲେ—

"ବିଶ୍ୱେ ଏ ସୁରଭି ଅଙ୍ଗକାନ୍ତି ଅଙ୍ଗୁଳି ସାରଙ୍ଗ ଗମନ ଅଳକା କର୍ଣ୍ଣ ନେତ୍ର ଭ୍ରୂଲତା । ବିଶେଷ ହରିମନକୁ ସୁଖସମ ସେ ପୁଷ୍ଟିକୁ ନାସା ଓଷ୍ଠ ମଧ୍ୟବେଣୀ ତଥା ରାଜିତା ।" ମନ୍ଦୋଦରୀର ପାଣ୍ଡିତ୍ୟ, ମିଷ୍ଟାଲାପ ଓ ମିଷ୍ଟାସ୍ୱରରେ ତୃପ୍ତ ହୋଇ ରାମଚନ୍ଦ୍ର 'ତାର କର ଧରି' ଆଶୀର୍ବାଦ ଦେଲେ—"ମୁଖ୍ୟ ସାଧ୍ୱୀରେ ଲେଖା ପ୍ରତ୍ୟକ୍ଷ ହୋଇବୁ ବୃନ୍ଦ" ଏବଂ "ବିଭୀଷଣ ସଙ୍ଗେ ରାଜ ଥିବାଯାକ ଚନ୍ଦ୍ରସୂର୍ଯ୍ୟ ତୋ ବପୁସ ସଉନ୍ଦର୍ଯ୍ୟ ନ ଛୁଟୁ ଲବେ ।"

## ବୈକୁଣ୍ଠଧାମରେ ରାବଣ

ଇତିପୂର୍ବେ କୁମ୍ଭକର୍ଣ୍ଣ ନଶ୍ୱର ଶରୀର ତ୍ୟାଗ କରି ବୈକୁଣ୍ଠଧାମରେ ବିଜୟ ଦ୍ୱାରପାଳରୂପେ ଅଧିଷ୍ଠିତ ଥିଲା । ରାବଣ ଦେହତ୍ୟାଗ କରି ଜୟ ଦ୍ୱାଃସ୍ଥରୂପେ ସେଠାରେ ପହଞ୍ଚିବାରୁ ସେମାନଙ୍କ ମଧ୍ୟରେ ମଧୁର ଆଳାପ ଚାଲିଲା । ଶ୍ରୀରାମଚନ୍ଦ୍ରଙ୍କର ସେ ଦୁହେଁ ପରମ ଶତ୍ରୁ ଥିଲେ ମଧ୍ୟ, ଅମାରୁଣରେ ସେମାନଙ୍କୁ କ୍ଷମା ଓ ମୁକ୍ତି ଦେବାରୁ ରାମଚନ୍ଦ୍ରଙ୍କୁ ସେମାନେ ବହୁ ପ୍ରଶଂସା କଲେ, କବିଙ୍କ ଭାଷାରେ—

"ବଇରୀ ଭାବେ ନିର୍ବନ୍ଧ ମୋକ୍ଷଦାତା ଦୟାନିଧି ସ୍ୱବକ୍ଷଶ୍ରୀରେ ମ ପାଦ ଯେତେ କଷଣ ।
ବସି ବେଦ ପ୍ରଶଂସିତ ସୂକ୍ଷ୍ମ ଜନମାନେ ଚିନ୍ତ, ନିଷ୍ଫଳ କରିଣ ଚିନ୍ତା କି ପ୍ରଭୁପଣ ।" ବୈ: ବି:

ବିଶାଳ ବ୍ରହ୍ମାଣ୍ଡରେ ରାବଣ ଜଣେ ଦୁର୍ଦ୍ଦାନ୍ତ ଦାନବ ଓ ଦୁର୍ମଦ ଅତ୍ୟାଚାରୀ ଥିଲା । କବିଙ୍କ ନିପୁଣ ତୂଳିକା ସ୍ପର୍ଶରେ ରାବଣଚରିତ ପାଠକପାଠିକାଙ୍କ ସୁଖପାଠ୍ୟ ଓ ଶିକ୍ଷଣୀୟ ହୋଇ ପାରିଛି । ବେଦମତୀ ପ୍ରତି ଧର୍ଷଣାଜନିତ ଶାପରୁ ରାବଣର ଆତ୍ମଚେତନା ଜାଗ୍ରତ ହେଲା । ସୀତାଦେବୀଙ୍କ "ନେତ୍ରରେ କହନ୍ତେ" "ବଶ ତ ନୋହିଲ" ବିଚାର କାଲେ ସେ "ବେଦମତୀ ମତ" "ଶାପ ଦେବ, ଏ ଅନେକ ଉଠିଲ ସେ ବଂଶାକ୍ଷ ।" "ସୀତାବ୍ରେଖ" ଯେ ଘୋର ଅନୀତ କଥା, ତାହା କବି ବିଭୀଷଣ, କୁମ୍ଭକର୍ଣ୍ଣ, ମନ୍ଦୋଦରୀ, ଇନ୍ଦୁମତୀ ପ୍ରଭୃତିଙ୍କ ମୁହଁରେ ବାରମ୍ବାର ଯେଉଁପରି ପ୍ରାଣସ୍ପର୍ଶୀ ଭାଷାରେ ଶୁଣାଇଛନ୍ତି, ତାର ପଟାନ୍ତର ନାହିଁ । ଶେଷରେ ରାବଣ କହେ—"ବଡ଼ ପାତକୀ ଆତଙ୍କୀ ମୁଁ ସୀତା ଆଣିଛୁ ।" କବିର ପାଣ୍ଡିତ୍ୟ ପ୍ରତିଭାବଶତଃ ତତ୍ତ୍ୱଜ୍ଞାନ ଜାତ ହେବାରୁ, ରାମଚନ୍ଦ୍ରଙ୍କ ଶରରେ ମରି ପରମଗତି ପାଇବା ପାଇଁ ତାହା କରିଛି ବୋଲି ସେ ସ୍ୱଚ୍ଛ ହୃଦୟରେ ସ୍ୱୀକାର କଲା । ସ୍ଥୂଳତଃ ବୈଦେହୀଶବିଳାସର ଉପନାୟକ ଆଲେଖ୍ୟରେ କବି ରାବଣକୁ ଯୋଗୀ, ଭୋଗୀ, ପଣ୍ଡିତ, ଭକ୍ତ ଓ ମହାବୀର ରୂପେ ଚିତ୍ରଣ କରି ସ୍ୱୀୟ ଅନୁପାତଜ୍ଞାନ, ପ୍ରତିଭା ଓ ପାଣ୍ଡିତ୍ୟର ପରିଚୟ ଦେଇଛନ୍ତି ।



Digitized by srujanika@gmail.com

## ବିଶ୍ୱସାହିତ୍ୟ ଓ ଉପେନ୍ଦ୍ରଭଞ୍ଜ

ବିଶ୍ୱବିଖ୍ୟାତ କବିଙ୍କ ମଧ୍ୟରୁ ଦାନ୍ତେଙ୍କ ଲେଖା ( Purely in their elements ) ମୌଳିକ ଉପାଦାନ ସମ୍ବଳିତ; ସେକ୍ସପିଅରଙ୍କ ଲେଖା ବିଭିନ୍ନ ଉପାଦାନର ମିଶ୍ରଣ; ରବୀନ୍ଦ୍ରନାଥ ଓ ୱାର୍ଡ୍ସୱର୍ଥଙ୍କ ଲେଖା ଦାର୍ଶନିକ ତତ୍ତ୍ୱବିଶିଷ୍ଟ; ସ୍କଟ୍ଟ ବାୟରଙ୍କ ଲେଖା ଶୃଙ୍ଗାରମୂଳକ; ସ୍ପେନସର୍ ଶ୍ରେଷ୍ଠ କବିରେ ଗଣ୍ୟ ହେଲେ ମଧ୍ୟ ତାହାଙ୍କ ଗୀତ ସମସ୍ତଙ୍କ ଠାରୁ ଭିନ୍ନ, ("allegory was his medium, the music of words his passion.") ଆକ୍ଷେପ ହୋଇଅଛି ତାଙ୍କ କବିତା-ସୌଧର ମୂଳଦୁଆ, ସୁଶ୍ରାବ୍ୟ ଶବ୍ଦଯୋଜନା ତାଙ୍କ କବିତାର ଗୀତ । ଭଞ୍ଜ ସାହିତ୍ୟରେ ଏ ସମସ୍ତ ଲକ୍ଷଣ ଅଛି, ଅଧିକ କିଛି ବି ଅଛି । ଭଞ୍ଜଗ୍ରନ୍ଥରେ ସନ୍ନିବେଶିତ ମଙ୍ଗଳାଚରଣ, ସ୍ତୋତ୍ର ପ୍ରଭୃତିରେ କବିଙ୍କ ଦାର୍ଶନିକ ଚିନ୍ତା ପ୍ରତିଫଳିତ ଅଛି । ଜଗତ୍କାରଣ ବିଷ୍ଣୁଙ୍କୁ ଭଜନ କରିବା ଲୋକ ପରମପଦ ଲାଭ କରେ । କବି ସେହି କାରଣରୁ ଗ୍ରନ୍ଥାରମ୍ଭରେ ବିଷ୍ଣୁଙ୍କୁ ସ୍ତୁତି କରିଅଛନ୍ତି—

"ବିଷ୍ଣୁରଶ୍ରବା ବ୍ରହ୍ମାଣ୍ଡେଶ୍ୱର ପରମ ପଦ ଭଜନ୍ତି ନର
ଲଭେ ଏ ଯେଣୁ ଗ୍ରନ୍ଥ ଆଦ୍ୟର ସ୍ତବିତ ତାଙ୍କୁ ଯେ ।" ବୈ: ବି: ।

"ବିଶ୍ୱେ ପତିତପାବନ ନାମ" ଜୀବିତ ରଖିବା ପାଇଁ ଗଙ୍ଗାପାର ବେଳେ ରାମଚନ୍ଦ୍ର ପାଦଧୌତର ସୁବିଧା କୈବର୍ତ୍ତିକୁ ଅନୁଗ୍ରହ କରି ଦେଲେ । ତାହା ଲିପିବଦ୍ଧ କରିବା ସମୟରେ ହୃଦୟରେ ଦାର୍ଶନିକ ଭାବ ଜାଗ୍ରତ ହେବାରୁ କବି କହନ୍ତି— "ବ୍ରହ୍ମାରେ ଧୌତ ଯେ ପଦ ନୋହୁଛି ଶିବ ବିଷାଦ ନ ପାଇ ଚରଣାମୃତ ପାନକୁ ଇଚ୍ଛି । ବିଜ୍ଞାମ କୈବର୍ତ୍ତି ଧୋଇଲା । ବିଶ୍ୱେ ପତିତପାବନ ନାମ ରହିଲା ।" ବୈ: ବି: ।

ସୁଭଦ୍ରା ପରିଣୟରେ ସୁଭଦ୍ରା ଅର୍ଜ୍ଜୁନଙ୍କ ପାଣିଗ୍ରହଣବିଧାନ ବଳରାମଙ୍କ ଅଜ୍ଞାତସାରରେ ହେବାରୁ ବଳରାମ ବିଶ୍ୱମୂର୍ତ୍ତି ଧରି ମୂଷଳହସ୍ତରେ ଉଠିଲେ । ତାହା ଦେଖି ରେବତୀ ପ୍ରମାଦ ଗଣିଲେ; ଆସନ୍ନ ବିପଦରୁ ଜଗତକୁ ରକ୍ଷା କରିବା ପାଇଁ ସେ ଭର୍ତ୍ତାଙ୍କ ହାତ ଧରି କହିଲେ—"ସହୃଷ୍ଟ ହୁଅ ହେ ଦେବ" "ସମଦରଶୀଜନଙ୍କ ନୁହଇ ଏ ରୀତି", ଇତ୍ୟାଦି । ଏଥିରେ କବିଙ୍କ ଦାର୍ଶନିକ ଚିନ୍ତା ପ୍ରତିବିମ୍ବିତ । ବୈଦେହୀଶବିଳାସରେ ରାବଣର ଦାର୍ଶନିକ ତତ୍ତ୍ୱସମ୍ବଳିତ ଚର୍ଚ୍ଚା ଉଲ୍ଲେଖଯୋଗ୍ୟ । "ବୈକୁଣ୍ଠ ସମ୍ପତ୍ତିକି ଏ ସମ୍ପତ୍ତି ବିପତ୍ତି", ବଡ଼ ପାତକୀ ଅଟଇଁ ମୁଁ", "ବିଶ୍ୱ ଚତୁର ଲପନ କଳପନା", ବ୍ରହ୍ମପ୍ରଳୟରେ ତାର କ୍ଷୟ", "ଦେହୁ ଜାତ ଗୁଣ, ବର୍ଣ୍ଣ ସୁବର୍ଣ୍ଣ ହୋଇଲେ କଳାକାନ୍ତି ହୋଇ", "ବିପଣୀ ଏ ସଂସାର", "ବଇରୀ ଭାବେ ହିଁ ବିଧି ମୋକ୍ଷଦାତା ଦୟାନିଧି" ପ୍ରଭୃତି, ମନ୍ଦୋଦରୀର ରାବଣ ପ୍ରତି ସମୟୋଚିତ ଉକ୍ତି— "ବାଳକ ନୁହ ଜମ୍ବାଳ ମଧ୍ୟରେ ନ ମଜ୍ଜ", "ବିମଳ ଉଜ୍ଜ୍ୱଳ ଜଳ ଗ୍ରୁତି", ପ୍ରଭୃତି ଦାର୍ଶନିକ ତତ୍ତ୍ୱ-ସମ୍ବଳିତ । କବିଙ୍କ ସମସ୍ତ ଗ୍ରନ୍ଥର ଦାର୍ଶନିକ ତତ୍ତ୍ୱବିଶିଷ୍ଟ ଆଲେଖ୍ୟ ଏକତ୍ରିତ କରି ପର୍ଯ୍ୟାଲୋଚନା କଲେ ସେ ପ୍ରସିଦ୍ଧ ଦାର୍ଶନିକ କବିସ୍ୱରୂପ ଗଣ୍ୟ ହୋଇ ପାରିବେ । କବିଙ୍କର ଅନ୍ୟତଃ କୋଟିବ୍ରହ୍ମାଣ୍ଡସୁନ୍ଦରୀ, ଲାବଣ୍ୟବତୀ, ବୈଦେହୀଶବିଳାସର ଚମତ୍କାର ପ୍ରାକୃତିକ ଆଲେଖ୍ୟ ସହିତ ଇତର ଶ୍ରେଷ୍ଠ କବିଙ୍କ ମାଧୁର୍ଯ୍ୟ ଓ ଗାମ୍ଭୀର୍ଯ୍ୟବ୍ୟଞ୍ଜକ ଚିତ୍ରଗୁଡ଼ିକ ତୁଳନା କଲେ ଭଞ୍ଜଙ୍କ ଶ୍ରେଷ୍ଠତ୍ୱ ସହଜେ ପ୍ରତିପାଦିତ ହୋଇ ପାରିବ । ବିଶ୍ୱବିଖ୍ୟାତ କବିମାନଙ୍କ ମଧ୍ୟରେ ସେକ୍ସପିଅର ଅଗ୍ରଗଣ୍ୟ ବିବେଚିତ । ତାଙ୍କର 'ଟ୍ୱେଲଭଥ୍‌ନାଇଟ୍ ( Twelveth Night )ର ୨ୟ ଅଙ୍କ, ୩ୟ ଦୃଶ୍ୟରେ ପ୍ରେମୋଚ୍ଛ୍ୱାସ; 'ଆଜ୍ ୟୁ ଲାଇକ୍ ଇଟ୍'

Digitized by srujanika@gmail.com

( As you like it )ର ୨ୟ ଅଙ୍କ ସପ୍ତମ ଦୃଶ୍ୟରେ ଜଗତ ରଙ୍ଗାଳୟ ଚିତ୍ର, 'ମିଡ୍ ସମର୍ ନାଇଟସ୍ ଡ୍ରିମ୍' ( Mid Summer Nights Dream)ର ୨ୟ ଅଙ୍କ ୧ମ ଦୃଶ୍ୟରେ କଳ୍ପନାବିଳାସ, 'ଅଷ୍ଟମ ହେନ୍ରି'ର ୩ୟ ଅଙ୍କ ୧ମ ଦୃଶ୍ୟରେ ଦେଶପ୍ରେମ ଆଲେଖ୍ୟ, 'ଅଥେଲୋ' (Athelo) ର ୩ୟ ଅଙ୍କ, ୩ୟ ଦୃଶ୍ୟରେ ମାନବୀୟ ପରାଜୟ ସ୍ୱୀକୃତ ଓ ପ୍ରତାରଣା ପରିପାଟୀ, 'ଜୁଲିୟସ୍ ସିଜର' (Julius Ceasar) ୩ୟ ଅଙ୍କ ୨ୟ ଦୃଶ୍ୟରେ ଅଣ୍ଟୋନିଙ୍କ ଦୀର୍ଘଭାଷଣ, 'ରୋମିଓ ଆଣ୍ଡ୍ ଜୁଲିଏଟ୍' (Romeo & Juliet)ର ୨ୟ ଅଙ୍କ ୨ୟ ଦୃଶ୍ୟରେ ପ୍ରେମଚିତ୍ର, 'ଟେମ୍ପେଷ୍ଟ' (Tempest)ର ୪ର୍ଥ ଅଙ୍କ, ୧ମ ଦୃଶ୍ୟରେ ଶାନ୍ତ ସାନ୍ତ୍ୱନା ଧ୍ୱନିତ ( Prospero) ବଚନାମୃତ ପାଠକମାନଙ୍କ ମୁଖପାଠ୍ୟ ହୋଇ ଅଜ ପର୍ଯ୍ୟନ୍ତ ରହିଛି । ସେଥିଯୋଗୁଁ ସେକ୍ସପିଅର ବିଶ୍ୱବିଖ୍ୟାତ କବିମାନଙ୍କ ମଧ୍ୟରେ ଅଦ୍ୱିତୀୟ । ଏପରି ଦୃଷ୍ଟାନ୍ତ ଓ ବର୍ଣ୍ଣନା-ପରିପାଟୀ ଭଞ୍ଜସାହିତ୍ୟରେ ଅଳ୍ପ ନାହିଁ । ପ୍ରସଙ୍ଗାନୁକ୍ରମେ ଯଥେଷ୍ଟ ଦୃଷ୍ଟାନ୍ତ ଦିଆଯାଇଛି । ସେଥି ସଙ୍ଗେ ସଙ୍ଗେ ବର୍ତ୍ତମାନ 'ଟ୍ୱେଲଭଥ୍ ନାଇଟ୍'ର ପ୍ରେମୋଚ୍ଛ୍ୱାସ ସହିତ ନିମ୍ନୋକ୍ତ ଭଞ୍ଜୀୟ ଚିତ୍ର ତୁଳନୀୟ—

"ପ୍ରୀତି ହୋଇ ଯେବେ ଏଡ଼େ ମଧୁର
କ୍ଷୁଧା ତୃଷା ପୁଣି ହୁଏ ବିଧୁର ।
ପୁଣି ଦଇବେ ହୋଇଲେ ଦମିତ
ପଦତଳେ ମିଳେ ଇନ୍ଦ୍ରସମ୍ପତ୍ତି ।" —ରସିକହାରାବଳୀ ।

ତେମନ୍ତ ପ୍ରେମ ଉପଲକ୍ଷେ ରସଲେଖାରେ—

"ପ୍ରୀତିରେ ପକ୍ଷୀ ମଲା ପୀରତିରେ ଦ୍ରବେ ଶିଳା
ମୁହିଁ ତୋ ପ୍ରୀତି ପରାଧୀନ ।"

ଭଞ୍ଜୀୟ କାବ୍ୟର ନାୟକ ପ୍ରାୟନ୍ତ ରାଜପୁତ୍ର । ରାଜପୁତ୍ରମାନେ ବହୁ ପତ୍ନୀସମ୍ଭୋଗ ପରମ୍ପରାସମ୍ମତ ମନେକରୁଥିଲେ ମଧ୍ୟ, କବିଙ୍କ ନାୟକ ତାହା ସମର୍ଥନ କରେ ନାହିଁ । ସେ ରାଜପରମ୍ପରାକୁ ପଦାଘାତ କରି କହେ—

"ତୋ ବିନା ନାରୀ ଆନ ଗଣ ଯେବେ ଥିବ ତେବେ
ଶ୍ରୀମୂରେ ନିୟମ କରାଇବୁ
ଯେବେ ମୋ ଦୋଷ ହୋଇବ ଯେଣେ ଚିତ୍ତକୁ ଆସିବ
ସେ ଦଣ୍ଡକୁ ସତ୍ୱରେ ବିହିବୁ ରେ
ପ୍ରାଣବନ୍ଧୁ ! ଏ ମିଣ୍ଡେ ତୋ ବିନା ଅଧିକାର
ଆନ ଜଣିବାକୁ ଯାହା ନାହିଁ ମୋର ରେ ।" ଲା: ବ: ।

ପ୍ରେମସୁଧାନିଧିରେ:—

"ପରହାସେ ରସି ରସିକାବରକୁ
ଅଧରେ ଅଧରେ ନ ହସାଇବ
ତାକୁ କେବେ ନ ଭୁଲାଇବ ।"

ସେକ୍ସପିଅରଙ୍କ 'ଆଜ ୟୁ ଲାଇକ୍ ଇଟ୍' ରେ ଜଗତ ରଙ୍ଗାଳୟ ଚିତ୍ର ଅତୁଳନୀୟ । ଠିକ୍ ଏହିପରି ଚିତ୍ର ଭଞ୍ଜସାହିତ୍ୟରେ ନାହିଁ । ବୈଦେହୀଶବିଳାସର ଅଗସ୍ତ୍ୟ ଆଶ୍ରମ ଚିତ୍ର ବିଶ୍ୱସାହିତ୍ୟଯୋଗ୍ୟ ବିବେଚିତ ହୁଏ । କପୋତୀ ସଞ୍ଚାଣ ନିକଟରେ ବସିବା, ସର୍ପ ମୟୂର ନିକଟରେ କ୍ରୀଡ଼ାରତ ଥିବା, କାକ ପେଚକ ନିକଟରେ,

Digitized by srujanika@gmail.com

ହସ୍ତୀ ସିଂହ ଏକ ସ୍ଥାନରେ ଶୟନ କରିବା, ହରିଣ ବଳିଆ କୁକୁର, ବ୍ୟାଘ୍ର ହରିଣ ଏକାଠି ମିଳା ମିଶା କରିବା ଦୃଶ୍ୟ ଅତ୍ୟନ୍ତ ଚମତ୍କାର । ସେହିପରି ନୁହେ—ଗାଈର ବାଛୁରି ମଇଁଷୀ ଠାରୁ କ୍ଷୀରପାନ କରୁଥିଲେ; ମୀନସମୂହ ଜଳଘାଟରେ ବକ ନିକଟରେ ଖେଳୁଥିଲେ । ଏପରି ଅମାୟିକ ହିଂସାଶୂନ୍ୟ ଚିତ୍ର ଭଞ୍ଜ ସାହିତ୍ୟରେ ଦେଖିବାକୁ ମିଳେ—

ଯଥା:—

ବାତାପିସୂଦନ ଆଶ୍ରମ । କପିନେ ପ୍ରବେଶ ଶ୍ରୀରାମ ।
ବଇରି ହିଂସା ଛାଡ଼ି ହେତ । ବଇରୀ ସନ୍ନିଧି କପୋତ ।
ବାୟସ କଉଶିକ ମେଳ । ବସି ଅଛନ୍ତି ଏକ ଡାଳ ।
ବ୍ୟାଳ ଫଣାକୁ ଟେକି ଖେଳ । ବରହୀ ପାଶେ ନୃତ୍ୟଶାଳୀ ।
ବାରଣ ସିଂହ ଏକ ସ୍ଥାନ । ବିରଚି ଅଛନ୍ତି ଶୟନ ।
ବ୍ୟାଘ୍ର କୁରଙ୍ଗ ରଙ୍ଗ ବନ୍ଧୁ । ବୃକାଳି ମିଳୁଛନ୍ତି ଛାଡ଼ି ।
ବତ୍ସା ଧେନୁଙ୍କ ମହିଷୀର । ବିଶ୍ୱାସେ ପାନ କରେ କ୍ଷୀର ।
ବକ ପାଶରେ ଜଳଘାଟେ । ବିଶାରିକୁଳହିଁ ଚହଟେ ।

ଇତ୍ୟାଦି । ବୈ: ବି:, ୱ୍ଗ୍ୱ

'ମିଡ୍ ସମର ନାଇଟସ୍ ଡ୍ରିମ୍'ର '୨ୟ ଅଙ୍କ ୧ମ ଦୃଶ୍ୟର କଳ୍ପନାବିଳାସ ସହିତ ଭଞ୍ଜସାହିତ୍ୟର ବିଭିନ୍ନ କାବ୍ୟର ଭିନ୍ନ ଭିନ୍ନ ଆଲେଖ୍ୟ ତୁଳନୀୟ । ସୁଭଦ୍ରାପରିଣୟରେ ସୁଭଦ୍ରାଙ୍କଠାରେ ସାତ ପ୍ରକାର ଫୁଲ, ଫଳ, ପକ୍ଷୀ କଳ୍ପନା କରାଯାଇଛି । ଜଗତର ସମସ୍ତ ସୁନ୍ଦର ବସ୍ତୁର ସାର ସଂଗ୍ରହ କରି "ରସିକହାରାବଳୀ"ର ଅଙ୍ଗ ପ୍ରତ୍ୟଙ୍ଗ ଗଢ଼ା ଯାଇଛି । ନଗର ନଗରୀ, ନଦୀ, ପର୍ବତ ବର୍ଣ୍ଣନରେ କଳ୍ପନା-ବିଳାସର ଅଭାବ ନାହିଁ । ଅଷ୍ଟମ, ପଞ୍ଚମ ହେନ୍ରି, ଜୁଲେସ୍ ସିଜରର ଭ୍ରମଣ ତୁଲ୍ୟ ଆଲେଖ୍ୟ ଭଞ୍ଜ-ସାହିତ୍ୟରେ ମଧ୍ୟ ଦେଖିବାକୁ ମିଳେ । ବୈ: ବି: ର ୩୬ ଛାନ୍ଦରେ ସତୀତ୍ୱ ବିଷୟରେ ସୀତାଦେବୀଙ୍କ ଭ୍ରମଣ, ରାକ୍ଷସୀର ଅନାଚାରର ବିଷୟରେ ଯୁକ୍ତି, ଦୃଷ୍ଟାନ୍ତସ୍ୱରୂପ ଗ୍ରହଣ କରାଯାଇପାରେ । 'ରୋମିଓ ଏଣ୍ଡ୍ ଜୁଲେଟ୍'ରେ ଜୁଲେଟ୍‌ର ବିଚ୍ଛେଦ ବର୍ଣ୍ଣନା—

"O she says nothing sir, but weeps and weeps;
And now falls on her bed; and then starts up,
and Tybalt calls; and then on Romeo cries.
And then down falls again."

କୋଟିବ୍ରହ୍ମାଣ୍ଡସୁନ୍ଦରୀର ବିରହ ଚିତ୍ର ଏଥି ସହିତ ତୁଳନୀୟ—

"ଏମନ୍ତ କାଳରେ ନୀରଜାନନା ନରବରଜା
ପଲଙ୍କେ ପଲକେ ନ ରହି କଲା ସେ ମହୀଶଯ୍ୟା ।
ଦେଖି ନୀରଜାକ୍ଷୀ ସ୍ୱଭକ୍ତ କାଦମ୍ବିନୀ ବାଣୀଜା
ଶଚୀକଳା ସହ ବିକଳା କରି ଲୋଚନ ତେଜ୍ୟା ।
ସ୍ୱଜନ ପ୍ରଥମା ଛଳନ୍ତ ନେବା ପଙ୍କଜ ସେ ସେ
ଅବନୀଶିରୀ ଶିରୀଷାଙ୍ଗୀ ପଦ୍ମବାସୀ ସହିତେ ।

Digitized by srujanika@gmail.com

ଛକାଇ ତନୁକୁ ଲେଉଟାଇ ଭର ଦ୍ୱିପାଶ୍ୱ ବୋଲେ—
ହେମ ଗିରିଲା ଚୂଲା ହେଲା ଜାନୁବଶୀ ଲା ରୁଲେ ।
ଦେଖୁ ଦେଖୁ ଭଲେ ବିବର୍ଣ୍ଣ ବର୍ଣ୍ଣିଲ ଯେ ଅପସ୍ୱ
ଏ ଶୋଷସଦନ ମଦନ ସୁଧା ଲେପଇ ପସ୍ୱ ।"

ଜୁଲିୟେଟ୍‌, ରୋମିଓର ଦଶାଙ୍କରେ ଗୋପନମିଳନ ଭୂମି ଲାବଣ୍ୟବତୀ, ଚନ୍ଦ୍ରଭାନୁର ମିଳନ ଘଟିଛି । ପ୍ରେମିକ ସହସା ଅଦୃଶ୍ୟ ହେବାରୁ ଲାବଣ୍ୟବତୀର ବିଳାପ—

"ଚେତ ଚତୁର୍ଥ ସ୍ୱନ୍ତିରେ କଶି ନାଶେ ପାଶେ ନାହିଁ ଦବ୍ୟ ତରୁଣ
ମାର ହୃଦେ ହାତ ନାଥ ନାଥ ବୋଲି ଅତି ଉଚ୍ଚେ ଜଳ କାରୁଣ୍ୟ
ଖୋଜେ ଅଧୀରେ । ଚେତନା ହତ ସେ ବଧିରେ ।" ଇତ୍ୟାଦି ।

ରୋମିଓର ଚନ୍ତା—

"Strange dream, that gives a dead man leave to think !
And breathed such life with kisses on my lips,
That I revived and was an emperor."

ଠିକ୍ ସେହିପରି ଚନ୍ଦ୍ରଭାନୁର ଚନ୍ତା—

"ମନୁ ମୂର୍ଚ୍ଛନ୍ତି ଅବା ସ୍ୱପନ ବୋଲି
ଜାଣିଲି ଏହୁ ଦେହେ କୃତାର୍ଥ ହେଲି ସେ ।
ସାକ୍ଷାତ ପର ଦେଇ ସ୍ୱପନ ସଙ୍ଗ
କଲୁ ତ କାମବ୍ୟାଧ-କର କୁରଙ୍ଗ ।
ସ୍ୱର୍ଗ-ସମ୍ପଦ ଯେଉଁ କର୍ମରେ ଥାଇ
ବଚନ ମଣେ ବଜ୍ରପତନ ତହିଁ ।"; ଲା: ବ: ଛ ୧୪୭ ।

ବିଶ୍ୱବିଖ୍ୟାତ ସାହିତ୍ୟ ସହିତ ଭଞ୍ଜ-ସାହିତ୍ୟ ତୁଳନା କରିବା ପାଇଁ ଭଞ୍ଜ-ସାହିତ୍ୟରେ ଉପାଦାନ ଅଛି । ତାହା କିନ୍ତୁ ଆଶାତୀତ ଶ୍ରମସାପେକ୍ଷ ।

ପାଶ୍ଚାତ୍ୟ ସାହିତ୍ୟ ଜଗତରେ ହୋମରଙ୍କ 'ଓଡ଼େସି' ଓ 'ଇଲିଏଡ଼' ଏବଂ ମିଲଟନଙ୍କ 'ପାରାଡ଼ାଇଜ୍ ଲଷ୍ଟ' ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । ଆମ୍ଭମାନଙ୍କ ରାମାୟଣ ସେହି କାବ୍ୟମାନଙ୍କ ତୁଳନାରେ ଯଥେଷ୍ଟ ଉଚ୍ଚସ୍ଥାନ ଅଧିକାର କରିବ । ରାମାୟଣର ପ୍ରକୃତିଚିତ୍ରଣ, ଭାବଗାମ୍ଭୀର୍ଯ୍ୟ ଓ ସରସତା ଉପରୋକ୍ତ କାବ୍ୟମାନଙ୍କ ଅପେକ୍ଷା ବିଶେଷ ଉପାଦେୟ । ଉପେନ୍ଦ୍ରଭଞ୍ଜ ସେହି ରାମାୟଣରୁ ସମସ୍ତ ଶିକ୍ଷଣୀୟ ଓ ଚିତ୍ତାକର୍ଷକ ଚିତ୍ରଗୁଡ଼ିକ ନିଜ ଗ୍ରନ୍ଥରେ ବିଶେଷତଃ ବୈଦେହୀଶବିଳାସରେ ସନ୍ନିବେଶିତ କରି ନିଜ ପ୍ରତିଭା, ପାଣ୍ଡିତ୍ୟ ଓ ଦୈବୀ ପ୍ରଭାବବଳରେ ଅଧିକ କମନୀୟ କରିଛନ୍ତି । ଯେଉଁ ଯେଉଁ ଉପମା, ଉପମେୟ ଓ ବର୍ଣ୍ଣନାଂଶଗୁଡ଼ିକ ବହୁଅର୍ଥବୋଧକ, ଆଲଙ୍କାରିକ ଓ ବିବିଧ ଛନ୍ଦ, ବନ୍ଧବିଶିଷ୍ଟ, ସେଗୁଡ଼ିକ ବହୁ ବିଜ୍ଞପାଠକଙ୍କ ଦୃଷ୍ଟି ଆକର୍ଷଣ କରିଥାଏ । କୋଟିବ୍ରହ୍ମାଣ୍ଡସୁନ୍ଦରୀର ତିନି ଋତୁ ଉପଲକ୍ଷେ ତିନି ରାଗିଣୀ ବିଶିଷ୍ଟ ଦ୍ୱିଅର୍ଥବୋଧକ ପଞ୍ଚବିଂଶ ଛାନ୍ଦ, ଶୂର୍ପଣଖାଙ୍କ ଗୂଢ଼ାର୍ଥମୟ କଥୋପକଥନ ସମ୍ବଳିତ ବିଂଶଛାନ୍ଦ, ଲାବଣ୍ୟବତୀ ଛାନ୍ଦ, ପ ୮-୯—ପ୍ରାନ୍ତ ଯମକ, ଶୃଙ୍ଖଳା ଓ ଗୋମୂତ୍ରରେ ରଚିତ ଚନ୍ଦ୍ରଭାନୁ ପ୍ରତି ବନ୍ଦୀର ପ୍ରଶସ୍ତି ଗୀତ, ବୈଦେହୀଶବିଳାସ,

Digitized by srujanika@gmail.com

ଛା ୩୯—ବକବାର୍ତ୍ତା, କୁକୁଟବାର୍ତ୍ତା, ଛା ୪୯ର ବୃକ୍ଷବନ୍ଧ, ଗଦାବନ୍ଧ, ଶରବନ୍ଧ, ଚକ୍ରକାବ୍ୟ ବନ୍ଧୋଦୟର ସମସ୍ତ ବନ୍ଧ ପ୍ରକୃତ ବିଜ୍ଞ ପାଠକପାଠିକାଙ୍କ ପ୍ରଣିଧାନର ବିଷୟ । ପୂର୍ବବର୍ତ୍ତୀ ପରିଚ୍ଛେଦମାନଙ୍କରେ ସନ୍ନିବେଷ୍ଟ ବହୁ ଦୃଷ୍ଟାନ୍ତରୁ ଜଣାଯାଏ, ଏହିପରି ଭାବଗର୍ଭିତ, ଚମତ୍କାର ଓ ଚିତ୍ତାକର୍ଷକ ଅଲେଖ୍ୟ ଭଙ୍ଗୀ-ସାହିତ୍ୟରେ ବହୁତ । ସେଥିଯୋଗୁଁ କବି ଅମର ଏବଂ ବିଶ୍ୱବିଖ୍ୟାତ କବିଙ୍କ ସମାସୀନ ହୋଇ ପାରିଛନ୍ତି ।

ପ୍ରାକୃତିକ ଶୋଭାବର୍ଣ୍ଣନାରେ କବି ସିଦ୍ଧହସ୍ତ । ସେଥିରେ ସନ୍ନିବେଶିତ ଚମତ୍କାରିତା କବିଙ୍କର ପ୍ରାପ୍ୟ ପ୍ରତିଭାନ କାବ୍ୟରେ ଅନୁଭବ କରି ହେବ ।

କୋଟିବ୍ରହ୍ମାଣ୍ଡସୁନ୍ଦରୀରେ—

"କୁମୁଦ ବିକାଶ ଛୁଟି ଛୁଟି ଯାଇ ପଦ୍ମ ଫୁଟି ଫୁଟି ଆସେ
ହରଷ ବିଷାଦ ପାଲଟାପାଲଟି ମଧୁଲିଟ ବିଟ କି ସେ ।" (ପ୍ରଭାତ ବର୍ଣ୍ଣନା)

"ହେ ଏ ସମୟେ ସନ୍ଧ୍ୟା ଅନ୍ତର ଭୁବନେ
ତମିର ବହିଲା ପୁଣ
ମିଶିଗଲା ଶଶିପ୍ରଭା ବେନି ମଳି
ହୋଇଲେ କି ଧରାଧର ।
ପ୍ରହରକେ ଧ୍ୱନି କରୁ କପୋତ ହୁଂ କୁଂ ରୀତଧାରୀ ।
ହେ ପଲ୍ଲବ ଚୁଇ କିରଣ ଝଲି ଦୁଇ
ବନଭୂମି ଚନ୍ଦ ଦଶି
ସେ କି ଶିଷ୍ୟଗଣ କରନ୍ତି ବିଦ୍ଧାଣ
ବଳମାନ କଣାକଣି ।
ପ୍ରକମ୍ପି ପବନ ତହିଁ । କେ କାହାକୁ ପେଲି ଦେଇ ।"

ସଂଯମ, ସାଧନା ବଳରେ 'ମନ' କୁ ଯେ ଅଧିକୃତ କରି ପାରିଛି, ସେ ଜନକୋଳାହଳପୂର୍ଣ୍ଣ ନଗର ନଗରୀରେ ଯେତେ ସୁଖ ଶାନ୍ତି ପାଇ ପାରିବ, ବିଜନ ଅରଣ୍ୟ ତଥା ପ୍ରକୃତିକୋଡ଼ରେ କାଳଯାପନ କରି ତେତିକି ସୁଖ ଶାନ୍ତି ପାଇ ପାରିବ । ତାହା କବିଙ୍କ ଅନୁଭୂତିର ଅନ୍ତର୍ଗତ ଥିବା ହେତୁ ସେ ରାମଚନ୍ଦ୍ରଙ୍କ ବନବାସବେଳେ ଶ୍ରୀରାମଚନ୍ଦ୍ରଙ୍କ ମୁହଁରେ କହନ୍ତି—

"ବକ୍ତବ୍ୟ ରାଘବ ଏଥି ଅନୁରୂପ ପ୍ରଜା ତରୁରଙ୍ଗ ଛନ୍ତି,
ବସ୍ତ୍ରକ ସହ ସୁରଭି ପୟୋଧର ବ୍ରଜ ବ୍ରଜ ଝଟକନ୍ତି
ବୃତ ସୁନାଶ୍ଚିତ୍ୟ ! ବିହରନ୍ତି କେତେ ତନୁବାୟୁ ।"

କବି ଗୁମୁସରର ପ୍ରକୃତିକୋଳରେ ଲାଳିତ ପାଳିତ ହୋଇ, ପ୍ରକୃତି ପ୍ରଦତ୍ତ ସୁଖ-ଶାନ୍ତି-ସମ୍ପଦ ଭୋଗ କରିଥିଲେ । ସେହି ହେତୁ ସେ ପୁଣି ବୈଦେହୀଶବିଳାସରେ କହନ୍ତି—

"ବୁଲିବା ଥିଲା ଜଗତରେ ବୁଲିବା ଜଗତରେ ହେଲା ଯେଣ
ବିଲୋକୁଥାଇଁ ଚନ୍ଦ୍ରଲେଖା ବିଲୋକୁଥାଇ ଚନ୍ଦ୍ରଲେଖା ପୁନ ।
ବିକ୍ଷିପ୍ତ ସେ ଯେ ରଜନୀକର ଶେଯେ ବିକ୍ଷିପ୍ତ ରଜନୀକର
ବୋଧନ ସୁକବିଙ୍କର ହେଉଥିଲା ବୋଧନ ଶୁକ-ବି ତିର ।

Digitized by srujanika@gmail.com

× × × ×

ବିଷ କରୁଥିଲି ଚିନ୍ତି କ୍ଷୀରପାନ ବିଷ କରେ କ୍ଷୀରପାନ ।
ବଳା ଶୁଣୁଥାଇ ଆନନ୍ଦସ୍ୱନକୁ ଶୁଣିମା ଆନନ୍ଦ ସ୍ୱନ ।
ବଧିରେ ଗନ୍ଧର୍ବେ ଗାୟନ କରନ୍ତି ବୋଧନ୍ତି ସୁମନା ବାସେ ।
ବଧିରେ ଗନ୍ଧର୍ବେ ଗାୟନ କରନ୍ତି ବୋଧନ୍ତି ସୁମନା ବାସେ ।"

ଏଥିରେ କବି ପ୍ରକୃତି ଓ ମନୁଷ୍ୟର ସମ୍ପର୍କ ରକ୍ଷାକରି ଅଲୌକିକ ଭାବରେ ଚିତ୍ରଣ କରିଅଛନ୍ତି ।

ପ୍ରସଙ୍ଗାନୁକ୍ରମେ ପୂର୍ବବର୍ତ୍ତୀ ପରିଚ୍ଛେଦମାନଙ୍କରେ ଏକାଧିକ ପ୍ରାକୃତିକ ବର୍ଣ୍ଣନା ଚିତ୍ର ଦିଆଯାଇଛି । ବିଭିନ୍ନ ଅଳଙ୍କାର ପ୍ରୟୋଗରେ, ପ୍ରାକୃତିକ ଶୋଭା ବର୍ଣ୍ଣନାରେ କବି ଯେ ଅଦ୍ୱିତୀୟ, କହିବା ବାହୁଲ୍ୟ ।

ଭଞ୍ଜ-ସାହିତ୍ୟରେ "ଚିରହାହାମୟ ଏ ସ୍ଥିର ଜୀବନ, ଜୀବନ ନୁହଇ ଜୀବନ୍ତ ମରଣ" ଉପଦେଶ ପାଇଁ କବି ସ୍ଥାନ ରଖି ନାହାନ୍ତି । ସେଥିରେ "ଆରାମ, ଅତି ଅଭିରାମ ଯେ ଦେଖିବ ଏହି ପ୍ରତୀତ । ମନରୁ ଉତ୍ପତ୍ତି ରତି କାମ ମୂର୍ତ୍ତିମନ୍ତେ କି ବିଷ୍ଣୁ ହୋଇଛନ୍ତି । କୋକିଳ । ଗାୟକ ହେଲେ ଗାଏ ଗୀତ । ଝିଙ୍କାରି ଝଙ୍କାର ଖଞ୍ଜରୀଟ ପ୍ରାନ୍ତ ହିତ ସୁବାଦ୍ୟରେ ବିଦିତ ।" ସ୍ତ୍ର ୨୩, କୋ: ବ୍ର: ସୁ: । ସେଥିରେ "Earths Joys grow dim" (Lyte) 'ପାର୍ଥିବ ଆନନ୍ଦ ମ୍ଲାନ ହେଲଣି—ନାହିଁ ଅଛି,' "ସୁନ୍ଦର ପରିବାର, ରୂପ ରତନ ଆକର" ; ସେଥିରେ ବିଭତ୍ସ, ବିରୂପ ନାହିଁ ; ଦାସ ଦାସୀ, ନାୟକ ନାୟିକା, ଯୁବକ ଯୁବତୀ ସମସ୍ତେ ରୂପବାନ୍ ଓ ରୂପବତୀ ; ("A thing of beauty is a joy for ever."—Keats) ନଗର ଅଟ୍ଟାଳିକା, ହାଟ ବଜାର, ସଭାମଣ୍ଡପ, କେଶବିନ୍ୟାସ, ନୃତ୍ୟ, ସଙ୍ଗୀତ—ସକଳ କଥା ଅତ୍ୟନ୍ତ ସୁନ୍ଦର, "ଭୂତରୁ ବର୍ତ୍ତମାନ ଭବିଷ୍ୟ ପର୍ଯ୍ୟନ୍ତେ ମୋହନ ସ୍ଥଳୀ" । ସେଥିରେ ବିରହ ବିଚ୍ଛେଦ ଅଛି, ସଙ୍ଗେ ସଙ୍ଗେ ମିଳନ ଅଛି; ଦୁଃଖ, ଶୋକ, ଦାରିଦ୍ର୍ୟ ଅଛି, ସଙ୍ଗେ ସଙ୍ଗେ ସୁଖ, ସମ୍ପଦ, ବିଭବ, ଆନନ୍ଦ, ଶାନ୍ତି, ସାନ୍ତ୍ୱନାର ବ୍ୟବସ୍ଥା ଅଛି । କବି ଗୃହସ୍ଥ ଗୃହିଣୀଙ୍କୁ, ଜନସାଧାରଣଙ୍କୁ ସୁଖଶାନ୍ତିରେ ରଖିବାପାଇଁ ସତତ ତତ୍ପର । ବିଧବା, ବିପତ୍ନୀକ, ହାଣକାଟ, ମାଲିମକଦ୍ଦମା ପ୍ରଭୃତି ପାଇଁ ସେ ଆଦୌ ସ୍ଥାନ ରଖି ନାହାନ୍ତି; ଦୁଃଖ ଦରିଦ୍ରତା; ପାପ ଦଣ୍ଡ, ରୋଗ ଶୋକକୁ ସେ ଚିରଦିନ ପାଇଁ ପ୍ରଶ୍ରୟ ଦେଇ ନାହାନ୍ତି । ପ୍ରତ୍ୟେକ ଗ୍ରନ୍ଥ, ଗ୍ରନ୍ଥର ପ୍ରତ୍ୟେକ ଛାନ୍ଦ, ଛାନ୍ଦର ପ୍ରତ୍ୟେକ ପଦ ଓ ପଂକ୍ତି ମନୋହର ରୂପସମ୍ଭାରରେ ଅଳଙ୍କୃତ । ବିଶ୍ୱବାସୀ ବୁଝିବା ଭାଷାରେ ଉପେନ୍ଦ୍ରଙ୍କ ଗ୍ରନ୍ଥ ଅନୁଦିତ ହୋଇ ନ ଥିବାରୁ ସେ କାଳିଦାସ, ରବୀନ୍ଦ୍ରଙ୍କ ତୁଲ୍ୟ ବିଶ୍ୱବିଖ୍ୟାତ ହୋଇ ପାରି ନାହାନ୍ତି । ବିଶ୍ୱବିଖ୍ୟାତ କବି କାଳିଦାସ ଉପେନ୍ଦ୍ରଙ୍କ ଦଶା ଭୋଗ କରିଥାନ୍ତେ, କିନ୍ତୁ ସେଥିରୁ ତାଙ୍କୁ ରକ୍ଷାକରି ଦେଇଛନ୍ତି—ମଲ୍ଲୀନାଥ ଏବଂ ଗେଟେ । ସକ୍ରେଟିସ୍‌ଙ୍କୁ ଜୀବିତ କରିଥିଲେ ପ୍ଲେଟୋ, ଆରିଷ୍ଟୋଟଲ, ମାର୍କସଙ୍କୁ ଲେନିନ । ଟେଲିସ ଫ୍ରାମ ସେକସ୍‌ପିଅର, କାଳି-ଦାସ ସନ୍ଦର୍ଭ ତୁଲ୍ୟ 'ଉପେନ୍ଦ୍ର ଭଞ୍ଜ ସନ୍ଦର୍ଭ' ବା 'ଭଞ୍ଜ-ସାହିତ୍ୟ ସାର' ନାମରେ ଏକାଧିକ ଗ୍ରନ୍ଥ ପ୍ରଣୀତ ହେବା ଉଚିତ । ଭଞ୍ଜ-ସାହିତ୍ୟ-ସମୁଦ୍ର-ଗର୍ଭରୁ ଚିତ୍ତାକର୍ଷକ କାବ୍ୟାଂଶ ଅନ୍ତତଃ ଇଂରେଜୀରେ ବା ବିଶ୍ୱ-ବାସୀଙ୍କ ବୋଧଗମ୍ୟ ଭାଷାରେ ଅନୁବାଦିତ ହେବା ଅନ୍ୟତମ ପ୍ରଧାନ ବିଷୟ । ସହୃଦୟ ଦେଶବାସୀଙ୍କର ସେଥିପ୍ରତି ଦୃଷ୍ଟି ପଡ଼ିବା ବାଞ୍ଛନୀୟ ।

———

Digitized by srujanika@gmail.com

## କବି ଉପେନ୍ଦ୍ର—ବିପ୍ଳବୀ

ଆର୍ଯ୍ୟ ବୈଦିକ ଭାଷାରୁ ଜନ୍ମଲାଭ କରିଥିବା ହିନ୍ଦୀ, ଗୁଜୁରାଟୀ, ବଙ୍ଗାଳି, ମହାରାଷ୍ଟ୍ରୀ ପ୍ରଭୃତି ଗୌଡ଼ୀୟ ଭାଷାମାନଙ୍କ ମଧ୍ୟରେ ଓଡ଼ିଆ ଭାଷା ଅନ୍ୟତମ । ଓଡ଼ିଆ ଭାଷା ଅତି ପ୍ରାଚୀନ ଭାଷା । ଅତି ପ୍ରାଚୀନକାଳରୁ ଆମ ଜନ୍ମଭୂମିର ପୁରପଲ୍ଲୀରେ ଯେଉଁ ଚଗଡ଼ମାଳୀ, ଡାକବଚନ, ଶଗଡ଼ିଆ ଗୀତ, ଶିଶୁଗୀତିକା ପ୍ରଭୃତି ଶୁଣାଯାଉଥାଏ, ସେଥି ସହିତ ବୌଦ୍ଧଗାନ ଓ ଦୋହାଁର ସାଦୃଶ୍ୟ ଥିବା ବୁଝାଯାଉଛି । ଭରତ ନାଟ୍ୟଶାସ୍ତ୍ର ପ୍ରଥମ ଶତାବ୍ଦୀର ଗ୍ରନ୍ଥ । ସପ୍ତମ ଶତାବ୍ଦୀରେ ଓଡ଼ିଆମାନଙ୍କ ପଢ଼ାଶୁଣା ଓ ପାଣ୍ଡିତ୍ୟ ବିଷୟରେ ହୁଏନ୍‌ସାଂ କହନ୍ତି—✱ 'ଓଡ଼ିଆମାନଙ୍କ ଅଧ୍ୟୟନସ୍ପୃହା ବଳବତୀ; ସେମାନେ ଏକ ମୁହୂର୍ତ୍ତ ନଷ୍ଟ ନ କରି ସମସ୍ତ ଅଧ୍ୟୟନରେ ନିୟୋଜିତ ରହୁଥିଲେ ।' ଏଥିରୁ ବୁଝାଯାଏ, ଓଡ଼ିଆ ସାହିତ୍ୟ ଓ ସଙ୍ଗୀତର ଭିତ୍ତି ବହୁ ପ୍ରାଚୀନକାଳରୁ ପ୍ରତିଷ୍ଠିତ ହୋଇପାରିଛି । ଖ୍ରୀ: ୧୦୨—୧୦୫୭ ପର୍ଯ୍ୟନ୍ତ ବଳଭଦ୍ର ଭଞ୍ଜ ଗୁମୁସରରେ ରାଜତ୍ୱ କରିଥିଲେ । ସେ 'ଭାବବତୀ' ନାମକ ଖଣ୍ଡିଏ କାବ୍ୟ ମାର୍ଜିତ ଭାଷାରେ ଲେଖିଥିଲେ । ସେ ଉତ୍କଳର ପ୍ରଥମ କବି ବୋଲି ତାରିଣୀଚରଣଙ୍କ ଇତିହାସରୁ ଜଣାଯାଏ । ଓଡ଼ିଶାରେ ଆଜି ସତକ ଯେତ ଶିଳାଲିପି ଓ ତାମ୍ରଶାସନ ଆବିଷ୍କୃତ ହୋଇଅଛି, ସେଥିରୁ ଅବଧାରିତ ହୁଏ ଯେ, ସମ୍ରାଟ କପିଳେନ୍ଦ୍ର ଦେବଙ୍କ ସମୟରୁ ଓଡ଼ିଆ ଭାଷା ରାଜକୀୟ ଭାଷାସ୍ୱରୂପ ଗ୍ରହଣ କରାଯାଇଛି । କପିଳେନ୍ଦ୍ର ଦେବ ସଂସ୍କୃତ ପରିବର୍ତ୍ତେ ଓଡ଼ିଆ ଭାଷା ପ୍ରଚଳନ ପାଇଁ ସଦୁଦ୍ୟମ କରିଥିଲେ । ସେ ୧୪୩୫—୧୪୬୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜ୍ୟ ଶାସନ କରିଥିବା ଇତିହାସରୁ ଜଣାଯାଏ । ✱✱ ଐତିହାସିକ ଗାଙ୍ଗୁଲି ମଧ୍ୟ ତାହା ସମର୍ଥନ କରନ୍ତି । କପିଳେନ୍ଦ୍ର ଦେବଙ୍କ ଓଡ଼ିଆ ଭାଷା ପ୍ରତି ଅସାଧାରଣ ମମତା ଥିଲା । ରାଜପୃଷ୍ଠପୋଷକତାରେ ସେତେବେଳେ ବହୁ କାବ୍ୟଲେଖକ ଉତ୍କଳର ସାହିତ୍ୟ-କ୍ଷେତ୍ରରେ ଦେଖାଦେଇଥିଲେ । ଉତ୍କଳର ଚମତ୍କାର ପ୍ରାକୃତିକ ଦୃଶ୍ୟ ଓ ଜନପଦ—ନଦ ନଦୀ, ହ୍ରଦ ସମୁଦ୍ର, ବନ ପର୍ବତ, ଦକ୍ଷ୍ୟା, ପ୍ରଭାତ, ନିଶୀଥ, ମନୁଷ୍ୟ, ଜୀବଜନ୍ତୁ, ଶସ୍ୟଶ୍ୟାମଳ କ୍ଷେତ୍ର ପ୍ରଭୃତିରୁ ପ୍ରେରଣା ପାଇ କବିମାନେ ସ୍ୱକଳ୍ପନାକୁ ରୂପରେଖ ଦେବାକୁ ଲାଗିଲେ । ୧୪୫୨—୭୦ ଖ୍ରୀଷ୍ଟାବ୍ଦ ମଧ୍ୟରେ କପିଳେନ୍ଦ୍ର ଦେବଙ୍କ ରାଜତ୍ୱ ସମୟରେ ସାରଳା ଦାସ ପ୍ରସିଦ୍ଧ ମହାକାବ୍ୟ 'ମହାଭାରତ' ପ୍ରଣୟନ କରିଥିଲେ । ତତ୍ପରେ ଜଗନ୍ନାଥ ଦାସ, ବଳରାମ ଦାସ ପ୍ରଭୃତିଙ୍କ ଭକ୍ତି ଓ ଜ୍ଞାନରସରେ ଉତ୍କଳର ପୁରପଲ୍ଲୀ ରସାପ୍ଲୁତ ହେଲା । ଷୋଡ଼ଶ ଶତାବ୍ଦୀରୁ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍କଳବକ୍ଷରେ ବହୁ କାବ୍ୟପ୍ରଣେତା ଆବିର୍ଭୂତ ହୋଇଥିଲେ । ଶତକବିକଣ୍ଠନିଃସୃତ ମଧୁର ସ୍ୱର-ମୂର୍ଚ୍ଛନାରେ, ଯମକ, ଅନୁପ୍ରାସ, ଉତ୍ପ୍ରେକ୍ଷା, ଭ୍ରାନ୍ତି, ସ୍ମୃତି, ଅପହ୍ନୁତି, ଅତିଶୟୋକ୍ତି, ଶ୍ଳେଷୋକ୍ତି, ବକ୍ରୋକ୍ତି ଓ ବିଭିନ୍ନ ବୃତ୍ତ, ରାଗରାଗିଣୀସମନ୍ୱିତ ସଙ୍ଗୀତ ଧ୍ୱନିରେ

---

✱ "Oriyas love learning, and they apply themselves to it without intermission"

✱✱ "In 1435 Kapilendra Dev assumed the rulership of Orissa". (Orissa in the making)

Digitized by srujanika@gmail.com

ଉତ୍କଳର ଗଗନ ପବନ ପ୍ରତିଧ୍ୱନିତ ହେଲା । ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ କାବ୍ୟଲେଖକ ଥିଲେ—ଦୀନକୃଷ୍ଣ ଦାସ । ରାଧାକୃଷ୍ଣତତ୍ତ୍ୱସମ୍ବଳିତ ଭକ୍ତିଭାବଗର୍ଭିକ କାବ୍ୟ କବିତା ଶୃଙ୍ଗାର ଭକ୍ତି-ରସରେ ରସାଣିତ କରି ସେ ଲୋକସମ୍ମୁଖରେ ପରିବେଷଣ କରୁଥିଲେ । ରାଧାକୃଷ୍ଣଭାବରେ ଉତ୍କଳବାସୀ ବିଭୋର ହୋଇଥିବା ବେଳେ, ଉତ୍କଳର ସାହିତ୍ୟ-ଗଗନରେ ଉପେନ୍ଦ୍ରଭଞ୍ଜ ଦୀପ୍ତିମନ୍ତ ସୂର୍ଯ୍ୟ ତୁଲ୍ୟ ଦେଖାଗଲେ । ତାଙ୍କର କାବ୍ୟକବିତାଗର୍ଭରୁ ସୀତାରାମଧ୍ୱନି ଉଚ୍ଛୁଳି ଉଠି ଉତ୍କଳର ପୁରପଲ୍ଲୀ ପ୍ରତିଧ୍ୱନିତ କଲା—

"ଜୟ ଜୟ ଜୟ ରାମ ଜନକସୁଖଦ ।
ରାମ ହରଷଦାନରେ ସଦା ବିଶାରଦ ହେ ।
ଚନ୍ଦ୍ରହାସେ ଶୋଭାକର ସମସ୍ତ କାଳର ।
ଲକ୍ଷଣବନ୍ତ ଅଲକ୍ଷ ମୁଖ ମନୋହର ଯେ । ଇତ୍ୟାଦି"

ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ କବିତାର ସ୍ୱର ଅଷ୍ଟାଦଶ ଶତାବ୍ଦୀ ପ୍ରାରମ୍ଭରେ ଉଠି ସାହିତ୍ୟକ୍ଷେତ୍ରରେ ଅଭିନବ ଓ ଚମତ୍କାରପ୍ରଦ ସୃଷ୍ଟି ଆରମ୍ଭ କଲା । ବହୁଶାସ୍ତ୍ରଦର୍ଶିତା ଅସାଧାରଣ ପ୍ରତିଭା ଓ ଦେବୀ ପ୍ରଭାବବଳରେ ସେ ସ୍ୱୀୟ କବିତାପ୍ରବାହ ମଧ୍ୟରେ ଯେଉଁ ଅଭୂତପୂର୍ବ ଶବ୍ଦସମ୍ଭାର, ବିଭିନ୍ନ ଅଲଙ୍କାର ବହୁଅର୍ଥବୋଧକ ଓ ବିଚିତ୍ର ଛନ୍ଦୋବନ୍ଧର ମନୋହର ପ୍ରଦର୍ଶନୀ ପରମ୍ପରାକ୍ରମେ ପାଠକବର୍ଗଙ୍କର ଅସରନ୍ତି ଉପଭୋଗ୍ୟ ସାମଗ୍ରୀ-ସ୍ୱରୂପ ଚିରଦିନ ପାଇଁ ସାରସ୍ୱତ ସାହିତ୍ୟଭଣ୍ଡାରରେ ଉନ୍ମୁକ୍ତ ରଖିଛନ୍ତି, ସେଥିରେ ଦର୍ଶକ, ପାଠକ ଓ ସାହିତ୍ୟିକ ଯୁଗପତ୍ ହର୍ଷବିହ୍ୱଳ ଓ ବିସ୍ମୟାବିଷ୍ଟ ହୋଇପଡ଼ନ୍ତି ।

ନିମ୍ନୋକ୍ତ ବିଶିଷ୍ଟ କାରଣରୁ ଉପେନ୍ଦ୍ରଙ୍କୁ ସାହିତ୍ୟ-ଜଗତର ବିପ୍ଳବୀ କହିବା ସଙ୍ଗତ :—

୧ । ଉପେନ୍ଦ୍ରଭଞ୍ଜ ବହୁଶାସ୍ତ୍ରଦର୍ଶୀ ଥିଲେ । ତାଙ୍କର ଅଭିଧାନ, ଅଲଙ୍କାର, ବ୍ୟାକରଣ, କଳାବିଦ୍ୟା, ସଂସ୍କୃତ, ଷଟ୍‌କାବ୍ୟ, ଜ୍ୟୋତିଷ, ତନ୍ତ୍ର, ଆୟୁର୍ବେଦ ପ୍ରଭୃତି ବିଦ୍ୟାରେ ଯେ ଅସାଧାରଣ ପାରଦର୍ଶିତା ଥିଲା, ତାହା ଦୃଷ୍ଟାନ୍ତ ସହିତ ପୂର୍ବବର୍ତ୍ତୀ ପରିଚ୍ଛେଦମାନଙ୍କରେ ପ୍ରସଙ୍ଗାନୁକ୍ରମେ କୁହାଯାଇଛି । ସକଳ ଶାସ୍ତ୍ରରେ ପୂର୍ଣ୍ଣ ପାଣ୍ଡିତ୍ୟ ଅର୍ଜନ କରି ସେ କବିତା-ସାମ୍ରାଜ୍ୟ ଭିତରେ ପ୍ରବେଶ କରିଥିବାରୁ, ସେ ପୂର୍ଣ୍ଣମାତ୍ରାରେ ଓ ଅଭୂତ-ପୂର୍ବଭାବରେ ଯଶସ୍ୱୀ ହୋଇ ପାରିଥିଲେ । ଅଲୌକିକ ପ୍ରତିଭା ବ୍ୟତୀତ ଜୀବନରେ ବହୁ ଶାସ୍ତ୍ରରେ ପୂର୍ଣ୍ଣ ପାଣ୍ଡିତ୍ୟ ଅର୍ଜନ ଓ ସ୍ତୁପୀକୃତ ଦୁର୍ବୋଧଗ୍ରନ୍ଥ ପ୍ରଣୟନ କରିବା ଅସମ୍ଭବ । ତାହା ଉପେନ୍ଦ୍ରଙ୍କଠାରେ ସମ୍ଭବ ହୋଇଥିବାରୁ ସେ କବିତା ସାମ୍ରାଜ୍ୟରେ ଯୁଗପ୍ରବର୍ତ୍ତକ ଆସନର ଯୋଗ୍ୟ ହୋଇଅଛନ୍ତି ।

୨ । ଶାବ୍ଦିକ ଓ ଆଲଙ୍କାରିକ ଭାବରେ ସେ ଅଦ୍ୱିତୀୟ । ସଂସ୍କୃତ-ସାହିତ୍ୟ ଜଗତରେ କାଳିଦାସ, ଭାରବି, ମାଘ ଓ ଶ୍ରୀହର୍ଷ * ବିବିଧ ଅଲଙ୍କାରର ପ୍ରବର୍ତ୍ତକ ଥିଲେ । ଉପେନ୍ଦ୍ର ଓଡ଼ିଆ ସାହିତ୍ୟରେ ବିବିଧ ଅଲଙ୍କାର କୃତିତ୍ୱର ସହିତ ପ୍ରୟୋଗ କରି ଓଡ଼ିଆ ସାହିତ୍ୟକୁ ସାହିତ୍ୟ-ଜଗତରେ ଅମର କରିଅଛନ୍ତି । ଉତ୍ପ୍ରେକ୍ଷା, ଦୃଷ୍ଟାନ୍ତ, ଯମକ, ବିରୋଧାଭାଷ, ବକ୍ରୋକ୍ତି, ଅତିଶୟୋକ୍ତି ପ୍ରଭୃତି ଅଲଙ୍କାର ସମସ୍ତଙ୍କ ପକ୍ଷରେ ସହଜ ଓ ବୋଧଗମ୍ୟ ନୁହେ । ସେଥିହେତୁ କବି ପ୍ରଥମେ ପାଠକଙ୍କୁ ସାବଧାନ କରି କହନ୍ତି—

---

* "ଉପମା କାଳିଦାସସ୍ୟ ଭାରବେରର୍ଥଗୌରବମ୍
ଦଣ୍ଡିନଃ ପଦଲାଳିତ୍ୟଂ ମାଘେ ସନ୍ତି ତ୍ରୟୋ ଗୁଣାଃ ।
ତାବଦ୍‌ଭାଃ 'ଭାରବେର୍ଭାତି ଯାବନ୍ମାଘସ୍ୟ ନୋଦୟଃ
ଉଦିତେ ନୈଷଧେ କାବ୍ୟେ କ୍ୱ ମାଘଃ କ୍ୱ ଚ ଭାରବିଃ ।"

Digitized by srujanika@gmail.com

"ନାନା ଶବ୍ଦ ଅର୍ଥେ ଯେ ବିଚକ୍ଷଣ,
ଯେଣୁ ଜାଣେ ଅଳଙ୍କାର ଲକ୍ଷଣ,
ସେହୁ କରୁ ଏ ଗ୍ରନ୍ଥ ବିବେଚନା—"

ପାଠକବର୍ଗଙ୍କ ସୁବିଧା ପାଇଁ ବିଭିନ୍ନ ଅଳଙ୍କାରର ପ୍ରୟୋଗ ପୂର୍ବରୁ ସ୍ଥଳବିଶେଷରେ ସେ ତାର ସୂଚନା ଦିଅନ୍ତି—"ବିସ୍ମରଇ ମାଳଯମକରେ କବି" ଇତ୍ୟାଦି । କେଉଁ ଗ୍ରନ୍ଥରେ କେତେ ପ୍ରକାର ଅଳଙ୍କାର ପ୍ରୟୋଗ କରାଯାଇଛି, କବି ତାହା ଗ୍ରନ୍ଥ ଶେଷରେ ବେଳେ ବେଳେ କହନ୍ତି—

"ଏଠାରୁ ଏ ଗ୍ରନ୍ଥ ସମ୍ପୂର୍ଣ୍ଣ ଏତେ ଲକ୍ଷଣେ ଯୁକ୍ତ
ଶ୍ଳେଷରେ ଅଭଙ୍ଗ ସଭଙ୍ଗ ଭଙ୍ଗାଭଙ୍ଗ ହିଁ ବ୍ୟକ୍ତ ।
ଛ ବିଧି ଯମକ ଆଶସ୍ଥ ରୂପକରେ ଦୀପକ,
ବହୁଳପି ଅନ୍ୟଲିପିକା ଯେନ ବର୍ଣ୍ଣିରୋଚକ ।"

'ଲାବଣ୍ୟବତୀ'ର ସପ୍ତମ ଛାନ୍ଦରେ ଚନ୍ଦ୍ରଭାନୁ ପ୍ରତି ବନ୍ଦୀର ପ୍ରଶସ୍ତି ପଦାଂଶ ଚମତ୍କାରିକ ହୋଇଅଛି—

"ଭେଟେ କବି ଗୀତ କରି ନିବିଧରେ
ପ୍ରାନ୍ତ ଯମକ ଶୃଙ୍ଖଳା ଗୋମୂତ୍ରରେ ।"
"ଦରଚମ୍ବ ହର ଧୀର ପ୍ରଶଂସାର
ସାର ସାମୂଜର କର ଏ ସସାର ।
ସାର ସାର ଜିତ ଗତ ହେଲୁ ମାର
ମାର ପର ସତ ଅତ ସୁ କୁ ମା ର ।"

ଅର୍ଥ—୧ମ ବାକ୍ୟ—ଭୟ ସମୂହକୁ ତୁମେ ନାଶ କରିବାରେ ସମର୍ଥ । ତୁମ୍ଭେ ବିଦ୍ୱାନ୍ ।

୨ୟ —ଏ ସସାରରେ ତୁମ୍ଭେ ସାର । ତୁମ୍ଭେ ସାମୂଜଦ୍ୱନ୍ଦ୍ୱ ଅଟ ।

୩ୟ —ତୁମ୍ଭେ ହଂସର ଗତିକୁ ଜିଣିଛ । ତୁମ୍ଭେ ସୁନ୍ଦର ଅଟ ।

୪ର୍ଥ— ତୁମ୍ଭେ ଶତ କନ୍ଦର୍ପ ଅପେକ୍ଷା ଅଧିକ ସୁନ୍ଦର । ସୌନ୍ଦର୍ଯ୍ୟ ବୃଦ୍ଧି ପାଇ ଅଳଙ୍କାର ଆବଶ୍ୟକ । ସ୍ତ୍ରୀ ପୁରୁଷ ପକ୍ଷରେ ଯାହା, କାବ୍ୟ ପକ୍ଷରେ ହିଁ ତାହା । ଅଳଙ୍କାର ବ୍ୟତୀତ କାବ୍ୟ ଉଚ୍ଚ-କୋଟୀର ହୁଏ ନାହିଁ । ଇଂରାଜରେ ମେଟାଫର (ରୂପକ), 'ସିମିଲି' (ଉପମା) ପ୍ରଭୃତି ଅତି ଅଳ୍ପ ଅଳଙ୍କାର ଅଛି । ଅଳଙ୍କାର ପ୍ରୟୋଗରେ ଉପେନ୍ଦ୍ର ଅତୁଳନୀୟ । ଚକ୍ର, ଗଦା, ପଦ୍ମ, ଶୂଳ, ରଥ, ଖଡ଼୍ଗ, ମହାପଦ୍ମ ପ୍ରଭୃତି ବନ୍ଧ ସମ୍ବୃତ ଚିତ୍ରକୁ ଅନୁସରଣ କରି କବି ପ୍ରୟୋଗ କରିଅଛନ୍ତି । 'ଚକ୍ରକାବ୍ୟବନ୍ଧୋଦୟ'ରେ ରଥ, ପ୍ରାସାଦ ପ୍ରଭୃତି ଅସଂଖ୍ୟ ଭିନ୍ନ ଭିନ୍ନ ବନ୍ଧର ପ୍ରୟୋଗ ଦେଖାଯାଏ । ଏ ଦିଗରେ କବି ଅପ୍ରତିଦ୍ୱନ୍ଦ୍ୱୀ ବିବେଚିତ ହୁଅନ୍ତି ।

୩ । ଦ୍ୱିବିଗର୍ଭିକ ଅପୂର୍ବ ଶବ୍ଦବିନ୍ୟାସ:—

ବୈଦେହୀଶ ବିଳାସରେ "ବନ୍ଦଇ ଦୀନ ବାନ୍ଧବ ହରି" ଇତ୍ୟାଦି ଦୁଇ ପଦରେ ବିଷ୍ଣୁ, ସୂର୍ଯ୍ୟଙ୍କ ପ୍ରତି ମଙ୍ଗଳାଚରଣ କରାଯାଇଛି । ପ୍ରତ୍ୟେକ ପଦରେ ବିଷ୍ଣୁ ସୂର୍ଯ୍ୟଙ୍କ ପ୍ରତି ଦୁଇ ଅର୍ଥ ହୁଏ । ଲା: ବ: ରେ "ଜୟ ଜୟ ଜୟ ରାମ ଜନକ ସୁଖଦ" ଇତ୍ୟାଦି ପାଞ୍ଚ ପଦରେ ତିନି ଅର୍ଥରେ ରାମ, ପରଶୁରାମ, ବଳରାମଙ୍କୁ ସ୍ତୁତି କରାଯାଇଛି । କୋଟିବ୍ରହ୍ମାଣ୍ଡସୁନ୍ଦରୀରେ ୩୦ ପଦ ବିଶିଷ୍ଟ ପଞ୍ଚବିଂଶ ଛାନ୍ଦରେ ବର୍ଷା,

Digitized by srujanika@gmail.com

ଶୀତ, ଗ୍ରୀଷ୍ମଋତୁର ବର୍ଣ୍ଣନା ଅଛି । (ପ୍ରତ୍ୟେକ ପଦରେ ୧୬ ଅକ୍ଷର, ୧୬ ଅକ୍ଷରରେ ରାଗ ଚନ୍ଦ୍ରାବେଶାକ୍ଷ, ବର୍ଷାଋତୁ ବର୍ଣ୍ଣନା, ୧ମ ଅକ୍ଷର କାଟିଦେଲେ ୧୨ ଅକ୍ଷରରେ ରାଗ କାଫି କାମୋଦୀ, ଶୀତଋତୁ ବର୍ଣ୍ଣନା, ପ୍ରଥମ ଦୁଇ ଅକ୍ଷର କାଟିଦେଲେ ରାଗ ମାଳବଶ୍ରୀ, ଗ୍ରୀଷ୍ମଋତୁ ବର୍ଣ୍ଣନା ) । ଏତଦବ୍ୟତୀତ କୋ: ବ୍ର: ସୁ: ବଂଶ ଗୁଚ୍ଛରେ ଶୁକ କଳହଂସ କେଦାର ରାଗରେ, ପୁଷ୍ପଙ୍କରୁ ପଦ୍ମକୁ, ସାନ୍ତ ଭୂପାଳ ରାଗରେ କୋଟି-ବ୍ରହ୍ମାଣ୍ଡସୁନ୍ଦରୀ ପକ୍ଷରୁ କହୁଛି । ଯଥା—

"ବୃକ୍ଷ ସାରସେ ବେକ ରାମ ଭୂତର ।
ଶାରକ୍ଷୀର ମିଶ୍ରିତ ଦ୍ୱିଭୂଜ ବାର ଯେ । ୧ ।
ଶୁକ କନ୍ଧ ବାରତା ଶୁରୁଶ୍ରି ପୂର ।
ସାଶ୍ରି ଅଙ୍ଗରେ ମୃଦୁତର ଦୃ କର ଯେ । ୨ ।
ନାଗରମଣୀ ସାର ସୁରଭି-ଧାମ ।
ନାହିଁ ଶ୍ରୁତରେ ତାହା କରନ୍ତ ସମ ଯେ । ୩ । ଇତ୍ୟାଦି ।

ଅନ୍ୟ ପଦ, ପୁରୁଷ ପକ୍ଷେ—
ନାଗର-ମଣିସାର-ସୁରେ-ଶ୍ରି-ଧାମ ।
ଶ୍ରୁତରେ-ଶାସ୍ତ୍ରରେ ।

ସ୍ତ୍ରୀ ପକ୍ଷେ—
ନାଗରମଣୀ ସାର ସୁରଭି-ଧାମ
ଶ୍ରୁତରେ—ଶୁଣିବାରେ, କ ରତ ସମ ?

ଏତାଦୃଶ ସ୍ତବଗର୍ଭକ ବର୍ଣ୍ଣନା ଭଞ୍ଜ-ସାହିତ୍ୟରେ ବହୁଳ । ଅନ୍ୟ-ସାହିତ୍ୟରେ ବିରଳ ।

ଲ: ବ: ରେ—
"ହଂସ ନାସା ଶଶ ଶାନ୍ତ ବଚନ ରମ୍ୟତା ପ୍ରୀତ
ଏକାନ୍ତ ଦେବାଦ ଯେତେ କଥା ସୁମରେ
ସ୍ୱରଭଙ୍ଗ ପ୍ରଚଳରେ ଭାଷା କେ ବର୍ଣ୍ଣେ ଲୁଚରେ
ତଥାପି ବାଳା ଭାବନା ଆଇ ତହିଁରେ
ସବର୍ଣ୍ଣାଦ ଶବଦ ଶୁଣି,'
ସାଧୁ ଶୁକ ଅଇଲେ କ ହୁଅଇ ଗୁଣି ।"

ଏଥିରେ ୧ମ ଧାଡ଼ିର ପ୍ରତ୍ୟେକ ଶବ୍ଦରୁ ଏକ ଏକ ଅକ୍ଷର କାଟିଲେ "ହା ନାରାୟଣ ରକ୍ଷ ମୋ" ଅର୍ଥ ହୁଏ ।

୪ । ସଙ୍ଗୀତରେ ମୌଳିକତା :—

ପ୍ରଥମେ ଓଡ଼ିଶାର ସଙ୍ଗୀତ ଥିଲା କର୍ଣ୍ଣାଟକୀ, ଉପେନ୍ଦ୍ରଙ୍କ ଯୋଗୁଁ ହେଲା ଓଡ଼ିଶୀ । ଓଡ଼ିଶାର ସ୍ୱାତନ୍ତ୍ର୍ୟ ସେ ରକ୍ଷା କରିଛନ୍ତି । 'ଚନ୍ଦ୍ରା-ଭୈରବ' ପ୍ରଭୃତି ଅସଂଖ୍ୟ ରାଗରାଗିଣୀ ସେ ସୃଷ୍ଟିକରି ସଙ୍ଗୀତରେ ମୌଳିକତା ଦେଖାଇଛନ୍ତି । ଏହା ସାଧାରଣ ମସ୍ତିଷ୍କର କାର୍ଯ୍ୟ ନୁହେଁ ।

Digitized by srujanika@gmail.com

୬ । ଭାବବ୍ୟଞ୍ଜକ ବର୍ଣ୍ଣନାବୈଚିତ୍ର୍ୟ—

କବି ସୁଭଦ୍ରାଙ୍କ ଅଙ୍ଗଲତିକା ବର୍ଣ୍ଣନାରେ ସାତ ଫୁଲ, ସାତ ଫଳ, ସାତ ପକ୍ଷୀର କଳ୍ପନା କରି ବର୍ଣ୍ଣନା କରିଅଛନ୍ତି । ଲାବଣ୍ୟବତୀଙ୍କୁ ପୁଷ୍ପିତା ଲତାରୂପେ ଚିତ୍ରଣ କରି କହିଅଛନ୍ତି—"ନବ ବନିତା ଅପୂର୍ବ ପୁଷ୍ପିତା ପ୍ରକାଶ ଷୋଳ ଜାତି ଫୁଲ ।" କୋଟିବ୍ରହ୍ମାଣ୍ଡସୁନ୍ଦରୀଙ୍କୁ ପ୍ରଜ୍ୱଳିତଜ୍ୱାଳାରୂପେ, ସୀତାଙ୍କୁ ବସନ୍ତଋତୁରୂପେ, ରସିକହାରାବଳୀକୁ ପୁଷ୍କରିଣୀ ରୂପେ ବର୍ଣ୍ଣନା କରି ସ୍ୱପ୍ରତିଭାର ପରିଚୟ ଦେଇଛନ୍ତି । ରସଲେଖାର ଅଙ୍ଗପ୍ରତ୍ୟଙ୍ଗ ବର୍ଣ୍ଣନା ଅତ୍ୟନ୍ତ ହୃଦୟଗ୍ରାହୀ । ସେଥିରୁ ନେତ୍ର ବର୍ଣ୍ଣନା:—

"କିଏ କୁରଙ୍ଗ କି ଅବା ତୁରଙ୍ଗ
ଏଣି ତେଣିକି କରଇ ସୁରଙ୍ଗ ।
କି ଏ ନବ ବିକଚ ପଦ୍ମଦଳ
ପଡ଼ି କାଳିନ୍ଦୀ ଜଳେ ଚଳ ଚଳ ।
କି ଏ ସୁଧା-ସିନ୍ଧୁ ଅବତରି
ହୋଏ ତରଳ ଗରଳ ଲହରୀ ।
କି ଏ ଗଙ୍ଗାକଲ୍ଲୋଳେ ବାତଯୋଗେ
ନୀଳ ଉତ୍ପଳ ଚଳେ ଦୁଇଦିଗେ ।
କି ଏ ସୁଧାମନ୍ଦିରେ କରେ ନାଟ
ବାଦି ଆରମ୍ଭି କେଳି-ଖଞ୍ଜରୀଟ ।
କି ଏ ପଦ୍ମେ ଉଡ଼ି ବସେ ଭ୍ରମର
ଯହିଁ ମୋହିତ ହୋଇବେ ଅମର ।"

୭ । କଥୋପକଥନ ଦ୍ୱାରା ଭଞ୍ଜ-ସାହିତ୍ୟରେ ଚିତ୍ତାକର୍ଷକ ବୋଧହୁଏ । ବୈଦେହୀଶବିଳାସରେ ଦ୍ୱାଦଶ ବେଶ୍ୟା ଓ ଜରତୀ ସହିତ ଋଷ୍ୟଶୃଙ୍ଗଙ୍କ କଥୋପକଥନ, ଦ୍ୱାଃସ୍ଥ ସହିତ ବ୍ରହ୍ମା, ତୁମ୍ବୁରୁ, ନାରଦଙ୍କ ଆଳାପ, କୋଟିବ୍ରହ୍ମାଣ୍ଡସୁନ୍ଦରୀରେ ଉପାଧ୍ୟାୟୀ ଓ ଅବଧୂତୀର କଥୋପକଥନ, "ଜଟିଳା ଭଣି କିଂନରେଶ-ନନ୍ଦିନୀ ପଠପଠୀ ପଦ୍ୟ ଦଶ" ଇତ୍ୟାଦି ଓ ଶୁଆସାରୀଙ୍କର କଥୋପକଥନ, ଲାବଣ୍ୟବତୀର ୫ମ ଛାନ୍ଦରେ ସଖୀମାନଙ୍କ ଲାବଣ୍ୟବତୀ ସହିତ କଥୋପକଥନ ଅତ୍ୟନ୍ତ ରମଣୀୟ, ଭାବଗର୍ଭକ ଓ ହାସ୍ୟୋଦ୍ଦୀପକ । ଏତଦ୍‌ବ୍ୟତୀତ ବୈ: ବି: ର ବକ୍ରବାକ୍ୟ, କୁଟ୍‌କୂଟବାକ୍ୟ ଭାବଗର୍ଭକ ଓ ସୁରୋଚିତ ବିବେଚିତ ହୁଏ । ଭଞ୍ଜ-ସାହିତ୍ୟରୁ କେତୋଟିର ଆସ୍ୱାଦ ଦିଆଗଲା ।

ସ୍ୱୀୟ ନିର୍ଦ୍ଦୋଷ କବିତାର ସରସତା ସମ୍ବନ୍ଧରେ କବିଙ୍କର ଦୃଢ଼ବିଶ୍ୱାସ ଥିଲା । ପାଠକ ହୃଦୟରେ ତାହା ଜାଗ୍ରତ ରଖିବା ପାଇଁ ସେ ନିଜର ସମସ୍ତ ଗ୍ରନ୍ଥରେ ବାରମ୍ବାର ସୂଚନା ଦେଇଛନ୍ତି । ସେ ସମସ୍ତ ପୂର୍ବ ପରିଚ୍ଛେଦମାନଙ୍କରେ ଉଲ୍ଲିଖିତ ହୋଇଅଛି । କାବ୍ୟ କବିତା କୃତିତ୍ୱ ସହିତ ପ୍ରଣୟନ ପାଇଁ ଶବ୍ଦଭଣ୍ଡାର, ବହୁଶାସ୍ତ୍ରଦର୍ଶିତା ଏକାନ୍ତ ପ୍ରୟୋଜନ । ତାହା ସେ ପାଠକବର୍ଗଙ୍କୁ ବାରମ୍ବାର ଜଣା କରନ୍ତି :—

"ତରଣି କୂଳର ପାର । ଆଶ୍ରୟରୁ ନିରନ୍ତର ।
କହେ ଉପେନ୍ଦ୍ର ଭଞ୍ଜ ମୁଁ ଲଙ୍ଘିଛି ଶବଦ ସମୁଦ୍ର ପାର ।"

କୋ: ବ୍ର: ସୁ:, ଛା୧୮ ।

Digitized by srujanika@gmail.com

"ଲକ୍ଷଣଯୁକ୍ତ ପଦ ଚନ୍ଦ୍ର ଉପେନ୍ଦ୍ରର କୃତ ।
ଲକ୍ଷଣ ସହିତ ସାହିତ୍ୟ ଏହି ଚନ୍ଦ୍ର ମୋହିତ ।" କୋ: ବ୍ର: ସୂ:, ଛା: ୮ ।

ଅଗାଧ ପାଣ୍ଡିତ୍ୟ ଓ ଅଲୌକିକ ପ୍ରତିଭାବଳରେ ଉଚ୍ଚକୋଟିର କାବ୍ୟପ୍ରଣୟନ କରାଯାଇପାରେ । ଏହି ଦୃଢ଼ଧାରଣା କବିଙ୍କର ଥିବାରୁ ସେ କହନ୍ତି:—

"ଯାହା ରଚିତ ରସ କବିବାଣୀରେ ଶେଷ ନୋହେ ସେ ଦେବଚନ୍ଦ୍ର ହୃଦେ ସେ ସୁମନାଏ । ପାଞ୍ଚଏ ଛନ୍ଦର ବିସ୍ତର । ନୁହଇ ଆନର ପ୍ରକାର । କହେ ଉପେନ୍ଦ୍ରଭଞ୍ଜ ଉତ୍ତମ କବିପୁଞ୍ଜ ଦୁର୍ଲଭ ମାର୍ଗେ ମୋ ସଞ୍ଚାର ସେ ।" କୋ: ବ୍ର: ସୂ:, ଛା: ୧୩ ।

"ରସିକେ ରସିକର ଏଥି ପଦନିକର ସୁଧାଶୀକର ପାନ ତୋଷେ ।" କୋ: ବ୍ର: ସୂ:, ଛା: ୧୩ ।

"ଉପଇନ୍ଦ୍ର ଭଞ୍ଜ ଅତି ଭୂପତି, ରସିକ କୋବିଦ ଶ୍ରୁତି-ସୁଖ ସାର
ମଧୁର ଛାନ୍ଦ ଏ କୃତ ହେ । ସୁଜନେ ।" ଛା: ୨୨ ।

କବିଙ୍କ ବିଜ୍ଞବ୍ୟକ୍ତିଙ୍କ ପ୍ରତି ଯେତିକି ସମ୍ମାନ, ଭକ୍ତି, ବିଶ୍ୱାସ ଥିବା ଦେଖାଯାଏ, ସେତିକି ପରିମାଣରେ ଖଳ, ମୂର୍ଖ, ଅଦୂରଦର୍ଶୀ ପ୍ରତି କଡ଼ା କଟାକ୍ଷ, ଅପେକ୍ଷା, ନିନ୍ଦା, ତିରସ୍କାର ଗ୍ରନ୍ଥରେ ସନ୍ନିବେଶିତ ଅଛି; ଯଥା—

(୧) "ଖଳ ବାଳକେ ଏକଥା ପ୍ରସଙ୍ଗ ।
ରସିକ ଯେହି ଘେନିବ ଏ ଗ୍ରନ୍ଥ ।
ବ୍ୟସ୍ତ ଅଲଙ୍କାର ।
ମଣ୍ଡନବିଧି ନିର୍ଦ୍ଦୋଷ ବିସ୍ତର ।" ଛା ୧୨, କୋ: ବ୍ର: ସୂ: ।

(୨) "କବି ଗୁରୁଙ୍କ ଅନେକ ଅଛି ପୁଣି
ଘେନିଲେ ଜନ୍ମିବ ଆନନ୍ଦ ଜାଣିଲି । ଜନମନକୁ ଏ ତୋଷିବ ।
ମୂଢ଼ ସ୍ୱଭାବ ଅଦୃଷ୍ଟରଜା ପରି ସେ କାହିଁ ରତି ପ୍ରକାଶିବ ।" ଛା ୫, ଲ: ୭: ।

(୩) "ହେ ରାମ ଶ୍ୟାମ କାମ ସମ ସୁଷମ ବାମ ଯମ ଶ୍ରମ ବନ୍ଦନ ।
ଦାନବ ଦାନବାରି ଦାନବତ୍ସଲ ଜାନକୀ-ହୃଦୟ-ଚନ୍ଦନ ।
କର ଏ କରୁଣା ବିଜ୍ଞ ହସ୍ତଗତ ଏ ପୁସ୍ତକ ମୋର ହୋଇବ ।
ଅଜ୍ଞସମୂହର କର୍ଣ୍ଣକୁହରକୁ କେବେହେଁ ପ୍ରବେଶ ନୋହିବ ।
ଆଖୁ ଅନଳ । ସାଗରେ ନ ଲଭି ବିନାଶ ।
ଉତ୍ତମ ଜନରେ ଦୂଷିତ ନୋହିଣ ପ୍ରକାଶ ହେଉ ସର୍ବଦେଶ ।" ର: ହା: ।

କବିଙ୍କ ଉପରୋକ୍ତ ନିର୍ଭୀକ ମତ ସତ୍ୟତା-ଭିତ୍ତି ଉପରେ ପ୍ରତିଷ୍ଠିତ ଥିଲେ ମଧ୍ୟ, କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ପରି ପାଣ୍ଡିତ୍ୟ, ପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କ ବ୍ୟତୀତ ଅନ୍ୟ କାହା ପକ୍ଷରେ ସେପରି ଭାବରେ କହିବା ସମ୍ଭବପର ନୁହେ ।

Digitized by srujanika@gmail.com

ପୂର୍ବ ପରିଚ୍ଛେଦମାନଙ୍କରେ ବର୍ଣ୍ଣିତ ବିବିଧ ପ୍ରସଙ୍ଗରୁ ବୁଝାଯାଏ, କବି ସ୍ୱୀୟ ଅନନ୍ୟସାଧାରଣ ଶକ୍ତି, ସାମର୍ଥ୍ୟ, ବୁଦ୍ଧିବୃତ୍ତି, ବିବେଚନା ବଳରେ ସାହିତ୍ୟ ରାଜ୍ୟର ପ୍ରଚଳିତ ପରମ୍ପରା ଭିତରେ, ଲୋକକଲ୍ୟାଣ କାମନାରେ ନୂତନତାର କେତେକ ସ୍ପୃହଣୀୟ ପ୍ରିୟ ପଦାର୍ଥ ପାଠକ ପାଠିକାଙ୍କୁ ଉପହାର ଦେଇଛନ୍ତି । ସେ ନିର୍ଦ୍ଦୋଷ ତୁଳାଦଣ୍ଡରେ ତୁଳି ନାୟକ ନାୟିକା, ଦୂତ ଦୂତୀ, ସଖୀ ସହଚରୀ, ଶାସକ ଶାସିତ, ପଣ୍ଡିତ ପାଷାଣ୍ଡ, ପିତା ପୁତ୍ର, ମାଳିନୀ ସନ୍ନ୍ୟାସିନୀ, ବନ୍ଦୀକାରୀ କର୍ମଚାରୀ, କୃଷକ ଐନ୍ଦ୍ରଜାଲିକ, ଜାଙ୍ଗଳିକ ନାଗରିକ ପ୍ରକୃତିର ମର୍ମସ୍ପର୍ଶୀ ଚିତ୍ରଣ କରିବାର ଅନୁଭୂତି, ଦୂରଦର୍ଶିତା, ପାଣ୍ଡିତ୍ୟ ଓ ପ୍ରତିଭା ବଳରେ ଉପହାର ଦେବା ସଙ୍ଗେ ସଙ୍ଗେ ପ୍ରକୃତ ପେଟିକାଗର୍ଭରୁ ଅସଂଖ୍ୟ ନିତ୍ୟନୂତନ ତଥ୍ୟ ଆହରଣ କରି ଯତ୍ନପୂର୍ବକ ସିଦ୍ଧ ସାଧକ ତୁଲ୍ୟ ସମାଜ ସମ୍ମୁଖରେ ଉପସ୍ଥାପନ କରିଅଛନ୍ତି । କବିଙ୍କ ଭାଷାରେ—"ଦୁର୍ଲ୍ଲଭ ମାର୍ଗେ ମୋ ସଞ୍ଚାର", ତାଙ୍କର କାବ୍ୟ କବିତା—ସ୍ତୂପୀକୃତ ଗ୍ରନ୍ଥ "ନୁହଇ ଆନର ପ୍ରକାର', ଉକ୍ତି ଯଥାର୍ଥ । ମହାତ୍ମା ଗାନ୍ଧିଜୀ ଯେପରି କୋଟି କୋଟି ଅତ୍ୟାଚାରିତ ନିଃସ୍ୱ ନରନାରୀଙ୍କ ପାଇଁ ସହିଷ୍ଣୁତା-କବଚରେ ନିଜକୁ ବିଭୂଷିତ ରଖି ଏକ ହସ୍ତରେ ଅହିଂସା-ସୁଦର୍ଶନଚକ୍ର, ଅନ୍ୟ ହସ୍ତରେ ଚରଖା-ଆୟୁଧ ଧାରଣପୂର୍ବକ ଅସହଯୋଗ ସମର-ପ୍ରାଙ୍ଗଣରେ ହିଂସା-ଅସ୍ତ୍ର ବିରୁଦ୍ଧରେ ରାଜନୈତିକ ବୀରତ୍ୱରେ ଯାବଜ୍ଜୀବନ ସଂଗ୍ରାମ କରି ସ୍ୱାଧୀନତା ହାସଲ କରିଥିଲେ, କବିସମ୍ରାଟ୍ ଉପେନ୍ଦ୍ର ତଦ୍ରୂପ ସର୍ବସାଧାରଣଙ୍କ କଲ୍ୟାଣ କାମନାରେ କବିତା-ସାମ୍ରାଜ୍ୟର ସୁପରିବର୍ତ୍ତନ ସମ୍ପାଦନ ଓ ଶ୍ରୀ ସମ୍ପାଦନ ପାଇଁ ପାଣ୍ଡିତ୍ୟ ପ୍ରତିଭା-ଦେବୀ, ପ୍ରତିଭା-ଅସ୍ତ୍ରରେ ସଜ୍ଜିତ ରହି ସାହିତ୍ୟିକ ବୀରତ୍ୱରେ ମା ଭାରତୀଙ୍କ ସାରସ୍ୱତ ଭଣ୍ଡାରରୁ ଅପରିମିତ ଶ୍ରମସାଧନା ଫଳରେ ଯେଉଁ କବିତା-ସାମଗ୍ରୀ ସଂଗ୍ରହ କରି ଯାଇଛନ୍ତି, ତାହା ପାଠକ ପାଠିକା ଦୃଷ୍ଟିରେ ହୁଏ ଅନନ୍ୟ-ସାଧାରଣ; ସୁତରାଂ ସାହିତ୍ୟ-ସାମ୍ରାଜ୍ୟର ସେ ହୁଅନ୍ତି ସମ୍ରାଟ୍, ଯୁଗପ୍ରବର୍ତ୍ତକ ଓ ବିପ୍ଳବୀ ।

Digitized by srujanika@gmail.com

## ରାଜନୀତି

ନାୟକ ନାୟିକା, ରାଜା ପଞ୍ଚମଦ୍ରଷ୍ଟୀ, ରେମା, ରାଜସଭା, ମୃଗୟା, ପୁଷ୍ପ ଅଭିଯାନ, ତୀର୍ଥଯାତ୍ରା ପ୍ରଭୃତି ବର୍ଣ୍ଣନ ମଧ୍ୟରେ ରାଜକୀୟ ଗୀତ ନୀତି ତଥା ରାଜାଡ଼ମ୍ବର ସୂଚନା ହୋଇ ରହିଛି । "ମନୋହର ବସନ୍ତ ଋତୁକୁ ଚାହିଁ ଆଗମେ କର୍ଣ୍ଣାଟ ସୁତ" ବନେ ବିଚରୁଥିଲାବେଳେ ସମୀପରେ ସ୍ୱର ମିତ୍ର ବସିଥିଲେ । ଶୁଣ୍ଢିଆ 'ସାବଧାନ ମହିମା' ବୋଲି ତାନ ଦେଉଥିଲା । ଖଟଣୀ କିଙ୍କରଗଣ ସେବାରେ ନିଯୁକ୍ତ ରହୁଥିଲେ, ଭାଟମାନେ ଯଶୋଗାନ କରୁଥିଲେ ; କବି ଅବା ଗୀତ ରଚନା କରି ଭେଟୁଥିଲେ । ଅନ୍ୟାନ୍ୟ ବହୁରୂପ ସେହି ସମୟରେ ଯାଉଥିଲେ, ତାହା କବିଙ୍କ ଭାଷାରେ :—

"ହାଟ ଦେଖାଉଅଛନ୍ତି ନଟ ଭଣ୍ଡି ।
ଚଢ଼ି ବଂଶଶଲାକାରେ ଢୋଲ ବାଇ ।
ନାଟ କରୁଅଛନ୍ତି ଗୁଣିକଆଳୀ ।
ଗୀତ ଗାଉ ଅଛନ୍ତି ଗୁଣିକେ ମିଳି ।
ଗଜ ଅଶ୍ୱ ରତନ ବସନ ମାନ
ମୂଲ୍ୟ କରୁଛନ୍ତି ଜ୍ଞାନଶୀଳ ଜନ ।
ରାଜାମାନେ ଗତ ଯୁଦ୍ଧକଥା ଭଣି ।
କରୁଛନ୍ତି ସାଧନ ପାଦାନ୍ତ ଆସି ।" ଲ: ବ: ।

ନାଚ, ଖେଳ, କସରତ, ବିକା କିଣା ଚାଲିଥିଲାବେଳେ ଶ୍ରୀରାମୁ ରାମୁଆମାନେ ଯୁବରାଜଙ୍କ ସମ୍ମୁଖରେ ଅପୂର୍ବ ଶୁଆଟିଏ ଭେଟିଲେ । ସେ ଅଚାନକ ଚମତ୍କାରରେ ପଢ଼ିଲା, "ପଢ଼ା ଶୁଣି ସବେ ତୋଷଭର" । ରାଜଦ୍ୱାରର ଗହଳ ଚହଳ ମଧ୍ୟରେ 'ବେପାରୀର' ଝପଟି ଆସି ଉଚ୍ଚ ସ୍ୱରରେ ଶ୍ରୀରାମୁଙ୍କ ଦର୍ଶନ ଅଭିଳାଷରେ ସିଂହଳରୁ ଜଣେ ବୋଇତଅଳ ଆସିଥିବା ଜଣାଇଲା । ଯୁବରାଜଙ୍କ ଆଜ୍ଞା ପ୍ରମାଣେ ସେ ଆସି ସଦସ୍ଥାନରେ ପ୍ରଣାମ କରି ସମ୍ମୁଖରେ ଦେଖାଇଦେଲା । ବ୍ରହ୍ମଜାତ ସାର, ମେଷଚକ୍ଷୁ ନୀଳା, ମୁକ୍ତା, ମାଣିକ୍ୟ, ପ୍ରବାଳ, ପାଷାଣ ଶିଳା, ଅଗୁରୁଚନ୍ଦନ, ଅତର, ଶ୍ରୀକର୍ପୂର, ନଆ, ପଟାରନାଟ, ବଂଶପତି ହଂସତାଳ, ସିନ୍ଦୁରମଣି, ଜମ୍ବୁନଦ, ହେମ, ଦନ୍ତଦନ୍ତ, ବ୍ୟାଘ୍ରନଖ, ଦକ୍ଷିଣାବର୍ତ୍ତୀ ଶଙ୍ଖ, ଖଡ୍‌ଗ, କନକ ମୃଗ ଚର୍ମ, ଏକମୁଖୀ ରୁଦ୍ରାକ୍ଷ, ଶାମୁକ ଫଣୀ, ଲୌହ ମୃଣ୍ମ ପ୍ରଭୃତିର ମନୋହର ପ୍ରଦର୍ଶନୀ ସେ ଖୋଲିଲା । ନାନା ଦେଶର ବିବିଧ ଚମତ୍କାର ଜିନିଷ ଦେଖି ଦର୍ଶକମାନେ ତୃପ୍ତ ହେଲେ ।

ବୈଦେହୀଶବିଳାସରେ ରାଜାଧିରାଜ ରାବଣର ଆତ୍ମୀକ ମନ୍ତ୍ରଣାରୁ ଯେତେବେଳେ ଜଣାର୍କରେ ପଦ୍ମଭଙ୍ଗ ହେଲା, ସେ ସହସା ଅଶୋକବନକୁ ଅଭ୍ୟାନ୍ତରେ କଲା । ସେତେବେଳେ—"ବନ୍ଧୁର ବନ୍ଧୁରେ ଅନ୍ଧାର ଘଉଡ଼ି ଶୁଭେ ମହିମା ମହିମା ସ୍ୱନ ସେ । କଥିଲେ । ବୃନ୍ଦବନ୍ତ ନଜ ପ୍ରାପ୍ତେ ନେବ । ବହୁ ଶୂଳ ଗଦା ଅସିପତ୍ର । ବଂଶାର୍ଦ୍ଧ ଆନନ ଶୋଭା ଆନ-ଆନ ଆନ ନ ଲଙ୍ଘେ ଯା ଦେବଗୋତ ସେ, ବଂଶାକ୍ଷ ।"

Digitized by srujanika@gmail.com

ରାତି ସମୟରେ ଗୁରଜୀ ବଜିଲେ ମଧ୍ୟ, ଘଣ୍ଟା ବଜାଇ ଉଚ୍ଚ ସ୍ୱରରେ ଧ୍ୱନି ଦିଆଯାଉଥିଲା, 'ମହିମା, ମହିମା' ଡାକ ପଡ଼ୁଥିବା ରାଜଶାସ୍ତ୍ର ଶୀତ । ଶିକାର ସମୟରେ, ଅଭିଷେକ ସମୟରେ ବହୁ ରାଜକାର୍ଯ୍ୟ ନୀତି ପ୍ରଚଳିତ ଥିଲା । ରାଜା ଘରର ବିବାହ-ଶୋଭାଯାତ୍ରା, ଯୌତୁକପ୍ରଥା ସାଧାରଣ ସାମାଜିକ ନୀତି ଅପେକ୍ଷା ବହୁ ଆଡ଼ମ୍ବରପୂର୍ଣ୍ଣ ଓ ବ୍ୟୟସାପେକ୍ଷ । ପାଖରେ ରାଜା ଓ ଯୁବରାଜମାନଙ୍କର ବ୍ୟସନର ଅନ୍ତର୍ଗତ । ସେଥିରେ ରାଜକାର୍ଯ୍ୟ ଛଟା ଭକ୍ତି-ସାହିତ୍ୟରେ ଯେ ଦ୍ରଷ୍ଟବ୍ୟ ତାହା ଅନ୍ୟତ୍ର ଉଲ୍ଲେଖ କରାଯାଇଛି । ରାଜଦ୍ୱାରରେ କଞ୍ଚୁକୀ, ଦୂତ ଦୂତୀ, ମାଳୀ, ମାଗଧ, ବନ୍ଦୀଜନ, କଥକ ପ୍ରଭୃତି ସେବକ ସେବିକା ଭାବରେ ରହି ରାଜଦ୍ୱାରର ଆଡ଼ମ୍ବର ରକ୍ଷା କରନ୍ତି । ରାଜକନ୍ୟାମାନଙ୍କ ବେଶବିନ୍ୟାସ ଓ ପ୍ରସାଧନ ପାଇଁ ଅଙ୍ଗରକ୍ଷୀ ପରିଚାରିକା ନିଯୁକ୍ତ ଥାଇ କନ୍ୟାମାନଙ୍କ ମନୋମତ କାମ କରନ୍ତି । କନ୍ୟାମାନଙ୍କ "ମନ ବିକାରରୁ ଜାଣି, ଚତୁର ପରିବାରମାନେ ଆଣି ଯେ ଶୃଙ୍ଗାର ଭୂଷଣ ପେଡ଼ି ଯେ । ଯତନ ରତନ ମଣ୍ଡନ ବସନ ବାଛିଲେ ସଜନୀ ଫେଡ଼ି ଯେ ।" ଏବଂ ମୁକୁର ମାଳ ସମ୍ମୁଖରେ ରଖେ, "ନଖେ ଟଙ୍କାର ଦେଇଣ ବେଣିକାର୍ଯ୍ୟ ଦେଲା କେଶ କୁଣ୍ଡ ଅଛି ଯେ ।" "ମଙ୍ଗଳାଙ୍କ ରଖି" "ଆମ୍ବ ଜଳ" ଏବଂ କେଶ "ସାମନ୍ତଲି ଧୀରେ, କରେ ଧରି ମୂଳେ ଭିଡ଼ା ଭିଡ଼େ," ଏବଂ "ସୁନ୍ଦରଗାର ସିମନ୍ତିରେ" ଦିଏ ଇତ୍ୟାଦି । ଏ ସମସ୍ତ ରାଜକାର୍ଯ୍ୟ ସ୍ଥିତ । ଖଟଣୀ କିଙ୍କର, କିଙ୍କରୀମାନେ ସତତ ରାଜଦ୍ୱାରର ରାଜନୀତି ପରିଚାଳନାରେ ନିଯୁକ୍ତ ରହି ରାଜପ୍ରାସାଦର ଶୋଭା, ଚହଲ ବୃଦ୍ଧି କରନ୍ତି ; ବେଳେ ବେଳେ ମଧ୍ୟ ମନଧର୍ମ କଥା କହି କହି ରାଜା, ରାଣୀ, କନ୍ୟା, ଯୁବରାଜ ପ୍ରଭୃତିଙ୍କ ମାନସିକ ଗତି ଅବାଞ୍ଛନୀୟ ରୂପେ ଓଲଟ ପାଲଟ କରନ୍ତି । ସେ ଯୁଗରେ ସମୟ ଜାଣିବା ପାଇଁ ଘଣ୍ଟା ନ ଥିଲା । ଡାହୁକ, ପିକ, କୁକ୍କୁଟ, ଦାନ ଓ ଅନ୍ୟାନ୍ୟ କେତେକ ବିହଙ୍ଗମଧ୍ୱନିରୁ ରାତ୍ରବେଳେ ସମୟ ନିରୂପଣ କରାଯାଉଥିଲା । ଦିବସରେ ସୂର୍ଯ୍ୟଙ୍କ ଗତି ଲକ୍ଷ୍ୟ କରି ସମୟ ସ୍ଥିର କରାଯାଉଥିଲା । ରାଜପ୍ରାସାଦର କଥା ଭିନ୍ନ । ଏଠାରେ ଶୁଆ, ସାରୀ, କପୋତ ପ୍ରଭୃତି ଦାୟିତ୍ୱ ବହୁଥିଲେ । ସେମାନଙ୍କ ଧ୍ୱନିରୁ ରଜନୀର ଶେଷ ସମୟ ନିରୂପଣ କରାଯାଉଥିଲା । ଦିବସରେ ନିର୍ଦ୍ଦିଷ୍ଟ ସମୟ ଜାଣିବା ପାଇଁ ଗୁଳି ମାରାଯାଏ । ସେଥିପାଇଁ କର୍ମଚାରୀ ପରିଚାରୀ ନିଯୁକ୍ତ କରାଯାଇଥାଏ । ଲାବଣ୍ୟବତୀ ପୁଷ୍ପବତୀ ହେବାର ନିର୍ଦ୍ଦିଷ୍ଟକାଳ 'ପାଟ ଜଉତପ ପୂଜା' ନିମନ୍ତେ ସ୍ଥିର କରିଥିଲେ :—

"ଗୁଳି ମରାଇ ମୂଳକରି ନାଳ
କନ୍ୟା ପାଣକୁ ଚଳଲେ ତତ୍କାଳ ।" ଲା: ବ: ।

ଭଞ୍ଜୀୟ ଗ୍ରନ୍ଥରେ ରାଜକନ୍ୟାମାନଙ୍କ ଏକାଧିକ ସଖୀ, ସହଚରୀ ଅଛନ୍ତି । ସେମାନେ ସମ୍ପଦ, ବିପଦ ସକଳ ସମୟରେ ରାଜକନ୍ୟାଙ୍କ ପ୍ରିୟବନ୍ଧୁ ଭାବରେ ଚଳନ୍ତି । ସାମୟିକ ସାହାଯ୍ୟ ସାହଚର୍ଯ୍ୟ କରନ୍ତି, ହାସ୍ୟ ଉଦ୍ଦୀପକ ଆଳାପରେ ସଖୀଙ୍କ ଜୀବନ ମହାମନୋଜ୍ଞସ୍ୱରମୟ କରନ୍ତି । ଲାବଣ୍ୟବତୀଙ୍କର ମଧ୍ୟ ଏକାଧିକ ପ୍ରିୟ ସହଚରୀ ଥିଲେ । ସେମାନେ ହୁଅନ୍ତି—

"ରସଲେଖା ସୁରେଖା ଶଶିଲେଖା । ହାରାବଳୀ ଚନ୍ଦ୍ରାବଳୀ ଏ ଲେଖା ।
ରତ୍ନମାଳା ହେମମାଳା କମଳା । ପ୍ରେମଶୀଳା ସୁଶୀଳା ପଦ୍ମଳା ।
କଳ୍ପଲତା ମଦାଳସା ମଞ୍ଜୁଳା । ପ୍ରେମସୁଧାନିଧି ପ୍ରଭାମଞ୍ଜୁଳା ।"

ଏମାନେ ସଖୀଙ୍କ ବିପଦ ସମୟରେ ଦୁଃଖିତ ହୋଇ, ସଖୀଙ୍କୁ ବିପଦରୁ ରକ୍ଷା କରିବାପାଇଁ ଚିନ୍ତା କରନ୍ତି— "ରକ୍ଷା କେମନ୍ତେ କରି କରିବା ମନ୍ତ୍ରକରି ଗଡ଼ରୁ ଏମନ୍ତ ବୋଲୁଛି, ସେ ସହଚରୀ । ସବେ ବଞ୍ଚିଲେ ଏ କାଳରୁ କଥା ଥିବ କାଳ କାଳକୁ" । ପ୍ରାସାଦର ସଂକୀର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ କନ୍ୟାଙ୍କ ଜୀବନରେ ସରସତା ଆନୟନ ପାଇଁ, ସେମାନେ ବେଳେ ବେଳେ ପରିହାସମୟ ଆଳାପରେ ଲିପ୍ତ ରହନ୍ତି । ଯଥା—

Digitized by srujanika@gmail.com

“ଦୈବ ନାହାନ୍ତି କହେ ମୋହପାଇଁ ପକ୍ଷି ରଖିଥିବି ଏକା କରୁଣା ।
ଦେବବନ୍ଧୁଭକ୍ତ ନିଭୃତାନ୍ତୁ ଝୋଟେ ବିଧାତା ଜଳଣି ତରୁଣା ।
ସେ ଶୁଣି । ବୋଇଲା ଏ କଥା ଶୁଦ୍ଧ ରେ
ଖୋଲିଲେ ନ ପାରି ମୁଁ ବନ୍ଧ-ଜୀବକୁ ପଞ୍ଜର ବଗ୍ନହଦାନ୍ତରେ ।
କେତେ ସ୍ତୁତିଗୀରେ କହେ ସହଚରୀ ମୁଖକୁ ତାହାର ଅନାଇ ।
ବଶ କରବାରେ ହୋଇଲା ବସ୍ତରେ ମନ୍ଦ ମନ୍ଦ ହେଉ କପାଇଁ ।
ସେ ବୋଲେ । ଭଙ୍ଗିରେ ଅଳକ ଚେତାଇ
କଥାଲୀ ହେଲଣି ଦେଖିଲା ଉପ୍ତରୁ ପଲାଶ ପାଶେ ଯା ଗମଇ ।” ଇତ୍ୟାଦି ।

ସାଧାରଣତଃ କେବଳ ରାଜଦ୍ୱାରରେ ବିଦୂଷକ ଓ ପୋଷା ବା କଞ୍ଚୁକୀ ନିଯୁକ୍ତ କରାଯାଇଥାଏ । ରାଜା, ଯୁବରାଜ ପ୍ରଭୃତିଙ୍କ ମନ ସତତ ପ୍ରସନ୍ନ ରଖିବା ପାଇଁ ବିଦୂଷକ ନାନା କୌତୁକ କଥା କହେ; ପୋଷା ବନ୍ଧ ସମୟରେ ଅନ୍ତଃପୁରର ପ୍ରହରୀର କାର୍ଯ୍ୟ କରେ । ଏ ବିଷୟ କବି ସ୍ଥାନେ ସ୍ଥାନେ ଉଲ୍ଲେଖ କରିଅଛନ୍ତି:—

“ଶୁଣ ଜନେ ଗୁଣ ମନେ ଏଥି ରହସ୍ୟ
ବେଶ କେତେ ରଙ୍ଗେ ବିଦୂଷକ ପ୍ରବେଶ ।
ଲୋହିତ ଅମ୍ବର ଶିର କି ଆଡ଼ମ୍ବର
ତାମ୍ବୂଳ-ବୋଳରେ କରଜର ଅଧର ।
ପ୍ରଲମ୍ବ ପ୍ରବାଳ ମାଳ ଅବଲମ୍ବରେ
ହୃଦୟ ଶୋଭା ହୃଦୟ ଅନ୍ତଣସ୍ୱରେ ।
ତରୁଣ ଅରୁଣ ପଦ୍ମ ଗୋଟିଏ ତହିଁ
ସେହି ମୃଦୁ ସହିତେ ଗଳାରେ ଗଳାଇ ।
ସଙ୍ଗତରେ ଆଗତ ତା ପୋଷା ଗୋଟିଏ
ବୀର ସନ୍ନିକଟ ହୋଇ ପ୍ରକଟ ହୁଏ ।
ଛାଟିତେ ଲୁଚିଲା ଅଲକ୍ଷ ଦିଶିଲା ହୋଇ
ପ୍ରଚୁର କଲ୍ୟ ବଚ୍ଚର ଶୁଣିଲି ମୁହିଁ ।” ଇତ୍ୟାଦି । କୋ: ବ୍ର: ସୁ: ।

—————

Digitized by srujanika@gmail.com

## ଶାସନ ନୀତି

ଶାସକର କର୍ତ୍ତବ୍ୟ:—ପ୍ରଜାଙ୍କ ସୁଖ ସୁବିଧା, ଶାନ୍ତି ସନ୍ତୋଷ ପ୍ରତି ଦୃଷ୍ଟି ଦେବା ରାଜାଙ୍କର ପ୍ରଧାନ ଧର୍ମ । ଅନ୍ନ, ବସ୍ତ୍ର, ଶିକ୍ଷା, ସ୍ୱାସ୍ଥ୍ୟ-ସମସ୍ୟାର ସମାଧାନ ପ୍ରଥମେ ସୁଶାସକମାନେ କରିଥାନ୍ତି । ତାପରେ ଡକାୟତି, କଳହ, ବ୍ୟଭିଚାର, ଅତ୍ୟାଚାର, ଅନାଚାର ଇତ୍ୟାଦି ସମସ୍ତ ପ୍ରକାର ଅନ୍ୟାୟ ଅନୀତିକୁ ଦମନ କରି ଶତ୍ରୁଭୟ, ଅଗ୍ନିଭୟ, ବନ୍ୟା, ମଡ଼କ ପ୍ରଭୃତିରୁ ପ୍ରଜାଙ୍କୁ ରକ୍ଷାରକ୍ଷଣ କରନ୍ତି । ଏ ସମସ୍ତ ରାଜନୀତିର ଅନ୍ତର୍ଗତ । ଶାସକ ଅତ୍ୟନ୍ତ ପ୍ରବୀଣ, ନୀତିନିପୁଣ, ଦୂରଦର୍ଶୀ ଓ ପ୍ରଜାରଞ୍ଜକ ହୁଅନ୍ତୁ ମଧ୍ୟ, ସେ ଚତୁର୍ଥା-ବସ୍ଥାରେ ଉପନୀତ ହେଲେ, ସୁଯୋଗ୍ୟ ବୟଃପ୍ରାପ୍ତ ପୁତ୍ରହସ୍ତରେ ରାଜ୍ୟଭାର ଅର୍ପଣ କରିଦେବା ପ୍ରଶଂସନୀୟ । ଉପେନ୍ଦ୍ର ଭଞ୍ଜ ସ୍ୱ ଲାଲିତ୍ୟନକ କାବ୍ୟାଦିରେ ମଧ୍ୟ ତାହା ବାଦ୍ ଦେଇ ନାହାନ୍ତି । ନର୍ମ୍ମୁଂଚ ମହୀପତି ସେହି ହେତୁ "ନୃପତିପଦଵୀ ଦେଇଣ ସୁତେ । ଚଳିଲେ ପୁରୁଷୋତ୍ତମ କ୍ଷେତ୍ରେ ।" ଲ: ବ: । ଦଶରଥ, ପୁତ୍ର ଶ୍ରୀରାମଚନ୍ଦ୍ରଙ୍କ ଯୋଗ୍ୟତା ସମ୍ବନ୍ଧରେ କହିଲେ—"ବ୍ରହ୍ମା ସର୍ଜନାରେ ବ୍ରହ୍ମାଣ୍ଡେ କାହିଁରୁ ଆଉ ମୋ ତନୟ ପରି," ସେହି ହେତୁ, "ଗୀରବୃନ୍ଦରେ ଇନ୍ଦ୍ର । ବସୁ ନୃପପଦେ ରାମଚନ୍ଦ୍ର ।" ଛା ୧୭, ବୈ: ବ: ।

ଜଳହିଁ ସମ୍ବଳ—

ଭୂମି ଶସ୍ୟଶ୍ୟାମଳା, ସୁଫଳା ହେବା ପାଇଁ ସୁଜଳା ହେବା ଆବଶ୍ୟକ । ଅସଂଖ୍ୟ ପ୍ରଜାଙ୍କ କଲ୍ୟାଣଦୃଷ୍ଟିରେ ବ୍ୟୟସାପେକ୍ଷ ଉପାୟ ଅବଲମ୍ବନ କରାଗଲା । ଋଷ୍ୟଶୃଙ୍ଗ ବନେ କରି ଜଳସମସ୍ୟାର ସମାଧାନ କଲେ :—

"ବେଳାରେ ଲଗିଲା ନାବ ଚମ୍ପାବତୀପୁରେ ।
ଦରଶିଲେ ଋଷି ଝରମାନ ଲୋଚନବାରେ ଯେ ।
ବହିଲା ପ୍ରବାହ ପୂର୍ଣ୍ଣ କେଦାର ହୋଇଲେ ।" ଗ୍ରା: ୪, ବୈ: ବ: ।

## ଭଞ୍ଜଙ୍କ କାବ୍ୟରେ ସୁଶାସନର ଚିତ୍ର

ଅନେକ ସମୟରେ କର୍ମଚାରୀମାନଙ୍କ ଚରିତ୍ରହୀନତା ଓ ଅପାରଗତା ଯୋଗୁଁ ଶାସକ ଓ ଶାସିତ ଦୁଃସହ ଦୁଃଖ ଭୋଗ କରନ୍ତି । ସର୍ବପ୍ରଥମେ କର୍ମଚାରୀ ନିର୍ବାଚନ ନିର୍ଦ୍ଦୋଷ ହେବା ଆବଶ୍ୟକ । ସ୍ୱନାବ୍ୟମାନଙ୍କରେ ଉପେନ୍ଦ୍ର ଏଥିପ୍ରତି ଦୃଷ୍ଟି ରଖି ଶାସନନୀତିର ରୂପରେଖ ସୁସଙ୍ଗତ ଭାବରେ ଅଙ୍କନ କରିଛନ୍ତି । "ପଞ୍ଚମହୃଷୀ ଯେ ଲବଣ୍ୟବତୀ । ହୋଇଲା ଗୁଣନିଧାନ ମନ୍ତ୍ରୀ । ବସନ୍ତକ ହେଲା ଜ୍ୟୋତିଷରାଜ । ପୁରୋଧା ଋତୁଧ୍ୱଜ ଆଚାର୍ଯ୍ୟ । ସେ ନରେଶ୍ୱର ପାଳିବାରେ ଦେଶ । ନୋହିଲା ଆଉ ମିଥ୍ୟାବକାଶ ।" ଲ: ବ: । ବିଦୁଷୀ ସହଧର୍ମିଣୀ, ଯୋଗ୍ୟ ମନ୍ତ୍ରୀ ଏବଂ ଅନ୍ୟାନ୍ୟ ଚରିତ୍ରନିଷ୍ଠ କର୍ମଚାରୀଙ୍କ ସହଯୋଗିତାରେ ସୁନ୍ଦର ନୀତି ନିୟମ ଅନୁସରଣ କରି, ଚନ୍ଦ୍ରଭାନୁ ନିଜ ସାମ୍ରାଜ୍ୟ ଏପରି ସୁଚାରୁ ଭାବରେ ଶାସନ କଲେ ଯେ, ଦେଶରେ ଦୀନତା ଦେଖାଗଲା ନାହିଁ, ଦେଖାଗଲା ଧନ ବା ଧବଳ ମାନ; ଦୁଃଖୀ ପ୍ରତି ଦଣ୍ଡବିଧାନ ଅନ୍ୟାୟ, ସେଠାରେ ଦଣ୍ଡ ରହିଲା ନାହିଁ, ରହିଲା ସମସ୍ୟାରେ ଦଣ୍ଡଲତା ବଳିତା

Digitized by srujanika@gmail.com

ସ୍ୱଭାବରେ; ଅକାଳମୃତ୍ୟୁ ନ ଥିବାରୁ ଚିତା ନ ଥିଲା, ଥିଲା ବ୍ରାହ୍ମଣଙ୍କ ଚିତା କେବଳ; ଦୁଷ୍ଟ ଖଳ ନ ଥିଲେ, ଏପରି କି 'ମନ୍ଦତା' ବୋଲି କଥାଏ ନ ଥିଲା, ଥିଲା କିନ୍ତୁ ମଳୟାନିଳ ମନ୍ଦ ମନ୍ଦ ପ୍ରବାହିତ ହେବାରେ; ସାମାଜିକ କଳଙ୍କ ନ ଥିଲା, କଳଙ୍କ ଥିଲା ଚନ୍ଦ୍ରଠାରେ; କୁଟିଳତା କେଶରେ ନ ଥିଲା, ଥିଲା ନଦୀ ଓ ସମୁଦ୍ର ତରଙ୍ଗରେ; କଣ୍ଟକୀ ବୋଲି କଥାଏ ନ ଥିଲା, ଥିଲା ବୃକ୍ଷ ପର୍ଯ୍ୟାୟରେ; ଜଡ଼ ନ ଥିଲା, ଥିଲା ଉପବନରେ; ସେଠାରେ ମଦ୍ୟପ ନ ଥିଲେ, ମଦମତ୍ତ ଭ୍ରମର ଥିଲେ; ମାରଣ (ନୃଶଂସ କାଣ୍ଡ) ନ ଥିଲା, ଥିଲା ବୈଦ୍ୟଙ୍କ ଔଷଧ ଜାରଣ ମାରଣରେ; ଦାରଣ, ହଣାହଣି ସେ ଦେଶବାସୀଙ୍କ ମଧ୍ୟରେ ନ ଥିଲା; ଥିଲା ଭଞ୍ଜନରେ; ନାରୀ ପୁରୁଷ ଅସତ୍ ଆଚରଣ କରି କୁଳତ୍ୟାଗ କରୁ ନ ଥିଲେ, ସରିତ କିନ୍ତୁ କୂଳ ଲଙ୍ଘନ କରୁଥିଲା; ଚୋର ନ ଥିଲେ, କଥାରେ ଥିଲା—"ରହିଲା କୂଳ ଲଙ୍ଘନ ସରିତେ । ଶ୍ରୁତିରେ ଚୌର ଶବଦ ପଡ଼େ;" ଆଧିବ୍ୟାଧି ପ୍ରପୀଡ଼ନରେ ଲୋକେ ବିଷ ଖାନ୍ତି, ସେ ଦେଶରେ ତାହା କେହି ଖାଉ ନ ଥିଲେ, କିନ୍ତୁ ବିଷ (ମୃଣାଳ) ହଂସ ଖାଉଥିଲେ; ସେ ଦେଶରେ ପ୍ରଜାମାନେ କରପୀଡ଼ା ଜାଣୁ ନ ଥିଲେ, କର କିନ୍ତୁ ପୀଡ଼ାଗ୍ରସ୍ତ ହୁଏ ମର୍ଦ୍ଦନରେ, କଠିନ କାର୍ଯ୍ୟ ସାଧନରେ; ସେ ଦେଶରେ କେହି ଅପରାଧୀ ନ ଥିବାରୁ ବନ୍ଧନ-ଦଣ୍ଡ ନ ଥିଲା, ଥିଲା ବନ୍ଧୁତ୍ୱ ବନ୍ଧନ ମାତ୍ର; ମୃଗୟା ବ୍ୟସନରୂପେ ଗଣ୍ୟ ହେଉଥିବାରୁ ସେ ଦେଶରେ ତାହା ନ ଥିଲା, ଥିଲା କେବଳ ଚିତ୍ରରେ; କାହାର ଶତ୍ରୁ ହୋଇ ସେଠାରେ କେହି ନ ଥିଲା, ଶତ୍ରୁ ଥିଲା ସେଠାରେ କେବଳ କନ୍ଦର୍ପ; ଯୁଦ୍ଧ ମାତ୍ର ନ ଥିଲା, ଥିଲା ନ୍ୟାୟବଳ କ୍ରୀଡ଼ାରେ; ଲୋକେ କୃପଣ ନ ଥିଲେ, ପ୍ରେମଧନ ପାଇଁ ଲୋଭ କରୁଥିଲେ; ସେ ଦେଶର ଲୋକେ ଦରିଦ୍ର ନ ଥିବାରୁ କିନ୍ତୁ ଲୋଡ଼ୁ ନ ଥିଲେ, ଲୋଡ଼ୁଥିଲେ ସେମାନେ ମୋକ୍ଷ, ଧର୍ମ; ପରସ୍ତ୍ରୀଲାଳସା ଘୋର ପାପ, ତାହା ସେ ଦେଶବାସୀଙ୍କର ନ ଥିଲା, ଚିତ୍ରସ୍ତ୍ରୀଦର୍ଶନଲାଳସା ସେମାନଙ୍କର କିନ୍ତୁ ଥିଲା; "ଲାଳସ ହୋଇଣ ପରସ୍ତ୍ରୀରେ । ଗୃହେଁ ବା ରହେ ଚିତ୍ର ନାରୀରେ;" ପ୍ରଜାଙ୍କ ପ୍ରତି ଶାସ୍ତି ହିସାବରେ ପ୍ରହାର ସର୍ବଦା ଦୃଶ୍ୟ, ସେଠାରେ ତାହା ନ ଥିଲା, ଥିଲା ପଶାଖେଳରେ; ସେଠାରେ ଖଳକୁହା ନ ଥିଲେ, ପାପ ଅପରାଧ ନ ଥିଲା, କେହି ଶୃଙ୍ଖଳାବଦ୍ଧ ହେଉ ନ ଥିଲେ, ତାହା ଦେଖା ଯାଉଥିଲା ପାଳିତ ଶୁଆଠାରେ; ଦେଶବାସୀଙ୍କ ଶତ୍ରୁ ଭୟ ନ ଥିଲା, କାଷ୍ଠ, ଦୁର୍ଗକୁ ଆଶ୍ରୟ କରି ଭିତ୍ତି ଥିଲା; ବନ୍ଦୀ ନ ଥିଲେ, ରାଜାଙ୍କ କୀର୍ତ୍ତିଗାନ ପାଇଁ ବନ୍ଦୀ, ଭାଟ ଥିଲେ; ଲୋକେ ସତ୍ୟନିଷ୍ଠ ଥିଲେ, ତେଲ ସୁନା ଛୁଁ ନ ଥିଲେ; ଭୂତ, ପ୍ରେତ, ପିଶାଚ, ଶାକିନୀ ଡାକିନୀ ନ ଥିଲେ—କ୍ଷିତି, ଅପ, ତେଜ, ମରୁତ୍, ବ୍ୟୋମ—ପଞ୍ଚଭୂତ କିନ୍ତୁ ସେଠାରେ ଥିଲା; କୁଣ୍ଡ (ଜାରଜ ସନ୍ତାନ) ସେଠାରେ ନ ଥିଲା, ଥିଲା କୁଣ୍ଡ ଅର୍ଥାତ୍ ଶିବ ଦର୍ଶନ । ପଡ଼ୋଶୀ, ପ୍ରତିବେଶୀ ରାଜାଙ୍କଠାରେ ରାଜା ଚନ୍ଦ୍ରଭାନୁଙ୍କର ସଖ୍ୟଭାବ ଥିଲା, ସେ ପ୍ରଜାରଞ୍ଜକ ଥିଲେ, ବ୍ରାହ୍ମଣ, ବୈଷ୍ଣବ, ଦେବତାଙ୍କ ସେବା ଭକ୍ତି କରୁଥିଲେ । (ଲାବଣ୍ୟବତୀ, ଗ୍ର ୪-, ରାଜନୀତି, ରାଜଧର୍ମ ଚର୍ଚ୍ଚାରେ ପୂର୍ଣ୍ଣ ।)

ଶାସକଙ୍କ ସତ୍ସ୍ୱଭାବ—ବଦାନ୍ୟତା, ଧର୍ମନିଷ୍ଠା, ତ୍ୟାଗ ଇତ୍ୟାଦି ଶାସିତଙ୍କ ପକ୍ଷରେ ଯେତେ ପର୍ଯ୍ୟନ୍ତ ହିତକର, ଶାସକଙ୍କ ଅସତ୍ ସ୍ୱଭାବ, ନିଷ୍ଠୁରତା, ସ୍ୱାର୍ଥପରତା, ଅଦୂରଦର୍ଶିତା ଇତ୍ୟାଦି ଶାସିତଙ୍କ ପକ୍ଷରେ ସେତେ ଦୂର ପର୍ଯ୍ୟନ୍ତ ଅହିତକର ହୋଇ ଉଠେ । ଉପେନ୍ଦ୍ର ଭଞ୍ଜଙ୍କ କଳ୍ପିତ ରାଜା ଚନ୍ଦ୍ରଭାନୁଙ୍କ ଦାନ, ତ୍ୟାଗ ଅତୁଳନୀୟ ଥିଲା । ଶ୍ରେଷ୍ଠ ଆସନ ପାଇବା ପରେ ଉତ୍ତମ ବ୍ୟକ୍ତିଙ୍କର ସାଧାରଣତଃ ସ୍ୱଭାବ ଅବାଞ୍ଛନୀୟ ଭାବରେ ବଦଳିଥାଏ; ମଧ୍ୟମ, ଅଧମ ଲୋକଙ୍କ କଥା ଏକାବେଳକେ ଭିନ୍ନ । ରାଜପୁତ୍ର ଅବସ୍ଥାରୁ ରାଜାସନକୁ ଉଠିବା ପରେ ରାଜାମାନେ ଅହଂକାର-ମଦ ପାନରେ ସାଧାରଣତଃ ଅସ୍ଥିର ହୋଇପଡ଼ୁଥିବାରୁ ସେମାନଙ୍କ ଆଚାର, ବିଚାର, ବ୍ୟବହାର ପ୍ରଜାଙ୍କ କଲ୍ୟାଣକର ହୋଇପାରେ ନାହିଁ । ସେହି ହେତୁ ଭାରତ ସ୍ୱାଧୀନତା ହାସଲ କରିବା ଅବ୍ୟବହିତ ପରେ, କୋଟି କୋଟି ପ୍ରଜାଙ୍କ

Digitized by srujanika@gmail.com

କଲ୍ୟାଣକାମନାରେ ୫୨୦ ଗଡ଼ଜାତରୁ ନିର୍ମୂଳ କରି ଅସଂଖ୍ୟ ପ୍ରଜାଙ୍କୁ ରାଜାଙ୍କ କବଳ ଯନ୍ତ୍ରଣାରୁ ଉଦ୍ଧାର କରିବା ହେଲା କଂଗ୍ରେସ ସରକାରଙ୍କ ପ୍ରଥମ ଏବଂ ପ୍ରଧାନ କାର୍ଯ୍ୟ । ଶାସକମାନଙ୍କ ଦୌରାତ୍ମ୍ୟ, ଉପେନ୍ଦ୍ର ଭଞ୍ଜ ଠିକ୍ ସେହିପରି ବହୁବର୍ଷ ଆଗରୁ ଅନୁଭବ କରି, ଯୁଗ ଯୁଗ ପାଇଁ ଶାସକପରମ୍ପରାଙ୍କୁ ନାନା ସାରଗର୍ଭକ ଉପଦେଶ ଦେଇଛନ୍ତି । ତାଙ୍କର ଆଦର୍ଶ ରାଜା ଚନ୍ଦ୍ରଭାନୁଙ୍କ ବିଷୟରେ ସେ ସ୍ପଷ୍ଟ କହନ୍ତି—

"ହୋଇଲେ ସେ ରାଜା ଏମନ୍ତ ତ୍ୟାଗୀ ।
ଜାଣିଲେ ନାହିଁ ଯାଚକେ ମାଗି ।
କେ ଶିବ କଳ୍ପତରୁ ସନ୍ନିଧାନ ।
କାମନା ହେଲା ଉଦରୁ ପୂର୍ଣ୍ଣ ।" ଲ: ବ: ।

ସେ ଏପରି ଦାନଶୀଳ ଥିଲେ ଯେ,

"ଅତି ଦେବାର୍ଚ୍ଚନ ସରିବା ଯାଏ ।
କରଇ ମେରୁ ଦାନକୁ ଭସ୍ମେ ।" ଲ: ବ: ।
"ଧନ ଅର୍ଜିଲେ ଧର୍ମ କରି ।
ଧର୍ମେ ପ୍ରାପତ ନରହରି ।" ଭାଗବତ ।

କୃଷକ ପ୍ରତି ସହାନୁଭୂତି—ଉପେନ୍ଦ୍ରଙ୍କର କୃଷକକୁଳ ପ୍ରତି ସହାନୁଭୂତି ଅପର୍ଯ୍ୟାପ୍ତ । କୃଷକଙ୍କୁ କୌଣସି ବିପଦଜାଲ ଭିତରକୁ ନ ଠେଲି, ତାହାର କୃଷିଜମିର ସ୍ୱତ୍ୱ ପ୍ରଥମେ ସ୍ଥିର କରିବା ଶାସକର କର୍ତ୍ତବ୍ୟ । ଏହି ଇଙ୍ଗିତ ଶାସକପରମ୍ପରାଙ୍କୁ ଦେବା ଉଦ୍ଦେଶ୍ୟରେ ସେ କହନ୍ତି, "ରଜାଠାରୁ ପଟ୍ଟାପତ୍ର କେତକୀ ପାଇଲା ।" ର: ପ: । ସୁଖ ଓ ଶାନ୍ତି ସନ୍ତୋଷରେ ଜୀବନ ଅତିବାହିତ କରିବା ପାଇଁ ଯାବଜ୍ଜୀବନ କୃଷକ ଅରୁଣୀ ରହିବା ଆବଶ୍ୟକ । କବି ସେହି ଉପଲକ୍ଷରେ କହନ୍ତି:—

"କର ଘେନାଇଣ କୃଷକକୁଳକୁ କରାଇ ଅରୁଣୀ ।" କ: କ: ।
"ବସୁଧାଭିତରେ ପ୍ରଜାବତ ଶାନ୍ତି ପାଇ ।
ବୋଧିଲ ସେ କରରହି ଅଲଙ୍କାର ଦେଇ ଯେ ।" ବୈ: ବ: ।

—:o:—

Digitized by srujanika@gmail.com

## ଉପେନ୍ଦ୍ରଭଞ୍ଜ ଉପଦେଶାମୃତ

"That God, which ever lives and loves,
One God, one law, one element,
And one far off divine event,
To which the whole creation moves."

— Tennyson.

"ଯେ ସର୍ବ ଭୂତପତି ତାଙ୍କୁ ଭଜ ବସନ୍ତି ନପାତ ବୋହିବ କର୍ମାର୍ଦ୍ଧ ।"

କୋ: ବ୍ର: । ଉପେନ୍ଦ୍ରଭଞ୍ଜ

ମହାପୁରୁଷମାନେ ପ୍ରସଙ୍ଗାନୁକ୍ରମେ ସ୍ୱପ୍ରଣୀତ ଗ୍ରନ୍ଥାଦିରେ ସର୍ବସାଧାରଣଙ୍କ ହିତଦୃଷ୍ଟିରେ ଅସଂଖ୍ୟ ଉପଦେଶ ଦେଇଥାନ୍ତି । ସେ ସମସ୍ତ ସାର୍ବଜନୀନ ଓ ସମାଜ ପକ୍ଷରେ ସର୍ବଥା କଲ୍ୟାଣକର । ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସ, ଶ୍ରୀ ରାମାନୁଜ, ଶିବାନନ୍ଦ ପ୍ରଭୃତିଙ୍କ ଉପଦେଶାମୃତ ରହିଛି । ପାଶ୍ଚାତ୍ୟ କବି—ପୋପ୍, ଲଙ୍ଗ୍‌ଫେଲୋ, ସେକ୍ସପିଅର ପ୍ରଭୃତିଙ୍କ ଉପଦେଶାବଳୀ ଲୋକେ ସୂତ୍ରସ୍ୱରୂପ ଲେଖାରେ, କଥାଭାଷାରେ ଘନ ଘନ ବ୍ୟବହାର କରିଥାନ୍ତି । ଉପେନ୍ଦ୍ରଭଞ୍ଜ ନିଜ ଗ୍ରନ୍ଥରେ ସେହି ଧରଣର ସଂଖ୍ୟାତୀତ ଉପଦେଶାବଳୀ ଉପହାର ଦେଇଅଛନ୍ତି । ସେଥିରୁ କେତେକ ମାତ୍ର ଏଥିରେ ପ୍ରଦତ୍ତ ହେଲା :—

"ପ୍ରଭୁ ପରସ୍ତରେ ଶଙ୍କା ନଥାଇ ଯାହାର ।
ତାହାକୁ ସଂସାରେ କହି ମୂର୍ତ୍ତି ସ୍ୱାର୍ଥ ଘର ।" ଲ: ବ: ।

"ପରଦ୍ରବ୍ୟ ପରସ୍ତ୍ରୀ ହରଣକୁ, ଲେଖୁଁ ଶୁଭକର ତହୁଁ ମରଣକୁ ।" ଲ: ବ: ।

"ଯୌନଜନମତ୍ତ, ଧନ ଲୋଭିବା ଲୋଭ ଅନ୍ଧ ।" କୋ: ବ୍ର: ସୁ: ।

"ବଶ୍ୟବଶ୍ୟ-ଚିତ୍ତ ଯେ ଭକ୍ଷନ୍ତି ତପିସୂତ ଯେ ।
ବ୍ୟବହାର କଲେ ନଷ୍ଟେ ତାହାଙ୍କ (ଜରତା ଇତ୍ୟାଦିଙ୍କ) ସଙ୍ଗରେ ।
ବାବୁ ହେବୁ ଅଗ୍ନିପ୍ରୀତ ପତଙ୍ଗ ପ୍ରକାରେ ଯେ ।" ଛା–, ବୈ: ବି: ।

"ବାହାର ଅତି କଠିନ ଭିତର ସରସ,
ନାରଙ୍ଗୀ ହୃଦସ୍ଥ ନାରିକେଳର ସଦୃଶ ।" ଛା ୧୪, ପ୍ରେ: ସୁ: ।

"ଯେ ଯାହା ଅର୍ଜଇ ସେ ତାହା ଭୁଞ୍ଜଇ ଏଥି ଅଛି କବି ସଂଶୟ ।" ଛା ୭୨, ଲ: ବ: ।

"ସରୁଠାକୁ ମୂଳ କର୍ମ ଦୁର୍ଲ୍ଲଭ ଲଭଇ" । ୧୧ । କୋ: ବ୍ର: ସୁ: ।

"ସ୍ଥିତ ଥିଲେ ନରପତି ଶୋଭା ପାଇ," ଲ: ବ: ।

"ପରଉପକାର-ଯଶ ଥୋଇଗଲେ, ଦେଖ ମହାଦେବ ବିଷ ପିଇଲେ ।
ଦେଖ ଭକ୍ତ୍ୟପଦ ହୃଦେ ଧରି ହରି, ଖ୍ୟାତରାହୀ ବୋଲାଇଲେ ରେ ସୁନ୍ଦର ।"

ଛା ୧୯, ଲ: ବ: ।

Digitized by srujanika@gmail.com

"ବଳସଙ୍ଗେ ପଡ଼ି ବାତୁଳଙ୍କ ବେଗେ ନେଇ ।
ସର୍ପ ଅସ୍ତ୍ରପ ସ୍ୱଭାବେ ଅନାଦର ପାଇ ।" ଛ ୧୪ । କୋ: ବ୍ର: ସୁ: ।
"ମୂର୍ଖଙ୍କୁ ବୁଝାଇବାକୁ ଅଛି କଷ୍ଟ ଜାଣ ।" । ଲ: ବ: ।
"କାହିଁରେ ସଞ୍ଚିତ କାହା ଭସ୍ମ କରି କର୍ଷେ ନୀଚକୁ ସମସ୍ତେ ମାରି ହେ ।"
ଛ ୧୧, କୋ: ବ୍ର: ସୁ: ।
"ଦରିଦ୍ର ରତନ ପାଇ ହରାଇଲା ପ୍ରାପ୍ତ ହୋଇଲା ବିମତି ।" ଲ: ବ: ।
"ଆକାଶ ପ୍ରକାଶ ଚନ୍ଦ୍ର ଧରିବାକୁ ନକ୍ଷତ୍ରଶ୍ରେଣୀ କାହିଁ ଖୋଜଇ ।" ଲ: ବ: ।
"ସିଦ୍ଧି କଲା ଜନ ସିଦ୍ଧିକି ନଣିବ, ତାଙ୍କୁ ବିନୟ କରି ରହିତ ହେ ।"
ଛ ୨୪, କୋ: ବ୍ର: ସୁ: ।
"କରମେ ଯାହା ବିଧି ଲେଖିଥିବ, ଭୋଗ କରିବ ତାହା ।" ଲ: ବ: ।
"ଜ୍ୟେଷ୍ଠ ଭ୍ରାତା ପିତା ସରି ।" ଛ ୨୪, ବୈ: ବ: ।
"ଯାହାଠାରେ ଅଭିଳାଷ କରେ ଯାହା ମନ ।
ସେହି ତାର ସକଳ ସୁଗତି ବୋଲି ଘେନ ।" ଲ: ବ: ।
"ଅଳ୍ପ ବ୍ୟୁତ୍ପତ୍ତି ଉତ୍ପତ୍ତି ନରପଶୁ ବାନର ମୁଷ୍ଟି ପରକାର,
ଛାଡ଼ନ୍ତି ନାହିଁ—ଆମ୍ଭେ ବଡ଼, ଏ ଗର୍ବ ।" କୋ: ବ୍ର: ସୁ: ।
"ତୃଷାର୍ତ୍ତୀ ସିନା ସଲିଳ ପାଶେ ଉପଗତ । ପାଣି ତୃଷାର୍ତ୍ତୀ ପାଶକୁ ଆସେ
କି ଘେନ ତ ।" ଲ: ବ: ।
"ସେ ପରଦୁଃଖ ଘେନିବା ବଡ଼ ଭାଗ୍ୟ ସତ ।" କୋ. ବ୍ର: ସୁ: ।
"ନ ପାଇ ମଧୁ ଭୁଲନ୍ତି ମଧୁକର କି ମଧୁବକୁ ।" ଲ: ବ: ।
"ତଇଲ ରସରେ ମାଠିବାରୁ । ଦର୍ପଣ ଉପମା ମୁଖଧରୁ ।
ନୀଚ ସଙ୍ଗେ ଉଚ୍ଚ ସମସ୍ତେ ତୁଳନା ଘେନ ଶୁଣ୍ଠି ଜମ୍ବୁନଦଠାରୁ ।" କୋ: ବ୍ର: ସୁ: ।
"ଗନ୍ଧର୍ବ କିନ୍ନର ନାଗ ନରଙ୍କର ସଙ୍ଗୀତ ପରମ ଧନ ଯେ ।" କୋ: ବ୍ର: ସୁ: ।
"ସବୁ ବଡ଼ ଦଇବ," ଲ: ବ: ।
"ପବନକୁ ପାଶ ପାତି ବସିଲେ, ସେ କାହିଁ ହୋଇବ ବନ୍ଧନ ।" ଲ: ବ: ।
"ବିସୋର ନୋହି କୃପଣ ଧନର ଭାବ ।" ଛ ୫, ବୈ: ବ: ।
"ଯେ ଯାହାର ଦ୍ରବ୍ୟ ସେ ତାହାକୁ ପ୍ରତିପାଳ ।" ଛ ୩୪, କୋ: ବ୍ର: ସୁ: ।
"ବର୍ଜିତ ସେ ବାଣିଜ୍ୟ ଧନର ପ୍ରାପ୍ତ ।" ବୈ: ବ: ।
"ତୁଳାପାନ୍ଦେ ଊଣା ଅଧିକ ପଦାର୍ଥ ପଡ଼ିଲେ କି ସମେ ରହିବ ।" ଲ: ବ: ।
"ଦୁଃଖ ସହି ଧଇର୍ଯ୍ୟ ହେଲେ କାର୍ଯ୍ୟ ଲଭି ଅବଶ୍ୟ ।" ଲ: ବ: ।
"ବଡ଼ କୃପଣ ଚଉରପଣ କରି ଆଣି ଯେ ।
ବିସର୍ଜିବ ଜୀବ ସଙ୍ଗେ ନିବ କେବେ ପୁଣି ଯେ ।" ଛ ୪୮, ବୈ: ବ: ।
"ସୁନାସ୍ତ୍ରୀ ଲେଖା ଦକ ଦକ ଯେ ।" ବୈ: ବ: ।
"ରୋଗ, ଋଣ, ଶତ୍ରୁ ଶେଷକୁ ରଖିଲେ ଆପଣାର ବାଧ ଏ କଥା ।" ଲ: ବ: ।
"ବଡ଼ ହୋଇ କସ ହୋଇବ, ଅର୍ଜିଲା କର୍ମ ସିନା ଭୋଗ କରିବ ।" ଲ: ବ: ।
"ସୁବଳିଷ୍ଠ କେହି ନାହିଁ କର୍ମକୁ । ସିଦ୍ଧ କରେ କେତେବେଳେ ବାମକୁ ।" ସୁ: ପ: ।

Digitized by srujanika@gmail.com

"ସନ୍ନିପାତରେ ନାଡ଼ିକା, ଲଗିଲେ ଯଥା ତାଟକା, କଛୁ କଛୁ ହୋଏ ଭିନ୍ନ ।
ତେମନ୍ତ ମନ;" ଲ. ବ. ।

"ଦୁଇ କରେ ଭୁଞ୍ଜେ ଦୋଷୀ । ହେଲେ କି ସୁଖୀ ।" ଲ. ବ. ।
"ନ କରେ କି ଦାମୀ ଦାନ ବାଉଳେ କୃପଣ ।" କୋ. ବ୍ର. ସୁ. ।
"ରାମ ନାମକୁ ଜପ କରୁଥାଇ । ମୋକ୍ଷରେ ଆଉ ସଂଶୟ ନାହିଁ ।" କୋ. ବ୍ର. ସୁ. ।
"ବୋଇଲ ଅଳି କମଳାଙ୍କୁ ଖଳୁ, ନୋହୁଲ ହୁଏ କରମ ବଳୁଁ,
ଜଳ ଅଛନ୍ତି ସମୁଦ୍ର ଚଳୁ, କେବଳ ନରେ ଯେ ।
ନରେ ସମସ୍ତେ ଇନ୍ଦ୍ର ହୋଇଛନ୍ତି, ନରେ ଧରଣୀ ଟେକ ଧରନ୍ତି ।"
ଛା ୨୭, କୋ. ବ୍ର. ସୁ. ।

"ଶ୍ରୀରାମ ସୁମର । ବୈକୁଣ୍ଠ ପୁର ଲଭିବ ଭବସିନ୍ଧୁ ତର ଯେ ।" କୋ. ବ୍ର. ସୁ. ।
"ମୁଁ ଯେ ଅବଳା । ମୋ ବଧ ଜଗତେ କଳୁଷ ।" ଛା ୧୨, ଲ. ବ. ।
"ସ୍ୱର୍ଗ ଅପବର୍ଗରୁ ପରମ ସୁଖ ନାହିଁ ।" ଛା ୨୮, ଲ. ବ. ।
"ବୈଦ୍ୟ ଯଥା ମନାସିଲା ବ୍ୟାଧିବନ୍ତ ବାଞ୍ଛା ଗୋ ।" ଲ. ବ., ପୃ ୧୩୩ ।
"ଯଥା ଦୁଷ୍ଟ ଲୋକ ବୃଦ୍ଧ ହେଲେ କହେ ବାଳକେ ଉଆଣ ବାଣୀ ।"
ଲ. ବ., ପୃ ୧୪୦ ।
"ଶିଖାଇ ଦେବାର ବୁଦ୍ଧି କେତେ ବେଳ ଥାଇ ।" ଲ. ବ., ପୃ ୧୫୭ ।
"ସହଜେ ଅଙ୍କୁଶ ଲଜ୍ଜା ଯୁବତୀଙ୍କ, ସତ୍ୟବାଣୀ ନୃପତିଙ୍କ ।" ଛା ୯, ସୁ: ପ: ।
"ସେ ତାହାର ସିନା ଯେ ଯାହାକୁ ଭଜେ, ତାହା ହାନିଲାଭ ତାହାର ।"
ପ ୨୧, ଛା ୯, ସୁ: ପ: ।
"ସ୍ୱୟଂ ବଡ଼ ହେଲେ ମୂଳ କରମ, ସିନ୍ଧୁମନ୍ଥନ ଛଡ଼ାଇଛୁ ଭ୍ରମ ।
ସୁରେ ସୁଧା ବିଷ୍ଣୁ କମଳା ଲଭିଲେ,
ବିଷପାନ କଲେ ଶ୍ରୀମ (ମହାଦେବ) ହେ ସୁନ୍ଦର ।" ସୁ: ପ: ।
"ସ୍ୱଭାବରେ ତ ନଦୀ ଅବଶ୍ୟାସୀ । ସରସ୍ୱାନେ (ସମୁଦ୍ର) ସେ ଅତି ଅଭିଳାଷୀ ।"
ଛା ୧୧, ସୁ: ପ: ।

"ଶିବେ ଆଜ୍ଞା କଲ ବୃଷ । ଘାସ ଗ୍ରାସ ପ୍ରାପ୍ତେ ତ ନ ଗଲା ମୋର କ୍ଲେଶ ।"
ଛା ୧୪, ପ୍ରେ: ସୁ: ।
"ବ୍ରଜ ନଦୀ-ତଟ-ତରୁ ପଶୁସ୍ତେ ଜୀବନ ।" ଛା ୧୪, ପ୍ରେ: ସୁ: ।
"ଉରସ୍ଥାର ନର ଯବନଖଣ୍ଡ ।" ପ ୧୯, ଛା ୧୬, ଛା: ଭୂ: ।
"ଆମ୍ଭେ ଜଣାଇବାର ଅଧିକ କଥା ସିନା ।
ଯେ ଯାହାର ତାକୁ କି ନ ଲଗେ ତା ବେଦନା ଯେ ।" ଲ: ବ:, ପୃ: ୧୫୯ ।
"କରେ ତାପିତ କଲେ ରବିମଣ୍ଡଳ ପ୍ରତାପୀ ରାଜା ଯେସନ ।" ଲ: ବ: ।
"ପାଣ୍ଡୁରିଟି ନଅର ଆସନ ତେଜ ।" ଲ: ବ:, ୨୪୨ ।
"ଶିବ ସହସେ ଜନ୍ମେ କି ପାସୋର । ଅମୃତରୁ ପ୍ରିୟବାଣୀ ମଧୁର ।"
ଲ: ବ:, ପୃ ୨୪୮ ।
"ପ୍ରିୟ ନିନ୍ଦା ଯେ ନ ପାରଇ ସହି ।" ଲ: ବ:, ପୃ ୨୪୯ ।

Digitized by srujanika@gmail.com

"ବଳେ ଯେ ଯାହାରେ ଊଣା ସେ ତାହାରେ ଆରମ୍ଭେ କି ଦ୍ୱନ୍ଦ୍ୱ ।
ବନ୍ଧ ଅହଂବୁଦ୍ଧିମାନ କରୁ ସିଦ୍ଧି ଉପୁଜେ ଯେ ମନ୍ଦ । ବୈ: ବି: ।
"ବିଣ ନମର ଦାତ୍ୟାହ ପର ହୋଇ ବିରୋଧ କରନା ।
ବିମ୍ବ କର ଅନ୍ଧ କୂପେ ସିଂହପ୍ରାୟ ବୁଡ଼ି ତୁ ମରନା ।" ବୈ: ବି: ।
"ବନ୍ଧ୍ୟ ଜଗତରେ ଜ୍ୟେଷ୍ଠ ଅଟଇ ସହଜ ।" ବୈ: ବି: ।
"ସ୍ୱର୍ଗ ସମ୍ପଦ ଯେଉଁ କର୍ମରେ ଥାଇ, ବିଚାର ମଣେ ବଜ୍ରପତନ ତହିଁରେ ।" ଲା: ବ: ।
"ପ୍ରଭୁ ସେ ବଡ଼ କରେ ସାଧୁଜନଙ୍କୁ ।" ଲା: ବ: ।
"ଦୁର୍ବଳ ମାରିବାକୁ ସମସ୍ତେ ଆଗ ।" ଲା: ବ: ।
"ଜୀବନରୁ ଅଧିକ କେହି ନ ଲେଖ ।" ଲା: ବ: ।
"ବିଧାତା ନିର୍ମାଣ କଲ୍ଲ କେ ଆନ କରିବ ।" ବୈ: ବି: ।
"ବେନି ନାବେ ଦେଇ ପଦ । ବ୍ୟର୍ଥ ସମ୍ପଦ ଏ ।" ବୈ: ବି: ।
"ବିପତ୍ତି ହୁଏ ହିତ ସନ୍ନିପାତରେ ।" ଲା: ବ: ।
"ଆରତ ହେଲେ କାର୍ଯ୍ୟ ନୁହଇ ବେଗ ।
କାଳକୁ ରହିଁ ଶ୍ଳେଷ ହୁଅଇ ଯୋଗ ।" ଲା: ବ: ।
"ବିଧାତା ଘଟାଇ ଦେଇ ଯେ ଯୋଗ୍ୟ ଯହିଁକି ।" ଲା: ବ: ।
"କାର୍ଯ୍ୟକାଳେ ମିଥ୍ୟା କହିବାର ଦୋଷ ନାହିଁ ।" ଲା: ବ: ।
"ବିପଦ କି ଶିରଚ୍ଛେଦ । ବଡ଼ ବିପଦ ବିଚ୍ଛେଦ ।" ବୈ: ବି: ।
"ଧାତାରୁ ଦାରୁଣ ହୋଇ ନାହିଁ ତ ସଂସାରେ ।" ଲା: ବ: ।
"ବଡ଼ଲୋକ ନିୟମ ଲଙ୍ଘିବା ବଡ଼ ଦୋଷ ।" ଚ: ପହରା ।
"ବୁଝାଇଲେ ମୂର୍ଖେ ବୁଝିବେ, ଅକ୍ଲେଶେ ବୁଝିବେ କୋବିଦ ଜନ ।" ଗୀ: ଭି: ।
"କଥନେ ସମ ନାହିଁ ବିନୟ ବାକ୍ୟ ।" କ: କ: ।
"ଖଳବଶ ଯଶକ୍ଷୟ ଉତ୍ତମ ଜନର ।" ଅ: ର:, ପୃ ୧୭ ।
"ଖଳ ଦଣ୍ଡଇ ନତଜନ ।" ଅ: ର:, ପୃ ୪୧ ।
"ଧନ ଇଚ୍ଛୁକ ଜନବତ ଚପଳ ହରଷିତ ବିରଧନ ।" ଅ: ର:, ପୃ ୫୧ ।
"ହୃଷ୍ଟ ହୁଅ" । ସୁ: ପ: ।
"ମମ ଅମର କର ନବ ପଲ୍ଲବ ଅଧରର ରସ ଅଶନ ।
ଛଇଲଗଣର ବଡ଼ ଅଯଶ ଏ ସମସ୍ତ କରଇ ଏସନ ।" ଅ: ର:, ପୃ ୭୩ ।
"ପରମ କଷ୍ଟ ଏ ନ ଭଜଇ ଘଟ ବହନ ଦହନ ।
ମତଖଣ୍ଡ ତପବଶର ଏସନ କରମ ଅର୍ଜ୍ଜନ ।" ଅ: ର:, ପୃ ୭୮ ।
"ସବୁକାଳେ ବଡ଼ ହୋଇ କେ ନାହିଁ ।" ସୁ: ପ: ।
"ବୋଲୁଅଛୁ ଏକା ଶ୍ରମ ଶ୍ରମ । ବନ୍ଦୀ ମୋକ୍ଷଣେ ହେବ କି ଷମ ।
ବିବେକ ପ୍ରଚଣ୍ଡ ପକ୍ଷୀ ବନଗୃଣ୍ଡ ବାଇ ପଶୁ ଗୃହ ଏ ସୁଷମ ଗୋ,
ବାନ୍ଧବୀ" । ବୈ: ବି: ।

"ବରୁଣ ଦିଗେ କି ତରୁଣ ଅରୁଣ ଉଦେ ହୋଇଛୁ କେ ଅଛ ଦେଖି ଗୋ,
ବାମାଏ" । ବୈ: ବି: ।

Digitized by srujanika@gmail.com

"ବିକଶିଛୁ କି ଶିଖରଶିଖେ । ବିନା ଜଳରେ ପଦ୍ମ ତା ମୁଖେ ।
ବନ୍ଧନ ଆଶା-ବନ୍ଧରେ (ବୃଦ୍ଧୀଅଣୀ ସୂତାରେ) କି କୁଞ୍ଜର,
ଶୁଣା ପ୍ରବନ୍ଧ କି ମୂର୍ଖ ମୁଖେ ଗୋ । ବାମାଏ" । ବୈ: ବି: ।
"ବଣ ମଧୁପ କାହୁଁ ଲଭିବ । ବୃନ୍ଦ ଶିବଗ୍ରନ୍ଥି ସମ୍ଭବିବ ।
ବିଶ୍ୱାଡକ୍ଷୀ ହୋଇ ପାତକୀ କେତକୀ ସୁକାନ୍ତରେ ଉଣସ୍ନେଗ ହେବ ହେ ।
ବାତଜ" । ବୈ: ବି: ।
"ବିଂବାଧାର, ଏହା ଶୁକ ପଣ । ବିଳସନ୍ତା ସୁବର୍ଣ୍ଣ ପଞ୍ଜରୀ ।
ବନ ଭବନ ଶ୍ରବଣା ଏକା କରେ ଭଲ ପଢ଼ାଉଛୁ ଜଟାଧାରୀ ଗୋ ।
ବାନ୍ଧବୀ" । ବୈ: ବି: ।
"ବନୌକା (ମର୍କଟ) ସଙ୍ଗେ ବନୌକା ନୁହନ୍ତି କି ମିତ" । ବୈ: ବି: ।
"ବରସ୍ତୀ ମୃଗ ପଛରେ ପୁଚ୍ଛକୁ ଲୁଗ୍ଭଇ ।
ବସୁଧାପଥ ନେଇ ତା ମସ୍ତକେ ଚଳାଇ ଯେ" । ବୈ: ବି: ।
"ବିଭୁ ଆଜ୍ଞା ଲଙ୍ଘିବ କି କରି ଭୃତ୍ୟ ହୋଇ" । ବୈ: ବି: ।
"ବିସ୍ମରିଲେ ଟାଣ କହୁଥିଲେ ନାଗ ପାଶ ।
ବିବନ୍ଧୁ ମୁକ୍ତ ନୋହିବ ପୂର୍ବ କର୍ମଦୋଷ" । ବୈ: ବି: ।
"ବଧ ନୁହଇଟି ସୂର—କରିବା ବିବେକ" ।
( ବିଂଶବାହୁ ଭ୍ରଷ୍ଟେ ଶୂର ସୂରେ କି ପାତକ ଯେ ) ବୈ: ବି: ।
"ବାରଧିକ ସରିତ ସର ଲଙ୍ଘନ ହୋଇ
ବିଶ୍ୱାସଣ ମଣ୍ଡନ ହୋଇଲ ଏତେ କହୁ ଯେ ।
ବିତର୍କି ଶୁକ ବୋଇଲ ଶଂକା ଏଥେ ଅଛି
ବିନାଶ ହେବୁ ତ କେ କାହାକୁ ନ କହୁଛି ଯେ" । ବୈ: ବି: ।
"ବିଷ ଖାଇଛୁ ଜାଣୁ ଜାଣୁ କେହୁ ।
ବଣ୍ଠିଥିଲେ ସମ୍ପତ୍ତି ଭୋଗ ହୋଇ " । ବୈ: ବି: ।
"ବାଳୀଶ ତ ନୁହ ଘେନ ସୁଚିତ୍ତ ।
ବାଲୀ ବିଗ୍ରଟ ଦୂତେ ସଦା ଜିତ" । ବୈ: ବି: ।
"ବଇକୁଣ୍ଠ ତୁ ହେଲୁ ନାଶ ହେବୁ ।
ବର୍ଣ୍ଣବନ୍ତେ ଅବଧି ହୋଏ ମୃତ୍ୟୁ" ।
( ସଂସାରେ ଦେହ ଧରି ଜନ୍ମିଲେ ମୃତ୍ୟୁ ସୁନିଶ୍ଚିତ ) ବୈ: ବି: ।
"ବିଧବା ତୁ କିମ୍ପାଇ ହେବୁ ଲୋକେ " । ବୈ: ବି: ।
"ବଧୂ ଅଧିକ କି ଶାଶୁ ଠାବରୁ ?" ବୈ: ବି: ।
"ବିଚକ୍ଷଣ ହୋଇଲେ କି ହେବ ପରମ୍ପର
ବିଚଳିତ ଦମ୍ଭ ଠାବ ନ କରିବ ପର" । ବୈ: ବି. ।
"ବାହାର ହେବ ବଚନୁଁ ପ୍ରାଣମ ଭରସା" । ବୈ: ବି:
"ବୋଲନ୍ତି କୁମ୍ଭଜ ( ଅଗସ୍ତି ଋଷି ) ।
ବିବେକ ଶେଖର ହୋଇ ଅଧୈର୍ଯ୍ୟ ?" ବୈ. ବି. ।
"ବିକ୍ରମ ହେଲେ କିମ୍ପାଇ ରଘୁତ୍ତମ ଭ୍ରାତେ ।
ବଦାନ୍ୟ ଯେ ଏ ସମ୍ପଦେ ସେହି ମଦମତ୍ତେ" । ବୈ. ବି. ।

Digitized by srujanika@gmail.com

"ବନସ୍ପପଦନ୍ହି ରାଗ ଯୋଗରେ ଉକତ ।
ବଶୀକୃତ ପୁନ୍ନାଗକୁ ବଞ୍ଚିତ ଷ୍ଟକତ" । ବୈ: ବ: ।
"ବଚ୍ଛେ ରକ୍ତ ପାଦାଘାତ ବନ୍ଧିଲେ ମାଧବ, ବଲ୍ଲେ ସଞ୍ଜିଲେ"
ଗ୍ଲ ୩୨, ବୈ: ବ: ।

"ବଭୂତ ମଦେ ସେ ନ ଚଳିଲି" । ବୈ: ବ: ।
"ବାତୁଳେ (ଅଗ୍ନିରେ) ଘୃତ ଢାଳଲେ ଯଥା ତେଜ ରାଜ ।
ବନ୍ଧିଲେ ଦୁର୍ଗ୍ଧ ଆହୁତ ତଥା ଶାନ୍ତ ଭଜ" । ବୈ: ବ: ।
"ବନାଶିଲି ତମ ଘାନବନ୍ଧୁ ଦରଶନ" । ବୈ: ବ: ।
ହେଉ ! ଶୁଭ ସଙ୍ଗ, ବରଦ ଦୁର୍ଗାମାଧବ,
କାଶଧିସ୍ବତା, ନରସିଂହ ହୁଅନ୍ତୁ" । ବୈ: ବ: ।
"ବହାଇ ନ ବଏ ପାଶେ ମଧୁପକୁ କେତକୀ ସଖି ନାୟିକା ଯେ" । ବୈ: ବ:
"ବୋଲିବାକୁ ଆହା କେହି ନାହିଁ ସାହା ସେ ଜନ ବଞ୍ଚିବ କେହି" । ବୈ:ବ:
"ବ୍ରହ୍ମାଣ୍ଡ ନାଥ ହାତ ଧରି ଅନାଥ କ ଶୁଭୁଅଛୁ ଜଗତେ
ବଗୁଣ ସେବକଙ୍କରେ ପ୍ରଭୁ ସେନଲେ ସେ ଭଲ ହେବ କେମନ୍ତେ" ।
ବୈ: ବ: ।

"ବସ୍ମୟ ଶୁଣି ରାମ ଶ୍ୱାସ ପକାଇ । ବୋଇଲେ ମୁଁ ସୁଧାଂଶୁ-ହୃଦୟ-ସ୍ଥାୟୀ ଯେ
ବୋଧକର ଆସର (ରାକ୍ଷସ) ରାମାରେ ହେଲି ।
ବନ୍ଧୁ ଜୀବନେ ଥାଉଁ କ ଶୁଣାଇଲି ଯେ" । ବୈ: ବ: ।
"(ରାମଚନ୍ଦ୍ରଙ୍କୁ) ବୁଝାଇ ଏହା ସେନ ଆସ ଝଟିତ ।
ବାରବରୋଧୀ ବଧ ରଖନ୍ତୁ କୀର୍ତ୍ତି" । ବୈ: ବ: ।
"କୃପା-କଳ୍ପଦ୍ରୁମ ଯେ ବୋଲାଇ ।
ଅଗୋଚର ଫଳକୁ ନ ଦେଇ ଆଶା କଲା ଜନ କର୍ମ ଆଦରଲେ ଏଥୁ
ଆସିବ କେଉଁ ବଡ଼ାଇ ହେ, ସୁନ୍ଦର ।" ଗ୍ଲ ୨୪, କୋ: ବ୍ର: ସୁ: ।
"କରୁଣାର ରତ୍ନାକର ହୋଇ । ସେନ୍ତ-କଳା-ରଙ୍ଗ-ରତ୍ନଦାୟୀ ।
କେବଳ ମଜ୍ଜିଲା ଜନ ଜର ଜର କେବେ ତୃଷ୍ଣା ଭୂଷା ନ ତୁଟଇ ।"
କୋ: ବ୍ର: ସୁ: ।
"ଦାତାଗୁଣ ମାଳତୀ ବକାଶ । ସଉରଭ ଦିଗନ୍ତ ପ୍ରକାଶ ।
ମାର୍ଗଣ (ଯାଚକ) ଭ୍ରମରଗଣ ଅନୁଗତେ ଦାନ ମଧୁରେ ଲଭନ୍ତ ତୋଷ ।"
କୋ: ବ୍ର: ସୁ: ।
"ପ୍ରାଣ ସାଣ ହୋଇଛୁ କେବଳ । ମର୍ମ ସ୍ଥାନ ଯେ ହୃଦସ୍ଥଳ ।
ଆହେ ମୋହନ ତାହା ତୁମ୍ଭ ନିବାସ କରାଇଛୁ କେଉଁ ଭାଗ୍ୟବଳ ହେ ।"
କୋ: ବ୍ର: ସୁ: ।

Digitized by srujanika@gmail.com

"ପ୍ରଭୁ କଳିଠାରେ ପରେ ପଶୁଭବ ପାଇବାର କାହାକୁ ଅଛିଟି ।" କୋ: ବ୍ର: ସୁ: ।
"ଦେଖୁଁ ଦେଖୁଁ ଜାତ ସାତ୍ତ୍ୱିକ ବିକାର ଦୁଃଖ ସୁଖ ନୋହିଲା ସଂକ୍ଷେପ ହେ
କୋବିଦେ ।" କୋ: ବ୍ର: ସୁ: ।
"ପ୍ରୀତ ହୋଇ ଯେ ନଷ୍ଟା ସେ ଜଳ । ଜନ୍ତୁ ଜନମ ସିନା ଅନଳ ।
ଜଣାଏ ପରଶ ବିନା ଦରଶନେ କେବେ କରି ନ ପାରେ ଶୀତଳ ।" କୋ: ବ୍ର: ସୁ: ।
"ଏକେ କ୍ଷମାନିଧି ଦ୍ୱିଜେ ଗୁଣୀ । ପୁଣି ରସିକ ମୁକୁଟମଣି ।
ଲେଶ କଥାକୁ ବିଶେଷରେ ଘେନିଲେ ବ୍ୟର୍ଥ ନୋହିବ ବାଳିଶ ( ମୂର୍ଖ )
ବାଣୀ ହେ ।" କୋ: ବ୍ର: ସୁ: ।
"ଉଦ୍‌ଯମକର ମାଧବ ପରି ନୋହି ( ମାଳତୀମାଧବ ପରି ନୋହି ) ମାଧବ
ସମାନେ ।" କୋ: ବ୍ର: ସୁ: ।
"ବିନାଶେ ଉତ୍ପାତ, ଯେଣୁ ଜୀବ ଦାତା ନଳିନ ପୁରୁଷେ ?"
ପ ୫୧, ପୃ ୨୭, କୋ: ବ୍ର: ସୁ: ।
"ତାରକ ( ଉଦ୍ଧାରକର୍ତ୍ତା ) ର ପକ୍ଷପାତ ପାଇଁ ।
କୁଳେ ଭେଲା ପୁଣି ସ୍ୱପି ଯାଇ;" କୋ: ବ୍ର: ସୁ: ।
"ବୋଲେ ସୁଗ୍ରୀବେ ସମ କ୍ଲେଶ ସ୍ୱଷା । ବେନି ଜନେ ପଡ଼ିଛୁ ଏକ ଦଶା ।"
ବୈ: ବି: ।
"ପଦକେ ପଦକେ କେଉଁ ସ୍ଥାନ ହେବ ହୃଦ ଗୋଟାଏ ସିନା ମୋହର ।"
"ସଙ୍ଗାତ ମନା କଲ ପଶ ତୋତେ । କୋ: ବ୍ର: ସୁ: ।
ନ ଅନାଅ ସୁନାବରନା ବୋଲନ୍ତେ ଘୃଣା କଲୁ ପଶ ମୋତେ ।
ପର କି ମୁଁ ତୋର ଚରକଲୁ ଗିର ପରଖ ଏବେ ଯୁ ଚନ୍ଦ୍ରେ ।
ତୃଷ୍ଣା ରୁ ଉତ୍ସାହ ହେବାରୁ ତୋ ଇଚ୍ଛା ସୁଖେ ଲୁବ୍ଧ ପୋଗ୍ସ ଏତେ ।"
( ସଙ୍ଗୀତ ଉପେନ୍ଦ୍ର ଭଞ୍ଜ )
"କଳିକାଳରେ ଧର୍ମ ବିଗ୍ରହ ଅଛୁ କି ?" ସ: ଲ: ( ସମସ୍ଥଳାମୃତ )
"ବୃତ୍ତିଚ୍ୟୁତ ହୋଇବାର ଅବେଶ୍ୱର ।" ସ: ଲ: ।
"ସୁହୃଦସ୍ଥ ଭବ-ସନ୍ତାପ-ନାଶନ ମହାକାଳ-ସୁଖ-ପ୍ରଦାନ ।
ବୈଷ୍ଣବ ଶୈବ ଶାକ୍ତ ଗାଣପତ୍ୟଙ୍କ ହରଷଦାତା ପ୍ରବନ୍ଦନ ।
ସ୍ୱରୂପ ଧର୍ମରାଜ ସୁଖପ୍ରଦାନ ସାରସଚରଣ ଶରଣ ।
ବିନା ହେ ବୈଷ୍ଣବ, ଗାଣପତ୍ୟ, ଶୈବ, ଶାକ୍ତ ଜାଣ ନାହିଁ କାରଣ ।
ଏଣୁ ସେ । ପ୍ରାଣୀର ସଦା ଭଜନୀୟ ।" ସ: ଲ: ।
"ଯତ କର୍ମରେ ଯଦ ପଶିବା ଶାସ୍ତ୍ର କହୁଛି—ଜୀବ ମାରିବା ଉଚିତ ?
ଧନୁ ଶର ଧରିବା ଅଛୁ କାହିଁରେ ?" ସ: ଲ: ।
"ବିଶ୍ୱବସୁର ସଙ୍ଗତେ ବାଦ କୋଣ୍ଠରେ କୋମଳାଙ୍ଗଣବୃନ୍ଦ କରି ଅଛନ୍ତି ?"
"ବଡ଼ ହୋଇ କସ ହୋଇବ, ଅର୍ଜିଲ କର୍ମ ସିନା ଭୋଗ ହୋଇବ ।" ଲ: ବ: ।
"କସ ପୁଣି ଦେଖା ନ ଯାଇ ଯେବେ ଥାଇ ଜୀବରେ," ଲ: ବ: ।
( "ଦୈବାଧୀନ ସବୁ ଅଟଇ ଆରେ ସଖି ।
ଜୀବନ ଥିଲେ କେବେ କି ଅବା ନ ଦେଖି ।" ଅ: ସ: )

---

## ଉପସଂହାର

ଜଗତର ବିଖ୍ୟାତ ବ୍ୟକ୍ତିଙ୍କ ଇତିହାସ ହିଁ ଜଗତର ଇତିହାସ । * ଏହି ଉକ୍ତି ଦେଶ ଓ ପ୍ରଦେଶ ପକ୍ଷରେ ମଧ୍ୟ ପ୍ରଯୋଜ୍ୟ । ଓଡ଼ିଶାର ବିଖ୍ୟାତ ମନୀଷୀ ଶାରଳା ଦାସ, ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ, ଅଭିମନ୍ୟୁ, ଚନ୍ଦ୍ରଶେଖର, ମଧୁବାବୁ, ଗୋପବନ୍ଧୁ, କୃଷ୍ଣଚରଣ, କୃଷ୍ଣସିଂହ, ଜଗନ୍ନାଥ ଦାସ, ଧର୍ମପଦ, ପ୍ରତାପରୁଦ୍ର, ପୁରୁଷୋତ୍ତମଦେବ ପ୍ରଭୃତିଙ୍କ ଇତିହାସ ଯେ ଓଡ଼ିଶାର ଇତିହାସ, ତାହା କହିବା ବାହୁଲ୍ୟ । ସେମାନଙ୍କ ସାହିତ୍ୟ, ବୀରତ୍ୱ, ପାଣ୍ଡିତ୍ୟ, କୃତିତ୍ୱ, ଶିଳ୍ପ ସାଧନା ଓ କର୍ମକୁଶଳତା ଭିତ୍ତି ଉପରେ ଓଡ଼ିଶା ତଥା ଦେଶର ଗର୍ବ-ଗୌରବ-ସଂସ୍କୃତି-ସଭ୍ୟତା-ସୌଧ ପ୍ରତିଷ୍ଠିତ । ଏପରି ଅବସ୍ଥାରେ ସେମାନଙ୍କ ଇତିବୃତ୍ତ ଅତ୍ୟନ୍ତ ସାବଧାନତାର ସହିତ ପର୍ଯ୍ୟାଲୋଚନା କରିବା ବିଧେୟ । ଲେଖକ ଓ ଐତିହାସିକ ପକ୍ଷରେ ସତ୍ୟର ଅପଳାପ କରିବା ଯେତେଦୂର ଯାଏ ଦୋଷାବହ, ଜନଶ୍ରୁତି ଉପରେ ନ୍ୟସ୍ତରହି ଲେଖନୀ ଚାଳନା କରିବା ତତୋଽଧିକ ପ୍ରମାଦର ବିଷୟ । କୌଣସି ହିତକର ସଙ୍କେତ ସୂଚନା ପାଇଁ ବେଳେ ବେଳେ କିମ୍ବଦନ୍ତୀର ପ୍ରଶ୍ରୟ ନିଆଯାଇପାରେ; କିନ୍ତୁ ଯେଉଁ କିମ୍ବଦନ୍ତୀଦ୍ୱାରା ଦେଶ, ଜାତି ସମୂହ ଓ ମହାପୁରୁଷଙ୍କ ଇତିହାସ କଳୁଷିତ ହେବା ଆଶଙ୍କା ପଦେ ପଦେ ରହିଅଛି, ତାହା ସର୍ବଥା ବର୍ଜ୍ଜନୀୟ । †

ରବୀନ୍ଦ୍ର କହନ୍ତି—ଦେଶର ସମ୍ମାନ ପଦେ ଐତିହାସିକ ପ୍ରକୃତ ତଥ୍ୟଦ୍ୱାରା ଯେପରି ରକ୍ଷା କରାଯାଇ ପାରିବ, ଲକ୍ଷେ ରୋମାଞ୍ଚକର ଜନଶ୍ରୁତି ଦ୍ୱାରା କରାଯାଇ ପାରିବ ନାହିଁ । ("An ounce of fact is worth a ton of theory.") ମଜୁମଦାର ଏଥିପ୍ରତି ଦୃଷ୍ଟି ନ ଦେଇ ଶୁଣା କଥାରେ ଆସ୍ଥା ସ୍ଥାପନ କରି କହନ୍ତି—

'ରାଜବାଟୀମାନଙ୍କରେ କିପରି ଶୋଷଣ ଷଡ଼ଯନ୍ତ୍ର ଓ ଅମାନୁଷିକ ହତ୍ୟାକାଣ୍ଡ ସଂଘଟିତ ହେଉଥିଲା, ତାହା ଯେଉଁ ସଦ୍ୟଲୁପ୍ତ ଗୁମୁସର ଭଞ୍ଜ ରାଜବଂଶ ଇତିହାସରୁ ପ୍ରମାଣିତ ହେଉଛି, ସେହି ଭଞ୍ଜବଂଶରେ ଉପେନ୍ଦ୍ର ଭଞ୍ଜଙ୍କ ଜୀବନ ଗଠିତ ହୋଇଥିଲା ।' ମଜୁମଦାରଙ୍କ ଏହି ପଦକ ବାଣବଚନ ଜନଶ୍ରୁତିମୂଳକ, ଐତିହାସିକ ତଥ୍ୟ ନୁହେ । ଗୁମୁସରରେ ତାଳପତ୍ରରେ ଲିଖିତ ଭଞ୍ଜବଂଶାବଳୀ ଦେଖାଯାଏ । ସେଥିରୁ ତିନୋଟି ବିଶ୍ୱାସଯୋଗ୍ୟ ବିବେଚିତ ହୁଏ:—ଗୋଟିଏ ସଂସ୍କୃତ ଶ୍ଲୋକାବଳୀ, ୨ୟଟି ଶ୍ରେଷ୍ଠ ପ୍ରକୃତି ରାଗ-ରାଗିଣୀ-ବିଶିଷ୍ଟ ପଦ୍ୟାବଳୀ, ୩ୟଟି ୧୪ ଅକ୍ଷରୀ ପଦ୍ୟ । ଏହି ବିଭିନ୍ନ ତିନୋଟି ବଂଶାବଳୀରେ ଭଞ୍ଜବଂଶର କଥା ଉଲ୍ଲେଖ କରାଯାଇଅଛି । ଯେଉଁ ଯେଉଁ ପ୍ରସଙ୍ଗରେ ତିନୋଟିଯାକ ଗ୍ରନ୍ଥ ଏକମତ, ସେହି ବିଷୟ ତାରିଣୀଚରଣ ରଥଙ୍କ 'ଗୁମୁସର ଇତିହାସ'ରେ ସନ୍ନିବିଷ୍ଟ ଥିଲେ ମଧ୍ୟ, ସେଥିରେ କେତେକ ଅମୂଳକ ଜନଶ୍ରୁତିର ମଧ୍ୟ ଉଲ୍ଲେଖ ଅଛି । ସେଥିରେ, ମଜୁମଦାରଙ୍କ ଲିଖିତ ପ୍ରାଚୀନ ରାଜବାଟୀର ନୃଶଂସ କାଣ୍ଡ ଭୁଲ୍ ପଦେ, ଗୁମୁସରର ୧ମ ରାଜା ରଘୁନାଥ ଭଞ୍ଜଙ୍କ ସମ୍ପର୍କରେ, ଉପେନ୍ଦ୍ର ଭଞ୍ଜଙ୍କ ଆବିର୍ଭାବର ୭୦୦ ବର୍ଷ ପୂର୍ବେ ଚଳିଥିବା ପରି ଉଲ୍ଲେଖ କରାଯାଇଥିବାରୁ, ଶୁଣାକଥାରୁ ପଦେ ଅଧେ କବିଙ୍କ ପିତା ଓ

---

*"The history of the world is the history of its great men." —Carlyle

† "How Raj houses became subject to low intrigues and in human practices is proved by the history of the now extinct family of Ghumsur which natured the life of Upendra Bhanja."—B. C. Majumdar.

Digitized by srujanika@gmail.com

ସିଡ଼ାମଶ୍ମଣାଙ୍କଠାରେ ଆକ୍ଷେପ କରାଯାଇଥିବାରୁ, ମଜୁମଦାର ଓ ଉତ୍କଳର ଜଣେ ଅଧେକ୍ଷ, ଉଭୟଙ୍କୁ ତାଙ୍କର ବର୍ଣ୍ଣନା କରିବା ପାଇଁ ସୁବିଧା ଘଟିଛି । ୧୯୫୦ ସେପ୍ଟେମ୍ବର ୨୧ ତାରିଖରେ ଓଡ଼ିଶାର ଜନୈକ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଭଞ୍ଜସାହିତ୍ୟ ଉପଲକ୍ଷେ—ଗୋଟିଏ ପ୍ରସିଦ୍ଧ ପତ୍ରିକାରେ ସର୍ବସାଧାରଣଙ୍କ ଅନୁରୋଧକ୍ରମେ ସାରଗର୍ଭକ ଦୀର୍ଘ ଅଭିଭାଷଣଟିଏ ଦେଇଥିଲେ । ଜନଶ୍ରୁତି ଅନୁମୃତ ଗୋଟିଏ ଉଦ୍ଧୃତ ବାକ୍ୟପୂର୍ଣ୍ଣ ଲେଖାକୁ ସେ ସେତେବେଳେ ଉତ୍କଟ ସମାଲୋଚନା କରିଥିବା ପ୍ରକାଶ । ଯେଉଁ ଅବାସ୍ତବୀୟ ଜନଶ୍ରୁତି ସମ୍ବଳିତ ଗ୍ରନ୍ଥଦ୍ୱାରା ଜାତୀୟ ସମ୍ମାନ କଳଙ୍କିତ ହୋଇପଡ଼ିବା ଅନିବାର୍ଯ୍ୟ, ତାହା କେହି ପସନ୍ଦ କରି ପାରିବେ ନାହିଁ । ଅତୀତ ଅତ୍ୟନ୍ତ ମଧୁମୟ କହିବାବେଳେ, ଦେଶବାସୀ ସେହି ପ୍ରାଚୀନ ମନୀଷିଗଣଙ୍କୁ ସ୍ମରଣ କରନ୍ତି । ସେମାନଙ୍କ ଶିଳ୍ପ, ସାହିତ୍ୟ, ବୈଜ୍ଞାନିକ ତଥ୍ୟ, ଜ୍ୟୋତିଷିକ ଅନୁଶୀଳନ, ଅଦ୍ଭୁତ ଚିକିତ୍ସାସମ୍ଭାର, ଗାଣିତିକ ସାଧନା ପ୍ରଭୃତି ଗୋଟି ଗୋଟି ହୋଇ ଚକ୍ଷୁ ସମ୍ମୁଖରେ ପ୍ରତିଫଳିତ ହୋଇଉଠେ । ଯେ କୌଣସି ଦେଶବାସୀ ସେଥିରେ ଆନନ୍ଦ ଅନୁଭବ କରିବା ସ୍ୱାଭାବିକ । ରବୀନ୍ଦ୍ର କିନ୍ତୁ ଆପାତତଃ ଅନୁତପ୍ତ ହୋଇ କହନ୍ତି:—ଆମର ପ୍ରାଚୀନ ସଭ୍ୟତା ଖଣିର କୋଇଲା ସ୍ୱରୂପ; ଖଣିର ସୁବର୍ଣ୍ଣ ବା ହୀରକ ତୁଲ୍ୟ ବୋଲି କହିଲେ ନାହିଁ କାହିଁକି ? ପ୍ରାଚୀନ ମନୀଷିଙ୍କ ଦୁର୍ଲଭ ସାଧନା ଦୃଷ୍ଟିରେ, ଦେଶବାସୀ ସେମାନଙ୍କୁ ଯେତେଦୂର ସମ୍ମାନ ଦେବା ଉଚିତ, ତାହା ହୁଏ ନାହିଁ । ସେଥିପାଇଁ କ୍ଷୁବ୍ଧ ହୋଇ ବୋଧହୁଏ ସେ ସେହିପରି କହିଛନ୍ତି । ବୀରପୂଜା ପ୍ରତ୍ୟେକ ଦେଶର ସ୍ପୃହଣୀୟ । ଶିକ୍ଷା ସଭ୍ୟତାର ଅନୁପାତରେ ତାହା ଜଗତରେ ପରିପାଳିତ ହୁଏ । ପାଶ୍ଚାତ୍ୟ ଭୂଖଣ୍ଡରେ ତାହା ଯେଉଁ ପରିମାଣରେ ସମାରୋହର ସହିତ ପାଳିତ ହେଉଛି, ପ୍ରାଚ୍ୟ ଭୂଖଣ୍ଡରେ ସମ୍ଭବତଃ ସେହିପରି ହୁଏ ନାହିଁ; ପ୍ରାଚ୍ୟ ଭୂଖଣ୍ଡର ଉନ୍ନତ ପ୍ରଦେଶରେ ଯେଉଁପରି ହୁଏ, ଅନୁନ୍ନତ ପ୍ରଦେଶରେ ସେହିପରି ହୁଏ ନାହିଁ । ଆମ ଓଡ଼ିଶାରେ ଶିକ୍ଷା ଓ ସଭ୍ୟତାର ଅନୁପାତରେ ବୀରପୂଜା-ମନ୍ଦାକିନୀର ସ୍ୱଚ୍ଛ ପ୍ରବାହ ମନ୍ଦ-ମନ୍ଥର ଗତିରେ ପ୍ରବାହିତ ହେଉଛି । ଉପେନ୍ଦ୍ରଭଞ୍ଜ, କବିସୂର୍ଯ୍ୟ, ଗୋପବନ୍ଧୁ, ମଧୁବାବୁ ପ୍ରଭୃତିଙ୍କ ପୂଜା, ଜୟନ୍ତୀ ଓ ବାର୍ଷିକ ଉତ୍ସବ ନାମରେ ଦେଶର ପଲ୍ଲୀ, ପାଟଣା, ଓ ବିଦ୍ୟାପୀଠମାନଙ୍କରେ ଅନୁଷ୍ଠିତ ହେଉଥିବା ଆଶା ଓ ଆଶ୍ୱାସନାର ବିଷୟ ।

କବି ୫୦ ବର୍ଷ ବୟସରେ ୧୭୨୦ ସାଲରେ ଦେହତ୍ୟାଗ କରିଥିଲେ । ପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କ ଅପମୃତ୍ୟୁ ସର୍ବସାଧାରଣଙ୍କ ଅସହ୍ୟ କଥା । ଶଙ୍କରାଚାର୍ଯ୍ୟ ୩୧ ବର୍ଷ ବୟସରେ, ବିବେକାନନ୍ଦ ୩୮ ବୟସରେ, ଗୋଖେଲ ୪୭ ବୟସରେ ଇହଲୀଳା ସମ୍ବରଣ କରିଥିଲେ । ସୁରେନ୍ଦ୍ରନାଥ ବେନାର୍ଜି କହନ୍ତି—"ପରମେଶ୍ୱର ଯେଉଁମାନଙ୍କୁ ଭଲ ପାନ୍ତି, ସେମାନେ ସ୍ୱଳ୍ପ ବୟସରେ ଭବବନ୍ଧନରୁ ମୁକ୍ତ ହୁଅନ୍ତି ।" ନିଜ ନିଜର ମହତ୍ତ୍ୱକାର୍ଯ୍ୟ ଯେଉଁମାନେ ଯେତେ ଶୀଘ୍ର ଶେଷ କରନ୍ତି, ସେମାନେ ତେତେ ଶୀଘ୍ର ବିଦାୟ ନିଅନ୍ତି ବୋଲି ବହୁବିଜ୍ଞ ବ୍ୟକ୍ତିଙ୍କ ମତ । ଉପେନ୍ଦ୍ରଭଞ୍ଜଙ୍କ ମହତ୍ତ୍ୱ କର୍ତ୍ତବ୍ୟ ୫୦ ବର୍ଷ ବୟସରେ ସମ୍ଭବତଃ ଶେଷ ହେଲା । ସେଥିପାଇଁ ସେ ପାପତାପକ୍ଲିଷ୍ଟ ବିଶାଳ ବସୁନ୍ଧରା ବକ୍ଷରୁ ଶୀଘ୍ର ବିଦାୟ ନେଲେ । ଉପେନ୍ଦ୍ରଙ୍କ ଉପଲକ୍ଷେ ସେକ୍ସପିଅରଙ୍କ ଭାଷାରେ—

> "Fare well ? A long farewell to all my greatness !
> This is the state of man ...."
>
> —Shakespear.

ମିଲଟନ୍, ସେକ୍ସପିଅରଙ୍କ ଉଦ୍ଦେଶ୍ୟରେ ନିମ୍ନମତେ ଯାହା କହିଛନ୍ତି, ତାହା ଉପେନ୍ଦ୍ରଙ୍କ ପ୍ରତି ପ୍ରଯୋଜ୍ୟ:—

> "So sepulchred and in such pomp does lie
> That king for such a tomb could wish to die."
>
> —Milton.



Digitized by srujanika@gmail.com

# ପରିଶିଷ୍ଟ

ପାଠକମାନଙ୍କ କୌତୂହଳ ନିବୃତ୍ତି ସକାଶେ ଭଞ୍ଜବଂଶାବଳୀର କେତେକାଂଶ ଏବଂ ଭଞ୍ଜଭୂମି ଗୁମୁସର ସମ୍ବନ୍ଧୀୟ କେତେକ ଜ୍ଞାତବ୍ୟ ତଥ୍ୟ ଏଠାରେ ପ୍ରଦତ୍ତ ହେଲା ।

ପ୍ରାଚୀନ ତାଳପତ୍ର ଭଞ୍ଜବଂଶାବଳୀରୁ ସଂଗୃହୀତ ବଂଶଲତା—

୧ ରଘୁନାଥ ଭଞ୍ଜ (ଖ୍ରୀ ୮୩୨—୫୨)
(ଗୁମୁସର ଭଞ୍ଜବଂଶର ପ୍ରଥମ ରାଜା)
|
୨ ଅର୍ଜୁନ ଭଞ୍ଜ (୮୫୨—୬୭)
|
୩ କେଶବ ଭଞ୍ଜ (୮୬୭—୮୫) | ୪ ବନମାଳୀ ଭଞ୍ଜ (୮୮୫—୯୯)
|
୫ ଗୋପାଳ ଭଞ୍ଜ (୮୯୯—୯୨୨)
|
୬ ଗୋବିନ୍ଦ ଭଞ୍ଜ (୯୨୨—୩୭)
|
୭ ଜଗନ୍ନାଥ ଭଞ୍ଜ (୯୩୭—୪୭)
|
୮ ହରିକୃଷ୍ଣ ଭଞ୍ଜ (୯୪୭—୫୭)
|
୯ ଗୋକୁଳ ଭଞ୍ଜ (୯୫୭—୭୨)
|
୧୦ ଗୌରହରି ଭଞ୍ଜ (୯୭୨—୯୨) | ୧୧ କୃଷ୍ଣ ଭଞ୍ଜ (୯୯୨—୧୦୦୮)
|
୧୨ ନୃସିଂହ ଭଞ୍ଜ (୧୦୦୮—୨୭)
|
୧୩ ବଳଭଦ୍ର ଭଞ୍ଜ (୧୦୨୭—୫୭)
|
୧୪ ମୁକୁନ୍ଦ ଭଞ୍ଜ (୧୦୫୭—୭୩)
|

Digitized by srujanika@gmail.com

୧୫ ମଧୁସୂଦନ ଭଞ୍ଜ (୧୦୬୩—୮୮)

|

୧୬ ନାରାୟଣ ଭଞ୍ଜ (୧୦୮୮—୧୧୦୭)

|

୧୭ ହରିଧର ଭଞ୍ଜ (୧୧୦୭—୨୨)

|

୧୮ ନରହରି ଭଞ୍ଜ (୧୧୨୨—୪୦)

|

୧୯ ଜଗନ୍ନାଥ ଭଞ୍ଜ (୧୧୪୦—୬୧)

|

୨୦ ମଣ୍ଡପାସ୍ତୀ ଭଞ୍ଜ (୧୧୬୧—୮୦)

|

୨୧ ପୁରୁଷୋତ୍ତମ ଭଞ୍ଜ (୧୧୮୦—୯୦)

|

୨୨ ପ୍ରତାପ ଭଞ୍ଜ (୧୧୯୦—୧୨୦୭)

|

୨୩ ଚନ୍ଦ୍ରଧର ଭଞ୍ଜ (୧୨୦୭-୧୭) ୨୪ ହରିଚରଣ ଭଞ୍ଜ (୧୨୦୭—୩୦)

|

୨୫ କପିଳ ଭଞ୍ଜ (୧୨୩୦—୫୭)

୨୬ ଶ୍ରୀଧର ଭଞ୍ଜ (୧୨୫୭—୭୨)

|

୨୭ ରାମଚନ୍ଦ୍ର ଭଞ୍ଜ (୧୨୭୨—୯୩)

|

୨୮ ଲକ୍ଷ୍ମଣ ଭଞ୍ଜ (୧୨୯୩—୧୩୦୮)

|

୨୯ ତ୍ରିଲୋଚନ ଭଞ୍ଜ (୧୩୦୮—୧୩୨୬)

|

୩୦ ହରିସେବକ ଭଞ୍ଜ (୧୩୨୬—୪୩) ୩୧ ଗଦାଧର ଭଞ୍ଜ (୧୩୪୩—୬୮)

|

Digitized by srujanika@gmail.com

୩୨ ଦୟାନିଧି ଭଞ୍ଜ ( ୧୩୫୮—୧୩୭୨ )

|

୩୩ ଗିରିଧର ଭଞ୍ଜ ( ୧୩୭୨—୮୮ )

|

୩୪ କୃପାସିନ୍ଧୁ ଭଞ୍ଜ ( ୧୩୮୮—୧୪୦୦ )

|

୩୫ ପଦ୍ମନାଭ ଭଞ୍ଜ ( ୧୪୦୦—୧୬ )

|

୩୬ ମାଧବ ଭଞ୍ଜ ( ୧୪୧୬—୩୧ )

|

୩୭ କମଳଲୋଚନ ଭଞ୍ଜ ( ୧୪୩୧—୪୦ )

|

୩୮ ହରିହର ଭଞ୍ଜ ( ୧୪୪୦—୫୮ )

|

୩୯ ଚାଉଳ ଗୋପୀନାଥ ଭଞ୍ଜ ( ୧୪୫୮—୮୦ )

|

୪୦ ଦେବେନ୍ଦ୍ର ଭଞ୍ଜ ( ୧୪୮୦—୯୭ )

|

୪୧ ହୃଷୀକେଶ ଭଞ୍ଜ ( ୧୪୯୭—୧୫୧୫ )

|

୪୨ ପୀତାମ୍ବର ଭଞ୍ଜ ( ୧୫୧୫—୩୭ )

|

୪୩ ନଳନାକ୍ଷ ଭଞ୍ଜ ( ୧୫୩୭—୪୮ )

|

୪୪ ତ୍ରିବିକ୍ରମ ଭଞ୍ଜ ( ୧୫୪୮—୫୮ )

|

୪୫ ଗୋବିନ୍ଦ ଭଞ୍ଜ ( ୧୫୫୮—୭୪ )

|

୪୬ ଗଜେନ୍ଦ୍ର ଭଞ୍ଜ ( ୧୫୭୪—୮୯ )
( ରଣଭଞ୍ଜ )

|

Digitized by srujanika@gmail.com




ହସ୍ତଲିଖିତ ତାଳପତ୍ର ଭଞ୍ଜବଂଶାବଳୀର କିୟଦଂଶ:--

ଗଜେନ୍ଦ୍ର ଭଞ୍ଜ
|
ଗୋପାଳ ଭଞ୍ଜ ( ଅନ୍ୟ ନାମ ) ରଣ ଭଞ୍ଜ
|
ପ୍ରତାପ ଭଞ୍ଜ
|

Digitized by srujanika@gmail.com

ଗୋପୀନାଥ ଭଞ୍ଜ

| | |
|---|---|
| ଧନଞ୍ଜୟ ଭଞ୍ଜ | ଗୋବିନ୍ଦ ଭଞ୍ଜ |
| ନୀଳକଣ୍ଠ ଭଞ୍ଜ | ଘନ ଭଞ୍ଜ |
| (କବିସମ୍ରାଟ ଉପେନ୍ଦ୍ର ଭଞ୍ଜ) | ଲୋକନାଥ ଭଞ୍ଜ |
| | କୃଷ୍ଣ ଭଞ୍ଜ |
| | ଲକ୍ଷ୍ମଣ ଭଞ୍ଜ |
| | ଶ୍ରୀକର ଭଞ୍ଜ |
| | ଧନଞ୍ଜୟ ଭଞ୍ଜ |
| | ବ୍ରଜରାଜ ଭଞ୍ଜ |

ଭଞ୍ଜ କଥାବଳୀରେ :

"ଧନଞ୍ଜୟସୁତଃ ଶ୍ରୀମାନ୍ ନୀଳକଣ୍ଠ ଇତି ଶ୍ରୁତଃ
ତସ୍ୟ ପୁତ୍ରୋଽଭବଦ୍ଧୀମାନୁପେନ୍ଦ୍ର ଭଞ୍ଜ ସଞ୍ଜ୍ଞକଃ ।
ଭାଷାପ୍ରବନ୍ଧରଚନାଂ ଚକ୍ରେ ଧୀରୋ ମହାକବିଃ ॥"

## ଭଞ୍ଜ ଶବ୍ଦ ଓ ଭଞ୍ଜରାଜ୍ୟ

**ଭଞ୍ଜ ଶବ୍ଦ :—**

ଭଞ୍ଜବଂଶ 'ବରହ୍ମକୋଷରୁ' ସମ୍ଭୂତ—ଏହି କଥା ଲୋକରେ ଅଦ୍ଭୁତ ହେଲେ ମଧ୍ୟ ସତ୍ୟ ବୋଲି କବି ଲବଣ୍ୟବତୀରେ କହିଛନ୍ତି—

"ଯେ ବଂଶେ ଇଷ୍ଟ ଦୁର୍ଗାଦେବୀ,
ବରହ୍ମକୋଷରୁ ସମ୍ଭବ ।
ମନୁଷ୍ୟ ଏହି ଅଦଭୁତ
ଭଞ୍ଜାନୁଭଞ୍ଜ ନାମ ସତ୍ୟ ।"

ଏହି କଥା 'ତାଳପତ୍ର ବଂଶାବଳୀ'ରେ ବିଶ୍ଳେଷଣ କରାଯାଇଛି । * ଅରଣ୍ୟମାର୍ଗରେ ଯାଉ ଯାଉଁ କାମାସକ୍ତ ମୃଗମୃଗୀଙ୍କ କ୍ରୀଡ଼ାଦର୍ଶନରେ ମହର୍ଷି ବଶିଷ୍ଠଙ୍କର ରେତ ସ୍ଖଳିତ ହେଲା । ସେ ନିକଟବର୍ତ୍ତୀ ପୁଷ୍କରତୀର୍ଥରେ ନିଜର କୌପୀନ ଧୌତ କଲେ । ତୃଷାର୍ତ୍ତ ମୟୂରୀଟି ସେହି ସମୟରେ ଆସି ସେଠାରେ ଜଳ ପାନ କରୁ କରୁ ଜଳ ସହିତ ରେତଃପାନ କରି ଗର୍ଭବତୀ ହେଲା । ଯଥା ସମୟରେ ସେ ଦୁଇଟି ଅଦ୍ଭୁତ ଓ ଅସ୍ୱାଭାବିକ ଡିମ୍ବ ପ୍ରସବ କଲା । ତଦ୍ଦର୍ଶନରେ ମୟୂରୀ ଭୀତତ୍ରସ୍ତ ହୋଇ ଛାଡ଼ି ଚାଲିଯିବାରୁ, ତ୍ରିକାଳଜ୍ଞ ମହର୍ଷି ବଶିଷ୍ଠ ତାହା ବୁଝି ପାରି ଡିମ୍ବ ଦୁଇଟି ନିଜ ଆଶ୍ରମକୁ ନେଇଗଲେ । ତାହା ସେ ପ୍ରତ୍ୟହ ପ୍ରାକୃତିକ ନିୟମାନୁଯାୟୀ ସୂର୍ଯ୍ୟକିରଣରେ ତପ୍ତ କରୁଥିଲେ । କେତେ ଦିନ ପରେ ଗୋଟିକରୁ ଗୋଟିଏ ବାଳକ ଉତ୍ପନ୍ନ ହେଲା । ତାର ନାମ ରଖାଗଲା ମଦନ ରାଣା । ଅନ୍ୟଟି ଆଉ ଫାଟିଲା ନାହିଁ, ଦଣ୍ଡଦ୍ୱାରା ଭଙ୍ଗାଗଲା । ସେଥିରୁ ଅନ୍ୟ ଗୋଟିଏ ଦିବ୍ୟ ବାଳକ ଜାତ ହେଲା । ତାର ନାମ ରଖାଗଲା— ମୋଦକ ଭଞ୍ଜ । ଦଣ୍ଡଦ୍ୱାରା ଭଙ୍ଗାଯିବାରୁ ସଂଜ୍ଞା ହେଲା ଭଞ୍ଜ, ଡିମ୍ବ ସୂର୍ଯ୍ୟତାପରେ ତାପିତ ହୋଇଥିବାରୁ ବଂଶ ନାମ ହେଲା— ସୂର୍ଯ୍ୟବଂଶ । ମୟୂର ଡିମ୍ବରୁ ମଦନ ରାଣା ଏବଂ ମୋଦକ ଭଞ୍ଜ ଜନ୍ମଲାଭ କରିଥିବାରୁ, ସେମାନେ ଓ ତାଙ୍କର ପରବର୍ତ୍ତୀ ଭଞ୍ଜ ରାଜାମାନେ ପ୍ରଥମେ ଆଶ୍ରୟ ନେଇଥିବା ଦେଶର ନାମ ହେଲା ମୟୂରଭଞ୍ଜ ।

ଭଞ୍ଜରାଜା :— ମଦନ ରାଣା ଓ ମୋଦକ ଭଞ୍ଜ ଅସ୍ତ୍ର, ଶସ୍ତ୍ର, ଶାସ୍ତ୍ରରେ ନିପୁଣ ହେବା ପରେ ମହର୍ଷିଙ୍କ ଆଶ୍ରମ ତ୍ୟାଗ କରି ଦିଗ୍‌ବିଜୟରେ ବାହାରିଲେ । ସେମାନେ ଚତୋର ଓ ନିକଟବର୍ତ୍ତୀ ଦେଶମାନ ଜୟ କରି ଆଧିପତ୍ୟ ସ୍ଥାପନ କରିଥିଲେ । ମୋଦକ ଭଞ୍ଜ କେତେକ ଦିନ ପରେ ଭାଇଠାରୁ ବିଚ୍ଛିନ୍ନ ହୋଇ ସୁବର୍ଣ୍ଣରେଖା ନଦୀତୀରସ୍ଥ ବିଶାଳ ଭୂଖଣ୍ଡ ବାହୁବଳରେ ଅଧିକୃତ କରି ଅଧୀଶ୍ୱର ହେଲେ । ତାହା ମୟୂରଭଞ୍ଜ ନାମରେ ପରିଚିତ ।

ମୟୂରଭଞ୍ଜ ଓଡ଼ିଶା ଗଡ଼ଜାତରେ ପ୍ରାଚୀନତମ ରାଜ୍ୟ । ଦୁଇ ହଜାର ବର୍ଷ ପୂର୍ବେ ରାଜପୁତାନାର ଜଣେ ରାଜପୁରୁଷ ତାହା ସ୍ଥାପନ କରିଥିଲେ । ଏହାର ପ୍ରଥମ ନାମ ଥିଲା— ହରିହରପୁର । ଶାସକମାନେ ଭଞ୍ଜବଂଶୀୟ ଥିବା ହେତୁ ଏବଂ ସେମାନଙ୍କର ମୟୂର ସଙ୍କେତ ଥିବାରୁ ରାଜ୍ୟର ନାମ ହେଲା ମୟୂରଭଞ୍ଜ । ଗଜପତି ରାଜାମାନଙ୍କ ରାଜତ୍ୱ ସମୟରେ ନୀଳଗିରି, ସିଂହଭୂମି, ନରସିଂହପୁର, ପଥରାଇ, ଜମକୁଣ୍ଡା, ତଳମୁଣ୍ଡ, କେନ୍ଦୁଝର ଏବଂ ମାନଭୂମି ମୟୂରଭଞ୍ଜର ଅନ୍ତର୍ଗତ ଥିଲା ।

---

* ଗୁମୁସର ଇତିହାସ, ୨-୩ ପୃଷ୍ଠା

Digitized by srujanika@gmail.com

ମୟୂରଭଞ୍ଜ ଅନ୍ତର୍ଗତ କେନ୍ଦୁଝରର ପ୍ରଜାମାନେ ବଣ, ପାହାଡ଼ ଅତିକ୍ରମ କରି ମୟୂରଭଞ୍ଜ ରାଜଦ୍ୱାର ପର୍ଯ୍ୟନ୍ତ ଯିବା ପାଇଁ ଘୋର ଅସୁବିଧା ହେବାରୁ, ସେମାନେ ମୟୂରଭଞ୍ଜ ରାଜବଂଶରୁ ପିଲାଟିଏ ନେଇ କେନ୍ଦୁଝରରେ ରାଜା କଲେ । ସେହି ଦିନଠାରୁ କେନ୍ଦୁଝର ମୟୂରଭଞ୍ଜରୁ ବିଚ୍ଛିନ୍ନ ହେଲା । କାଳକ୍ରମେ କେନ୍ଦୁଝର ଭଞ୍ଜରାଜପରିବାର ମଧ୍ୟରେ ନାନା ଅଶାନ୍ତି ଦେଖାଗଲା । ସ୍ଥାନାନ୍ତରିତ ହେବା ଶ୍ରେୟସ୍କର ମନେକରି କେନ୍ଦୁଝର ରାଜବଂଶୋଦ୍ଭବ ଦୈତ୍ୟାରିଭଞ୍ଜ ନିଜର ଦୁଇ ପୁତ୍ର—ରଘୁନାଥ ଭଞ୍ଜ ଓ ବନମାଳୀ ଭଞ୍ଜ ସହିତ ବୌଦ୍ଧ ଅନ୍ତର୍ଗତ ଖିଞ୍ଜାଲିକୁ ଆଗମନ କରିଥିଲେ ।

ବୌଦ୍ଧ (ବୌଦ୍ଧ) ସର୍ବପ୍ରଥମେ କନ୍ଧରାଜ୍ୟ ଥିଲା । ସହସ୍ରାଧିକ ବର୍ଷ ପୂର୍ବେ ଜଣେ ବ୍ରାହ୍ମଣ ଶାସକ ହୋଇ କନ୍ଧମାନଙ୍କୁ ଦକ୍ଷିଣ ଅଞ୍ଚଳକୁ ତଡ଼ି ଦେଇଥିଲେ । ସେଥିରେ ସେତେବେଳକୁ ୭୨ ଜଣ ରାଜା ରାଜତ୍ୱ କରିଥିଲେ । ତାହା ଗୋଟିଏ ବିଶାଳ ରାଜ୍ୟ ଥିଲା । ପାର୍ଶ୍ୱବର୍ତ୍ତୀ ରାଜାମାନେ ସେଥିରୁ ଖଣ୍ଡେ ଖଣ୍ଡେ ବଳପୂର୍ବକ ଦଖଲ କରି ନେବାରୁ ତାର ଆକାର କମିଗଲା । ବୌଦ୍ଧ ଅନ୍ତର୍ଗତ ତଦାନୀନ୍ତନ ଖିଞ୍ଜାଲି ଶାସକ ଦୀନବନ୍ଧୁ ନିଜ ନିଃସନ୍ତାନ ଥିବା ଯୋଗୁଁ ଦୈତ୍ୟାରି ଭଞ୍ଜଙ୍କ ପୁତ୍ରଦ୍ୱୟଙ୍କୁ ପୁତ୍ରରୂପେ ଗ୍ରହଣ କଲେ । ଦୀନବନ୍ଧୁଙ୍କ ପରେ ରଘୁନାଥ ଭଞ୍ଜ ଖିଞ୍ଜାଲି (ଆଧୁନିକ ଗୁମୁସର) ର ଶାସକ ହୋଇ ରାଜ୍ୟବିସ୍ତାର କରିଥିବାର ଭଞ୍ଜବଂଶାବଳୀରୁ ଜଣାଯାଏ । ※

ଭଞ୍ଜଭୂମି ଗୁମୁସର :—ଖିଞ୍ଜାଲି ପରିବର୍ତ୍ତିତ ହୋଇ ଗୁମୁସର ହୋଇଅଛି । ପ୍ରଥମେ ଖିଞ୍ଜାଲି ଶାସକ ରଘୁନାଥ ଭଞ୍ଜ ଭଞ୍ଜନଗରର ଚାରି ମାଇଲ ଦୂରରେ ଅବସ୍ଥିତ ନେଞ୍ଜୋ ଗ୍ରାମ ନିକଟରେ ସର (ଜଳ) ବେଷ୍ଟିତ ଗୁମା (କୁଣ୍ଡଆ, ଗଡ଼) ଦେଖିଲେ । ତାହା ଯୋଗ୍ୟ ବିବେଚିତ ହେବାରୁ, ସେଠାରେ ସେ ଶକ୍ତ ଗଡ଼ ନିର୍ମାଣ କରି ବାସ କଲେ । ଉକ୍ତ ଗୁମା+ସରରୁ ଗୁମୁସର ନାମର ଉତ୍ପତ୍ତି ବୋଲି ବଂଶାବଳୀ ଲେଖକ ନିର୍ଦ୍ଦେଶ କରିଛନ୍ତି । ରଘୁନାଥ ଭଞ୍ଜ କ୍ରମେ କ୍ରମେ ନିକଟବର୍ତ୍ତୀ ସମସ୍ତ ସ୍ଥାନ ଜୟ କରି ନିଜ ରାଜ୍ୟଭୁକ୍ତ କରିଥିଲେ, ଏବଂ ରାଜାଙ୍କ ବାସସ୍ଥାନର ନାମ ଅନୁସାରେ ସମଗ୍ର ରାଜ୍ୟର ନାମ ହେଲା—ଗୁମୁସର । ପୁରୁଣା ଗୁମା ବା ଗଡ଼ଠାରେ ଗଡ଼ ନିର୍ମାଣ କରାଯାଇଥିବାରୁ, ତାର ନାମ ରଖାଗଲା, †"ପୁରୁଣା ଗୁମୁସର ଗଡ଼" । ଏହି ଗଡ଼ ବିଷୟରେ ରସଲ କହନ୍ତି—(ଗୁମୁସର ଅନ୍ତର୍ଗତ) ପୁରୁଣା ଗୁମୁସର ଗାଁରେ ରାଜାଙ୍କର ଯେଉଁ ଘର (ପୁରୁଣା ଗୁମୁସର ଗଡ଼) ଥିଲା, ତାହା ଅତ୍ୟନ୍ତ ଜୀର୍ଣ୍ଣ । ତାହା ମୃତ୍ତିକା ପ୍ରାଚୀର, ନିବିଡ଼ ବଂଶକୁଞ୍ଜ ଓ ପରିଖାଦ୍ୱାରା ପରିବେଷ୍ଟିତ ଅଛି ।

କବିଙ୍କ "ଯେ ବଂଶେ ଇଷ୍ଟ ଦୁର୍ଗାଦେବୀ" ରୁ ଜଣାଯାଏ—ଭଞ୍ଜବଂଶର ଇଷ୍ଟଦେବୀ ଥିଲେ ଦୁର୍ଗାଦେବୀ । ଉ: ଦୀ: ୨୭ଶ ଖଣ୍ଡ, ୧୯୨୯ ରେ ଲେଖକ ସ୍ୱ: ପ: ଗୁମୁସର ଭଞ୍ଜବଂଶର ପ୍ରତ୍ନେଶ୍ୱରୀ ସୁଦ୍ଧା ଇଷ୍ଟଦେବୀ ବୋଲି କହନ୍ତି । ଦୁର୍ଗାଦେବୀ, ବାଗ୍‌ଦେବୀ ନାମ ଏ ଅଞ୍ଚଳରେ ଖ୍ୟାତ । ବିପଦ ସମୟରେ ଦୁର୍ଗାଦେବୀ ଭଞ୍ଜ ରାଜାମାନଙ୍କର ସହାୟ ହେଉଥିବା ବହୁ ଦୃଷ୍ଟାନ୍ତରୁ ଜଣାଯାଏ । ତାହା ଚମତ୍କାରପ୍ରଦ ହେଲେ ମଧ୍ୟ ଏଠାରେ ଅନାବଶ୍ୟକ ।

---

※ ବିଭିନ୍ନ ତିନି ପ୍ରକାର ପ୍ରାଚୀନ ତାଳପତ୍ର ଭଞ୍ଜବଂଶାବଳୀ ପୋଥି ଦେଖିବାକୁ ମିଳେ । ଗୋଟିଏ ୧୪ ଅକ୍ଷର, ୨ୟଟି ବିଭିନ୍ନ ରାଗରାଗିଣୀ ବିଶିଷ୍ଟ ସୂର୍ଯ୍ୟମଣି ଗ୍ରନ୍ଥଙ୍କ (ଅ: ଗ୍ର: ପ୍ରଣେତା) ରଚନା । ୩ୟଟି ସଂସ୍କୃତ ଲେଖା, ଲିପି ଓଡ଼ିଆ । ସେଥିରୁ ଆବଶ୍ୟକୀୟ ବିଷୟ ସଂଗୃହୀତ ।

†"Goomsur itself in which the Raja had a house is of no strength. It is surrounded by a mud wall and a bamboo hedge and wet ditch."—Russell, Vol. 2, P-2.



## ସୀମା ଓ ବସ୍ତୃତ

### ଉପେନ୍ଦ୍ରଙ୍କ ସମୟରେ ଗୁମୁସର

ଉପେନ୍ଦ୍ର ଭଞ୍ଜ ୧୭୦୩ ଖ୍ରୀଷ୍ଟାବ୍ଦରେ, ପିତା ନୀଳକଣ୍ଠ ଭଞ୍ଜଙ୍କ ରାଜ୍ୟତ୍ୟାଗ ସମୟରେ ଗୁମୁସର ଛାଡ଼ିଥିବା ପୂର୍ବୋକ୍ତ ଘଟନାବଳୀରୁ ଜଣାଯାଏ । ତାହା ପରେ ସେ ଦୀର୍ଘ ସମୟ ଜୀବିତ ଥିଲେ । ଇତମଧ୍ୟରେ ସେ ବାରମ୍ବାର ଘନଭଞ୍ଜଙ୍କ ଆଗ୍ରହାତିଶଯ୍ୟ ବଶତଃ ଗୁମୁସରକୁ ଆଗମନ କରୁଥିବାର କଥିତ ଅଛି । ଏହାଙ୍କ ଜୀବଦଶାରେ ଭଞ୍ଜଭୂମି ଗୁମୁସରର ସୀମା, ବିସ୍ତୃତି, କୃଷି ବାଣିଜ୍ୟ, ଖାଦ୍ୟ ଜାତି, ହାଟ ବଜାର, ସାମରିକ ବିଭାଗ, ରାଜସ୍ୱ, ଶିଳ୍ପ ସ୍ଥାପତ୍ୟ, ରାଜମାର୍ଗ, ଦେବଦେବୀ ପୀଠ, ସ୍ଥାପତ୍ୟ ସମୃଦ୍ଧି, ଐତିହାସିକ ଦୁର୍ଗ ଓ ପର୍ବତ ଦୃଶ୍ୟାଦିର କେବଳ ଆଭାସ ଦେବା ସମୀଚୀନ ମନେ କରୁଁ । ଏହି ପରିଚ୍ଛେଦରେ ସୀମା ଓ ବିସ୍ତୃତି ସଙ୍ଗେ ସଙ୍ଗେ ସାମରିକ ବନ୍ଦୋବସ୍ତ, ଜମିର ପରିମାଣ ଓ ଉର୍ବରତା ଏବଂ ପ୍ରଧାନ ନଦୀଗୁଡ଼ିକର ସଂକ୍ଷିପ୍ତ ବିବରଣୀ ପ୍ରଦତ୍ତ ହେବ ।

ଏହାଙ୍କ ପିତାମହ ପ୍ରତାପ ଧନଞ୍ଜୟଙ୍କ ଦୀର୍ଘ ରାଜତ୍ୱ ସମୟରେ ଗୁମୁସରର ସୀମା ଓ ବିସ୍ତୃତି ଏବଂ ଏହାଙ୍କ ପ୍ରଧାନ ବାସଭବନ କୁଲାଡ଼ ଗଡ଼ ଯେଉଁପରି ଦୃଢ଼ ଭାବରେ ନିର୍ମିତ ହୋଇଥିଲା, ତାହା ରାଜ୍ୟର ଶେଷ ରାଜା ଧନଞ୍ଜୟ ଭଞ୍ଜଙ୍କ ପର୍ଯ୍ୟନ୍ତ ଅପରିବର୍ତ୍ତିତ ରହିଥିଲା । ଶେଷ ରାଜା ଧନଞ୍ଜୟଙ୍କ ସମୟରେ ୧୮୫୦ ଖ୍ରୀଷ୍ଟାବ୍ଦରେ ସୋରଡ଼ା, ରଗଡ଼ା କେବଳ ଗୁମୁସରରେ ଯୋଗ କରାଯାଇଥିଲା । ଘନ ଭଞ୍ଜଙ୍କ ପରେ କୃଷ୍ଣ ଭଞ୍ଜ, ତ୍ରିବିକ୍ରମ ଭଞ୍ଜ, ଲକ୍ଷ୍ମଣ ଭଞ୍ଜ, ଶ୍ରୀକର ଭଞ୍ଜ ଏବଂ ଶେଷ ରାଜା ଧନଞ୍ଜୟ ଭଞ୍ଜ ଶାସନଭାର ଗ୍ରହଣ କରିଥିଲେ ମଧ୍ୟ ସେମାନଙ୍କ ପକ୍ଷରେ ନିଜ ରକ୍ଷଣ ଅସମ୍ଭବ ହୋଇଥିବାରୁ, ସେମାନେ ରାଜ୍ୟର କୌଣସି ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ କରି ନାହାନ୍ତି । ୧୮୦୦ ଖ୍ରୀଷ୍ଟାବ୍ଦ ଠାରୁ ୧୮୪୫ ପର୍ଯ୍ୟନ୍ତ ଇଷ୍ଟଇଣ୍ଡିଆ କମ୍ପାନୀ କର୍ମଚାରୀଙ୍କ ମଧ୍ୟରୁ ମାରଲେ, ବ୍ରୋନ୍, ରସଲ୍, କ୍ୟାମ୍ପବେଲ ପ୍ରଭୃତିଙ୍କ କେନ୍ଦ୍ର ସରକାରଙ୍କ ଅରକୁ ଅର ପ୍ରେରିତ ଗୁମୁସର ସଂକ୍ରାନ୍ତ ତଥ୍ୟରୁ ଗୁମୁସରର ଯେଉଁ ସୀମା ଓ ବିସ୍ତୃତି ଜଣାଯାଏ, ତାହା ଏହାଙ୍କ ସମୟର ସୀମା ଓ ଆୟତନ ହୋଇଥିବା ବିଶେଷ ଭାବରେ ସମ୍ଭବ ବୋଲି ଏଠାରେ ତାହା ଅବିକଳ ପ୍ରଦତ୍ତ ହେଲା ।

ସୀମା –"The Zomindari is bounded to the North by Duspollah in Cuttack.

To the E and N. E. by Nayaghur in ditto. To the N. W. by Boad under the political Agent at Chota Nagpure.

To the W by the country of the Khonds and the territory of Coroda & Ranaba.

To the S by Dharacota and Aska.

To the S. E by the Hontghur Zamindary. And to the S. W. by Sooradah."*

---

* M. R. Vol. ii, p-61

Digitized by srujanika@gmail.com

ଗୁମୁସରର ଉତ୍ତରରେ ଦଶପଲ୍ଲା, ପୂର୍ବରେ ଓ ଉତ୍ତର ପୂର୍ବରେ ନୟାଗଡ଼; ଉତ୍ତର ପଶ୍ଚିମରେ ( ଛୋଟନାଗପୁର ପଲ୍‌ଟିକାଲ ଏଜେଣ୍ଟ ଅଧୀନସ୍ଥ ) ବୌଦ; ପଶ୍ଚିମରେ କରଡ଼ା ଓ ରଣବା ରାଜ୍ୟ ଏବଂ କନ୍ଧ ପ୍ରଦେଶ; ଦକ୍ଷିଣରେ ଧରାକୋଟ ଓ ଆସ୍କା; ଦକ୍ଷିଣପୂର୍ବରେ ଆଠଗଡ଼ ଏବଂ ଦକ୍ଷିଣ ପଶ୍ଚିମରେ ସୋରଡ଼ା । ଗୁମୁସର ପୂର୍ବ ପଶ୍ଚିମ ଏବଂ ଉତ୍ତର ଦକ୍ଷିଣ ଯଥାକ୍ରମେ ୭୦ ମାଇଲ ଓ ୪୮ ମାଇଲ ପର୍ଯ୍ୟନ୍ତ ବ୍ୟାପି ରହିଅଛି । ଚକାପାଦୁ ଓ ପସରା ନାମରେ ଦୁଇଟି ପରାଧୀନ ରାଜ୍ୟ ଗୁମୁସରର ଅନ୍ତର୍ଗତ । ଉଦୟଗିରି, ହଜଗଡ଼, ଡେନ୍ଦୁଲଗଡ଼, ବଡ଼ଦେଶ, ଲିଙ୍ଗାଗଡ଼, ପଞ୍ଚଲିଙ୍ଗ, ଦରପଙ୍ଗିଆ, କମନବନ୍ଧ, ସିରକି, ଦୋହୋ, ଗୁଳଆବନ୍ଧ, ଜାଟିଙ୍ଗିଆ, ଟିଙ୍ଗଣା, ରାଇକଆ, ଗୁଟିଙ୍ଗିଆ, କୁରୁମୁଙ୍ଗିଆ, ବୁଲୁଙ୍ଗିଆ, ଗୁଜ୍ରକୁଙ୍ଗିଆ ପ୍ରଭୃତି ଚବିଶ ମୁଠା ଗୁମୁହର ରାଜାଙ୍କ ଅଧୀନରେ ଥିଲା । ପ୍ରତ୍ୟେକ ମୁଠାରେ ପାଞ୍ଚ ଠାରୁ ଚବିଶ ଯାଏ ଗାଁ ଥାଏ । ମୁଠା ମାଲିକମାନେ ଗୁମୁସର ରାଜାଙ୍କ ଅଧୀନତା ସ୍ୱୀକାର କରିଥିଲେ ମଧ୍ୟ ଖଜଣା ବୋଲି କିଛି ଦେଉ ନ ଥିଲେ ।

† ପାଇକପଡ଼ା, କୁଳାଡ, ବଡ଼କୋଦଣ୍ଡା—ଏହି ତ୍ରିଭୁଜ ଭିତରେ ଥିବା ୫୦୦ ବର୍ଗ ମାଇଲ ଭୂମି ଅତ୍ୟନ୍ତ ଉର୍ବର । ଏହାଛଡ଼ା ଇତର ଜମି ଗୁମୁସର ପାଇକ ଏବଂ ସୈନିକବର୍ଗଙ୍କ ଇନାମ ଜମି । ଇନାମ ଜମିରୁ ସାମାନ୍ୟ ଖଜଣା ଆଦାୟ କରାଯାଉଥିଲା । ପୂର୍ବ ଗଡ଼ଜଳ, ଉତ୍ତର ଗଡ଼ଜଳ, ଜୋକଲବା ମୁଠା, ପାଞ୍ଚଗଡ଼, ଜାକସାବାଡ଼ି, ବଣକୋଟ, ଶାଲଗିର ସମୁଦାୟ ଜମି ପାଇକ, ସୈନିକ ଇନାମରେ ନିରୂପିତ ଥିଲା । ଭଞ୍ଜରାଜାମାନେ ସାମରିକ ବିଭାଗପ୍ରତି ପୂର୍ଣ୍ଣ ଦୃଷ୍ଟି ଦେଉଥିଲେ, ପ୍ରଚୁର ଅର୍ଥ ବ୍ୟୟ କରୁଥିଲେ ।

ଅନାୟାସରେ, ସ୍ୱଳ୍ପ ବ୍ୟୟରେ ଏହି ଜମିଦାରୀରେ ଯେପରି ନିଶ୍ଚିତରୂପେ କ୍ଷେତରେ ଜଳ ମାଡ଼େ, ଏହି ପ୍ରେସିଡ଼େନ୍‌ସିରେ ଅନ୍ୟତ୍ର ସେହିପରି ଦେଖାଯାଏ ନାହିଁ । ଏହି ସ୍ଥାନର ପ୍ରଧାନ ଉତ୍ପନ୍ନ ଜିନିଷ—ଧାନ ଓ ଆଖୁ । କୌଣସି କୃତ୍ରିମ ଉପାୟର, ବନ୍ଧ ଆଗୁଳର ଅପେକ୍ଷା ନ ରଖି ଶସ୍ୟ କ୍ଷେତ୍ରରେ ପ୍ରଚୁର ବର୍ଷା ଜଳ ଆପେ ଆପେ ମାଡ଼ି ଯାଇଥାଏ । ଏ ସ୍ଥାନର ପ୍ରଧାନ ନଦୀ—ବଡ଼ନଦୀ, ବାଘୁଆ, ବେଡ଼ା ଏବଂ ଲୋହରାଖଣ୍ଡି ।

---

† "There is no part of the territories under this presidency where the means of irrigation are so certain and attained at so little cost of money or labour as in this Zamindary. The chief articles of produce are paddy and sugarcane. The monsoon rains afford sufficient water without the aid of artificial reservoirs, and the natural state of the country renders it easy to conduct it to the required spot. The principal rivers are the Mahanuddy ( Bcdonadi ), and Bagoova " D. G., Vol. ii, P. 2.

Digitized by srujanika@gmail.com

## ରାଜସ୍ୱ

ରାଜ୍ୟର ଐଶ୍ୱର୍ଯ୍ୟ ଓ ଉନ୍ନତ ସବଦା ରାଜସ୍ୱ ଉପରେ ନିର୍ଭର କରେ । ଭାରତର ପ୍ରାଚୀନ ରାଜା, ମହାରାଜା ଏବଂ କୋଟିପତିମାନେ ରାଜସ୍ୱ ତଥା ଆଦାୟର ଅଧିକାଂଶ ଭାଗ ମଠ, ମନ୍ଦିର, ପୁଷ୍କରଣୀ, ଧର୍ମଶାଳା, ଅନ୍ନଛତ୍ର ଇତ୍ୟାଦି ଧର୍ମାନୁଷ୍ଠାନମାନଙ୍କରେ ବ୍ୟୟ କରୁଥିଲେ; ଆଧୁନିକ ଯୁଗରେ ବିଭିନ୍ନ ଦେଶର ରାଜସ୍ୱର ଅଧିକାଂଶ ଭାଗ ବ୍ୟୟିତ ହୁଏ—ଅଫିସ ଗୃହ, ବଙ୍ଗଳା, ନିବାସ ଗୃହ, ରେଲଷ୍ଟେସନ, ବାବୁଦ କାରଖାନା ଇତ୍ୟାଦିରେ । ଭଞ୍ଜରାଜାମାନଙ୍କ ମଧ୍ୟରୁ ଅଧିକାଂଶ, ରାଜସ୍ୱର ବହିଷ୍ଟାଂଶ ଅହରହ ଧର୍ମକୀର୍ତ୍ତିରେ ବ୍ୟୟ କରିଥିବାର ପ୍ରମାଣ ମିଳେ । ପ୍ରଧାନ କୀର୍ତ୍ତି ମଧ୍ୟରେ ବର୍ତ୍ତମାନ ଯୁଦ୍ଧା ଦେଖାଯାଉଥିବା କୀର୍ତ୍ତି—ନେଢେଙ୍ଗାମନ୍ଦିର, ପୁରୁଣା ଗୁମୁସରକଡ଼, ବାସୁଦେବ ମନ୍ଦିର, କୁଳଡ଼ ନାରାୟଣ ମନ୍ଦିର, ଜଗନ୍ନାଥ ମନ୍ଦିର, ବୁଗୁଡ଼ା ଜମ୍ବାପଣ୍ଡା ମନ୍ଦିର, ବେଲମୁଠା ନୃସିଂହ ମନ୍ଦିର, କୃଷ୍ଣସାଗର ପ୍ରଭୃତି । ଏତଦ୍‌ବ୍ୟତୀତ ଅନେକ ଶାସନ ବିଭିନ୍ନ ରାଜାମାନଙ୍କ ନାମରେ ସ୍ଥାପିତ ହୋଇଅଛି । ଚଉଦ ଅକ୍ଷର ଭଞ୍ଜ ବଂଶାବଳୀରେ ଶ୍ରୀକର ଭଞ୍ଜଙ୍କ ଧର୍ମକୀର୍ତ୍ତି ସମ୍ପର୍କରେ ବହୁତ ବିଷୟ ପଦ୍ୟାକାର ଭାବରେ ଲେଖାଯାଇଛି ।

ଶ୍ରୀକରପୁର ନାମେ ଗୋଟିଏ ଶାସନ
ବସାଇଲେ ଗଡ଼ ପାଖରେ ରାଜନ ।
ବିଷ୍ଣୁଚକ୍ରଠାରେ ପ୍ରାସାଦ ଉଚ୍ଚ କଲେ
ତହିଁରେ ଶ୍ରୀ ନାରାୟଣ ମୂର୍ତ୍ତି ବସାଇଲେ ।
ବାଲପଦରରେ ଏକ ମନ୍ଦିର ସଜାଡ଼ିଲେ
ତହିଁରେ ଶ୍ରୀ ଜଗନ୍ନାଥଙ୍କୁ ବସାଇଲେ ।
ନିଜ ବୁଗୁଡ଼ାରେ ପାଷାଣ ପ୍ରାସାଦ
ଗୋଟିଏ କରାଇଲେ ନୃପ ବହୁ ମୋଦ ।
ତହିଁରେ ବଳଭଦ୍ର ସୁଭଦ୍ରା ଜଗନ୍ନାଥ
ବସାଇଲେ ଶ୍ରୀକର ଭଞ୍ଜ ନରନାଥ ।
ପୂର୍ବଦ୍ୱାରେ ଏକ ମନ୍ଦିର ଉଦ୍ଧାର
ବିରଚିତ କରାଇଥିଲେ ନରବର ।
ସେ ମଣ୍ଡପରେ ତମ୍ବା ଛାଉଣି କରାଇଲେ
ପେଣ୍ଡା ପେଣ୍ଡା ମୁକୁତା ତହିଁରେ ଲମ୍ବାଇଲେ ।
ତମ୍ବାଛୁଆଁ ମଣ୍ଡପ ଦକ୍ଷିଣ ବଖରାରେ
ରାମ ଲକ୍ଷ୍ମଣ ସୀତା ବସାଇଲେ ଖରେ ।
ଜଗନ୍ନାଥ ପ୍ରସାଦ ବର୍ତ୍ତିରେ ରଘୁନାଥ
ସୀତାଲକ୍ଷ୍ମଣଙ୍କ ହୋଇଣ ସହିତ ।
କରଚୁଲିରେ ତଡ଼ାଗ ଗୋଟିଏ କଲେ
ପଥିକ ଜନମାନେ ତା ଜଳ ପାନ କଲେ ।
କୁଳଡ଼ରେ ରତନେଶ୍ୱରଙ୍କ ମନ୍ଦିର
ଉଦ୍ଧାର କରାଇଲେ ଭଞ୍ଜ ବୀରବର ।
ଆଉ ଅନେକଠାରେ ତଡ଼ାଗ ବାନ୍ଧି କଲେ
ଜୀର୍ଣ୍ଣ ହେବା ପ୍ରାସାଦ ମନ୍ଦିର ସଜାଡ଼ିଲେ ।

ଇତ୍ୟାଦି । ୧୪ ଅକ୍ଷର ତାଳପତ୍ର ଭଞ୍ଜବଂଶାବଳୀ ।

Digitized by srujanika@gmail.com

କୃଷ୍ଣ ଭଞ୍ଜ ଓ ଶ୍ରୀକର ଭଞ୍ଜ ଉଲ୍ଲେଖଯୋଗ୍ୟ ଅନେକ ଦେବାଳୟ ଏବଂ ସାଗର ପ୍ରତିଷ୍ଠା କରିଥିବା ଜଣାଯାଏ, ଉପେନ୍ଦ୍ରଙ୍କ ପିତାମହ ସେହିପରି ଅନେକ ଶାସନ ସ୍ଥାପନ, ମଠ, ମନ୍ଦିର, ସରୋବର କରିଥିବା ତାଳପତ୍ର ବଂଶାବଳୀଗୁଡ଼ିକରୁ ଜଣା ଯାଉଥିଲେ ମଧ୍ୟ ବର୍ତ୍ତମାନ ଥିବା କୀର୍ତ୍ତିଗୁଡ଼ିକ କେଉଁଟି ତାଙ୍କଦ୍ୱାରା ନିର୍ମିତ ସଠିକ ଭାବରେ ନିରୂପଣ କରି ହେଉ ନାହିଁ । 'ଜୀର୍ଣ୍ଣ ହେବା ପ୍ରାସାଦ ମନ୍ଦିର' ଜଗନ୍ନାଥ ପ୍ରାସାଦ, ଜୀର୍ଣ୍ଣ ଦଧିବାମନ ମନ୍ଦିର ଶ୍ରୀକର ଭଞ୍ଜଙ୍କ ଦ୍ୱାରା ପୁନଃ ନିର୍ମାଣ କରାଯାଇଥିଲେ ମଧ୍ୟ, ପ୍ରଥମେ ସେଗୁଡ଼ିକ ପ୍ରତାପ ଧନଞ୍ଜୟଙ୍କଦ୍ୱାରା ନିର୍ମିତ ହୋଇଥିବା ଅନୁମିତ ହୁଏ । ପ୍ରତାପ ଧନଞ୍ଜୟପୁର ନାମକ ଶାସନଟି ମାତ୍ର ରହିଛି । ଯାହାହେଉ, ରାଜସ୍ୱର ଅଧିକାଂଶ ସେମାନେ ଯେ ସେହିପରି ସାତ୍ତ୍ୱିକ ଅନୁଷ୍ଠାନମାନଙ୍କରେ ବ୍ୟୟ କରୁଥିଲେ, ଏଥିରେ ସନ୍ଦେହ ନାହିଁ ।

ଉପେନ୍ଦ୍ରଙ୍କ ସମୟରେ ଘୁମୁସରର ରାଜସ୍ୱର ପରିମାଣ କେତେଥିଲା, ତାହା ବର୍ତ୍ତମାନ ବର୍ଣ୍ଣିତ । ଇଷ୍ଟଇଣ୍ଡିଆ କମ୍ପାନୀ କର୍ମଚାରୀ ରସଲ କହନ୍ତି, † The circuit committee estimated the gross revenue exclusive of alienations at Rs. 1,66,140. The public tribute derived from it prior to 1783 was never more, generally less than Rs. 50000. The reigning Rajah at that period was Vicrama Bhanja." ଭେଟି ରୁସୁମ ବାଦ୍‌ଯାଇ ଘୁମୁସରର ମୋଟ ରାଜସ୍ୱ ରାଜା ବିକ୍ରମ ଭଞ୍ଜଙ୍କ ସମୟରେ ଟ ୧,୬୬,୧୪୦ ଥିଲା । ଭେଟି ସ୍ୱରୂପ ଟ ୫୦,୦୦୦ ମଧ୍ୟ ରାଜକୋଷକୁ ଆସୁଥିଲା । ୧୭୮୩ ପୂର୍ବରୁ ରାଜକୋଷକୁ ଏହା ଅପେକ୍ଷା ଅଧିକ ଧନ କେବେ ଆସିନାହିଁ ।

ଉପେନ୍ଦ୍ର ଭଞ୍ଜ ଘନ ଭଞ୍ଜଙ୍କର ଯେ ସମସାମୟିକ ବ୍ୟକ୍ତି, ତାହା କୁହାଯାଇଛି । ଘନ ଭଞ୍ଜଙ୍କ ପରେ କୃଷ୍ଣ ଭଞ୍ଜ ସିଂହାସନ ଆରୋହଣ କରି ୧୭୫୪ ଠାରୁ ୧୭୭୦ ଖ୍ରୀଷ୍ଟାବ୍ଦ ଯାଏ ରାଜତ୍ୱ କରିଥିଲେ । କୃଷ୍ଣ-ଭଞ୍ଜଙ୍କ କନିଷ୍ଠ ପୁତ୍ର ବିକ୍ରମ ଭଞ୍ଜ ତାପରେ ସିଂହାସନ ପାଇଥିବା ଜଣାଯାଏ । ସେ କେବଳ ୯ ବର୍ଷ ରାଜତ୍ୱ କରିଛନ୍ତି, ଇଷ୍ଟଇଣ୍ଡିଆ କମ୍ପାନୀର ଖଜଣା ଯଥା ସମୟରେ ଦେଇ ନ ପାରିବାରୁ, ତାଙ୍କୁ ଗାଦିଚ୍ୟୁତ କରାଗଲା । ଲକ୍ଷ୍ମଣ ଭଞ୍ଜ ବିକ୍ରମଙ୍କ ଜ୍ୟେଷ୍ଠ ସହୋଦର ଥିଲେ ମଧ୍ୟ, ସେ ପ୍ରଜାଙ୍କ ଦୃଷ୍ଟିରେ ଅପାରଗ ବିବେଚିତ ହୋଇ ଥିବାରୁ ରାଜସିଂହାସନ ଲାଭରୁ ବଞ୍ଚିତ ଥିଲେ । ବର୍ତ୍ତମାନ କମ୍ପାନୀ ସର୍କାର ଏବଂ ଲକ୍ଷ୍ମଣ ଭଞ୍ଜ—ଉଭୟଙ୍କର ସୁବିଧା ହେଲା । ଏହି ସୁଯୋଗରେ କମ୍ପାନୀ ସର୍କାର ଘୁମୁସର ଜମିର ଖଜଣା ଏକ ଲକ୍ଷକୁ ବୃଦ୍ଧି କଲେ । ଲକ୍ଷ୍ମଣ ଭଞ୍ଜ ବୃଦ୍ଧି ହାରରେ ଖଜଣା ଦେବା ପାଇଁ ସରତ କରି, ପୂର୍ବ ବାକୀ ଦେୟ ସଙ୍ଗେ ସଙ୍ଗେ ଦାଖଲ କରି ଗାଦି ପାଇଲେ ।*

---

† Russell's Report, Para 10, P. 3.

* Vicrama Bhanj having failed to perform his engagements to the Government, the Zamindary was taken from him made over to his elder brother Lutchan Bhanj who besides undertaking to liquidate the arrear then due agreed to raise the peisheush to a lack of Rupees.

—Russell.—

Digitized by srujanika@gmail.com

ଏଥିରୁ ସ୍ପଷ୍ଟ ହୁଏ ଯେ, ଶ୍ରୀ ବିକ୍ରମ ଭଞ୍ଜଙ୍କ ସମୟରେ ରାଜସ୍ୱ ଯାହା ଥିଲା, ଉପେନ୍ଦ୍ର ଭଞ୍ଜଙ୍କ ସମୟରେ ଗୁମୁସରର ରାଜସ୍ୱ ପ୍ରାୟଶଃ ତାହାର୍ଦ୍ଧ ଥିଲା । ସେହି ସମୟର ପଦାର୍ଥମାନଙ୍କ ମୂଲ୍ୟ ଦୃଷ୍ଟିରୁ ଗୁମୁସରର କେବଳ ରାଜସ୍ୱ ଟ ୧୬୭୧୩୦ ହୋଇ ପାରୁଥିବା କମ୍ କଥା ନୁହେଁ । ଯେ କୌଣସି ରାଜ୍ୟର ବିଭବ ଅଭିବୃଦ୍ଧିରେ ତାହା ଯଥାଯଥ ସହାୟକ ହୋଇ ପାରିବ ।



Digitized by srujanika@gmail.com

*

# ବାଣିଜ୍ୟ

୧୮୪୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଗୁମୁସରରେ କୌଣସି ପ୍ରକାର ପକ୍କା ରୋଡ଼ ନ ଥିଲା । ଗାଁରୁ ଗାଁ ଯିବାପାଇଁ କେବଳ କଚ୍ଚାରାସ୍ତା ଓ ଦଣ୍ଡା ଥାଏ । ସେଥିରୁ କେତୋଟି ମରାମତ କରାଗଲା । ନୂଆ ଗାଁ ଠାରୁ କୁରୁମୁଙ୍ଗିଆ ଓ ସାରଙ୍ଗଗଡ଼ ପର୍ଯ୍ୟନ୍ତ ଗୋଟାଏ ପକ୍କା ସଡ଼କ ଟାଣିବା ପାଇଁ ୧୮୪୮ ଖ୍ରୀଷ୍ଟାବ୍ଦରେ ମେଜର କର୍ଣ୍ଣେଲ କ୍ୟାମ୍ପବେଲ ଉଦ୍ୟମ କରିଥିଲେ । ଶିଳ୍ପ, ସଭ୍ୟତା ଓ ବାଣିଜ୍ୟର ପ୍ରସାର ପାଇଁ ପକ୍କା ସଡ଼କର ଆବଶ୍ୟକତା ବେଶି । ସେତେବେଳେ ଗମନାଗମନ ମାର୍ଗ ଦୁର୍ଗମ ଥିଲେ ମଧ୍ୟ ପ୍ରତିବର୍ଷ ଅସଂଖ୍ୟ ବଣିଜାରି, ବେଳେ ବେଳେ ୧୩୦୦ ପର୍ଯ୍ୟନ୍ତ ବଳଦପୃଷ୍ଠରେ ଜିନିଷ ଲଦନ କରି ନାଗପୁରରୁ ଗୁମୁସର ଆସୁଥିଲେ । † କ୍ୟାମ୍ପବେଲଙ୍କ ରିପୋର୍ଟରୁ ଜଣାଯାଏ, ପ୍ରତାପ ଧନଞ୍ଜୟ ଭଞ୍ଜ, ଉପେନ୍ଦ୍ର ଭଞ୍ଜଙ୍କ ସମୟଠାରୁ କେବଳ ନୁହେଁ, ଅନ୍ତର ବହୁ ପ୍ରାଚୀନକାଳରୁ, ପ୍ରଥମେ ପ୍ରଥମେ ସେମାନେ ବୌଦ୍ଧ, ଚକାପାଦ ମାର୍ଗରେ ଆସୁଥିଲେ । * କ୍ରମଶଃ ସେମାନେ ସେହି ମାର୍ଗ ଏକାବେଳକେ ଛାଡ଼ିଦେଇ ସମ୍ବଲପୁରଠାରୁ ମହାନଦୀ କୂଳେ କୂଳେ ସିଧା ପୁରୁଣା ଗୁମୁସର ଗଡ଼କୁ ଆସି, ସେଠାରୁ କାଟିଙ୍ଗିଆ, କୁରୁମୁଙ୍ଗିଆ ଦେଇ ରସଲକୋଣ୍ଡା ଓ ବ୍ରହ୍ମପୁର ସୈନ୍ୟଶିବିରମାନଙ୍କୁ ଯାଉଥିଲେ । ଦୁଇ ହଜାରରୁ ଅଧିକ 'ଖାଉଡ଼ିଆ' ଧାଡ଼ି ବେଳେ ବେଳେ ଲାଗିବାରେ ପଥରୁଦ୍ଧ ହୋଇପଡ଼େ । ସେମାନଙ୍କ ପଣ୍ୟ ଦ୍ରବ୍ୟ ଭିତରେ ପ୍ରଧାନ ଜିନିଷ ଥାଏ ଗହମ । ମଠ, ମନ୍ଦିର-ମାନଙ୍କରେ ସେମାନେ ଅଧିକାଂଶ ଗହମ ବିକ୍ରି କରୁଥିଲେ । ଗୁମୁସରର ନିମ୍ନଲିଖିତ ସ୍ଥାନମାନଙ୍କରେ ସେମାନଙ୍କୁ କିଛି କିଛି କର ଦେବାକୁ ପଡ଼ୁଥିଲା । ମୁଜାଗଡ଼, ଦରସିଙ୍ଗିଆ, କୁରୁମୁଙ୍ଗିଆ, କାଳିଙ୍ଗିଆ, ପୁରୁଣା ଗଡ଼, ଗଲାଇନଜର, ଗଞ୍ଜାଗୁଡ଼ାରେ ଅଣାଏ ଲେଖାଏଁ, କାଟିଙ୍ଗିଆ, କୁର୍ମଖାଇ, କମ୍ପାରି, ସରମଣ୍ଡା, କଞ୍ଚଘାଟି, ପଚରା, ଋଷିବନ୍ଧ, କଳଆପିଲ, ବଂଶୀଗଡ଼, ବନ୍ଧକା ଓ ଧୋମାରେ ସେମାନେ ଚାରିଅଣା ହିସାବରେ ଦେଉଥିଲେ । ଗୋଟିଏ ଗୋଟିଏ ବଳଦ ପିଠି ବୋଧହୁଏ, ସେମାନଙ୍କୁ ଉପରୋକ୍ତ ପ୍ରକାରେ କର ଦେବାକୁ ପଡ଼ୁଥିଲା ।

---

† ଏହି ପରିଚ୍ଛେଦର ବୃତ୍ତାନ୍ତ ମ୍ୟାକଫରସନ, କ୍ୟାମ୍ପବେଲଙ୍କ ରିପୋର୍ଟରୁ ସଂଗୃହୀତ । M. A. P. 16, 28. P. 34; part 2, P. 48, P. 58.

* For the last two years many have forsaken their old track by road and Chokapad and have come from Sambalpore on the Mahanadi direct to Purnagada, from these to Katingia; Kurumungia and down the pass etc" the road being accupiad by up wards of 2000 of their bullocks laden with wheat, which is sold in this cantonments of Russelkunda and Berhampur and to the several Hindu temples and byraghy muttas in the district.

—J. Campbell.

Digitized by srujanika@gmail.com

ପ୍ରାଚୀନ ଗୁମୁସରର ହାଟବଜାର ସମ୍ପର୍କରେ କପ୍ତାନ ଯେ, କ୍ୟାମ୍ପବେଲ୍ କହନ୍ତି *—କୁଲଡ଼ା, ବେଲମୁଠା, କୋଦଣ୍ଡା, ନୂଆଗାଁରେ ପ୍ରତ୍ୟହ ବଜାର ବସେ । କୁଲଡ଼ାରେ ପ୍ରତ୍ୟହ ୩୦୦ ପର୍ଯ୍ୟନ୍ତ, ବେଲମୁଠାରେ ୨୫୦ ପର୍ଯ୍ୟନ୍ତ ଲୋକ ଜିନିଷ କିଣିବା ପାଇଁ ଜମା ହୁଅନ୍ତି । ଉପରୋକ୍ତ ହାଟ ବା ବଜାରରେ ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ଲୋକେ ଯାଇ ହାଟ କରି ଫେରନ୍ତି । ତା ଛଡ଼ା ମାଲ ପାର୍ବତ୍ୟ ଅଞ୍ଚଳରୁ ଉପରୋକ୍ତ ସଂଖ୍ୟାରେ କନ୍ଧ, ପାଣ, ଗୁନ୍ଦା ପ୍ରଭୃତି ଆସି ଜିନିଷ କିଣିବିକି କରନ୍ତି । ହାଟବଜାରମାନଙ୍କରେ ବିକି ପାଇଁ ଜମା ହେଉଥିବା ଜିନିଷ ମଧ୍ୟରୁ ହଳଦୀ, ଅଦା, ସୋରିଷ, ଝୋଲ, ବଡ଼କାନ୍ଦୁଲ, ବରଗୁଡି, ମହୁଣ, ମହୁ, କାଠକାନ୍ଦୁଲ କାଙ୍ଗୁ, କଣ୍ଢା, କାଲ, ବାଇଲ, ସୁଆଁଇଲ, ଅଳୁ, କନ୍ଦମୂଳ, ପିତଳ ହାଣ୍ଡି, ହରଣେ, ପାଳୁ, ପୋଡ଼ାଶିଙ୍ଗ ଓ ଟାଙ୍ଗି ପ୍ରଧାନ । ପିତଳ ହାଣ୍ଡି ବ୍ୟତୀତ ସେ ସମସ୍ତ ଗୁମୁସରର ଉତ୍ପନ୍ନ ଜିନିଷ । ସେଥିରୁ ଅଧିକାଂଶ ମାଲ ଅଞ୍ଚଳର ଲୋକେ ଉତ୍ପନ୍ନକରି ନଗଦ ପଇସାରେ ବିକ୍ରୀ କରନ୍ତି । ବଦଳ ଦେଇ ନେବା ଜିନିଷ ମଧ୍ୟରେ ପିତଳ ହାଣ୍ଡି, କଂସାଗିନା, ଗୁଣା, ଫାସିଆ, କାନଗୁଣା, ନୋଳି, ଲୁଣିମାଛ, ଲୁଣ, ଧୂଆଁ, ମୋଟାଲୁଗା, ରଙ୍ଗ ଛିଟକନା, କାଚମାଳି, ମୁଦ୍ରା, ପୋଢ଼ ଉଲ୍ଲେଖଯୋଗ୍ୟ ।

କନ୍ଧମାନଙ୍କ ଅପେକ୍ଷା ପାଣମାନେ ଭଲ ବେପାର କରି ଜାଣନ୍ତି । ସେମାନଙ୍କ ଖାଣ୍ଟି ଓଡ଼ିଆ ଭାଷା ଆସେ । ସେମାନେ ସତତ କନ୍ଧଙ୍କ ପାଇଁ ମାଲ ସ୍ଥଳର ବିଭିନ୍ନ ସ୍ଥାନରେ ବିକା କିଣା ଓ ଜିନିଷ ଅଦଳ-ବଦଳ କରି ଦିଅନ୍ତି । "ବିକିଣି ସ୍ଥାନ ସ୍ଥାନକେ ବହୁ ସେ କଲେ ।" ବୈ: ବି: । ପାଣମାନେ ଏପରି ସତର୍କରେ ବେପାର କାର୍ଯ୍ୟ ଚଳାନ୍ତି ଯେ ସ୍ଥଳ ପ୍ରଦେଶ ବେପାରୀମାନେ ସେମାନଙ୍କୁ କୌଣସିମତେ ପ୍ରତାରିତ କରି ପାରନ୍ତି ନାହିଁ ; ତାହା ବୋଲି ସେମାନଙ୍କ ସ୍ଥଳ ପ୍ରଦେଶ ବେପାରୀ ଅପେକ୍ଷା ଅଧିକ ଚତୁର ବୋଲାଯାଇ ନ ପାରେ । କନ୍ଧ ଏବଂ ଅନ୍ୟାନ୍ୟ ମାଲ ଲୋକେ ଆଣିବା ପଣ୍ୟ ଜିନିଷ ଉପରେ କର ବସେନାହିଁ । ଅଧିକାର ନ ଥାଇ ଅନେକ ସମୟରେ କେତେକ ବାହାପିଆ ଲୋକ, ହାଟମାନଙ୍କରୁ ଜିନିଷ ଧରି ଆସି ଫେରିବାବେଳେ ନାନା ଧମକ ଦେଇ ସେମାନଙ୍କଠାରୁ କର ନାମରେ କିଛି କିଛି ଆଦାୟ କରିପକାନ୍ତି । ପ୍ରାଚୀନ ଗୁମୁସରର ହାଟ ବଜାରର ସଂକ୍ଷିପ୍ତ ଚିତ୍ର ଦିଆଗଲା । କନ୍ଧ କେଉଁ ପ୍ରକାର ବାୟୁମଣ୍ଡଳ ଭିତରେ କାଳାତିପାତ କରୁଥିଲେ, ତାହା ଜାଣିବା ପାଇଁ ଏପରି ଗୋଟାକେତେ ପ୍ରସଙ୍ଗର ସଂକ୍ଷିପ୍ତ ଚିତ୍ରଣ ଯଥେଷ୍ଟ ବୋଲି ଆମ୍ଭମାନଙ୍କର ଧାରଣା ।

କବି ବାଣିଜ୍ୟପ୍ରସଙ୍ଗ ନିଜର ବିଭିନ୍ନ କାବ୍ୟରେ ପ୍ରସଙ୍ଗାନୁକ୍ରମେ ବହୁ ସ୍ଥାନରେ ଉତ୍ଥାପନ କରିଛନ୍ତି । ଅନେକରୁ କେତୋଟି ଉଲ୍ଲେଖ କରିବା ବର୍ତ୍ତମାନ ପ୍ରଯୁଜ୍ୟ ମନେ କରୁଁ :—

ବଣିକର ସ୍ୱଭ କରି ବର୍ଦ୍ଧନ ।

ବସାଇ ବିଚ୍ଛେଦ ତୁଳାପାଟେ ତୁଳଦେଲା ସିନା ପ୍ରେମଧନ ରେ ବାନ୍ଧବ ।

ପ ୨୧, ପ୍ର ୫୧, ବୈ: ବି: ।

---

* ମେଡ୍ରାସ ରେକର୍ଡ଼ସ୍, P. 7, 9.

Digitized by srujanika@gmail.com

ଲବ୍ଧପ୍ରତିଷ୍ଠ କବିମାନେ ଏକଦେଶଦର୍ଶୀ ନୁହନ୍ତି । ସମସ୍ତ ଦେଶକାଳ ବିଷୟରେ ସେମାନଙ୍କ ବର୍ଣ୍ଣ୍ୟବସ୍ତୁ, ଦୃଷ୍ଟାନ୍ତ ପ୍ରୟୋଗ କରାଯିବା ସ୍ୱାଭାବିକ । ସେମାନଙ୍କ ବ୍ୟବହୃତ ଦୃଷ୍ଟାନ୍ତ ପ୍ରକୃତ ଆମ୍ଭେମାନେ ସେହି ଦୃଷ୍ଟିରେ ଗ୍ରହଣ ଏବଂ ଆଲୋଚନା କରିବା ସମୀଚୀନ । ବାଣିଜ୍ୟର ଅନ୍ୟ ଦୃଷ୍ଟାନ୍ତ—

"ଅତି ଦରିଦ୍ର ମୁଁ ବହୁତ ବଣିଜ
କରିଛୁ ଉପାୟ ବଳରେ ।
ଭଲ ମନ୍ଦ ଅଛି କି କପାଳରେ
ଦଇବ ଯେ ଗୂଢ଼ ସେ ତୋତେ ଗୋଚର," ଲ: ବ: ।

ସୁଭଦ୍ରାପରିଣୟରେ କବି କହନ୍ତି:—

"ସ୍ୱପନ ଧନରେ ବାଣିଜ୍ୟ କରିବା
କଳ୍ପବୃକ୍ଷ ଗ୍ରହିବ କାଳି ଗୋ ସଜନି !" ଛ ୯, ସୁ: ପ: ।



Digitized by srujanika@gmail.com

## ଭଞ୍ଜସାହିତ୍ୟରେ ଆଦିବାସୀ

**ବିଭିନ୍ନ ଜାତି:—**

"ଶବରପନ୍ତ କ ଭୟଙ୍କର, ଯଥା ପରେତରାଟ କଙ୍କର" ( ଲ: ବ:) ରୁ ଜଣାଯାଏ— ସେତେବେଳେ ଭଞ୍ଜଭୂମି ଗୁମୁସରର ଅଧିବାସୀମାନଙ୍କ ମଧ୍ୟରେ ଶବର ଥିଲେ । ଶବର, କନ୍ଧ, ଗଣ୍ଡ, ଗଦ୍ଦବା, ଗୁନା ପ୍ରଭୃତି ଆଦିବାସୀରେ ଗଣ୍ୟ । ସେମାନେ ସେତେବେଳେ ଗୁମୁସରର ପାର୍ବତ୍ୟ ଅଞ୍ଚଳରେ ବହୁପରିମାଣରେ ବାସ କରୁଥିଲେ; ବର୍ତ୍ତମାନ ମଧ୍ୟ ଅଛନ୍ତି । ଏମାନଙ୍କ ମଧ୍ୟରେ କନ୍ଧମାନେ ବୀର । ସେମାନଙ୍କ ବୀରତ୍ୱରେ ଦେଶର ସମ୍ମାନ ରକ୍ଷାରକ୍ଷଣ, ଇତିହାସ ଗଠନ ହୋଇ ପାରିଥିବା ଅନେକ ଘଟନାରେ ସ୍ପଷ୍ଟ ହୁଏ । * ବିପଦ ସମୟରେ ସେମାନେ ରାଜାଙ୍କ ସହାୟ ହୁଅନ୍ତି । ସେମାନେ ରାଜାଙ୍କ ବିଶ୍ୱସ୍ତ ପ୍ରଜା, ତାହାର ନିଦର୍ଶନ ସ୍ୱରୂପ ବର୍ଷକେ ଅନ୍ତତଃ ଥରେ ରାଜାଙ୍କୁ ଯେ କୌଣସି ପଦାର୍ଥ ଭେଟି ଦିଅନ୍ତି । ଦଶହରା ଉତ୍ସବ ଗୁମୁସରର ପ୍ରତ୍ୟେକ ହିନ୍ଦୁବସତିରେ ମହାସମାରୋହରେ ସମାହିତ ହୋଇଥାଏ । କନ୍ଧ ଓ ଇତର ଆଦିବାସୀବର୍ଗ ସେ ଦିନ ପ୍ରତ୍ୟେକ କେନ୍ଦ୍ରରେ ଉପସ୍ଥିତ ଥାଇ ପୂଜାପ୍ରସାଦ ପାଇଥାନ୍ତି । ରଥଯାତ୍ରା ସମୟରେ ସକଳ ଅଞ୍ଚଳର କନ୍ଧ ଓ ଆଦିବାସୀବର୍ଗ କୁଳାଡ଼ଗଡ଼ଠାରେ ସମବେତ ହୋଇ ଦର୍ଶନ କରୁଥିଲେ, ରଥ ଟାଣୁଥିଲେ । ବର୍ତ୍ତମାନ ସୁଦ୍ଧା କୁଳାଡ଼ଗଡ଼ରେ ରଥଯାତ୍ରା ଓ ଅନ୍ୟ ଭେଟଯାତ୍ରା-ମାନଙ୍କରେ ବିପୁଳ ଜନସମାଗମ ମଧ୍ୟରେ ଆଦିବାସୀ ସଂଖ୍ୟା ଅପର୍ଯ୍ୟାପ୍ତ ଦେଖାଯାଏ ।

ଭାଷା:—କନ୍ଧ ଓ ସୌରାଙ୍କ ଲିଖିତ ଭାଷା ନାହିଁ । ଭାଷାବିତ୍ କପ୍ତାନ 'ଫ୍ରାଇ' † ସେମାନଙ୍କ ପାଇଁ କଥା ସାହିତ୍ୟ ଓ ବ୍ୟାକରଣ ଲେଖି ଓଡ଼ିଆ ଲିପିରେ ସେମାନଙ୍କୁ ଶିକ୍ଷା ଦେବା ବ୍ୟବସ୍ଥା କରିଥିଲେ ।

ମୃଗୟା:—"ବ୍ୟାଘ୍ରବର ଶବର ମାରନ୍ତି ଗୁଳି ଯୋଗେ ଯେ ।" ଛ ୪୮, ବୈ: ବି: ।

ଆଦିବାସୀଙ୍କ ମୃଗୟା ପ୍ରତି ଦୃଷ୍ଟି ରଖି କବି ଏପରି କହନ୍ତି । ଯଥାର୍ଥରେ ସେମାନଙ୍କ ମୃଗୟା ଋତୁ ବୈଶାଖରୁ ଆରମ୍ଭ । ସେହି ସମୟରେ ସେମାନେ ବଣର ଲତା, ବୁଦା, ଘାସ ପୋଡ଼ି ଅରଣ୍ୟ ଜନ୍ତୁଙ୍କୁ ଖେଉଦି ନିଅନ୍ତି ।

---

* ସି: ମ୍ୟାକ୍ ଫେରସନଙ୍କ ରିପୋର୍ଟ ଏମ୍: ଏ: ୧୦ ପୃଷ୍ଠା ।

† "Both the Khond and Savara languages are un written and have no charecter. Captain Frye , who was a very good linguist took great interest in the khonds and wrote a grammar and dialogues adopting for them the Uriya charecter ..........".

Ganjam Dt. Manual p. 35

Digitized by srujanika@gmail.com

"ମନ୍ଦର ପଡ଼ ଧୂଳି ଉଡ଼ାଇ, ଗଲେ ପଶୁ ସେ ପଦ ଗୋଡ଼ାଇ, ଧମନସ୍ୱରେ କାଣ୍ଡ ଚଢ଼ାଇ ଟାଙ୍ଗି ଗୁହ୍ଣିଲ ଯେ ।" ଲ: ବ: । ତାହା ହେଉଛି ସେମାନଙ୍କ ଘୋର ଆନନ୍ଦ ଓ ଉନ୍ମାଦନାର ସମୟ । ସେମାନଙ୍କ ଖାଦ୍ୟ ଜନ୍ତୁ କୋଇଲ, କରଡ଼, କରବା, ପିଠଲ, କାଙ୍ଗୁ ସୁଆଁ ପ୍ରଭୃତି ମଧ୍ୟରେ ମାଂସ ଅତି ପ୍ରଧାନ ଥିବା ହେତୁ ମୃଗୟାରେ ସେମାନଙ୍କ ଅତିଶକ୍ତ ଶ୍ରଦ୍ଧା ଦେଖାଯିବା ସ୍ୱାଭାବିକ । ସେମାନଙ୍କ ମଧ୍ୟରେ ବିବାହ ନିର୍ଦ୍ଧାରିତ ମୃଗୟା ଋତୁ ମଧ୍ୟରେ ହୁଏ; ଗୀତ, ନୃତ୍ୟ ଚାଲିଥାଏ । ପ୍ରତ୍ୟେକ ଆଦିବାସୀବସତି, ପ୍ରଧାନତଃ କନ୍ଧବସତିର ପୃଥକ୍ ଏକ ସ୍ଥାନରେ ଗୋଟାଏ ପ୍ରଶସ୍ତ ଗୃହ ତୋଳା ଯାଇଥାଏ । ସେ ଘରର ନାମ— 'ଧାଙ୍ଗଡ଼ା' । ସେଥିରେ ଯୁବକ ଯୁବତୀମାନେ ଗାନ ବାଜଣା କରି ନାଚନ୍ତି, ମିଶନ୍ତି— ପାତ୍ର ପାତ୍ରୀ ନିର୍ବାଚନ ସ୍ୱାଭାବିକ ରୀତିରେ ହୁଏ ।

ଅନ୍ଧବିଶ୍ୱାସ:—ଭଞ୍ଜଭୂମି ଅଧିବାସୀ ବିଶେଷତଃ ଆଦିବାସୀଙ୍କ ଭୂତ, ପ୍ରେତ, ତନ୍ତ୍ର ମନ୍ତ୍ର ପ୍ରତି ଗାଢ଼ ବିଶ୍ୱାସ ଥିବା ନିଜ ଗ୍ରନ୍ଥାଦିରେ କବି ବାରମ୍ବାର ଉଲ୍ଲେଖ କରିଛନ୍ତି । "ସେ ବିଷେ ଯାଉ ହେଉଛୁ, ପଦ ନ ମାନଇ" । ଛ ୨୧, କୋ: ବ୍ର: ସୁ: । ସର୍ପାଘାତ ହେଲେ ତନ୍ତ୍ର ମନ୍ତ୍ରର ଆଶ୍ରୟ ନେବା କ'ଣ ଉଚିତ ? ବିଜ୍ଞାନସମ୍ମତ ଚିକିତ୍ସାରେ ସେଥିରୁ ରକ୍ଷା ପାଇବା ସମ୍ଭବ । ତାହା କରାଯାଉ ନ ଥିଲା । ଆଧୁନିକ ଯୁଗରେ ଅଧିକାଂଶ ମଧ୍ୟ ତନ୍ତ୍ର ମନ୍ତ୍ରରେ ନିର୍ଭର ରହନ୍ତି । ସେତିକି ନୁହେଁ , ସକଳ ପ୍ରକାର କାର୍ଯ୍ୟକ୍ଷେତ୍ର ଓ ପରିସ୍ଥିତିରେ ମନ୍ତ୍ର, ମଣି, ଔଷଧ ଓ ନାନାବିଧ ଉପାୟ ପ୍ରୟୋଗ କରାଯାଉଥିଲା । ତାହା ଏକାଧିକବାର ଲକ୍ଷ୍ୟ କରି କବି କହନ୍ତି—

"ଜି ବିଧ ବଶୀକରଣ ବୋଲନ୍ତି ସଂସାର ।
କି ମନ୍ତ୍ର କି ମଣି କେଉଁ ଔଷଧି ସାର ।
ପଣ୍ଡିତେ କେ ଉପାୟୀ,
ଯେଣି ଥାନ୍ତି ତାହା ଚତୁର୍ଗୁଣ ବେଳ ପାଇ ।" କୋ: ବ୍ର: ସୁ: ।

ସାପ ଖେଳରେ, ମର୍କଟ ନୃତ୍ୟରେ ମଧ୍ୟ ମନ୍ତ୍ର ପ୍ରୟୋଗ କରାଯାଏ । ସେହି ଉପଲକ୍ଷେ କବି କହନ୍ତି—

"ସର୍ପଗୁଣ୍ଡି କି ବଜାଇ ଡାକ,
ଖେଳାଇ ସର୍ପ ମନ୍ତ୍ରକୁ ଡାକ ।
ମର୍କଟନାଟ କାହିଁ କୁତୁକୀ କରାଉଛନ୍ତି ଯେ ।" ଛ ୭, ସୁ: ପ: ।

ବିରହୀ ଓ ବିରହିଣୀମାନେ ଅନେକ ସମୟରେ ଔଷଧ, ଉପାୟ, ମନ୍ତ୍ର ଗ୍ରହଣ କରୁଥିବା ବହୁ ଦୃଷ୍ଟାନ୍ତରୁ ଜଣାଯାଏ । ଯଥା—

"ବିରହିତ ସର୍ପପରି,
ଭୃମ୍ଭ ରସ ଗଦ ପ୍ରାୟେ ଏଥୁ ପାରେ ତାରି ।" ଛ ୧୪, ପ୍ରେ: ସୁ: ।

ଜରତୀ ପ୍ରଭୃତି ଦ୍ୱାଦଶ ବେଶ୍ୟା ମହର୍ଷି ଋଷ୍ୟଶୃଙ୍ଗଙ୍କୁ ଆସକ୍ତ କରିବାପାଇଁ ମନ୍ତ୍ରଧୂଳି ବ୍ୟବହାର କରିଥିଲେ । ଯଥା—

"ବିବର ପର୍ଣ୍ଣକୁଟୀରେ ଥିଲେ ମୁନିନାଗ,
ବଜାଇ ସପ୍ତକ୍ଷା ନାଗେଶ୍ୱର ବାଦ୍ୟ ବେଗ ଯେ ।
ବିଭେଦିତକୁତଳେ ରସଗୀତ ଗାଇ,
ବିଧୂତୁଣ୍ଡି ମନ୍ତ୍ରଧୂଳି ପକାଇ ପକାଇ ଯେ ।" ଛ ୪, ବୈ: ବି: ।

Digitized by srujanika@gmail.com

ସ୍ୱୟଂ ଶ୍ରୀକୃଷ୍ଣଙ୍କ ଇଙ୍ଗିତରେ ସତ୍ୟଭାମା ସୁଭଦ୍ରାଙ୍କୁ 'ପୁଂସରଞ୍ଜନ' ପାଇଁ ଅର୍ଥାତ୍ ଅର୍ଜୁନଙ୍କ ମନ ଆକର୍ଷଣ ପାଇଁ ମନ୍ତ୍ରଶିକ୍ଷା ଦେଉଥିଲେ । ଯଥା—

ଶିଖାଇଲେ ମନ୍ତ୍ର ଜବାଟ ଫେଡ଼ନେ କରିବାକୁ ପୁଂସ ରଞ୍ଜନ,
ସ୍ୱହସ୍ତେ ଦେଲେ ସେ ଧୂଳିକ୍ଷେପଣକୁ ଘେନିବାକୁ ଦେଲେ ଅଞ୍ଜନ ।" ସୁ: ପ: ।

ଯୁଦ୍ଧୋଚିତ ସ୍ୱରରେ କବି କହନ୍ତି—

"ତାରକ ମନ୍ତ୍ର ପରସାଦେ,
ମୋହର କବିପଣ ହୁଦେ ।" ଲ: ବ: ।

ତନ୍ତ୍ର ମନ୍ତ୍ରରେ ବହୁ ବ୍ୟକ୍ତି ଆସ୍ଥା ରଖିଥିଲେ ମଧ୍ୟ, ସେତେବେଳେ ଘୁମୁସରବାସୀ ବିଶେଷତଃ ଆଦିବାସୀମାନେ ଅନ୍ଧବିଶ୍ୱାସ ବନ୍ଧନରେ ନିଜ ନିଜକୁ ବାନ୍ଧି ରଖି ପରିଚାଳିତ ହେଉଥିଲେ । ଘିଅ, ଦୁଧ ଖାଇ ନ ଥିଲେ, ଧାନ ଗୋରୁ ଦ୍ୱାରା ମଳୁ ନ ଥିଲେ, ମନୁଷ୍ୟ ମନ୍ତ୍ର ବଳରେ ବାଘ ହୁଏ ବୋଲି ବିଶ୍ୱାସ କରୁଥିଲେ; ବିପଦ ଆପଦ, ରୋଗମୁକ୍ତିରୁ ରକ୍ଷା ପାଇବା ପାଇଁ ଇଷ୍ଟଦେବୀଙ୍କି ପୂଜା କରୁଥିଲେ । "ଇଷ୍ଟଦେବୀଙ୍କି ପୂଜା କରାଇଲେ", ଲ: ବ: । ଅଦ୍ୟାବଧି କେତେ କେତେ ଅନ୍ଧବିଶ୍ୱାସ ଜାଲରେ ପଡ଼ି 'ଗଣ୍ଡବେଇଷା' ଉପରେ ଛୋଟ, ଚନାବାଦାମ, ହଳଦି, କଦଳୀ ପ୍ରଭୃତି ନଇଜନକ ବୃକ୍ଷକୁ ନିବୃତ୍ତ ରହନ୍ତି । ପରିଶେଷରେ କବି ସର୍ବସାଧାରଣଙ୍କୁ ସତ୍‌ଶିକ୍ଷା ଦେବା ଉଦ୍ଦେଶ୍ୟରେ ତନ୍ତ୍ର ମନ୍ତ୍ର, କାଷ୍ଠ ପାଷାଣ ଦେବା ଦେବୀ ଆରାଧନା ଯେ ଅଳୀକ ତାହା ନିମ୍ନମତେ ହୃଦୟସ୍ପର୍ଶୀ ଭାଷାରେ ପ୍ରକାଶ କରିଛନ୍ତି—

"ବିପ୍ରେ ଇନ୍ଧନ ଦେବୀ ମନ୍ତ୍ରେ ପୂଜିଲେ ସେ ଯଥା ନ କହେ କଥା ।
ବରଦ ହୋଇଲି ପ୍ରାପ୍ୟେ ସ୍ୱପନରେ ବସି ନ ଚେଙ୍କିଲି ମଥା ।"

ଛା ୧୭, ବୈ: ବି: ।

ଅପରନ୍ତୁ—"ଖଡ଼ଗ ସାଧନେ ଦୃଢ଼ ଭ୍ରମ୍ଭ କର ଯେ କାହାକୁ ପୀଡ଼ା କରିବ,
ଏବେ ଜାଣିମା,
ବଳିଷ୍ଟେ ପଡ଼ିବ କ ଦଶା ।" ଗ୍ର -, ପ୍ରେ: ସୁ: ।

ଉକ୍ତଭୂମି ଘୁମୁସରର ଅଧିବାସୀମାନଙ୍କ ମଧ୍ୟରୁ କନ୍ଧମାନେ ସମଧିକ ଶ୍ରମସହିଷ୍ଣୁ । ସେମାନଙ୍କ ଶାରୀରିକ ଗଠନ ଅକଳନୀୟ କଷ୍ଟ ସମ୍ଭାଳିବା ପାଇଁ ଯୋଗ୍ୟ; ଅଙ୍ଗଭଙ୍ଗୀରୁ ବଳ, ସାହସର ପରିଚୟ ମିଳେ । ସେମାନଙ୍କ ସର୍ବାଙ୍ଗ ମାଂସପେଶୀ ପୁଷ୍ଟ, ଚର୍ମ—ଚିକ୍‌କଣ, ବର୍ଣ୍ଣ—କଷା ବାଂଶପରି ଶ୍ୟାମଳ । ଓଡ଼ିଆମାନଙ୍କ ପାଦ ଅପେକ୍ଷା ସେମାନଙ୍କ ପାଦର ଆକାର କିଞ୍ଚିତ୍ ବୃହତ୍ତର, ପାଦ ତଳପା ଟେଡେ ଶିଳ୍ପବୈଶିଷ୍ଟ୍ୟ ନ ହେଲେ ମଧ୍ୟ, ସେମାନଙ୍କ ପଦବିକ୍ଷେପର ପ୍ରଖରତା ଅତୁଳନୀୟ । ସେମାନଙ୍କର ଶାରୀରିକ ସୁସ୍ଥାନରୁ ମାନସିକ ପ୍ରଫୁଲ୍ଲତା ଓ ହୃଦୟର ଦୃଢ଼ତା ହୃଦ୍ୟଯାଏ । ଶୌର୍ଯ୍ୟମାନେ କନ୍ଧଙ୍କ ଭଳି କାହାର ଓ ସମରପ୍ରିୟ ନୁହନ୍ତି । ସଂଗ୍ରାମ ସମୟରେ ସେମାନେ ନିର୍ଭୀକଭାବରେ ସ୍ୱେଚ୍ଛାରେ ରଣଭୂମିରେ ଠିଆ ହୁଅନ୍ତି । ସେହି ଉପଲକ୍ଷେ କବି କହନ୍ତି—

"ଶବରପନ୍ତି କ ଭୟଙ୍କର,
ଯଥା ପରେତବର୍ଗ କିଙ୍କର,
ଭୂଷା ବର୍ଗ ଗୁଞ୍ଜ ନିକର,
ମଧ୍ୟରେ ମଣ୍ଡି ଯେ ।" ଲ: ବ: ।



Digitized by srujanika@gmail.com

ଏହି ବେଳେ ବେଳେ ଖ୍ୟାତନାମା ବୀରମାନଙ୍କୁ ଶବର ସହିତ ତୁଳନା କରନ୍ତି । "ଏ ଶବର ପ୍ରାୟେ କୁଠାରେତ ବଦ୍ଧ.." ବୈ: ଖ: । ଶବରମାନଙ୍କ ଲଢ଼େଇ ସ୍ପୃହା ଏପରି ଯେ, କେହି ଜଣେ ମରିବା ପର୍ଯ୍ୟନ୍ତ ଯୁଦ୍ଧ ଘମାଘୋଟ ଲାଗିଥାଏ । ଶବରରମଣୀମାନେ ସ୍ୱାମୀଙ୍କ ନିକଟରେ ଥାଇ ସାହାଯ୍ୟ କରନ୍ତି । ଜଣକର ମୃତ୍ୟୁ ପରେ ସେମାନେ ଦୁଇଦଳଙ୍କୁ ସେଥିରୁ ନିବୃତ୍ତ ରଖି, ସେମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ସ୍ଥାପନ କରନ୍ତି ।

ପ୍ରାଚୀନ ଗୁମୁସରର ଅଧିବାସୀଙ୍କ ମଧ୍ୟରୁ କନ୍ଧମାନେ ଗୁମୁସର ଭଞ୍ଜରାଜାମାନଙ୍କ ପରମ୍ପରାକ୍ରମେ ପ୍ରଧାନ ସୈନିକଭାବରେ କାର୍ଯ୍ୟ କରୁଥିଲେ । ସେମାନଙ୍କ ଆୟୁଧ ଭିତରେ ଧନୁ ଶର ଟାଙ୍ଗି ପ୍ରଧାନ । ସେମାନେ ଟାଙ୍ଗିଆ ଦୁଇ ହାତରେ ବ୍ୟବହାର କରି ପାରୁଥିଲେ । ମାଡ଼ ଦେବା, ନଇଁବା—ଉଭୟ କାମ ସେଥିରେ ତୁଲ ହୁଏ । ପଛିବା ବଞ୍ଚିବାରେ କନ୍ଧମାନେ ଅତୁଳନୀୟ ; ସେମାନଙ୍କ ସନ୍ଧାନ ଅବ୍ୟର୍ଥ ଓ ବିସ୍ମୟଜନକ । ସେହି କନ୍ଧ ଓ ଓଡ଼ିଆ ସୈନିକମାନେ ଭଞ୍ଜରାଜାମାନଙ୍କ ସାମରିକ ବିଭାଗରେ କାର୍ଯ୍ୟ କରୁଥିଲେ, ସେମାନଙ୍କୁ ମାସିକ ବା ବାର୍ଷିକ ଦରମା ଦିଆଯାଉ ନ ଥିଲା । ସେମାନଙ୍କ ଯାବଜ୍ଜୀବନ ପାଇଁ ବେତ୍ରର ଭୂମି ଖଞ୍ଜା ଥିଲା । * ସାମରିକ କର୍ମଚାରୀ ଓ ପାଇକଙ୍କଠାରୁ ଖଞ୍ଜା ଥିବା ଭୂମିରୁ ଅଳ୍ପ ଖଜଣା ଆଦାୟ କରାଯାଉଥିଲା । ପୂର୍ବ ଗଡ଼ତଳ, ଉତ୍ତର ଗଡ଼ତଳ, କୋକଲବା ମୁଠାର ହଜାର ହଜାର ଏକର ଜମି ସାମରିକ ଇନାମରେ ଯାଏ । ପାଞ୍ଚଗଡ଼, ଜାକ୍ସା ବାଡ଼ି, ବିରେକୋଟ ଓ ଗଲେରିମୁଠାର ଅଧିକାଂଶ ଜମି ସେହି ସାମରିକ ଖର୍ଚ୍ଚ ତୁଲାଇବାରେ ବିନିଯୋଗ କରାଯାଇଥାଏ ।" † ଇଚ୍ଛାପୁର ପ୍ରଦେଶର ଊନବିଂଶ ରାଜାଙ୍କ ମଧ୍ୟରେ ଗୁମୁସର ରାଜା କୃଷ୍ଣଭଞ୍ଜ (ଖ୍ରୀ୧୭୫୪—୧୭୭୩) ଅତ୍ୟନ୍ତ ଶକ୍ତିଶାଳୀ ଥିଲେ । ତାଙ୍କ ଅଧୀନରେ ୪ଟି ଦୁର୍ଗ ଏବଂ ବିଷ୍ଣୁଚକ୍ର, କଟରିକଟ ନାମରେ ଦୁଇଟି ସୁରକ୍ଷିତ ପ୍ରବେଶଭେଦ ଥିଲା । ସେ ସର୍ବଦା ୧୦,୦୫୦ ବେତନଭୋଗୀ ସୈନିକ ସୁସଜ୍ଜିତ ରଖୁଥିଲେ, ବିପଦବେଳେ ସେ ଅଧିକ ୧୦୦୦ ଯାଏ ସୈନିକ ସଂଗ୍ରହ କରି ପାରୁଥିଲେ । ଖ୍ରୀ: ୧୭୭୮ ରେ ତତ୍କାଳୀନ ପ୍ରଥମ ଗଞ୍ଜାମ ରେସିଡ଼େଣ୍ଟ କଟସ୍‌ଫୋର୍ଡ଼ ଗଞ୍ଜାମର ବୀରତ୍ୱ ବିଷୟରେ ଏହି ମତ ବ୍ୟକ୍ତ କରିଥିଲେ । ସପ୍ତମ ଶତାବ୍ଦୀରେ ଗଞ୍ଜାମ ସମ୍ବନ୍ଧରେ ହୁଏନ୍‌ସାଂ କହନ୍ତି—"The people are all Hindoos, the cities are strong and high ;

---

* "the villages are...held by the match lock peons in the service of the Zamindar subject to a light assessment. The mootats of Poorogcdotolo & Wootergodotoloo and Coocooloobah are entirely under this tenure. A great of Gullery, Punchogodo, Janksabody & Beerecote is so also." —Madras records.

† "Of the nineteen Rajas then in the province of Ichapur, Kissun Bhanj, the Raja of Ghumusur, was the most powerful. Besides four forts and two very strongly protected palliemes, those of Vishnuchakra & Katarikote, this Raja had in his pay no less than 10,050 peons to which he was able to add, in times of emergency another 1,000 men.

—Maltyby's History.

Digitized by srujanika@gmail.com

the soldiers daring," ଗ୍ରାମର ସମସ୍ତ ଅଧିବାସୀ ହିନ୍ଦୁ, ସମସ୍ତ ସହର—ଶକ୍ତି ଓ ଚକ୍ରବର୍ତ୍ତୀଙ୍କ, ସୈନିକବର୍ଗ ନିର୍ଭୀକ ଥିଲେ । ଖ୍ରୀ: ୧୮୦୦–୧୮୩୭ ଯାଏ ଇଂରେଜ ବନ୍ଧୁକରେ ଗୁମୁସର ବାହିନୀ ଲଢ଼ିଥିଲେ । ସେହି ଉପଲକ୍ଷେ ଜନ୍ କ୍ୟାମ୍ପବେଲ କହନ୍ତି—"Fierce and bloody was the conflict whenever we fell in with the Khonds or they with us" (M. R.) 'ଆମେ ଯେତେବେଳେ କନ୍ଧବାହିନୀର ସମ୍ମୁଖୀନ ହେଉ, ଅଥବା ସେମାନେ ଆମ ଆଡ଼କୁ ମାଡ଼ି ଆସନ୍ତି, ସେତେବେଳେ ସଂଗ୍ରାମ ଭୟାବହ ଓ ରକ୍ତାକ୍ତ ହୋଇ ଉଠେ ।' ଏହିପରି ଏକାଧିକ ଘଟଣା ଉପଲକ୍ଷେ କବି କହନ୍ତି—"ଶବର ପନ୍ତି କି ଭୟଙ୍କର," ବେଳେ ବେଳେ "ଜୀମନ୍ତ ସାଧନ ଚଣ୍ଡ ପ୍ରସ୍ତର ଘର୍ଷଣ ଗୋ । ପୃ ୧୮୯, ଲା: ବ:, କେତେବେଳେ ଅବା "ଶଣି ଯାଉଛି କି ଯୋଦ୍ଧା ମସ୍ତକରୁ ଉଷ୍ଣୀଷ ଏମନ୍ତ ଦଶି ରେ ।" ପୃ ୧୭୦, ଲା: ବ: ।

ଚିକିତ୍ସା—ପ୍ରାଚୀନ ଯୁଗରେ ଆୟୁର୍ବେଦ ଚିକିତ୍ସା ତଥା ଚେରମୂଳ ଉପାୟ ଥିଲା ପ୍ରଧାନ ସମ୍ବଳ । ଜାଙ୍ଗଳିକମାନେ ବିବିଧ ବେମାର ପାଇଁ ନାନାବିଧ ଚେର, ମୂଳ ଯୋଗାଉଥିଲେ । ତାହା କବିଙ୍କ ଅନୁଭୂତିର ଅନ୍ତର୍ଭୁକ୍ତ ଘଟନା ଥିବା ହେତୁ, ସେ ସେହି ଉପଲକ୍ଷେ କହନ୍ତି—ଜାଙ୍ଗଳିକେ ଦେଇ କପର୍ଦ୍ଦ, ବୋଲିବ ମୂଳ ଆଣନ୍ତି ଆନ ସମାଧି । ପଦ ୧୭, ର: ସ: ।

ଧର୍ମ—ଆଦିବାସୀମାନଙ୍କର ଦେବଦେବୀ ଯଥାକ୍ରମେ 'ବୁଢ଼ାପେନୁ', 'ତାଡ଼ିପେନୁ' ଏହି ନାମରେ ସେମାନେ କାଷ୍ଠ ପାଷାଣ ପୂଜା କରୁଥିଲେ ମଧ୍ୟ, ଧର୍ମନାମରେ ସେମାନେ 'ମେରିଆ' ପୂଜା ବା ନରବଳି ଦିଅନ୍ତି । ଏହି ନୃଶଂସ ଦୃଶ୍ୟ କବିଙ୍କ ଦୃଷ୍ଟିପଥାରୂଢ଼ ହୋଇଥିବାରୁ, ସେ ପ୍ରସଙ୍ଗାନୁକ୍ରମେ କହନ୍ତି— "ନବଚଣ୍ଡୀ ଅର୍ଚ୍ଚନ ଆରମ୍ଭରେ, ପଶୁଛେଦନା କରିଛି ଅମ୍ଭରେ ।" କୋ: ବ୍ର: ପୁ: ।

ନରବଳିପ୍ରଥା କେଉଁ ପ୍ରାଚୀନ ଯୁଗରୁ ଖ୍ରୀ: ୧୮୫୦ ଯାଏ ଭାରତବର୍ଷରେ ପ୍ରଚଳିତ ଥିଲା । ପ୍ରାଚୀନ ଭାରତ କାହିଁକି, ଭାରତେତର ଦେଶମାନଙ୍କରେ, ସଭ୍ୟ ଅସଭ୍ୟ ପ୍ରାୟ ସମସ୍ତଙ୍କ ମଧ୍ୟରେ ନରବଳି ତଥା ମେରିଆ ପ୍ରଥା * ପ୍ରଚଳିତ ଥିବା ହିନ୍ଦୁ ଶାସ୍ତ୍ରରୁ ପ୍ରମାଣ ମିଳେ । †

ନରବଳି ଓ ଶିଶୁହତ୍ୟା ସମ୍ପର୍କରେ ଯୋଉଁଏ ଅଦ୍ଭୁତ କିମ୍ବଦନ୍ତୀ ଅଛି । ଗୁମୁସରର ଆଦିମ ଅଧିବାସୀମାନେ, ବିଶେଷତଃ କନ୍ଧମାନେ ପ୍ରାଚୀନ କାଳରୁ ତାହା ଦୃଢ଼ରୂପେ ବିଶ୍ୱାସ କରି ଆସୁଅଛନ୍ତି । 'ବୁଢ଼ାପେନୁ'ଙ୍କ ଯୋଗୁଁ ଶିଶୁହତ୍ୟା, 'ତାରିପେନୁ' ବା 'ଅମ୍ବାଳିକାଳୀ' ଙ୍କ ଯୋଗୁଁ ନରହତ୍ୟା ହୁଏ ବୋଲି ସେମାନେ ବିଶ୍ୱାସ କରନ୍ତି । ଶସ୍ୟ ଉତ୍ପନ୍ନ ଓ କୃଷିର ଉନ୍ନତି ଉଦ୍ଦେଶ୍ୟରେ ନରବଳି ଦିଆଯାଏ । ରାବଣର ଯୁଦ୍ଧଯାତ୍ରା ବର୍ଣ୍ଣନାରେ ତାର ସଙ୍କେତ—ସୂଚନା ଦେଇଛନ୍ତି, ଯଥା—"ବଢ଼ାଇଲି ବେଗେ ଚଣ୍ଡୀପଦ ଜାଣିପଶୁ ଝଣ୍ଟି ରକ୍ତ ପାନ ପାନବୋଲେ ଓଷ୍ଠ ରଞ୍ଜନ ।" ଛ୫୦, ବୈ: ବ: ।

---

*"The Hebrew Seripture frequently allude to the practice which has not only existed among the most barbarous but also amongest the most enlightened nations of antiquity."

† "The sacrifice of human beings was common to the ancient religion of India."

Digitized by srujanika@gmail.com

ଖ୍ରୀ:୧୮୩୭ ଯାଏଁ ମେରିଆପ୍ରଥା ଦମନ ପାଇଁ ଆଦୌ ଉଦ୍ୟମ ନ ଥିଲା । ତାହା କନ୍ଧ ଓ ଅନ୍ୟ ଆଦିବାସୀଙ୍କ ମଧ୍ୟରେ ଚଳୁଥିଲେ ମଧ୍ୟ, ଇତର ସମ୍ପ୍ରଦାୟଙ୍କର ସେଥିପ୍ରତି ସହାନୁଭୂତି ଥାଏ । ଗୁମୁସର ରାଜାମାନେ ବାଗ୍‌ଦେବୀଙ୍କଠାରେ ବେଳେବେଳେ ନରବଳି ଦେଉଥିଲେ । ✻ କଥାପ୍ରସଙ୍ଗରେ ବୌଦ-ରାଜା ମେରିଆ କର୍ମଚାରୀ ମାକଫେରସନ୍‌ଙ୍କୁ ଖ୍ରୀ: ୧୮୪୧ ରେ କହିଥିଲେ—'ମହାନଦୀ କୂଳବାସୀ ପ୍ରତ୍ୟେକ ରାଜା, ମୋର ନିଜ ପିତା ମଧ୍ୟ ମେରିଆପୂଜା କରୁଥିଲେ । କୁଲଡ଼ ବାଗ୍‌ଦେବୀ ମନ୍ଦିରରେ ଗୁମୁସରର ଶେଷ ରାଜାଙ୍କ ପିତା ବାରମ୍ବାର ମେରିଆପୂଜା କରୁ ଥାନ୍ତି । ଉକ୍ତ ରାଜପରିବାର କେତେକ କର୍ମଚାରୀ କହିବା ଅନୁସାରେ—ଶେଷରାଜା ମଧ୍ୟ ଥରେ ନରବଳି ଦେଇଥିଲେ ।' ଇଂରେଜମାନେ ଖ୍ରୀ: ୧୮୩୭ ରେ ଗୁମୁସର ହସ୍ତଗତ କରି ମେରିଆ ଓ ଶିଶୁହତ୍ୟା ରହିତ ପାଇଁ, କ୍ୟାମ୍‌ବେଲ୍, କପ୍ତାନ ମ୍ୟାକଫେରସନ୍, କ୍ୟାଡ଼ନ୍‌ହେଡ୍, ମ୍ୟାକଭିକର୍, ମ୍ୟାକନିଲ୍, ବ୍ୟାନର୍‌ମ୍ୟାନ, ମ୍ୟାକ୍‌ଡୋନାଲଡ ପ୍ରଭୃତି କର୍ମଚାରୀଙ୍କୁ ନିଯୁକ୍ତ କଲେ । ଖ୍ରୀ: ୧୮୫୮ ସରିକି ଏହି ନୃଶଂସ ହତ୍ୟାକାଣ୍ଡର ମୂଳୋତ୍ପାଟନ ହୋଇ ସାରିଥିଲା । ଆଦିବାସୀମାନେ ବଳିପୂଜା ଧର୍ମର ଅନ୍ତର୍ଗତ ବୋଲି ଦୃଢ଼ଭାବରେ ବିଶ୍ୱାସ କରୁଥିବାରୁ ନରବଳି ପୂଜା ଛାଡ଼ିବାକୁ ବାଧ୍ୟ ହେଲେ ମଧ୍ୟ, ପଶୁବଳି ଦେବାକୁ ଅନୁମତି ପାଇଲେ । କଂଗ୍ରେସଭକ୍ତଙ୍କ ପ୍ରଚାର ଓ ସତ୍ୟାଗ୍ରହ ଫଳରେ ତାହା ଖ୍ରୀ: ୧୯୨୫ ଠାରୁ ଅଳ୍ପେ ଅଳ୍ପେ କମିଯାଇ ବର୍ତ୍ତମାନ ସମ୍ପୂର୍ଣ୍ଣ ବନ୍ଦ ହୋଇଥିବା ଦେଖାଯାଏ ।

---

✻ "The Boud Raja admitted to me that his father and the immediate predecessors of all the neighbouring zamindars upon the Mahanadi had practised it. It was constantly performed by the father of the late Raja of Gumsur at the shrine of Bogh Devi at Kuladah and according to some servants of the family at one time by the latter himself."

—Macpherson.

Digitized by srujanika@gmail.com

# ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ

ବୁଢ଼ୀଖୋଲ :—ପୁରୁଣା ଗୁମୁସରଗଡ଼ର ୧୬ ମାଇଲ ଏବଂ ବୁଗୁଡ଼ାର ତିନିମାଇଲ ଦୂରରେ 'ବୁଢ଼ୀଖୋଲ' ବା 'ବୁଦ୍ଧଖୋଲ' ଅବସ୍ଥିତ । ସେହି ପର୍ବତ ବକ୍ଷଦେଶରେ ପାଞ୍ଚ ଗୋଟି ଶିବମନ୍ଦିର ଥିଲା । ସେଥିରୁ ତିନୋଟି ଧ୍ୱଂସ ପାଇଛି, ବର୍ତ୍ତମାନ ସେଗୁଡ଼ିକର ଧ୍ୱଂସାବଶେଷ ଦେଖିବାକୁ ମିଳେ । ଉକ୍ତ ମନ୍ଦିରଗୁଡ଼ିକ କୌଣସି ଗୁମୁସର ଭଞ୍ଜରାଜାଙ୍କ ଦ୍ୱାରା ନିର୍ମିତ ହୋଇନାହିଁ * କୌଣସି ପ୍ରାଚୀନ ରାଜା ଶ୍ରୀ ମୁକୁନ୍ଦଦେବଙ୍କ ଦ୍ୱାରା ନିର୍ମିତ । ସେହି ସ୍ୱନାମଧନ୍ୟ ରାଜା ବୁଗୁଡ଼ା ନିକଟବର୍ତ୍ତୀ 'କୋଇନ' ଗ୍ରାମରେ ଗୋଟିଏ ଶକ୍ତ ଶିଳାମନ୍ଦିର ନିର୍ମାଣ କରିଥିଲେ ବୋଲି ସିଓଲ କହନ୍ତି । ବର୍ତ୍ତମାନ ଉକ୍ତ ତିନୋଟି ଶିଳାମନ୍ଦିର ଦର୍ଶନ ଦେଖିବାକୁ ପାଇବେ । ମନ୍ଦିରଗୁଡ଼ିକୁ ପ୍ରଦକ୍ଷିଣ କରି ଗୋଟିଏ ସ୍ୱଚ୍ଛ ନିର୍ଝରଣୀ ଅନବରତ ବୁଢ଼ୀଖୋଲ ପର୍ବତପାଦ ଧୌତ କରେ । ଜଳ—ସ୍ୱଚ୍ଛ, ମଧୁର, ସ୍ୱାସ୍ଥ୍ୟକର ।

କୁଲାଡ଼ :—ପ୍ରାୟ ପାଞ୍ଚଶତ ବର୍ଷ ତଳେ କୁଲାଡ଼ରେ ଗୋଟିଏ ଗଡ଼ ଥିଲା । ଗଡ଼ ନିକଟବର୍ତ୍ତୀ ଏକ ଶିଖରୀଶିଖରରେ ଦୁଇଟି ଶକ୍ତଶିଳା ଲୌହକଲାରେ ସାଙ୍କୁଳା ହୋଇ ରଖାଯାଇଥିବା ଶୁଣାଯାଏ । କନ୍ଧମାନେ ସେଠାରେ ଅନବରତ ପହରା ଦେଉଥିଲେ । ସୂକ୍ଷ୍ମ ଚାରୁକଳା ରଞ୍ଜିତ ଗୋଟିଏ ଦେବାଳୟ ସେଠାରେ ଅଛି । ଗ୍ରାମଦେବତା ମନ୍ଦିରଟି ଅତି ପ୍ରାଚୀନ । ପ୍ରାଚୀନ ଗୁମୁସର ଭଞ୍ଜରାଜାମାନଙ୍କର ଏଠାରେ ଗୋଟିଏ ଗଡ଼ ଥିଲା । ଗଡ଼ର ଧ୍ୱଂସାବଶେଷରୁ ଚିତ୍ରଖୋଦିତ ଖଣ୍ଡ ଖଣ୍ଡ ପ୍ରସ୍ତର ମିଳେ । ବର୍ତ୍ତମାନ ସ୍ଥାନଟି ନିବିଡ଼ ଗୁଳ୍ମସମାଚ୍ଛନ୍ନ ହୋଇ ରହିଛି । **

ମାଳତୀଗଡ଼—ଗୁମୁସର ଅନ୍ତର୍ଗତ ପାଇକପଡ଼ା ମୁଠାରେ, ପୁରୁଣା ଗୁମୁସରଗଡ଼ର ଅନତି ଦୂରରେ ମାଳତୀ ପର୍ବତ ଓ ଗାଁ, କେଶରପଲ୍ଲୀ ବିଦ୍ୟମାନ । ଏଠାରେ ଗୋଟିଏ ପ୍ରାଚୀନ ଗଡ଼, ବହୁତ ଦିନ ପର୍ଯ୍ୟନ୍ତ ଅସ୍ତବ୍ୟସ୍ତ ଭାବରେ ଥିଲା । ସେଠାରୁ କୃଷକମାନେ ସ୍ୱର୍ଣ୍ଣମୁଦ୍ରା ଓ ସ୍ୱର୍ଣ୍ଣ ପ୍ରତିମାର କେତେକାଂଶ ବେଳେବେଳେ ପାଉଥିଲେ । ଜଣେ ଗୌଡ଼ ଖଣ୍ଡିଏ ହୀରା ସେ ସ୍ଥାନରୁ ପାଇଥିବା ଜଣାଯାଏ ।

---

* 'Archeological S. S. India' by Sewell.

** "There is a fort here, about 500 years old. On the top of a hill near it are said to be two large stones fastened together with iron pins, over which the Kandh inhabitants keep jealous guard. There is also a temple of some celebrity said to be well sculptured. The temple of a village Goddess is said to be very old. The old Goomsur Rajas had the palace here, and the site is shown. It is covered with debris from amongst which sculptured stones have been excavated. The place is now over-grown in the Jungle. ( Archeological Survey of Southern India by Sewell )

Digitized by srujanika@gmail.com

ତଦାନୀନ୍ତନ ରାଜସ୍ୱବିଭାଗୀୟ ଜନୈକ ଡେପୁଟି ( ବି. ନାରାୟଣ ମୂର୍ତ୍ତି ) ୪୦ ଟଙ୍କା ଦେଇ, ତାହାଠାରୁ ନେଇ ଯାଇଥିବା ଶୁଣାଯାଏ । ମାଳତୀ ପର୍ବତ ଉପରେ ଗୋଟିଏ ପ୍ରକାଣ୍ଡ ପଥର ଦୀପାଳୀ ପଡ଼ିରହିଛି । ସେଥିରେ ୨୫୦ ସେର ଜଡ଼ା ଧରେ । ଦୀପାଳୀ ବେଣ୍ଟି ଉପରେ ତାହା ମାଝ କଡ଼ ପଡ଼ିରହିଛି । ପର୍ବତ ପାଦଦେଶରେ ଗୋଟିଏ ପ୍ରାଚୀନ ଶିଳାମନ୍ଦିର ଖୋଳି ବାହାର କରାଗଲା । ସେଥିରେ ଥିବା ସୂର୍ଯ୍ୟ ଦେବତା ବା ସୂର୍ଯ୍ୟନାରାୟଣ ମୂର୍ତ୍ତିକୁ, ବୁଗୁଡ଼ାରେ ଗୋଟିଏ ନବ ନିର୍ମିତ ସୁନ୍ଦର ସପ୍ତଘୋଟକ ସଂଯୋଜିତ ରଥାକୃତି ମନ୍ଦିରରେ ସ୍ଥାପନ କରାଯାଇଛି । ❊ ଏହି ମନ୍ଦିରଟି ଶ୍ରୀକର ଭଞ୍ଜଙ୍କ ଦ୍ୱାରା ନିର୍ମିତ । ପୂର୍ବକାଳରେ ଓଡ଼ିଶାର ଜଣେ କେଶରୀ ରାଜା ସେଠାରେ ବାସ କରିଥିବା କଥିତ ଅଛି । କେଶରୀ ନାମାନୁସାରେ 'କେଶରୀପଲ୍ଲୀ' । ଚିତ୍ରାଙ୍କିତ ଖଣ୍ଡ ଖଣ୍ଡ ପଥର, ବଡ଼ ବଡ଼ ଇଟା ସେଠାରେ ଦେଖାଯାଏ । ଅସଂଖ୍ୟ ପ୍ରତିମା ପର୍ବତରୁ ମିଳିଥିବା ଏବଂ ଅନ୍ୟ ସ୍ଥାନକୁ ସ୍ଥାନାନ୍ତରିତ ହୋଇଥିବା ଜଣାଯାଏ । ସେଗୁଡ଼ିକ ବୌଦ୍ଧ କିମ୍ବା ଜୈନ ସମ୍ବନ୍ଧୀୟ, ତାହା ଧରାଯାଏ ନାହିଁ । †

ବରଗାଁ — ଗୁମୁସରର ରାଜନୈତିକ ରାଜଧାନୀ ରସଲକୋଣ୍ଡା ( ଭଞ୍ଜନଗର ) ର ୭ ମାଇଲ ଦୂରରେ ବରଗାଁ ଅବସ୍ଥିତ । ଏଠାରେ ପଞ୍ଚଶିଳା ମନ୍ଦିର ବିଦ୍ୟମାନ । କୌଣସି ଭଞ୍ଜରାଜାଙ୍କ ଦ୍ୱାରା ତାହା ନିର୍ମିତ । ମନ୍ଦିର ସିଂହଦ୍ୱାରରେ ଖୋଦିତ ଶିଳାଲିପି ଅସ୍ପଷ୍ଟ ଭାବରେ ଦେଖାଯାଏ ।

ଗୋପୀନାଥପୁର — ✱❊ କବି ଉପେନ୍ଦ୍ର ଭଞ୍ଜଙ୍କ ପ୍ରପିତାମହ ଗୋପୀନାଥ ଭଞ୍ଜଙ୍କର ତାହା ହୁଏ ଦାନ ଶାସନ । ଏଠାରେ ଗୋଟିଏ ଅଠ ଅଂଶିଆ ଶିଳା ମନ୍ଦିର ଅଛି । ତାହା ଗୋପୀନାଥ ଭଞ୍ଜଙ୍କ ଦ୍ୱାରା ନିର୍ମିତ ।

ଲେପା ( Leppa —ଏହି ଗାଁଟି ରସଲକୋଣ୍ଡାର ୧୩ ମାଇଲ ଦୂରରେ । ଏଠାରେ ଗୋଟିଏ ଅତି ପ୍ରାଚୀନ ଶିଳା ମନ୍ଦିର ଅଛି ।

ଏତଦ୍ବ୍ୟତୀତ ଭଞ୍ଜଭୂମି ଗୁମୁସରରେ ଭଞ୍ଜ ରାଜାମାନଙ୍କ ଦ୍ୱାରା ନିର୍ମିତ ଅସଂଖ୍ୟ କାଷ୍ଠ ପାଷାଣ ମନ୍ଦିର ଅଛି । ତନ୍ମଧ୍ୟରୁ ବେଲମୁଠା ନୃସିଂହ ମନ୍ଦିର, ନେଣ୍ଟଙ୍ଗା କାଠ ମନ୍ଦିର, ବରପଲ୍ଲୀ ବାସୁଦେବ ମନ୍ଦିର, କୁଲାଡ଼ ବାଗ୍ଦେବୀ ମନ୍ଦିର, ଜଗନ୍ନାଥ ମନ୍ଦିର ଓ ନାରାୟଣ ମନ୍ଦିର ଉଲ୍ଲେଖଯୋଗ୍ୟ । ବାଗ୍ଦେବୀ ମନ୍ଦିର ଭଞ୍ଜ ରାଜାମାନଙ୍କ ଅତି ପ୍ରାଚୀନ କୀର୍ତ୍ତି; ବେଲମୁଠା ନୃସିଂହ ମନ୍ଦିର, ନେଣ୍ଟଙ୍ଗା କାଠ ମନ୍ଦିର ଉପେନ୍ଦ୍ର-ଭଞ୍ଜଙ୍କ ପିତାମହ ପ୍ରତାପ ଧନଞ୍ଜୟ ଭଞ୍ଜଙ୍କ ଦ୍ୱାରା ନିର୍ମିତ । ବରପଲ୍ଲୀ ବାସୁଦେବ ମନ୍ଦିରର ପ୍ରଭୁଙ୍କ ସମ୍ମୁଖସ୍ଥ କାନ୍ଥ ଖିଲଣ ଭିତରେ ଶିଳାଖୋଦିତ ଚବେଶି ମୂର୍ତ୍ତି ଅଛି । ଖିଲଣର ଊର୍ଦ୍ଧ୍ୱ ଭାଗରେ ଅର୍ଦ୍ଧଚନ୍ଦ୍ରାକାରରେ ଖୋଦିତ ଲିପିରୁ ପ୍ରତ୍ୟେକ ମୂର୍ତ୍ତିର ସ୍ପଷ୍ଟ ପରିଚୟ ମିଳେ । ତାହା ହେଉଛି —କୃଷ୍ଣ ଭଞ୍ଜ, ଲକ୍ଷ୍ମଣ ଭଞ୍ଜ,

❊ ପ୍ରାଚୀନ ବଂଶାବଳୀ ୧୪ ଅଙ୍କସ୍ଥ ଗୁମୁସର ଇତିହାସ, ପୃ ୩୮ ।

† A high hill and village some few miles south of Goomsur in the Pagilipada sub-division of Goomsur Taluq, there was an ancient fort here, for many years entirely dismantled. Gold coins and "fragments of golden images" have been found or its site by ploughmen. On the hill is "a lamp carved in stone which holds about 250 seers of oil. The oil pan is turned up side down and set on the stone pillar pedastal of the lamp." The place is also called

Digitized by srujanika@gmail.com

ଦେବାନ ଦାନ, ମେଦଙ୍କର । ପ୍ରତ୍ୟେକ ମୂର୍ତ୍ତି ଦେଢ଼ ଫୁଟରୁ ଅଧିକ ହେବ ନାହିଁ । କୃଷ୍ଣ ଭଞ୍ଜ ଖ୍ରୀ: ୧୭୪୪-୭୩ ଯାଏ ଗୁମୁସରର ରାଜା ଥିଲେ । ତାଙ୍କର ଜ୍ୟେଷ୍ଠପୁତ୍ର ଲକ୍ଷ୍ମଣ ଭଞ୍ଜ, ଜନସ୍ତ ଓ ବିକ୍ରମ ଭଞ୍ଜଙ୍କ ନ ବର୍ଷ ପର୍ଯ୍ୟନ୍ତ ରାଜଗାଦି ଗ୍ରହଣ କରିବାକୁ ବାଧ୍ୟ ହୋଇ, ଖ୍ରୀ: ୧୭୮୨-୯୦ ଯାଏ ରାଜତ୍ୱ କରିଥିଲେ । ସେଥିରେ ଖୋଦିତ ଅନ୍ୟ ଦୁଇ ମୂର୍ତ୍ତି ଯଥାକ୍ରମେ କୃଷ୍ଣ ଭଞ୍ଜ ଓ ଲକ୍ଷ୍ମଣ ଭଞ୍ଜଙ୍କ ବୋଲି ଅନୁମିତ ଥିଲ । ଖୋଦିତ ମୂର୍ତ୍ତିରୁ ଗୋଟିଏ ରାଜୋଚିତ ବେଶରେ ପ୍ରଭୁଙ୍କଠାରେ ଚନ୍ଦନବେଶ କରି ଉପବିଷ୍ଟ ଥିବା, ଅନ୍ୟ ଗୋଟିଏ ପାର୍ଶ୍ୱରେ ଦଣ୍ଡାୟମାନ ଥିବା ଦେଖାଯାଏ । ମନ୍ଦିରର ଦକ୍ଷିଣ ଦ୍ୱାରର ଉର୍ଦ୍ଧ୍ୱଦେଶରେ ଖଣ୍ଡିଏ ପ୍ରଶସ୍ତ କଳାପ୍ରସ୍ତର ଫଳକରେ ନିମ୍ନଲିଖିତ ଲିପି ଖୋଦିତ ହୋଇଅଛି:—

> 'କୃଷ୍ଣଭଞ୍ଜ ରାଜାଙ୍କର' ଯଶୋଦା ପାଟ ମହାଦେଈ । ଏହାଙ୍କ ପୁଅ ଲକ୍ଷ୍ମଣଭଞ୍ଜ ରଜା । ୯ ପ୍ରାସାଦ ଶ୍ରୀ ବାସୁଦେବ ମହାପ୍ରଭୁଙ୍କ ନିର୍ମାଣ କରିଅଛନ୍ତି । ବୀରକେଶରୀ ଦେବ ୫ ଅଙ୍କ, ଶାଳିବାହନ ଶକାବ୍ଦ ୧୭୦୪ ।"

ଖୋଦିତ ଅଙ୍କ ଓ ଶକାବ୍ଦରୁ ମନ୍ଦିରଟି ଲକ୍ଷ୍ମଣଭଞ୍ଜଙ୍କ କୀର୍ତ୍ତି ବୋଲି ସ୍ପଷ୍ଟ ହୁଏ । କିନ୍ତୁ ନାରାୟଣ ମନ୍ଦିର କୃଷ୍ଣଭଞ୍ଜଙ୍କ ଦ୍ୱାରା ନିର୍ମିତ । ସେ ସମ୍ପର୍କରେ ବହୁତ ଶ୍ରୁତିସୁଖକର ଐତିହ୍ୟ ଅଛି । ଏଠାରେ ତାହା ଲିପିବଦ୍ଧ କରିବା ଅନାବଶ୍ୟକ । କେତେଗୋଟି କାଠ ମନ୍ଦିର କୋଣାର୍କ ମନ୍ଦିର ଅନୁକରଣରେ ଗଢ଼ା-ଯାଇଥିଲା । ତାହାର ସୂକ୍ଷ୍ମ କାରୁକାର୍ଯ୍ୟ ଅତୀବ ସୁନ୍ଦର । କନୈକ ତେଲେଙ୍ଗା ମନ୍ଦିରସ୍ୱାମୀଙ୍କ ଉଦାସୀନତା ଯୋଗୁଁ ତାହା ଭାଙ୍ଗିଯାଇ ଜୀର୍ଣ୍ଣ ହୋଇ ରହିଯାଇଛି । ସଦାଶୟ ସରକାରଙ୍କର ସେଥିପ୍ରତି ଦୃଷ୍ଟି ପଡ଼ିଲେ ଓଡ଼ିଶାର ଗୋଟିଏ ପ୍ରସିଦ୍ଧ ସୂକ୍ଷ୍ମକଳାବିଶିଷ୍ଟ ସ୍ଥାପତ୍ୟର ପୁନରୁଦ୍ଧାର ହୋଇ ପାରିବ ।



---

Kesarapalle. An old temple was excavated form the foot of the hill close by, and the image (One of Suryanarayana Murty the Sun God) was carried to Buguda, where it was consecrated in a new temple build in its honour in the shape of the Sun Car. In former times a Kesari Raja ( ? Orissa ) is said to have been lived here, and carved stones and very large bricks are shown on the hill. Several images are said to have been found on the hill and carried off. Buddist or Jain they happened to be, are not known." —Sewell.

** ପୃ ୧୦, ଗୁ: ଗ:

---

ମହାରାଜା ଶ୍ରୀ ରାମଚନ୍ଦ୍ର ଉତ୍କଳ ୟୁନିଭର୍ସିଟି ପ୍ରେସରେ ମୁଦ୍ରିତ । ୧୯୬୮—୧୦୦୦

Digitized by srujanika@gmail.com